# ପ୍ରହରାଜ ଗ୍ରନ୍ଥାବଳୀ

## ତୃତୀୟ ଭାଗ

## ଭାଷା ଖଣ୍ଡ

ଗୋପାଳଚନ୍ଦ୍ର ପ୍ରହରାଜ

ସଂପାଦନା
ଗୌରାଙ୍ଗ ଚରଣ ଦାଶ

ବିଦ୍ୟାପୁରୀ

PRAHARAJ GRANTHABALI
Vol.III
BHASA KHANDA
Edited by Dr. Gaurang Charan Dash
Published by Vidyapuri, Cuttack 753002

ISBN 978-81-7411-676-5

ପ୍ରଥମ ପ୍ରକାଶ
ସେପ୍ଟେମ୍ବର ୨୦୦୮

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ମୁଦ୍ରଣ
ରୟାଲ ହାଫ୍‌ଟୋନ୍ କୋ, କଟକ

ମୂଲ୍ୟ ଟ ୨୮୦.୦୦

# ସୂଚୀ

# ଶବ୍ଦ-ସାଧକ ଗୋପାଳଚନ୍ଦ୍ର

॥ ଏକ ॥

ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ସଂପର୍କରେ, ଆମେ ଅଳ୍ପରେ ଏତିକି କହିପାରିବା ଯେ, ସମକାଳୀନ ଓଡ଼ିଶାର ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଜଣେ ବ୍ୟତିକ୍ରମ । ସେ ନିଜେ ବଞ୍ଚିଥିବା ଜୀବନର କଥା ହିଁ ସାହିତ୍ୟରେ କହିଛନ୍ତି । ନିଜ କଥା କହୁ କହୁ, ଆପଣା ଜୀବନ ଓ ବିଚାର ସହ ସୂତ୍ରାୟିତ ସାମାଜିକ, ରାଜନୀତିକ ଓ ସାଂସ୍କୃତିକ ଗମ୍ଭୀରାର ଭିତିରି ଭାବଗୁଡ଼ିକୁ ମଧ୍ୟ ହାଟମଝିକୁ ଆଣିଛନ୍ତି । ରଚନାବିଧି ସମ୍ପର୍କରେ ଅଧିକ ବିତର୍କପାଇଁ ପରିବେଶ ସୃଷ୍ଟି କରିଛନ୍ତି ଏବଂ ଅନୁଭବକୁ ରମ୍ୟରୀତିରେ ଆପଣା ଭାଷାରେ ପରିପ୍ରକାଶ କରିଛନ୍ତି ।

ସାହିତ୍ୟର ଭାଷା କହିଲେ ପ୍ରହରାଜ ବୁଝିଛନ୍ତି – ଏହା ଅନୁଭବର ହିଁ ଅଭିବ୍ୟକ୍ତି । ମଣିଷ ନିଜ ତୁଣ୍ଡର ଭାଷାରେ, ନିଜେ ବଞ୍ଚିଥିବା ସମାଜର ଶବ୍ଦରେ କେବଳ ନିଜକୁ ପରିପୂର୍ଣ୍ଣ ଭାବରେ ପ୍ରକାଶ କରିପାରେ । ତେଣୁ ଯେଉଁମାନେ ସାହିତ୍ୟ କହିଲେ ନିଜେ ଜୀଉଁ ନ ଥିବା ଜୀବନ ଓ ସାହିତ୍ୟର ଭାଷା କହିଲେ ଅଭିଜାତବର୍ଗର ଔଦ୍ଧତ୍ୟ ଓ ଅଳଂକାର ଭାବରେ ବିବେଚନା କରନ୍ତି, ପ୍ରହରାଜଙ୍କ ବିଚାରରେ ସେମାନେ ଜଣେ ଜଣେ ଛଳ-ସାହିତ୍ୟିକ । ଦାଣ୍ଡର ଭାଷା ଯେ ତୁଣ୍ଡ ଓ ମୁଣ୍ଡର ଭାଷା, ଅନୁରୂପ ଆଦର୍ଶକୁ ସେ ନିଜ ଲେଖନୀରେ ଗତିଶୀଳ କରିଛନ୍ତି ଏବଂ ଜୀବନ ଓ ସମାଜର ଯାବତୀୟ ଅଗମ୍ୟ ଅନୁଭବର ରମ୍ୟ କଥକ ରୂପରେ ପରିଚିତ ଏହି ଛିଦ୍ରାନ୍ୱେଷୀ ମଣିଷଜଣକ ଭାଷାବିଜ୍ଞାନୀ ହୋଇଯାଇଛନ୍ତି । **ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ** ନାମରେ ଏକ କୋଷଗ୍ରନ୍ଥ ଏବଂ **ଓଡ଼ିଆ ଲୌକିକ ପଦ ବା ଢଗଢମାଳି ବଚନ** ଶୀର୍ଷକ ପ୍ରବଚନ ଗ୍ରନ୍ଥ ସଂକଳନ କରିଛନ୍ତି । ତେଣୁ ସର୍ଜନଶୀଳ ସାହିତ୍ୟ ରଚନା କାଳରେ ସେ ଯେଉଁ ବିଶେଷ ଅପନିନ୍ଦାର ଶିକାର ହୋଇଛନ୍ତି, ତାହାର ପୁନରାବୃତ୍ତି ଘଟିଛି ଅଭିଧାନ ଓ ପ୍ରବଚନ ଗ୍ରନ୍ଥ ସଂକଳନ କାଳରେ । ଜନ୍ମଗତ ବ୍ୟାଧିର ସଂକ୍ରମଣରୁ ସେ ଯେପରି ମୁକ୍ତ ହୋଇପାରି ନାହାନ୍ତି । କୋଷଗ୍ରନ୍ଥକୁ ଲୋକମୁଖର କଥିତ ଶବ୍ଦରେ ସଂଭ୍ରାନ୍ତ କରିଛନ୍ତି । ଶବ୍ଦ ଯେଉଁ ତୁଣ୍ଡ ବା ସମୁଦାୟର ହେଉ ନା କାହିଁକି, ପ୍ରତ୍ୟେକକୁ ସମ ମର୍ଯ୍ୟାଦା ଦେଇଛନ୍ତି । କୌଣସି ଏକ ଜାତିର ଭାଷା ଯେ କେବଳ ସାମନ୍ତ, ପଣ୍ଡିତ ବିଳସିତ ଓ କବଳିତ, ଗୀର୍ବାଣମନସ୍କମାନଙ୍କ ଏହି ଭ୍ରାନ୍ତ ଦାମ୍ଭିକତାକୁ

ଭାଙ୍ଗିଛନ୍ତି । ଏଥିପାଇଁ ସେମାନଙ୍କ ପାଣ୍ଡିତ୍ୟର ବୋଲୁଅ ମାଡ଼ ମଧ ଖାଇଛନ୍ତି । ତଥାପି ଆପଣା ପ୍ରେମକୁ ମିଛ କହିପାରି ନାହାନ୍ତି । ଏକ ଜାତି ଓ ସଂସ୍କୃତିର ଶବ୍ଦ ସାମନ୍ତ, ଉଚ୍ଚବର୍ଣ୍ଣ, ଉଚ୍ଚବର୍ଗ ଓ ସରସ୍ୱତୀଙ୍କ ବରପୁତ୍ରମାନଙ୍କ ଚିତ୍ତବିନୋଦନର ବିଭବ ନୁହେଁ; ତାହା ବ୍ୟକ୍ତି, ସମାଜ ଓ ଜାତିର; ତେଣୁ ସେଗୁଡ଼ିକ ସଂଗ୍ରହଣୀୟ ଓ ସଂରକ୍ଷଣୀୟ, ଶବ୍ଦ-ସାଧନ-ବିଦ୍ୟାର ଉପର୍ଯ୍ୟୁକ୍ତ ଆଦର୍ଶକୁ ପ୍ରହରାଜ ଗ୍ରହଣ କରିଛନ୍ତି – ଜଣେ ସମର୍ଥ ଭାଷା ଓ ଲୋକତତ୍ତ୍ୱବିଦ୍ ପରି ।

ପ୍ରହରାଜଙ୍କ ବିଚାର ମୁଖ୍ୟତଃ ଲୋକକୈନ୍ଦ୍ରିକ । ଉଭୟ ସର୍ଜନାତ୍ମକ ଓ ଭାଷା-ଅଧୟନ୍ ପରିପ୍ରେକ୍ଷୀରେ ତାଙ୍କ ଉପର୍ଯ୍ୟୁକ୍ତ ମାନସିକତାକୁ ଆମେ ଅନୁଭବ କରିପାରିବା । କାହାଣୀ, କବିତା, ପ୍ରବନ୍ଧ ଓ ସାହିତ୍ୟ-ସମାଲୋଚନାରେ ଲୋକ-କଥିତ-ଶବ୍ଦ ଓ ଶୈଳୀରେ ନିଜକୁ ବ୍ୟକ୍ତକରିବା, ଜଣେ ସ୍ରଷ୍ଟା ପକ୍ଷରେ ଅବଶ୍ୟ ଏକ ଦୁରୂହ ପ୍ରଶ୍ନ ହୋଇ ନ ପାରେ । ମାତ୍ର ଶବ୍ଦ ଓ ଢଗଢମାଳି ସଂଗ୍ରହ, ସଂକଳନ ଏବଂ ସେଗୁଡ଼ିକର ଅର୍ଥ ଲିଖନ କାଳରେ ସାହିତ୍ୟରେ ବର୍ଜିତ ଓ ଲୋକତୁଣ୍ଡରେ ଅଶ୍ଳୀଳତା ଦୋଷଦୁଷ୍ଟ ବାକ୍‌ରୀତିକୁ ଅମୂଲ୍ୟ ନିଧିବତ୍ ଜ୍ଞାନକରିବା ନିଶ୍ଚିତ ଭାବରେ ଏକ ଅତି ସାହସିକ ପଦକ୍ଷେପ । ଢଗଢମାଳି ଓ ଶବ୍ଦସଂଗ୍ରହ ଏକ ନଖରା କାର୍ଯ୍ୟ । ଏହି ଅପ୍ରୀତିକର ଆଦର୍ଶ ସହିତ ମିତ ବସିବା ପୂର୍ବରୁ ସେ ଯେ ଅନୁରୂପ ମାନସିକତା ସହ ସଂପର୍କ ଯୋଡ଼ିଛନ୍ତି, ତାଙ୍କ ରଚିତ *ଭାଗବତ ଟୁଙ୍ଗିରେ ସନ୍ଧ୍ୟା*ର ବିଭିନ୍ନ ଅଧାୟ, *ବାଇମାହାନ୍ତି ପାଞ୍ଜି, ବିଶୁଦ୍ଧ ଭାଷା* (ଉ. ସାହିତ୍ୟ/୮ମ ଭାଗ, ୫ମ ସଂଖ୍ୟା), *ଦୁଇ ଖଣ୍ଡି ଓଡ଼ିଆ ପୁସ୍ତକ* (ଉ.ସା., ଷଷ୍ଠ ଭାଗ) ଏବଂ ଉତ୍କଳର କାହାଣୀ ( ୧୯୦୧ ) ପୁସ୍ତକର ମୁଖବନ୍ଧ ଆଦି ଆଲୋଚନାରୁ ଆମେ ତାହାର ସୂଚନା ପାଇଥାଉ । *ବାଇମାହାନ୍ତି ପାଞ୍ଜି*ରେ ସେ ସ୍ପଷ୍ଟତଃ ଲେଖିଛନ୍ତି, ''ଦେଶର ଢଗଢମାଳିଗୁଡ଼ିକୁ ଯେଉଁମାନେ ଘୃଣାଚକ୍ଷୁରେ ଦେଖନ୍ତି, ସେମାନଙ୍କୁ ଭଲା ପଚାରିଲି – ଇତର ଲୋକଙ୍କ ମୁହଁରୁ ଶୁଣିଲେ ବୋଲି କ'ଣ ଚାଣକ୍ୟଙ୍କୁ ବରାବର ପାସୋରି ପକେଇଲେ । ଢଗଢମାଳି ବହୁ – ଶତ ବର୍ଷର, ବହୁ ପୁରୁଷାନୁକ୍ରମେ ସଂଚିତ ମାନବ ପ୍ରକୃତି ଉପରେ ଟୀକା । ଗୋଟିଏ ଗୋଟିଏ ଢଗ ଭିତରେ ଖଣ୍ଡିଏ ଖଣ୍ଡିଏ ପୁସ୍ତକ ଲୁଚି ରହିଥାଏ, କେତେ ଗଭୀର ଉପଦେଶ ଗମ୍ଭୀରି ଭିତରେ ଛପିଥାଏ, ସେଗୁଡ଼ିକ ନ ଦେଖି ଢଗଗୁଡ଼ିକ ହାଡ଼ୁ ମଳିକର ବୁଢ଼ୀମାଠାରୁ ଶୁଣାଗଲା ବୋଲି ହସରେ ଉଡ଼େଇ ଦେବ । କେଡ଼େ ଅନ୍ୟାୟ । (ବାଇ ମାହାନ୍ତି ପାଞ୍ଜି, ତ୍ରୟୋଦଶ ବିଡ଼ା) ଭାଗବତ ଟୁଙ୍ଗିରେ ସନ୍ଧ୍ୟା ପୁସ୍ତକରେ ମଧ ସେ ଭାଷା ସଂକ୍ରାନ୍ତରେ ଅନୁରୂପ ମନ୍ତବ୍ୟ ଦେଇଛନ୍ତି ।'' ଆମେ ନାନା ସ୍ଥାନ ବୁଲି ଦେଖିବା ଯେ, ଓଡ଼ିଆ ଭାଷା ଶୁଖିଲା ଭାଷା ନୁହେଁ । ହାତ ଅଳସେ ନିଶ ବଙ୍କା ବୋଲି ଆଜି ଓଡ଼ିଆ ଭାଷା ପ୍ରତି ଲୋକଙ୍କର ଆସ୍ଥା ନାହିଁ । ଅନ୍ତତଃ ଏହା ବଙ୍ଗ ଭାଷାର ସମକକ୍ଷ ହେବାର ଯୋଗ୍ୟ ।'' (ଦ୍ୱିତୀୟ ସନ୍ଧ୍ୟା) ପୁନଶ୍ଚ ଇଂରାଜୀ ଓ ସଂସ୍କୃତମନସ୍କ ଓଡ଼ିଆମାନଙ୍କୁ ନିଜ ଭାଷା ସଂପର୍କରେ ସଚେତନ କରିଦେବାକୁ ଯାଇ ସେ ଅନ୍ୟତ୍ର ଲେଖିଛନ୍ତି – ''ଓଡ଼ିଆ ଭାଷାର ନ୍ୟାଯ୍ୟ ପ୍ରାପ୍ୟ

ତାଙ୍କୁ ଦିଅନ୍ତୁ । ଭଞ୍ଜ କବିଙ୍କର ବୈଦେହୀଶ ବିଳାସ ପୁଣି ଛାନ୍ଦମାଳା, ଉପହାର, ପୁଷ୍ପମାଳା, ପଲ୍ଲୀଚିତ୍ର ଓ ନିର୍ଝରିଣୀ ଇତ୍ୟାଦିରେ ଯେତେ ଅତୀତର ସ୍ମୃତି ଉଦ୍‌ଘାଟିତ ହୁଏ, ବୋଧହୁଏ ଅନ୍ୟ ସାହିତ୍ୟ ଲିପିମାନ ଆମ୍ଭମାନଙ୍କ ମନକୁ ଏତେ ସ୍ମୃତି ଆଣିପାରିବ ନାହିଁ । ପ୍ରକୃତ କଥା କହିବାକୁ ଗଲେ, ଅନେକାଂଶ ଛାନ୍ଦମାଳାର ଭାଷା ଘରୋଇ ଭାଷା ହୋଇଯାଉଅଛି । କହିବାକୁ ଲଜ୍ଜା ହେଉଛି, ଜଣେ କୃତବିଦ୍ୟ ଯୁବକ (ଗୋଟିଏ ମାଇନର ସ୍କୁଲ୍‌ର ହେଡ୍‌ପଣ୍ଡିତ) 'ମେଘ ବଲଛଇ ତପଲ ତପଲ କେଥୁଲ ମାଇଲା ଗଜା' ଏହାକୁ ହସରେ ଉଡ଼େଇ ଦେଲେ । କହିଲେ ଛିଃ । ଏଗୁଡ଼ାକ ସାହିତ୍ୟରେ ଆବର୍ଜନା । (ଅଷ୍ଟମ ସନ୍ଧ୍ୟା) ।

'ବିଶୁଦ୍ଧ ଭାଷା' ଶୀର୍ଷକ ଅନ୍ୟ ଏକ ଆଲୋଚନାରେ ଭାଷାର ଶୁଦ୍ଧତା ଓ ଅଶୁଦ୍ଧତା ସଂକ୍ରାନ୍ତରେ ପ୍ରଶ୍ନକରୁଥିବା ପଣ୍ଡିତମାନଙ୍କୁ ସେ କଟୁ ସମାଲୋଚନା କରିଛନ୍ତି । ତାଙ୍କ ବିଚାରରେ, ଘରୋଇ ଭାଷା ଓ ପୁସ୍ତକ ଭାଷା – ଉଭୟ ସାହିତ୍ୟର ଗୋଟିଏ ଗୋଟିଏ ଅଙ୍ଗ । ଭାଷାର ଶୁଦ୍ଧତା ଓ ଅଶୁଦ୍ଧତା ଏହାର ପ୍ରଚଳନ ଉପରେ ନିର୍ଭରଶୀଳ । ତେଣୁ ଛୋଟ ଲୋକମାନଙ୍କ ଭାଷାକୁ 'ନାସନା' କହି ନାକ ଟେକିବା ମଧ୍ୟ ଅମୂଳକ । (ବିଶୁଦ୍ଧ ଭାଷା : ଉତ୍କଳର ସାହିତ୍ୟ ୮ମ ବର୍ଷ, ପଞ୍ଚମ ସଂଖ୍ୟା ୧୩୧୧ ସାଲ) ଭାଗବତ ଟୁଙ୍ଗିରେ ସନ୍ଧ୍ୟା, ଦୁନିଆର ହାଲଚାଲ, ଧାରତାବନ୍ଧାର ପୁଞ୍ଜିପାଣ୍ଡିର ବିଭିନ୍ନ ଅଧ୍ୟାୟରେ ଓଡ଼ିଆ ଭାଷାର ବ୍ୟାକରଣ, ବଚନ, ସମାସ, ସନ୍ଧି, ଲିଙ୍ଗ ଓ ଲିପିସଂସ୍କାର ଆଦି ବିଭିନ୍ନ ବିଷୟରେ ବିଶଦ ଆଲୋଚନା କରିଛନ୍ତି । ଓଡ଼ିଆ ଭାଷାର ବ୍ୟାକରଣ ସମ୍ବନ୍ଧରେ ସେ ବେଶ୍ ସ୍ପଷ୍ଟ ଶବ୍ଦରେ ଉଲ୍ଲେଖ କରିଛନ୍ତି – 'ଓଡ଼ିଆ ବ୍ୟାକରଣର ତ ମା' ବାପ ନାହିଁ । ତା'ର ମା' ବାପ, ସାର୍ଟିଫିକେଟ୍‌ପ୍ରାପ୍ତ ମହାଫିସ୍ ହେଲେ ଆଧୁନିକ ସଭ୍ୟ ଲେଖକମାନେ । ସେମାନେ ଓଡ଼ିଆରେ ଯାହା ବିଳିବିଳୋଉଛନ୍ତି, ତାହା ହେଉଛି ବେଦର ଗାର । ସେହି କେତେଜଣ ଓଡ଼ିଆ ଭାଷାର କ୍ଷମତାପ୍ରାପ୍ତ ମହାଫିସ୍ ସ୍ୱାଳିଙ୍ଗର ମାନର ରକ୍ଷା ଲାଗି' ଉପରୋକ୍ତ ନଜିରର ଦ୍ୱାହି ଦେଇ 'ହସୁରୀମୁହଁୀ', 'ଜଳଜଳୀମୁହଁୀ' ଓ 'ନେଫଡ଼ିମୁହଁୀ' ଶବ୍ଦ ପ୍ରୟୋଗ କରନ୍ତୁ' ବୋଲି କେବଳ ଉଲ୍ଲେଖ କରିନାହାନ୍ତି, ବରଂ ବେଶ୍ ରସିକତାପୂର୍ଣ୍ଣ ରୀତିରେ ଶବ୍ଦଗୁଡ଼ିକର ବ୍ୟାଖ୍ୟା ଆଳରେ ସେମାନଙ୍କୁ ଦାଣ୍ଡ ମଝିରେ ହଲାପଟା କରିଛନ୍ତି । (ଧାରଣବନ୍ଧାର ପୁଞ୍ଜିପାଣ୍ଡି ଓ ବାଇନାନୀଙ୍କର ବୁଜୁଳି) ଭାଷାକୋଷ ସଂକଳନ କାଳରେ ଶବ୍ଦର ଉଚ୍ଚାରଣ ଓ ଲିଖନକୁ କେନ୍ଦ୍ରକରି ଯେଉଁ ସମସ୍ୟାଗୁଡ଼ିକର ସେ ସମ୍ମୁଖୀନ ହୋଇଛନ୍ତି, ସେଗୁଡ଼ିକର ସମାଧାନ ଉଦ୍ଦେଶ୍ୟରେ ପାଠକୀୟ ମତାମତ ଆଶାକରିଛନ୍ତି । ଆପଣାକୁ ଆଦୌ ସର୍ବଜ୍ଞାତା ମଣି ନାହାନ୍ତି, (ଓଡ଼ିଆ ଭାଷାର କେତେକ ବିଭ୍ରାଟ, ନବଭାରତ, ପ୍ରଥମ ବର୍ଷ, ୪ର୍ଥ ସଂଖ୍ୟା : ପୃ ୩୦୫/୩୦୬) । ତାଙ୍କ ଗ୍ରନ୍ଥଗୁଡ଼ିକରେ, ଭାଷା ସଂକ୍ରାନ୍ତ ଆଲୋଚନା କାଳରେ ଏବଂ ସ୍ୱତନ୍ତ୍ର ଆଲୋଚନାଗୁଡ଼ିକରେ ଏହି ଆଦର୍ଶ ବିଶେଷ ଲକ୍ଷଣୀୟ ।

॥ ଦୁଇ ॥

ପ୍ରହରାଜଙ୍କ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ପ୍ରକାଶନ ଅବଧି ପ୍ରାୟ ଦଶବର୍ଷ (୧୯୩୧-୪୦) । ମାତ୍ର, ତାଙ୍କ ଭାଷାକୋଷ ସଂକଳନ – କୈନ୍ଦ୍ରିକ ମାନସିକତା ଆଦୌ ଆକସ୍ମିକ ନୁହେଁ । ଏହି ପରିପ୍ରେକ୍ଷୀରେ ଉଲ୍ଲେଖ କରାଯାଇପାରେ ଯେ, ବିଂଶ ଶତାବ୍ଦୀ ପ୍ରଥମ ଦଶକରେ ଭାରତ ପରି ଏକ ବହୁଭାଷିକ ଦେଶରେ ସବୁ ଭାଷାପାଇଁ ଏକ ନିର୍ଦ୍ଦିଷ୍ଟ ଲିପି ବ୍ୟବହାର ଏବଂ ଜାତୀୟ ଭାଷାର ଆବଶ୍ୟକତା ସଂକ୍ରାନ୍ତ ଚର୍ଚ୍ଚା ଆରମ୍ଭ ହୋଇଛି । ଜାତୀୟତାବାଦୀମାନେ ଅବଶ୍ୟ ଉପର୍ଯ୍ୟୁକ୍ତ ମାନସିକତାକୁ କାର୍ଯ୍ୟକାରୀ କରିବାପାଇଁ ଆହ୍ୱାନ ଦେଇଛନ୍ତି । ଆଲୋଚନାମାନ ପ୍ରକାଶ କରିଛନ୍ତି । ମାତ୍ର ଆଚରଣରେ ସେମାନେ ଉଚିତାର୍ଥକୁ ଗ୍ରହଣ କରିପାରି ନାହାନ୍ତି । ବରଂ ଆତ୍ମଘାତୀ କାର୍ଯ୍ୟ ପରି ମଣିଛନ୍ତି । ସେମାନେ ନିଜ ଭାଷା ଓ ସାହିତ୍ୟର ଇତିହାସ ରଚନାରେ ଅଧିକ ଉତ୍ସାହୀ ହୋଇଛନ୍ତି । ଆଲୋଚନାମାନ ପ୍ରକାଶ କରିଛନ୍ତି । ଏବଂ, ସେମାନେ ନିଜ ଭାଷା ଓ ସାହିତ୍ୟର ଉତ୍କର୍ଷତା ପ୍ରତିପାଦନ ଉଦ୍ଦେଶ୍ୟରେ ବୃହଦାକାୟ ଶବ୍ଦକୋଷ ସଂକଳନ ଓ ବ୍ୟାକରଣ, ଭାଷା ଓ ସାହିତ୍ୟର ଇତିହାସ ରଚନାରେ ଅଧିକ ଉତ୍ସାହୀ ହୋଇଛନ୍ତି । ଏହି ପ୍ରସଙ୍ଗରେ ଆମେ ଯୋଗେଶ ଚନ୍ଦ୍ର ରାୟ (ବିଦ୍ୟାନିଧି: ୧୯୧୩ ବଙ୍ଗଳା) ହରିଚରଣ ବନ୍ଦୋପାଧ୍ୟାୟ (ବଙ୍ଗୀୟ ଶବ୍ଦକୋଷ: ବଙ୍ଗଳା) ଇନ୍ଦୋରର ମହାରାଜା ଭଗବତସିଂହଜୀ (ଭାଗବତ ଗୋରଣ୍ଡଲ: ୧୯୨୮-୧୯୫୫, ଶବ୍ଦସଂଖ୍ୟା-୨,୮୧, ୩୭୭, ପୃଷ୍ଠା, ୯୨୭୦, ଗୁଜୁରାଟୀ), ଏଚ୍. କେ. ସାର୍ ଶିବାଜି ରାଓ ଗାଇକୋଆଡ୍ (ଶିବାଜି ଶାସନ କଳ୍ପତରୁ: ଅଷ୍ଟଭାଷିକ : ଇଂରାଜୀ, ଗୁଜୁରାଟୀ, ମରାଠୀ, ସଂସ୍କୃତ, ତେଲୁଗୁ, ଫରାସୀ, ହିନ୍ଦୀ, ବଙ୍ଗଳା:) ଆସାମ ସାହିତ୍ୟ ସଭା (ଚନ୍ଦ୍ରକାନ୍ତ ଅଭିଧାନ: ୧୯୩୩) ନାଗରୀ ପ୍ରଚାରିଣୀ ସଭା (ହିନ୍ଦୀ ଶବ୍ଦ ସାଗର) ମିରଜା କ୍ୱାଲିଦ୍ ବେଗ୍ (ଲଟିଫ୍-୧୯୧୪ ସିନ୍ଧି-ଲୁଗାଟେ କ୍ୱାଡିମି ୧୯୨୧, ପାହାକାନ – ଜି-ହିକ୍ମାଟ, ୧୧୧୧୯୨୫) କୋଟ୍ରା ଶ୍ୟାମାଲ୍କାମା ଶାସ୍ତ୍ରୀ (ଆନ୍ଧ୍ରଭାଷାପାତ୍ୟାଗୁ-୧୯୩୪-୪୦, ତେଲୁଗୁ) କତିପୟ ଭାଷା ବିଜ୍ଞାନୀଙ୍କଦ୍ୱାରା ସଂପାଦିତ ଗ୍ରନ୍ଥଗୁଡ଼ିକୁ ଗ୍ରହଣ କରିପାରିବା । ଉପର୍ଯ୍ୟୁକ୍ତ ପ୍ରାୟ ପ୍ରତ୍ୟେକ ଆଭିଧାନିକ 'ଅକ୍ସଫୋର୍ଡ ଡିକ୍ସନାରୀ' ନିର୍ଦ୍ଧାରିତ ଅଭିଧାନ ସଂକଳନ ବିଦ୍ୟାକୁ ହିଁ ଗ୍ରହଣ କରିଛନ୍ତି । [Mishra B.G.Ed. – Lexicography in India : CIIL, Mysore-1980] ଏବଂ, ସବୁଠାରୁ କୌତୂହଳର ବିଷୟ, ଊନବିଂଶ ଶତାବ୍ଦୀରେ ଜାତିପାଇଁ ଏକ ମାନକ ଭାଷା ନିରୂପଣ ଏବଂ ସେହି ଭାଷାରେ ସାହିତ୍ୟ ସୃଷ୍ଟିର ଆଦର୍ଶକୁ ମଧ୍ୟ ସେମାନେ ପରିହାର କରିଛନ୍ତି । ବୃହତ୍ତର ଅର୍ଥରେ – ଏକ ଭାଷାଭାଷୀ ଅଞ୍ଚଳର ବିଭିନ୍ନ ଜାତି, ବର୍ଣ୍ଣ, ଧର୍ମ, ଗୋଷ୍ଠୀ, ସଂପ୍ରଦାୟ ଓ ବର୍ଗଦ୍ୱାରା କଥିତଭାଷାକୁ ମଧ୍ୟ ଜାତୀୟ ଭାଷାର ମାନ୍ୟତା ଦେଇଛନ୍ତି । ଜାତି ଗଠନ କ୍ଷେତ୍ରରେ ଭାଷା ଜୈବିକଯୋଡ଼ଣର ଭୂମିକା ନେଇଛି । ଅନ୍ୟ ଶବ୍ଦରେ କହିଲେ – ଭାଷା ହୋଇଛି ବହୁ ଜାତି, ଧର୍ମ, ସମ୍ପ୍ରଦାୟ ଓ ଗୋଷ୍ଠୀର ମଣିଷମାନଙ୍କ ମଧ୍ୟରେ ସାଂସ୍କୃତିକ

ଐକ୍ୟ ପ୍ରତିଷ୍ଠାର ସୂତ୍ର । ଓଡ଼ିଆ ଜାତିର ସ୍ୱାଭିମାନ ଓ ପରିଚୟ ପ୍ରତିଷ୍ଠା କ୍ଷେତ୍ରରେ ଉପର୍ଯ୍ୟୁକ୍ତ ଆଦର୍ଶର ବ୍ୟବସ୍ଥାପକ ହୋଇଛନ୍ତି ଗୋପାଳ ଚନ୍ଦ୍ର । ତେଣୁ ତାଙ୍କ ସଂକଳିତ ଶବ୍ଦକୋଷକୁ ଆମେ ଓଡ଼ିଆ ଜାତୀୟତାବାଦୀ ଆନ୍ଦୋଳନର ଏକ ପ୍ରତୀକ ଭାବରେ ଗ୍ରହଣ କରିପାରିବା ।

୧୯୦୩ ମସିହା ଓଡ଼ିଆ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ବର୍ଷ । ଏହି ବର୍ଷ କବି ମଧୁସୂଦନ ରାଓଙ୍କ ନେତୃତ୍ୱରେ, କଟକ ସହରରେ, 'ଉତ୍କଳ ସାହିତ୍ୟ ସମାଜ' ନାମକ ଏକ ଅନୁଷ୍ଠାନ ଜନ୍ମ ନେଇଛି । କର୍ମକର୍ତ୍ତାମାନେ ଏହାକୁ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳର ସାହିତ୍ୟିକମାନଙ୍କର ଏକ ମିଳନ ପୀଠ ରୂପରେ ପରିକଳ୍ପନା କରିଛନ୍ତି । (ଉତ୍କଳ ଦୀପିକା ୧୬ ମେ, ୧୯୦୩) ଅନୁଷ୍ଠାନର ପ୍ରଥମ ଲକ୍ଷ୍ୟ ହୋଇଛି – ଓଡ଼ିଆ ଭାଷା ଓ ସାହିତ୍ୟର ଇତିହାସ ରଚନା ଏବଂ ଶବ୍ଦକୋଷ ସଂକଳନ । ଶବ୍ଦକୋଷ ସଂକଳନ ଉଦ୍ଦେଶ୍ୟରେ ସର୍ବଶ୍ରୀ ମଧୁସୂଦନ ଦାଶ, ବ୍ରଜସୁନ୍ଦର ଦାସ, ନନ୍ଦକିଶୋର ବଳ, ଗୋପାଳ ଚନ୍ଦ୍ର ପ୍ରହରାଜଙ୍କୁ ନେଇ ଏକ କମିଟି ଗଠିତ ହୋଇଛି । କିଏ କେଉଁ ଅକ୍ଷରାଦ୍ୟ ଶବ୍ଦଗୁଡ଼ିକ କେଉଁ ସମୟ ସୀମା ମଧ୍ୟରେ ଶେଷକରିବେ, ତତ୍ ସଂକ୍ରାନ୍ତ ସିଦ୍ଧାନ୍ତ ନିଆଯାଇଛି । (ଉତ୍କଳ ସାହିତ୍ୟ ସମାଜର ଦ୍ୱିତୀୟ ବାର୍ଷିକ ବିବରଣୀ : ଉତ୍କଳ ସାହିତ୍ୟ/ ୮ମ ଭାଗ/ ୧୦ମ ସଂଖ୍ୟା) କାମ ମଧ୍ୟ ନିର୍ଦ୍ଧାରିତ ସମୟରେ ସମାହିତ ହୋଇଛି । ମାତ୍ର ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା ସମ ଆଦର୍ଶପୁଷ୍ଟ ଏକ କୋଷଗ୍ରନ୍ଥ ସଂକଳନ କରିଥିବାରୁ, ସେଇ ଏକପ୍ରକାର କାର୍ଯ୍ୟରେ ସମୟ ଓ ଅର୍ଥ ବ୍ୟୟ ନ କରି, ନନ୍ଦ ମହାଶୟଙ୍କ ଶ୍ରମର ପ୍ରକାଶନ ନିମିତ୍ତ ସମାଜ ସିଦ୍ଧାନ୍ତ ନେଇଛି । ପଣ୍ଡିତଙ୍କ ପ୍ରସ୍ତୁତ ଗ୍ରନ୍ଥର ସମୀକ୍ଷା ଓ ସମାର୍ଜନ ଉଦ୍ଦେଶ୍ୟରେ ଏକ କମିଟି ଗଠିତହୋଇଛି ଏବଂ ଏଥିରେ ଶ୍ରୀ ପ୍ରହରାଜ ମଧ୍ୟ ଅନ୍ୟତମ ସଦସ୍ୟ ରହିଛନ୍ତି । (ଉତ୍କଳ ସାହିତ୍ୟ/ନବମ ଭାଗ/ ୧୨ଶ ସଂଖ୍ୟା) ତେଣୁ ପ୍ରହରାଜଙ୍କ ଚେତନାରେ କୋଷଗ୍ରନ୍ଥ ସଂକଳନ ପ୍ରୀତି ସେଇ କାଳରେ ଅଙ୍କୁରିତ ହୋଇଥିଲା ବୋଲି ଆମେ ନିଃସନ୍ଦେହରେ କହିପାରିବା ।

ମାତ୍ର ତାଙ୍କ ଭିତରେ ବଞ୍ଚି ରହିଥିବା ଶବ୍ଦ-ପ୍ରୀତି ଭାବ ପୁନରୁଜ୍ଜୀବିତ ହୋଇଛି ୧୯୧୩ ମସିହାରେ । କଟକ କଲେଜିଏଟ୍ ସ୍କୁଲ୍‌ର ପ୍ରଧାନ ଶିକ୍ଷକ ହଣ୍ଡରସନ୍, ସ୍କୁଲର ବାର୍ଷିକ ଉତ୍ସବରେ ଆପଣାର ଅଭିଭାଷଣରେ, ଓଡ଼ିଆ ଭାଷାରେ ଏକ ଖାଣ୍ଟି ଶବ୍ଦକୋଷ ନାହିଁ ବୋଲି ସୂଚନା ଦେଇଛନ୍ତି ଏବଂ ଏହି 'ଖାଣ୍ଟି' ଭାବ ହିଁ ପ୍ରହରାଜଙ୍କୁ ଏକ କଷ୍ଟସାଧ୍ୟ ଅଥଚ ଆମୋଦଦାୟକ କାର୍ଯ୍ୟକୁ ସ୍ୱୀକାର କରିବାପାଇଁ ଦୁଃସାହସୀ କରିଛି । ୧୯୧୩ ମସିହା ପୂର୍ବରୁ ଓଡ଼ିଆ ଭାଷାରେ ପାଶ୍ଚାତ୍ୟ ରୀତିରେ ଯେ ଶବ୍ଦକୋଷ ପ୍ରକାଶ ନ ପାଇଛି ଏ କଥା ନୁହେଁ । ବହୁ ଇଂରେଜ ଓ ଓଡ଼ିଆ ବିଦ୍ୱାନ୍ ଶବ୍ଦ ସଂକଳନରେ ହାତ ଦେଇଛନ୍ତି । ପ୍ରସଙ୍ଗକ୍ରମେ ଏଠାରେ ମୋହନ ପ୍ରହରାଜ ଠାକୁର (ଓଡ଼ିଆ ଭୋକାବୁଲାରି : 1811), ଆମସ୍ ସଟନ୍ (Oriya Dictionary in Three Volumes : Vol I-Embracing

an Introductory Grammar, An English and Oriya Dictionary and List of Official Terms :1841 Vol. II Oriya Dictionary with Oriya Synonyms (ଉତ୍କଳ ଭାଷାର୍ଥାଭିଧାନ : ୧୮୪୨ ଏବଂ Vol III. Dictionary of Official Terms, ସାଧୁ ଭାଷାଭିଧାନ, (୧୮୪୩), ଡବ୍ଲିଉ ମିଲର ଓ ରଘୁନାଥ ମିଶ୍ର : ଉତ୍କଳ ଭାଷାର୍ଥାଭିଧାନ : ୧୮୬୮), ଦ୍ୱାରିକାନାଥ ଚକ୍ରବର୍ତ୍ତୀ (ଛାତ୍ର ଅଭିଧାନ : ୧୮୭୦), ଡବ୍ଲିଉ ମିଲର (English-Oriya Dictionary : 1873), ଦାଶରଥି ରାଉତ ଓ ଏସ୍ ଏସ୍ ରାଉତ (English-Oriya Dictionary : 1872), ଆର୍, ଡବ୍ଲିଉ ବ୍ରୁକ୍ସ୍ (An Oriya and English Dictionary), ଚତୁର୍ଭୁଜ ପଟ୍ଟନାୟକ (ଶବ୍ଦନିଧି : ୧୮୮୩) ଜଗନ୍ନାଥ ରାଓ (ଉତ୍କଳ ଅଭିଧାନ : ୧୮୯୧) ଆର୍ତ୍ତତ୍ରାଣ ଶତପଥୀ (ଅପଭ୍ରଂଶବୋଧିନୀ : ୧୮୯୨), ମୃତ୍ୟୁଞ୍ଜୟ ରଥ (ମୂଳଶବ୍ଦବୋଧିକା : ୧୯୦୧), ଗୋବିନ୍ଦ ରଥ (ବୈଦିକ ଅଭିଧାନ : ୧୯୦୯), ମଧୁସୂଦନ ରାଓ (ସୁଖବୋଧ ଅଭିଧାନ : ୧୯୧୨), ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା (ଶବ୍ଦତତ୍ତ୍ୱବୋଧ ଅଭିଧାନ : ୧୯୧୬) ଆଦି ଅଭିଧାନକାରମାନଙ୍କୁ ଆମେ ସ୍ମରଣ କରିପାରିବା । ମାତ୍ର କୌଣସି କୋଷଗ୍ରନ୍ଥରେ ସେ ଓଡ଼ିଆତ୍ୱ ଅନୁଭବ କରିପାରି ନାହାନ୍ତି । ଅବଶ୍ୟ ଆମସ୍ ସଟନ୍ ଆପଣା ଅଭିଧାନରେ ଲୋକମୁଖର କଥିତ ଶବ୍ଦକୁ ଅବିକଳ ସ୍ଥାନିତ କରିଛନ୍ତି । ଶ୍ଳୀଳ ଓ ଅଶ୍ଳୀଳ ଶବ୍ଦ ମଧ୍ୟରେ କୌଣସି ସୀମାରେଖା ଟାଣି ନାହାନ୍ତି । ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା 'ଶବ୍ଦତତ୍ତ୍ୱବୋଧ ଅଭିଧାନ'ରେ ମଧ୍ୟ ଶବ୍ଦ ଲିଖନ କାଳରେ ଲୋକମୁଖର ଉଚ୍ଚାରଣ ଉପରେ ଗୁରୁତ୍ୱ ଦେଇଛନ୍ତି । ଶବ୍ଦର ଉତ୍ସ ଖୋଜି ଖୋଜି ପ୍ରାକୃତ ଭାଷା ପାଖରେ ପହଞ୍ଚିଛନ୍ତି ଏବଂ ଏଥିପାଇଁ ଉଭୟ ସଟନ୍ ଓ ନନ୍ଦଶର୍ମା ସମକାଳୀନ ପଣ୍ଡିତମାନଙ୍କଦ୍ୱାରା ସମାଲୋଚିତ ହୋଇଛନ୍ତି । ଫଳତଃ, କୌଣସି ଗ୍ରନ୍ଥର ଦ୍ୱିତୀୟ ସଂସ୍କରଣ ସେମାନଙ୍କ ଜୀବଦ୍ଦଶାରେ ପ୍ରକାଶ ପାଇ ନାହିଁ । ଚତୁର ପ୍ରହରାଜ ପୂର୍ବ ଓ ପଶ୍ଚିମର ଦୁଇ ପଣ୍ଡିତଙ୍କ ହାତ ଧରିଛନ୍ତି । ସମାଲୋଚକମାନଙ୍କ ଆଡ଼କୁ ନିଘା ନ ଦେଇ, ନିଜ ବିଚାରକୁ ଗତିଶୀଳ କରିବାପାଇଁ ନିଜ ପାଖରେ ପ୍ରତିଶ୍ରୁତିବଦ୍ଧ ହୋଇଛନ୍ତି । ଶବ୍ଦଚୟନ ଓ ଅଧ୍ୟୟନ ଉଦ୍ଦେଶ୍ୟରେ ସଂସ୍କୃତି ଭୂମିରେ ମଥା ଗୁଞ୍ଜିଦେଇଛନ୍ତି ।

ସଂସ୍କୃତ, ତଦ୍‌ଭବ ଓ ତତ୍‌ସମ ଶବ୍ଦ ସଂଗ୍ରହକରିବା ପ୍ରହରାଜଙ୍କ ପକ୍ଷରେ ବିଶେଷ କଷ୍ଟକର ହୋଇ ନାହିଁ । ତାଙ୍କ କାଳକୁ ସଂସ୍କୃତ ଭାଷାରେ ବହୁସଂଖ୍ୟକ କୋଷଗ୍ରନ୍ଥ ପ୍ରକାଶିତ ହୋଇସାରିଛି । ଜର୍ମାନ୍, ଇଂଲଣ୍ଡ ଓ ଭାରତର ପଣ୍ଡିତମାନେ ଲୁପ୍ତପ୍ରାୟ ପ୍ରାଚ୍ୟ ବିଦ୍ୟାର ଉଦ୍ଧାର, ଅଧ୍ୟୟନ ଓ ବିଶ୍ଳେଷଣ କାର୍ଯ୍ୟରେ ବ୍ରତୀ ହୋଇଛନ୍ତି । ଜଗନ୍ନାଥ ଓ ଗୋପୀନାଥଙ୍କ ପରି ସଂସ୍କୃତ ଭାଷା ଓ ସାହିତ୍ୟର ପଣ୍ଡିତମାନେ ଓଡ଼ିଆ ଶବ୍ଦକୋଷକୁ ସଂସ୍କୃତ ଶବ୍ଦର ଭଣ୍ଡାର କରିଛନ୍ତି । ସେମାନେ ଶବ୍ଦ ଉତ୍ପତ୍ତି ଓ ପ୍ରୟୋଗ ଉପସ୍ଥାପନପାଇଁ ସଂସ୍କୃତ ଆକରଗ୍ରନ୍ଥଗୁଡ଼ିକର ପୃଷ୍ଠା ଖେଳେଇଛନ୍ତି । ଉଦାହରଣ ବି ଦେଇଛନ୍ତି । ମାତ୍ର ଅତୀତ

ପ୍ରହରାଜଙ୍କୁ ତୁଷ୍ଟ କରିପାରିନି । ସେ ପ୍ରକାଶିତ, ଅପ୍ରକାଶିତ ଗ୍ରନ୍ଥ ଓ ପୋଥିଗୁଡ଼ିକୁ ସଂଗ୍ରହ କରିଛନ୍ତି । ସହଯୋଗୀମାନଙ୍କଦ୍ୱାରା ସେଗୁଡ଼ିକର ତାତ୍ତ୍ୱିକ ବ୍ୟାଖ୍ୟା କରିଛନ୍ତି । ଶବ୍ଦଭାଣ୍ଡ ଅଧିକରୁ ଅଧିକ ପରିପୁଷ୍ଟ ହୋଇଛି ।

ପ୍ରହରାଜଙ୍କ ଅଭିଧାନ ସଂକଳନର ପ୍ରଧାନ ଉଦ୍ଦେଶ୍ୟ ହୋଇଛି – ଓଡ଼ିଆ ପୁଅର ମୁଖର ଭାଷା ସଂଗ୍ରହ ଓ ଗ୍ରନ୍ଥାୟନ । ଆପଣା ଅଭିଧାନର ମୁଖବନ୍ଧରେ ସେ ଉଲ୍ଲେଖ କରିଛନ୍ତି – ''ମୁଁ ଚିରଦିନ ସରଳ, ଖାଣ୍ଟି ଓଡ଼ିଆ ଶବ୍ଦର ବ୍ୟବହାରର ପକ୍ଷପାତୀ । ମୋ ଭାଷାରେ ଅବୋଧ ଓଡ଼ିଆ ଶବ୍ଦ ମୁଁ ଯଥାଶକ୍ତି ବର୍ଜନ କରିଥାଏ । ଅବଶ୍ୟ ଭାବ ପ୍ରକାଶରେ ଖାଣ୍ଟି ଓଡ଼ିଆ ଶବ୍ଦର ଅଭାବ ଦେଖିଲେ ମୁଁ ଯଥାସମ୍ଭବ ସରଳ ସଂସ୍କୃତ ଶବ୍ଦ ବ୍ୟବହାର କରେ । ମାତ୍ର ଇଚ୍ଛା କରି ଶବ୍ଦ ଆଡ଼ମ୍ବରୀୟ କରିବାକୁ ବା ରଚନା ରୀତିକୁ ବାଗ୍‌ବହୁଳ କରିବାକୁ ସଂସ୍କୃତ ଶବ୍ଦ ପ୍ରୟୋଗ କରେ ନାହିଁ । (ପୂ. ଓ ଭା. ୧ମ ଖଣ୍ଡ, ମୁଖବନ୍ଧ) ଅନୁରୂପ ଶବ୍ଦସଂଗ୍ରହ ଆଦୌ ସହଜ ନୁହେଁ । ସାହିତ୍ୟରେ ବ୍ୟବହୃତ ଶବ୍ଦ ସଂଗ୍ରହ କରିବାପାଇଁ ଅନ୍ୟ ନିର୍ଭରଯୋଗ୍ୟ ଉପାଦାନ ଓ ସହଜ ମାର୍ଗ ରହିଛି । ମାତ୍ର ବିଭିନ୍ନ ଅଞ୍ଚଳର ସାଧାରଣ ଅଶିକ୍ଷିତ ଜନତା ଏକ ନିର୍ଦ୍ଦିଷ୍ଟ ଶବ୍ଦକୁ ଯେଉଁ ଭିନ୍ନ ଭିନ୍ନ ବାଗରେ ଉଚ୍ଚାରଣ କରେ, ସେହି ସବୁର ବୈଚିତ୍ର୍ୟ ସଂପର୍କରେ ଅବଗତ ହେବାପାଇଁ ଅଞ୍ଚଳଗୁଡ଼ିକ ବୁଲିବା ସହିତ, ଶବ୍ଦଗୁଡ଼ିକର ନୋଟ୍ ପ୍ରସ୍ତୁତ କରିବାକୁ ହୁଏ । ଏଥିପାଇଁ ଅବଶ୍ୟ ବିଭିନ୍ନ ଅଞ୍ଚଳର ଭାଷା ସଚେତନ ବ୍ୟକ୍ତିବିଶେଷ ତଥା ବିଦ୍ୱାନ୍‌ମାନଙ୍କର ସାହାଯ୍ୟ ନିଆଯାଇପାରେ । ଏହା ସତ୍ତ୍ୱେ, ଏକ ଜୀବନ୍ତ ଭାଷାର ସକଳ ଶବ୍ଦ ସଂଗ୍ରହ ଅସମ୍ଭବ ବ୍ୟାପାର । ୧୯୧୩ରୁ ୧୯ ମସିହା ପର୍ଯ୍ୟନ୍ତ ପ୍ରହରାଜ ନିଜ ବିଚାର ଓ ଯୋଜନାକୁ ରୂପ ଦେବାପାଇଁ ପଦାକୁ ଗୋଡ଼ କାଢ଼ିଛନ୍ତି । ଓକିଲାତି ଏବଂ ଅନ୍ୟାନ୍ୟ କାର୍ଯ୍ୟ ଉପଲକ୍ଷରେ ଯେଉଁ ଯେଉଁ ଅଞ୍ଚଳକୁ ଯାଇଛନ୍ତି, ପକେଟ୍ ଭିତରେ ଥିବା ଛୋଟ ଟିପାଖାତାରେ ଶବ୍ଦଗୁଡ଼ିକର ଅବିକୃତ ରୂପ, ଅର୍ଥ ଓ ବ୍ୟବହାର ଲେଖି ରଖିଛନ୍ତି । ରାସ୍ତାଘାଟ, ମେଳାମଉଛବ, ରାଜ ଦରବାର, ହାଟବଜାର, ସବୁଠି ସବୁ ଲୋକଙ୍କ ପାଖରେ ନିଜକୁ ଭିକାରି ବେଶରେ ଠିଆ କରେଇଛନ୍ତି । ଶବ୍ଦର ଅର୍ଥ ସେମାନଙ୍କ ତୁଣ୍ଡରୁ ସାଉଁଟିଛନ୍ତି । ଗୋଟିଏ ଗୋଟିଏ ଶବ୍ଦକୁ ବିଭିନ୍ନ ଅଞ୍ଚଳ, ପାଟକ ବା ଜାତିର ଲୋକ ଯେଉଁ ବିଚିତ୍ର ଭଙ୍ଗୀରେ ଉଚ୍ଚାରଣ କରନ୍ତି, ସେଗୁଡ଼ିକୁ ସେ ଅତି ଯତ୍ନରେ ସାଇତି ରଖିଛନ୍ତି । ଗଉଡ଼, କମାର, କୁମ୍ଭାର, କେଉଟ, ବ୍ରାହ୍ମଣ, ତନ୍ତୀ, ତୁଳାଭିଣା, ଚଷା, କରଣ, ତେଲୀ ଏବଂ ତଥାକଥିତ ଅଚ୍ଛବ ଜାତିର ଲୋକମାନଙ୍କଦ୍ୱାରା ସ୍ୱତନ୍ତ୍ର ଭାବରେ ବ୍ୟବହୃତ ଶବ୍ଦଗୁଡ଼ିକୁ ମୋତି ମାଣିକ ତୁଲ୍ୟ ଜ୍ଞାନ କରିଛନ୍ତି । କୌଣସି ଗୋଟିଏକୁ ହେୟ ମଣି ନାହାନ୍ତି । ଶବ୍ଦ ସଂଗ୍ରହ ଓ ଚର୍ଚ୍ଚାର ଏହି ଆଦର୍ଶକୁ ସେ ମୃତ୍ୟୁ ପର୍ଯ୍ୟନ୍ତ ପାଳନକରିଛନ୍ତି । ତାଙ୍କୁ ଏହି ବିରକ୍ତିକର କାର୍ଯ୍ୟରେ ବିଶେଷ ଭାବରେ ସାହାଯ୍ୟ କରିଛନ୍ତି ରଂପେଲାର ଭକ୍ତଚରଣ ପତି, ସମ୍ବଲପୁରର ଗୋପୀନାଥ ଶତପଥୀ, ଗାଙ୍ଗପୁରର ନଟବର ନାୟକ ଓ ନଟବର ପାଣ୍ଡେ, ମେଦିନୀପୁରର ରାଧାନାଥ ପତି, ସିଂହଭୂମର କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ଜୟପୁରର

ବିକ୍ରମଦେବ ବର୍ମା, ଗଞ୍ଜାମର ଜୟକୃଷ୍ଣ ଚ୍ୟାଉ ପଟ୍ଟନାୟକ, ଡାକ୍ତର ରାଧାଚରଣ ପଣ୍ଡା, ନୟାଗଡ଼ର ଗୋଦାବରୀଶ ମହାପାତ୍ର, ରାୟବାହାଦୁର ଅଜୟ ଚନ୍ଦ୍ର ଦାସ, କଟକର ବ୍ୟାପ୍‌ଟିଷ୍ଟ ପାଦ୍ରି ହାବେଲ୍ ସାହେବ ଓ ଅନ୍ୟମାନେ । ତଥାପି ସେ ନିଜକୁ ଦରିଦ୍ର ମଣିଛନ୍ତି । ତାଙ୍କରି ଭାଷାରେ – ''ଅଭିଧାନରେ ମୁଁ ବହୁ ସହସ୍ର ଶବ୍ଦ ଯୋଗ କରିପାରିଲି ନାହିଁ ବୋଲି ମୋର ଗଭୀର କ୍ଷୋଭ ରହିଗଲା । ସମୟ ଅଭାବରୁ, ଦେଶରେ ଅଭିଜ୍ଞାନ ଗ୍ରନ୍ଥ ଓ ପୁସ୍ତକ ଅଭାବରୁ ବହୁ ସହସ୍ର ଘରୋଇ ଶବ୍ଦ, ଦେଶାଙ୍ଗ ପ୍ରଚଳିତ ଶବ୍ଦ, ଭିନ୍ନ ଭିନ୍ନ ବ୍ୟବସାୟ ଓ ସମାଜ ପ୍ରଚଳିତ ଶବ୍ଦ, ବିଜ୍ଞାନ ଓ କଳାର ନାନା ପାରିଭାଷିକ ଶବ୍ଦ ମୁଁ ସଂଗ୍ରହ କରିପାରିଲି ନାହିଁ । ×× ଉତ୍କଳ ଭାଷୀ ଅଞ୍ଚଳର ପୁରପଲ୍ଲୀମାନ ବୁଲିପାରିଲି ନାହିଁ ×× ଉତ୍କଳ ଭାଷାଭାଷୀ ଅଞ୍ଚଳରେ, ଘରେ ଘରେ, ଠାଏଁ ଠାଏଁ ସାଇତା ହୋଇ ପୋକ ଖାଉଥିବା, ଉଇ ଧରୁଥିବା ସହସ୍ର ସହସ୍ର ପୁରୁଣା ପୋଥି ଦେଖିପାରିଲି ନାହିଁ । ଗଞ୍ଜାମ ଓ ବିଶାଖାପାଟଣା ଅଞ୍ଚଳରେ ଓଡ଼ିଆମାନଙ୍କଦ୍ୱାରା ବ୍ୟବହୃତ ଶବ୍ଦମାନଙ୍କ ଉପରେ ତେଲୁଗୁମାନଙ୍କର ପ୍ରଭାବ ଓ ବସ୍ତର ରାଜ୍ୟ ପ୍ରଚଳିତ ଉତରୀ ଭାଷା ଉପରେ ମରହଟ୍ଟୀ ଭାଷାର ପ୍ରଭାବ ଦେଖାଇପାରିଲି ନାହିଁ । ××× ନେପାଳ, ଚୀନ, ଜାଭା, ବାଲୀଦ୍ୱୀପ, ଶ୍ୟାମ, ବର୍ମା ଓ କାମ୍ବୋଡ଼ିଆ, ଆସାମ, ସିଂହଳ ଆଦି ଦେଶମାନ ପୁରାକାଳରେ ଯେଉଁ ଓଡ଼ିଆ (କଳିଙ୍ଗ) ସଂସ୍ରବରେ ଆସିଥିଲେ, ସେ ଦେଶମାନଙ୍କର ଭାଷାରେ ଓଡ଼ିଆ ଭାଷା କି ଚିହ୍ନ ଛାଡ଼ିଯାଇଛି, ତାହା ସ୍ଥିର କରିପାରିଲି ନାହିଁ ।'' (ଭାଷାକୋଷ, ଦ୍ୱିତୀୟ ଖଣ୍ଡ, ମୁଖବନ୍ଧ) ।

ଭାଷାକୋଷରେ ସଂକଳିତ ମୋଟ ଶବ୍ଦ ସଂଖ୍ୟା ପ୍ରାୟ ଏକଲକ୍ଷ ପଞ୍ଚାଅଶୀ ହଜାର । ତନ୍ମଧ୍ୟରୁ ବିଭିନ୍ନ ପାଟକର ଲୋକମାନଙ୍କଦ୍ୱାରା ବ୍ୟବହୃତ ଶବ୍ଦ ସଂଖ୍ୟା ପ୍ରାୟ ପାଞ୍ଚ ହଜାରରୁ ଅଧିକ । ଏତଦ୍‌ବ୍ୟତୀତ ସାନ୍ତାଳୀ, କୋହ୍ଲ, କନ୍ଧ, ଦ୍ରାବିଡ଼ ଆଦି ଭାଷା ସହିତ ଉତରୀ, ଅଘରିଆ, ସମ୍ବଲପୁରୀ, ଛତିଶଗଡ଼ୀ ଆଦି ଓଡ଼ିଆ ଭାଷାର ଔପଭାଷିକ ଶବ୍ଦ ମଧ୍ୟ ସ୍ଥାନ ପାଇଛି । ମାତ୍ର ଗ୍ରନ୍ଥ ପ୍ରକାଶନ ପରେ ସଂଯୋଜିତ ଶବ୍ଦଗୁଡ଼ିକ ବ୍ୟତୀତ ଆପଣା ଟିପାଖାତାରେ 'ତ ଓ ଡ଼' ଅକ୍ଷରାଦ୍ୟ ପ୍ରାୟ ପାଞ୍ଚ ହଜାର ଦେଶାଙ୍ଗ ପ୍ରଚଳିତ ଶବ୍ଦ ଓ ବ୍ୟାବସାୟିକ, ଗ୍ରାମ୍ୟ ଓ ବୈଜ୍ଞାନିକ ଶବ୍ଦ ଅମୁଦ୍ରିତ ରହିଯାଇଥିବା ବିଷୟ ସେ ପ୍ରକାଶ କରିଛନ୍ତି । ''ଏପରିକି ବଙ୍ଗ, ବିହାର, ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ଓଡ଼ିଶାର ଗଡ଼ଜାତମାନଙ୍କରେ କନ୍ଦି ବିକନ୍ଦି ଖୋଜିଲେ ଅନ୍ତତଃ ଦଶହଜାର ପ୍ରାଦେଶିକ, ଦେଶାଙ୍ଗ ପ୍ରଚଳିତ, ଗ୍ରାମ୍ୟ, ପ୍ରାଚୀନ, ବୈଜ୍ଞାନିକ ଓ ବ୍ୟାବହାରିକ ଶବ୍ଦ ସଂଗୃହୀତ ହୋଇପାରିବ ।'' ତାଙ୍କ ପାଖରେ ଅନ୍ୟୂନ ପନ୍ଦର ହଜାର ଶବ୍ଦ ସଂଗୃହୀତ ହୋଇ ରହିଛି ବୋଲି ସେ ପ୍ରକାଶକରିଛନ୍ତି । (ଭାଷାକୋଷ : ସପ୍ତମ ଭାଗ, ମୁଖବନ୍ଧ) ''ଈଶ୍ୱରଙ୍କ ଅନୁକମ୍ପା ଥିଲେ, ପରିଶିଷ୍ଟ ଖଣ୍ଡରେ ସେଗୁଡ଼ିକ ମୁଦ୍ରିତ କରିବାପାଇଁ'' ଆଶା ବି ରଖିଛନ୍ତି । ମାତ୍ର ତାଙ୍କ ସ୍ୱପ୍ନ ଜୀବଦ୍ଦଶାରେ ସଫଳ ହୋଇପାରିନି । ଯୋଗ୍ୟ ଉତ୍ତରାଧିକାରୀଙ୍କ ଅଭାବରୁ ସଂଗୃହୀତ ଶବ୍ଦଗୁଡ଼ିକର ସଂରକ୍ଷଣ ସମ୍ଭବ ହୋଇ ନାହିଁ । ତେଣୁ ଶବ୍ଦ ସଂଗ୍ରହ ଓ ଚର୍ଚ୍ଚା କ୍ଷେତ୍ରରେ ପ୍ରହରାଜ କେତେ ମାତ୍ରାରେ ସଚେତନ ଥିଲେ, ଉପର୍ଯ୍ୟୁକ୍ତ ସ୍ୱୀକାରୋକ୍ତିରୁ ତାହା ସୁସ୍ପଷ୍ଟ ।

୧୯୧୩ରୁ ୧୯ ମସିହା ପର୍ଯ୍ୟନ୍ତ ଦୀର୍ଘ ସାତବର୍ଷ କାଳ ସେ ଶବ୍ଦ ସଂଗ୍ରହ କାର୍ଯ୍ୟରେ ଲାଗିପଡ଼ିଛନ୍ତି । ଶବ୍ଦଗୁଡ଼ିକର ସଂକଳନ ଓ ସଜ୍ଜୀକରଣ କାର୍ଯ୍ୟ ଚାଲୁରହିଛି ୧୯୧୯ (ଅକ୍ଟୋବର ମାସ ତିନି ତାରିଖ)ରୁ ୧୯୨୭ ମସିହା ପର୍ଯ୍ୟନ୍ତ । ସେହି ବର୍ଷ ପାଣ୍ଡୁଲିପି ମଧ ପ୍ରସ୍ତୁତହୋଇଛି ଏବଂ ଏହାର ସମ୍ମାର୍ଜନ ଓ ସାଫୀକରଣ ଆରମ୍ଭ ହୋଇଛି ୧୯୨୮ ମସିହାଠାରୁ । ଏହି କାର୍ଯ୍ୟରେ ଦୁଇ ଜଣ ଓଡ଼ିଆ ଭାଷାଭିଜ୍ଞ ପଣ୍ଡିତ, ଦୁଇଜଣ ଅଣ୍ଡରଗ୍ରାଜୁଏଟ୍, ଦୁଇ ଜଣ ସଂସ୍କୃତ ଭାଷା ଓ ସାହିତ୍ୟର ବିଦ୍ୱାନ୍ ଏବଂ ଶ୍ରୀମତୀ ପୀତାମ୍ବରୀ ଦେବୀ ତାଙ୍କୁ ସାହାଯ୍ୟ କରିଛନ୍ତି । ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ପ୍ରହରାଜଙ୍କୁ ସକଳ କ୍ଷେତ୍ରରେ ପ୍ରୋତ୍ସାହିତ କରିଛନ୍ତି, ସେମାନଙ୍କ ମଧ୍ୟରେ ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥ, କୃଷ୍ଣଚନ୍ଦ୍ର ମିଶ୍ର, ରାମଚନ୍ଦ୍ର ରଥ, ନରସିଂହ ମହାପାତ୍ର, କବି ଗୋଲୋକ ଚନ୍ଦ୍ର ପ୍ରଧାନ, ନାରୀକବି ଅପର୍ଣ୍ଣା ଦେବୀ, ରାଧାନାଥ ରଥ, ଶଶିଭୂଷଣ ରଥ, ଔପନ୍ୟାସିକ ରାମଚନ୍ଦ୍ର ଆଚାର୍ଯ୍ୟ ରାଜା ବିକ୍ରମ ଦେବ ବର୍ମା, ଡି. ଲିଟ୍‌ଙ୍କ ନାମ ଉଲ୍ଲେଖନୀୟ । କଟକ ଟ୍ରେନିଂ କଲେଜର ଅଧ୍ୟକ୍ଷ ହୁଇଟ୍‌ମୋର ('ଅ' ଅକ୍ଷର), କଟକର କଲେକ୍ଟର ସାହେବ - ସାର୍ ଉଡ୍ ଓ ଫିଲିପ୍‌ସ, ରେଭେନ୍‌ସା କଲେଜର ଇଂରାଜୀ ବିଭାଗର ପ୍ରଫେସର ନିରଞ୍ଜନ ନିୟୋଗୀ, ଓଡ଼ିଶା ବିଭାଗର କମିଶନର୍, ଶ୍ରୀଯୁକ୍ତ ଏ.ଆର୍.ଟପ୍‌ଲିସ୍ ପ୍ରମୁଖ ବିଦ୍ୱାନ୍ ଇଂରାଜୀ; ଶ୍ରୀ ସତୀନ୍ଦ୍ର ନାରାୟଣ ରାୟ, ଏମ୍. ଏ.ବି. ଏଲ୍. ଓ ପଣ୍ଡିତ ସତ୍ୟଶଙ୍କର ମୁଖାର୍ଜୀ ବଙ୍ଗଳା ଏବଂ ପଣ୍ଡିତ ସୁରେଶ ଚନ୍ଦ୍ର ଝା ଓ ରାମଲୋଚନ ଶରଣ ହିନ୍ଦୀ ଶବ୍ଦଗୁଡ଼ିକର ଶୁଦ୍ଧପାଠ ନିର୍ଣ୍ଣୟ କରିଛନ୍ତି । ଓଡ଼ିଆ ଭାଷା ସମ୍ବନ୍ଧିତ ସମସ୍ୟାଗୁଡ଼ିକର ସମାଧାନ କରିଛନ୍ତି ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି, ଅଗଣି ଦାସ, ପଣ୍ଡିତ କୁଳମଣି ଦାସ, ଭିକାରି ଚରଣ ଆଚାର୍ଯ୍ୟ, କୃଷ୍ଣଚନ୍ଦ୍ର ସେନ୍‌ଗୁପ୍ତ, ଚିନ୍ତାମଣି ମହାନ୍ତି ଏବଂ ପ୍ରୁଫ୍ ସଂଶୋଧନ କାର୍ଯ୍ୟରେ ସାହାଯ୍ୟ କରିଛନ୍ତି ବାଗ୍ମୀ ବିଶ୍ୱନାଥ କର, ପଦ୍ମଚରଣ ଦାଶ, ରାମଚନ୍ଦ୍ର ରଥ, କୁଳମଣି ଦାସ, ପଣ୍ଡିତ ନୀଳକଣ୍ଠ ଦାସ ଓ ପଣ୍ଡିତ କୃଷ୍ଣଚନ୍ଦ୍ର କର । ଶୁଦ୍ଧମୁଦ୍ରଣ ନିମିତ୍ତ ଏହା ମୁଦ୍ରିତ ହୋଇଛି ଉତ୍କଳ ସାହିତ୍ୟ ପ୍ରେସ୍‌ରେ, ବାଗ୍ମୀ ବିଶ୍ୱନାଥ କରଙ୍କ ପ୍ରତ୍ୟକ୍ଷ ଓ ରାମଚନ୍ଦ୍ର କରଙ୍କ ପରୋକ୍ଷ ତତ୍ତ୍ୱାବଧାନରେ । ୧୯୩୫ ମସିହାରେ ବିଶ୍ୱନାଥ କରଙ୍କ ମୃତ୍ୟୁ ଘଟିବାଯୋଗୁଁ ଏହାର ପ୍ରମାଦଶୂନ୍ୟ ମୁଦ୍ରଣପାଇଁ ପ୍ରହରାଜଙ୍କୁ ଅଧିକ ସଚେତନ ହେବାକୁ ପଡ଼ିଛି ଏବଂ କୃଷ୍ଣଚନ୍ଦ୍ର କର ହିଁ ତାଙ୍କୁ ମାନସିକ ସନ୍ତୁଳନରୁ ମୁକ୍ତକରିଛନ୍ତି । ଅନ୍ୟମାନଙ୍କ ଉପରେ ସେ ଦାୟିତ୍ୱ ନ୍ୟସ୍ତ କରିଛନ୍ତି ସତ୍ୟ, ମାତ୍ର ନିଜେ ଆଦୌ ନିଶ୍ଚିନ୍ତ ରହିପାରି ନାହାନ୍ତି । ଶବ୍ଦ ସଂଗ୍ରହଠାରୁ ଆରମ୍ଭ କରି ସେଗୁଡ଼ିକର ସଜ୍ଜୀକରଣ, ଅର୍ଥ ଲିଖନ, ସମ୍ମାର୍ଜନ, ମୁଦ୍ରଣ ଓ ପୁସ୍ତକ ପ୍ରସ୍ତୁତି ପର୍ଯ୍ୟନ୍ତ ସବୁ କାମ ନିଜେ ତଦାରଖ କରିଛନ୍ତି । ଦିନରେ ପ୍ରାୟ ଅଠର ଘଣ୍ଟା ଭାଷାକୋଷର ମେରିଖୁଣ୍ଟରେ ବେଙ୍ଗଳା ଘୂରିଛନ୍ତି । ଅୟସ, ମଉଜ ମଜଲିସ, ଅର୍ଥ ଉପାର୍ଜନ ସବୁକିଛିକୁ ମହାନଦୀରେ ଭସେଇ ଦେଇଛନ୍ତି ।

ଭାଷାକୋଷ ଓଡ଼ିଆ, ହିନ୍ଦୀ, ବଙ୍ଗଳା ଓ ଇଂରାଜୀ ଶବ୍ଦରେ ସମୃଦ୍ଧ ଏକ ଚାତୁର୍ଭାଷିକ (ଚାତୁର୍ଲିପିକ) ଅଭିଧାନ । ଗ୍ରନ୍ଥରେ ସଂଯୋଜିତ ଓଡ଼ିଆ ଶବ୍ଦଗୁଡ଼ିକୁ ହିନ୍ଦୀ, ବଙ୍ଗଳା ଓ ଇଂରାଜୀ ଲିପିରେ ଉଲ୍ଲେଖ କରାଯିବା ସହିତ ସେଗୁଡ଼ିକର ପାରିଭାଷିକ ଅର୍ଥ ସଂକ୍ରାନ୍ତରେ ସୂଚନା ରହିଛି । ପ୍ରାୟ ପ୍ରତ୍ୟେକ ଶବ୍ଦକୁ ଇଂରାଜୀ ଅକ୍ଷରରେ ଲେଖାଯିବା ସହିତ, ସେଗୁଡ଼ିକର ପାରିଭାଷିକ ଅର୍ଥ ପ୍ରଦତ୍ତ ହୋଇଥିଲେ ସୁଦ୍ଧା, ଅନ୍ୟ ଦୁଇଗୋଟି ଭାଷା ପ୍ରତି ସମାନ ରୀତି ଅନୁସୃତ ହୋଇ ନାହିଁ । ଉପର୍ଯ୍ୟୁକ୍ତ ଭାଷାଗୁଡ଼ିକ ବ୍ୟତୀତ ଅନ୍ୟ କେତେକ ଭାରତୀୟ ଭାଷାର ପାରିଭାଷିକ ଶବ୍ଦ ଉଲ୍ଲେଖ କରିବାପାଇଁ ସଂକଳକ ଅବଶ୍ୟ ଆଶା ପୋଷଣ କରିଛନ୍ତି । ମାତ୍ର ତାଙ୍କର ଆଶା ଦୁରାଶାରେ ପରିଣତ ହୋଇଛି । ଭାଷାକୋଷକୁ ଓଡ଼ିଆ-ବଙ୍ଗଳା, ଓଡ଼ିଆ-ହିନ୍ଦୀ, ଓଡ଼ିଆ-ଇଂରାଜୀ ଭେଦରେ ତିନିଗୋଟି ସ୍ୱତନ୍ତ୍ର ଗ୍ରନ୍ଥରେ ସଂକଳନ କରିଥିଲେ ସାଧାରଣ ପାଠକ ଅଧିକ ଉପକୃତ ହୋଇପାରିଥା'ନ୍ତା ବୋଲି କେତେକ ଗବେଷକ ମତ ଦେଇଥାଆନ୍ତି । କାରଣ କୋଷଗ୍ରନ୍ଥର ବିରାଟ କଳେବର ଓ ମୂଲ୍ୟ ସାଧାରଣ କ୍ରେତା ମନରେ ଭୟ ସୃଷ୍ଟିକରେ । ମାତ୍ର ତାହା ଭିନ୍ନ ଭିନ୍ନ ଖଣ୍ଡରେ ପ୍ରକାଶିତ ହୋଇଥିଲେ, ଭାଷାକୋଷର ମହତ୍ତ୍ୱ ଯେ କ୍ଷୁଣ୍ଣ ହୋଇଥାଆନ୍ତା, ବିଶ୍ୱ ସାହିତ୍ୟ ବିପଣୀରେ ଉଲ୍ଲେଖନୀୟ କାଳଜୟୀ କୃତି ରୂପରେ ସ୍ୱୀକୃତ ହୋଇ ନ ଥା'ନ୍ତା, ଅନୁରୂପ ସମ୍ଭାବନାକୁ ଅସ୍ୱୀକାର କରାଯାଇ ନ ପାରେ ।

ଭାଷାକୋଷର ଚତୁର୍ଥ ଭାଗ ପ୍ରକାଶ ପାଇବା ପରେ, ପ୍ରହରାଜ ପରବର୍ତ୍ତୀ ଭାଗଗୁଡ଼ିକୁ ଜ୍ଞାନକୋଷଧର୍ମୀ କରିବାପାଇଁ ମନସ୍ଥ କରିଛନ୍ତି । ଷଷ୍ଠ ଓ ସପ୍ତମ ଭାଗରେ ତାଙ୍କ ବିଚାରର ସ୍ପଷ୍ଟ ପ୍ରତିଫଳନ ସମ୍ଭବ ହୋଇଛି । ଜ୍ଞାନବିଜ୍ଞାନର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ତଦ୍‌ବିଦ୍‌ମାନେ ନିର୍ବାଚିତ ଶବ୍ଦଗୁଡ଼ିକ ସମ୍ବନ୍ଧରେ ଆଲୋଚନା କରିଛନ୍ତି । ସେମାନଙ୍କ ମଧ୍ୟରେ ପଣ୍ଡିତ ବାଇକୋଳି ମହାପାତ୍ର – ଜ୍ୟୋତିଷ ବିଶାରଦ, ଜଗନ୍ନାଥ ତ୍ରିପାଠୀ, ବିକ୍ରମଦେବ ବର୍ମା, ବିଚ୍ଛନ୍ଦଚରଣ ପଟ୍ଟନାୟକ, କେଦାରନାଥ ମହାପାତ୍ର, ଜଗବନ୍ଧୁ ସିଂ, ଚନ୍ଦ୍ରଶେଖର ଦାଶ, ନାରାୟଣପ୍ରସାଦ ଷାଠିଆ, ପ୍ରଫୁଲ୍ଲଚନ୍ଦ୍ର ପଟ୍ଟନାୟକ, ବଂଶୀଧର ମହାନ୍ତି, ପଣ୍ଡିତ ରାମଚନ୍ଦ୍ର ମିଶ୍ର, ବିପିନ ବିହାରୀ ରାୟ, ସୁନ୍ଦରାନନ୍ଦ ବିଦ୍ୟାବିନୋଦ ମହାମହୋପଦେଶକ, ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥ, ଲକ୍ଷ୍ମୀନାରାୟଣ ସାହୁ, ବ୍ରହ୍ମ ଅବଧୂତ ବିଶ୍ୱନାଥବାବା, ଯୋଗେନ୍ଦ୍ରନାଥ ଦାଶ ପ୍ରମୁଖ ବ୍ୟକ୍ତିଙ୍କର ନାମ ଉଲ୍ଲେଖଯୋଗ୍ୟ । ଭାଷାକୋଷର ପ୍ରଥମରୁ ପଞ୍ଚମ ଭାଗ ମଧ୍ୟରେ ସଂକଳିତ କେତେକ ଶବ୍ଦର ବିଶେଷ ଚର୍ଚ୍ଚା ଯେ କରା ନ ଯାଇଛି, ତାହା ନୁହେଁ; ମାତ୍ର ସେଗୁଡ଼ିକର ବ୍ୟାଖ୍ୟା ସୀମିତ ଏବଂ ନିଜେ ସଂକଳକ ହିଁ ଆଲୋଚନାମାନ ପ୍ରସ୍ତୁତ କରିଛନ୍ତି । ତେଣୁ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ଏକ ଅଭିଧାନ ଗ୍ରନ୍ଥ କେବଳ ନୁହେଁ, ଜ୍ଞାନକୋଷଧର୍ମୀ ଶବ୍ଦକୋଷ, ଓଡ଼ିଆ ଶବ୍ଦକୋଷ ଇତିହାସରେ ସ୍ୱତନ୍ତ୍ର ।

ମୁଁ ପୂର୍ବରୁ ଉଲ୍ଲେଖ କରିଛି, ସଂଗୃହୀତ ଶବ୍ଦଗୁଡ଼ିକର ସାଫି କାର୍ଯ୍ୟ ୧୯୨୮ ମସିହାରୁ ୩୦ ମସିହା ମଧ୍ୟରେ ଶେଷ ହୋଇଛି ଏବଂ ସେତେବେଳେ ଏହା ଫୁଲ୍‌ସ୍କେପ୍ କାଗଜରେ ପ୍ରାୟ ତିରିଶ ହଜାର ପୃଷ୍ଠାର ଆକାର ନେଇଛି । ୧୯୩୦ ମସିହାରେ ନମୁନାସ୍ୱରୂପ ଅଠର ପୃଷ୍ଠାର ଏକ ପୁସ୍ତିକା ଅର୍ଡ଼ର ଫର୍ମ ପ୍ରକାଶ ପାଇଛି ଏବଂ ଏହାକୁ ବିଶିଷ୍ଟ ବ୍ୟକ୍ତିବିଶେଷ ଓ ଅନୁଷ୍ଠାନମାନଙ୍କ ମଧ୍ୟରେ ବାଣ୍ଟି ଦିଆଯାଇଛି । (ଦ୍ରଷ୍ଟବ୍ୟ : ପୁଚ୍ଛାଗ୍ର)

୧୯୨୭ ମସିହା ଫେବୃଆରି ମାସ ୨୬ ତାରିଖରେ, କଟକଠାରେ ଅନୁଷ୍ଠିତ ହୋଇଛି ପ୍ରାଦେଶିକ ଭାଷା ବିବର୍ଦ୍ଧନୀ ସମିତି (Vernacular Development Committee)ର ପ୍ରଥମ ଅଧିବେଶନ । ଏଥିରେ ସଭାପତିତ୍ୱ କରିଛନ୍ତି ସାର୍ ଅଲି-ଇ-ମାମ୍ ଓ ସଭାକୁ ନିମନ୍ତ୍ରିତ ହୋଇଛନ୍ତି ବିଖ୍ୟାତ ଗବେଷକ ବିଜୟଚନ୍ଦ୍ର ମଜୁମଦାର । ଅଧିବେଶନରେ ଉତ୍କଳ ଭାଷାଭାଷୀ ଅଞ୍ଚଳର ସର୍ବଜନ ବ୍ୟବହୃତ ଶବ୍ଦ ସମନ୍ୱିତ ଏକ କୋଷଗ୍ରନ୍ଥ ସଂକଳନପାଇଁ ସିଦ୍ଧାନ୍ତ ନିଆଯାଇଛି ଏବଂ ଏପରି ଏକ ସୁବର୍ଣ୍ଣ ସୁଯୋଗର ଅପେକ୍ଷାରେ ଥିବା ଶ୍ରୀଯୁକ୍ତ ପ୍ରହରାଜ, ଆପଣା ଅଭିଧାନର ପାଣ୍ଡୁଲିପି ସାହିତ୍ୟ ବିବର୍ଦ୍ଧିନୀ ସଭାର କର୍ମକର୍ତ୍ତାମାନଙ୍କ ନିକଟରେ ଉପସ୍ଥାପନ କରିଛନ୍ତି । ପାଣ୍ଡୁଲିପିକୁ ପରୀକ୍ଷା କରି ରେଭରେଣ୍ଡ୍ ଏଚ୍.ଡବ୍ଲିଉ.ପେକ୍ ମନ୍ତବ୍ୟ ଦେଇଛନ୍ତି – It is a monumental work partaking of the nature of an encyclopaedia built on the line of some of our larger dictionaries. It aims at being exhaustive including words, use in all parts of Orissa as well as words incorporated in the language from other languages. ×× As a monument of Oriya language and a standard work of reference of that subject. I believe the Dictionary as well worth printing. ରେଭରେଣ୍ଡ ପେକ୍ (Pike) ସାହେବ ସାଧାରଣ ଲୋକ ନ ଥିଲେ । ଓଡ଼ିଆ ଭାଷା ସହିତ ସୁପରିଚିତ ଥିଲେ । ଉଇଲ୍‌କିନ୍‌ସ (Cordon S. Wilkins)ଙ୍କ ସହଯୋଗରେ ସେ English-Oriya Dictionary ସଂକଳନ କରିଥିଲେ । ଦୁଇଗୋଟି ଭାଗରେ ପ୍ରସ୍ତୁତ ଏହି ଗ୍ରନ୍ଥ ଯଥାକ୍ରମେ ୧୯୧୬ ଓ ୨୩ ମସିହାରେ ପ୍ରକାଶ ପାଇଥିଲା । ତେଣୁ ପେକ୍ ସାହେବଙ୍କ ଭାଷାକୋଷ ସଂକ୍ରାନ୍ତ ଉପର୍ଯ୍ୟୁକ୍ତ ମନ୍ତବ୍ୟକୁ ଓଡ଼ିଶା ଭିତର ଓ ବାହାରର ପଣ୍ଡିତମାନେ ସମର୍ଥନ କରିଛନ୍ତି । ଶିକ୍ଷାବିଭାଗର ନିର୍ଦ୍ଦେଶକ ଲମ୍ବର୍ଟ ସାହେବ, କାକା କାଲେଲ୍‌କର, ବାଗ୍ମୀ ବିଶ୍ୱନାଥ କର, ଉତ୍କଳମଣି ଗୋପବନ୍ଧୁ ଦାସଙ୍କଦ୍ୱାରା ମଧ୍ୟ ପାଣ୍ଡୁଲିପି ଉଚ୍ଚ ପ୍ରଶଂସିତ ହୋଇଛି । ଫାଲ୍‌ଗୁନ ପୂର୍ଣ୍ଣମୀ ଦିନ ଶବ୍ଦ ସଂକଳନ କାର୍ଯ୍ୟ ଶେଷ ହୋଇଥିବାରୁ ଗୋପବନ୍ଧୁ ତା' ୨୭.୮.୨୭ରିଖର ସମାଜର ସମ୍ପାଦକୀୟ ପୃଷ୍ଠାରେ 'ପୂର୍ଣ୍ଣମୀରେ ପୂର୍ଣ୍ଣ' ଶିରୋନାମାରେ ଚମତ୍କାର ମନ୍ତବ୍ୟ ପ୍ରକାଶ କରିଛନ୍ତି । ସମକାଳରେ ପ୍ରକାଶିତ ଉତ୍କଳ ସାହିତ୍ୟ, ଆଶା, ଗଡ଼ଜାତବାସିନୀ, ୟଙ୍ଗ୍ ଉତ୍କଳ, ପଲ୍ଲୀବାସୀ ଆଦି

ପତ୍ରିକାର ପୃଷ୍ଠାଗୁଡ଼ିକରେ ସଂକଳକଙ୍କର ପ୍ରଶଂସା କରାଯାଇଛି । ୧୯୨୭ ମସିହାରେ ମହାତ୍ମା ଗାନ୍ଧି କଟକ ଆସିଥିଲା ବେଳେ ଭାଷାକୋଷ ଆଶ୍ରମ ପରିଦର୍ଶନ କରିଛନ୍ତି । ପ୍ରହରାଜଙ୍କ ଆପ୍ତ ପ୍ରୀତିକୁ ଅଲଗା ଆଖିରେ ଦେଖି ନାହାନ୍ତି । ଆଣ୍ଡ୍ରୁଜ ସାହେବ, ରାଜେନ୍ଦ୍ର ପ୍ରସାଦ, ପାଦ୍ରି ଶ୍ରୀଯୁକ୍ତ ଟପ୍ଲି ଓ ଟକ୍‌କର, ଗୁରୁକୁଳ ବିଦ୍ୟାପୀଠର ଅଧ୍ୟକ୍ଷଙ୍କ ପରି ମନୀଷୀମାନେ ଭାଷାକୋଷ ଆଶ୍ରମରେ ପାଦ ଦେଇଛନ୍ତି । ପ୍ରହରାଜଙ୍କ ଦୁଃସାହସ ଦେଖି ଅଭିଭୂତ ହୋଇଛନ୍ତି ଏବଂ ଆର୍ଥିକ ଅନଟନରେ ନଇଁ ପଡୁଥିବା ମଣିଷପାଇଁ ସତେ ଯେପରି ଏ ପ୍ରଶସ୍ତି ହୋଇଛି ଅମୋଘ ମୋଦକ ।

॥ ତିନି ॥

ଅର୍ଥ ହିଁ ଥିଲା ଭାଷାକୋଷ ପ୍ରକାଶନପାଇଁ ଅସଲ ସମସ୍ୟା । କୋଷର ସମ୍ମାର୍ଜନ କାର୍ଯ୍ୟ ଚାଲିଥିଲାବେଳେ ପ୍ରହରାଜଙ୍କ ଓକିଲାତି ବ୍ୟବସାୟ ପ୍ରାୟତଃ ବନ୍ଦ ହୋଇଯାଇଛି । ଯେଉଁ ଅଳ୍ପସଂଖ୍ୟକ ମହକିଲ ତଥାପି ଆସିଛନ୍ତି, ସେମାନଙ୍କୁ ଆପଣାର ସହଯୋଗୀ ଶ୍ରୀ ହରିହର ମହାପାତ୍ର ଓ ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ରଙ୍କ ଜିମା ଦେଇଛନ୍ତି । ତେଣେ ଜମିଦାରିର ଦେଖାଚାହାଁ କରିବା ମଧ୍ୟ ସମ୍ଭବ ହୋଇନି । ଉଆସର କଞ୍ଚିକାଠି ପତ୍ନୀଙ୍କ କାନିରେ ବାନ୍ଧି ଦେଇଛନ୍ତି । ଦିନକୁ ପ୍ରାୟ ସତର ଅଠର ଘଣ୍ଟାରୁ ଅଧିକ କାଳ ଉଭୟ ଶାରୀରିକ ଓ ମାନସିକ ଶ୍ରମରେ ବୁଡ଼ି ରହିଛନ୍ତି । ରାତିରେ ଖାଇବା ମଧ୍ୟ ଛାଡ଼ି ଦେଇଛନ୍ତି । ଦୁଇ ତିନି ସେର ଦୁଧ ସିଝାଇ, ପ୍ରାୟ ରାବିଡ଼ି ପରି କରାଯାଇଛି ଏବଂ ତାହାହିଁ ହୋଇଛି ତାଙ୍କର ରାତିର ଆହାର । ରାତି ପ୍ରାୟ ଆଠ/ନଅଟା ବେଳକୁ ସେ ବିଛଣା ଧରିଛନ୍ତି ଓ ଉଠିଛନ୍ତି ପ୍ରାୟ ତିନିଟା ବେଳକୁ । ବିଛଣା ଛାଡ଼ିବା ପରେ କିଛି ସମୟ ଭଜନ କରିଛନ୍ତି । ମୃଦଙ୍ଗ, ଗିନି, ବେହେଲା ପରି ବାଦ୍ୟଯନ୍ତ୍ରରେ ହାତ ଦେଇଛନ୍ତି । ପ୍ରାୟ ସବୁ ଦିନେ ସକାଳେ ତାଙ୍କ ଘରକୁ ଆସିଛନ୍ତି ବନ୍ଧୁ ଶଶିଭୂଷଣ ରାୟ । ଦୁଇ ବନ୍ଧୁ ଚା' ପିଇଛନ୍ତି । ଭୁବନେଶ୍ୱର କୋରା ଓ ଉଖୁଡ଼ା ପାଟିରେ ଦେଇଛନ୍ତି । ବେଶ୍ କିଛି ସମୟ ଅନ୍ତରଙ୍ଗ ଆଳାପରେ ବିଭୋର ରହିଛନ୍ତି । ପୁଣି ଦୂରେଇ ଯାଇଛନ୍ତି ପରସ୍ପରଠାରୁ, ପରବର୍ତ୍ତୀ ସକାଳ ପର୍ଯ୍ୟନ୍ତ । ସକାଳୁ ସକାଳୁ ପଣ୍ଡିତମାନେ ମଧ୍ୟ ଆସି ବସିଯାଇଛନ୍ତି ନିଜ ନିଜ ଆସନରେ । ପ୍ରହରାଜ ମିଶିଯାଇଛନ୍ତି ନିଜ ଭିତରେ । ଭାଷାକୋଷର ସମ୍ମାର୍ଜନ କାର୍ଯ୍ୟ ଆରମ୍ଭ ହେବା ଦିନଠାରୁ ଶେଷ ଦିନ ପର୍ଯ୍ୟନ୍ତ, ପ୍ରତିଦିନ ସକାଳେ ଗାଧୋଇ ସାରି ଘର ମଝିରେ ତିଆରି ହୋଇଥିବା ଏକ ଯଜ୍ଞକୁଣ୍ଡରେ ଘୃତାହୁତି ଦେଇଛନ୍ତି । ଆମିଷ ଭୋଜନ ଛାଡ଼ି ଦେଇଛନ୍ତି । କାମ କରି କରି ଥକିପଡ଼ିଲେ, ପୀତାମ୍ବରୀ ଦେବୀଙ୍କ ହାତ ପ୍ରସ୍ତୁତ ଶତପୁଟ୍ ଅଫିମର କରାଟ ଖୋଲି ହୋଇଯାଇଛି ତାଙ୍କ ଆଗରେ । ଅଫିମ ମଗଜକୁ ଭେଦିଛି । ସେ ସତେଜ ହୋଇଉଠିଛନ୍ତି । ଅଣ୍ଟାରୁ ଗୋଟିଏ କରାଟ ଶେଷ ହୋଇଯିବା ପରେ, ଯଥାସମୟରେ ଆଉ ଗୋଟିଏ କଥା କହିଛି ଅସଲ ଜାଗାରେ । ପୀତାମ୍ବରୀ ଦେବୀ ହିଁ ହୋଇଛନ୍ତି ତାଙ୍କ ସାଧକ ଜୀବନର

ପ୍ରକୃତ ସହକାରିଣୀ, ପ୍ରଚୋଦିକା । ସେ ଥକିପଡ଼ି ନାହାନ୍ତି । କୋଉ ଅଶ୍ରୁତ ସ୍ୱରର ଆହ୍ୱାନରେ ତାଙ୍କ ପାର୍ଥିବ ଚେତନା ଯେପରି ଉର୍ଦ୍ଧ୍ୱାୟିତ ହୋଇଛି ।

ଭାଷାକୋଷ କାମ କ୍ରମଶଃ ଅଧିକ ବଢ଼ିଛି ଏବଂ ସମଭାବରେ ତାଙ୍କୁ ଗ୍ରାସ କରିଛି ଅର୍ଥସଂକଟ । ସମ୍ମାର୍ଜନ କାର୍ଯ୍ୟ ସମ୍ପାଦନ କରିବାପାଇଁ ମାସକୁ ଅନ୍ୟୂନ ତିନିଶହ ଟଙ୍କା ଲୋଡ଼ାପଡ଼ିଛି । କର୍ମଚାରୀମାନଙ୍କୁ ପ୍ରତ୍ୟେକ ମାସର ପ୍ରଥମ ସପ୍ତାହରେ ସେ ବେତନ ଦେଇଛନ୍ତି । ଭାଷାକୋଷ ଆଶ୍ରମରେ ସେ ମାଲିକ ପରି ବଞ୍ଚି ନାହାନ୍ତି । ସେ ନିଜେ ଏବଂ ପୀତାମ୍ବରୀ ଦେବୀ ମଧ ସାଧାରଣ କର୍ମୀ ପରି ଦରମା ନେଇଛନ୍ତି । କେଉଁ ସୂତ୍ରରୁ କେତେ ଅର୍ଥ ଆସିଛି ଏବଂ କେଉଁ କର୍ମଚାରୀ କେତେ ଦରମା ନେଉଛନ୍ତି, ତାହାର ହିସାବ ମଧ ରଖିଛନ୍ତି । କେବଳ ବେତନ ନୁହେଁ; ମେସ୍, ଯାତାୟାତ, ଚିଠିପତ୍ର, ତାର, କାଗଜ, ସ୍ୟାହି, ପେନ୍‌ସିଲ୍ ଆଦି ଆବଶ୍ୟକୀୟ ସାମଗ୍ରୀ କିଣା ବାବଦକୁ ତାଙ୍କୁ ବିପୁଳ ଅର୍ଥ ଖର୍ଚ୍ଚ କରିବାକୁ ପଡ଼ିଛି । ସଂଗୃହୀତ ଅର୍ଥ ତାଙ୍କୁ ଅକୁଳାଣ ହୋଇଛି । ଆବଶ୍ୟକତାକୁ ପୂରଣ କରିବାପାଇଁ ନିଜ ଘରକୁ ଜନୈକ ଧନୀ ବ୍ୟକ୍ତିଙ୍କୁ ଭଡ଼ାରେ ଦେଇଛନ୍ତି । ସରକାରଙ୍କଠାରୁ ମଧ ଯଥାସମୟରେ ଆର୍ଥିକ ସାହାଯ୍ୟ ପାଇପାରି ନାହାନ୍ତି । ସମସ୍ୟା ଜାଲରେ ଅଣନିଃଶ୍ୱାସୀ ହୋଇପଡୁଥିବା ସମୟରେ, ୧୯୨୮ ମସିହା ଅକ୍‌ଟୋବର ମାସରେ କଳାହାଣ୍ଡିର ମହାରାଜା ବ୍ରଜମୋହନ ଦେବଙ୍କଠାରୁ ସେ ଏକ ହଜାର ଏବଂ ପରେ ପରେ ବର୍ଦ୍ଧମାନର ରାଜା ବିଜୟ ଚନ୍ଦ୍ର ମହାତାପ, ଚିକିଟିର ବାନପ୍ରସ୍ଥ ରାଜା ରାଧାମୋହନ ରାଜେନ୍ଦ୍ରଙ୍କଠାରୁ ଯଥାକ୍ରମେ ଦୁଇ ଶହ ପଚାଶ ଓ ଛଅଶହ ଟଙ୍କା ସାହାଯ୍ୟ ପାଇଛନ୍ତି । ଏପରିକି, 'ଓଡ଼ିଆ ସାହିତ୍ୟ ସଂଘ'ର ପ୍ରଚାରକ ଶ୍ରୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଆପଣା ପରିକଳ୍ପିତ ଏକ ବିଶ୍ୱକୋଷ ସଂକଳନ ଉଦ୍ଦେଶ୍ୟରେ ସଞ୍ଚୟ କରିଥିବା ଏକ ଶହ କୋଡ଼ିଏ ଟଙ୍କା ଭାଷାକୋଷ ପାଣ୍ଠିକୁ ଦାନକରିଛନ୍ତି ।

ପୂର୍ବରୁ ଶ୍ରୀଯୁକ୍ତ ପ୍ରହରାଜ ଭାଷାକୋଷର ପ୍ରକାଶନପାଇଁ ଆର୍ଥିକ ସାହାଯ୍ୟ ଯୋଗାଇ ଦେବାକୁ ସରକାରଙ୍କୁ ଯେଉଁ ଦରଖାସ୍ତ କରିଥିଲେ, ତାହା ଅମଳ ଦେବାର ସମ୍ଭାବନା ଦେଖାଯାଇଛି ୧୯୨୯ ମସିହାରେ । ସରକାର କୋଷଗ୍ରନ୍ଥ ବ୍ୟୟର ଏକ ଆନୁମାନିକ ହିସାବ ଫର୍ଦ୍ଦର ପ୍ରସ୍ତୁତିପାଇଁ ପେକ୍ ସାହେବଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ତତ୍‌କାଳୀନ ଶିକ୍ଷା ବିଭାଗର ନିର୍ଦ୍ଦେଶକ ମାନ୍ୟବର ଫକ୍‌ସ ସାହେବ, ଶିକ୍ଷାମନ୍ତ୍ରୀ ସାର୍ ଫକିରୁଦ୍ଦିନ୍, ଅର୍ଥବିଭାଗର ସଦସ୍ୟ ରାଜା ରାଜେନ୍ଦ୍ର ନାରାୟଣ, ସେକ୍ରେଟାରୀ ଗୋଗେଲ୍, ଅର୍ଥ ସଦସ୍ୟ ମାନ୍ୟବର ସିଫ୍‌ଟନ୍ ଓ ଲାଟ୍ ସାହେବ ସାର୍ ଷ୍ଟିଫେନ୍‌ସ ପ୍ରମୁଖ ପ୍ରଶାସକ ଓ ବିଦ୍ୱାନ୍, ସାହାଯ୍ୟ ବାବଦକୁ ଅନ୍ୟୂନ ତିରିଶ ହଜାର ଟଙ୍କା ଯୋଗାଇ ଦେବାପାଇଁ ଭାରତ ସରକାରଙ୍କ ସୁପାରିସ କରିଛନ୍ତି । ମାତ୍ର ସରକାର ତିରିଶ ହଜାର ପରିବର୍ତ୍ତେ, ଏକ ହଜାର କପିର ମୁଦ୍ରଣ ଓ ସମ୍ମାର୍ଜନ ଖର୍ଚ୍ଚ ବାବଦକୁ ଯଥାକ୍ରମେ ଚଉଦ ହଜାର ଓ ପାଞ୍ଚ ହଜାର ଟଙ୍କା

ସାହାଯ୍ୟ ଦେବାକୁ ଓଡ଼ିଶା-ବିହାର ସରକାରଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ସରକାରୀ ଅନୁକମ୍ପା ଲାଭର ସମ୍ଭାବନାରେ ପ୍ରହରାଜ ଆନନ୍ଦରେ ଫାଟିପଡ଼ିଛନ୍ତି ଏବଂ କାର୍ଯ୍ୟ ସଂପୂର୍ଣ୍ଣ କରିବାପାଇଁ ଲୋଡ଼ାପଡୁଥିବା ଅବଶିଷ୍ଟ ଅର୍ଥ, ପୁସ୍ତକ ବିକ୍ରି, ଅନ୍ୟାନ୍ୟ ବଦାନ୍ୟ ବ୍ୟକ୍ତି, ରାଜା ମହାରାଜାଙ୍କ ସାହାଯ୍ୟରେ ଭରଣା କରାଯାଇପାରିବ ବୋଲି ସ୍ୱପ୍ନ ଦେଖିଛନ୍ତି ।

ଭାଷାକୋଷର ଗ୍ରାହକ ଓ ଦାତାମାନଙ୍କର ସଂଖ୍ୟା କ୍ରମଶଃ ବୃଦ୍ଧି ପାଉଛି । ବିହାର-ଓଡ଼ିଶା ଶିକ୍ଷା ବିଭାଗର ନିର୍ଦ୍ଦେଶକ ମାନ୍ୟବର ପକ୍‌ସ୍ ପ୍ରତି ସାର ଗ୍ରନ୍ଥକୁ ୮୩୫ଙ୍କା ହିସାବରେ ଏକଶହ ଚଉଦ ସାର; ମାନ୍ଦ୍ରାଜ ଶିକ୍ଷାବିଭାଗ ପଚାଶ ସାର; ବଙ୍ଗ ଶିକ୍ଷା ବିଭାଗ ଦଶ ସାର: ଚିକିଟି, କେଉଁଝର, ଧରାକୋଟ, ସୋନ୍‌ପୁର, ଖରସୁଆଁ, ମୟୂରଭଞ୍ଜ ଆଦି ରାଜ୍ୟର ରାଜାମାନେ ଶକ୍ତି ମୁତାବକ ଗ୍ରନ୍ଥ କ୍ରୟ କରିବାପାଇଁ ପ୍ରତିଶ୍ରୁତି ଦେଇଛନ୍ତି । ମାତ୍ର ନାନା କାରଣରୁ ଅନେକ ଦାତା ପ୍ରତିଶ୍ରୁତିକୁ ପାସୋରି ପକେଇଛନ୍ତି ଏବଂ ତାହା ଗ୍ରନ୍ଥ ମୁଦ୍ରଣ କାର୍ଯ୍ୟରେ ପ୍ରହରାଜଙ୍କ ମୁଣ୍ଡବ୍ୟଥାର କାରଣ ହୋଇଛି । ଅନନ୍ୟୋପାୟ ପ୍ରହରାଜ ମୋଗଲବନ୍ଦୀ ଓ ଗଡ଼ଜାତର ରାଜା, ଜମିଦାର ଓ ଧନାଢ଼୍ୟ ବ୍ୟକ୍ତିଙ୍କ ସମେତ ଦିଲ୍ଲୀ ଦରବାର ଏବଂ ଏପରିକି ଭାରତ ବାହାରର ବିଦ୍ୱାନ୍‌ମାନଙ୍କ ପାଖରେ ହାକି ପାତିଛନ୍ତି । କଲିକତାସ୍ଥ ଇମ୍ପିରିଆଲ୍ ପାଠାଗାର, ପ୍ୟାରିସ୍‌ସ୍ଥ ପ୍ରାଚ୍ୟ ସମିତି, ଢାକା ବିଶ୍ୱବିଦ୍ୟାଳୟର ପାଠାଗାର, ମୁଙ୍ଗେର ରାଜପ୍ରାସାଦ, ଜର୍ମାନ୍, ଇଟାଲୀ ଓ ନରୱେର ଗୁଣଗ୍ରାହୀମାନଙ୍କ ନିକଟକୁ ଯାଇଛନ୍ତି । ବିଦେଶୀମାନେ ତାଙ୍କୁ ନିରାଶ କରି ନାହାନ୍ତି । ମୟୂରଭଞ୍ଜ ମହାରାଜ ପ୍ରତାପଚନ୍ଦ୍ର ଭଞ୍ଜଦେବ, ପୁରୀର ଏମାର ମଠର ମହନ୍ତ ମହାରାଜା ଗଦାଧର ରାମାନୁଜ, ପୁରୀର ସରକାରୀ ପ୍ଲିଡ଼ର ଲୋକନାଥ ମିଶ୍ର, କାଉନ୍‌ସେଲର ଆଡ୍‌ଭୋକେଟ୍ ଲକ୍ଷ୍ମୀନାରାୟଣ ମହାନ୍ତି, ବିହାର-ଓଡ଼ିଶା ଶିକ୍ଷାବିଭାଗ ଡେପୁଟୀ ଡାଇରେକ୍ଟର ଶ୍ରୀଯୁକ୍ତ ଶ୍ୟାମାଚରଣ ତ୍ରିପାଠୀ (ଆଇ.ସି.ଏସ୍.) ପ୍ରମୁଖ ବ୍ୟକ୍ତିଙ୍କ ସାହାଯ୍ୟ, ସହାନୁଭୂତି ଓ ଆନ୍ତରିକ ପ୍ରେରଣା ତାଙ୍କୁ ଉତ୍ସାହିତ କରିଛି । ୧୯୩୦ ମସିହାରେ ମୟୂରଭଞ୍ଜ ମହାରାଜା ଆଠ ହଜାର ଟଙ୍କା ସାହାଯ୍ୟ ଦେବାକୁ ପ୍ରତିଶ୍ରୁତି ଦେଇଛନ୍ତି ଏବଂ ମହାରାଜାଙ୍କ ଇଚ୍ଛା ଅନୁସାରେ ତାଙ୍କ ପରଲୋକଗତ ଅଗ୍ରଜ ପୂର୍ଣ୍ଣଚନ୍ଦ୍ରଙ୍କ ନାମାନୁସାରେ କୋଷଗ୍ରନ୍ଥର ନାମକରଣ କରାଯାଇଛି । ଏହି ସଂପର୍କରେ ପ୍ରହରାଜ ନିଜେ ''ଏହି ସାହାଯ୍ୟ ଲାଗି କୃତଜ୍ଞତା ଜ୍ଞାପନାର୍ଥେ ଭାଷାକୋଷର ନାମ ମହାରାଜାଙ୍କ ଜ୍ୟେଷ୍ଠଭ୍ରାତା ସ୍ୱର୍ଗତ ପୂର୍ଣ୍ଣଚନ୍ଦ୍ରଙ୍କ ନାମ ସଙ୍ଗେ ସଂଯୁକ୍ତ ହୋଇଛି'' ବୋଲି ଉଲ୍ଲେଖ କରିଛନ୍ତି । ପ୍ରକୃତରେ କହିବାକୁ ଗଲେ ମୟୂରଭଞ୍ଜର ମହାରାଜା ହୋଇଛନ୍ତି ପ୍ରହରାଜଙ୍କ 'ଅର୍ଥକୋଷ' । ଭାଷାକୋଷର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପ୍ରହରାଜଙ୍କୁ ସେ ଆର୍ଥିକ ସାହାଯ୍ୟ ଓ ମାନସିକ ପ୍ରୋତ୍ସାହନ ଦେଇ ନ ଥିଲେ କୋଷଗ୍ରନ୍ଥ ସମ୍ଭବତଃ ଅସମ୍ପୂର୍ଣ୍ଣ ରହିଯାଇଥାଆନ୍ତା ।

ଭାଷାକୋଷ ସଂକଳନ କ୍ଷେତ୍ରରେ ଦେଖାଦେଉଥିବା ଆର୍ଥିକ ଅନଟନର ପ୍ରଧାନ କାରଣ ହୋଇଛି – ଏହାର କଳେବରର କ୍ରମ ବୃଦ୍ଧି । ୧୯୩୦ ମସିହାରେ, ନମୁନାସ୍ୱରୂପ ଏହାର ମୁଦ୍ରଣ କାର୍ଯ୍ୟ ଆରମ୍ଭ ହୋଇଛି । ବାଗ୍ମୀ ବିଶ୍ୱନାଥଙ୍କର ଓ ତାଙ୍କ ଉତ୍କଳ ସାହିତ୍ୟ ପ୍ରେସ୍, ଏହାର ନିର୍ଭୁଲ ମୁଦ୍ରଣର ଦାୟିତ୍ୱ ନେଇଛନ୍ତି । ଏହାର ଆକାର ରୟାଲ୍ କ୍ୱାର୍ଟର, ପୃଷ୍ଠା ପ୍ରାୟ ସାତ ହଜାର ଦୁଇ ଶହ ଓ ଦୁଇଗୋଟି ଭାଗରେ ପ୍ରକାଶିତ ହେବ ବୋଲି ସିଦ୍ଧାନ୍ତ ନିଆଯାଇଛି । ମାତ୍ର ପ୍ରଥମ ଖଣ୍ଡ ମୁଦ୍ରଣ ପରେ ଏହାର ସମ୍ଭାବ୍ୟ ଆକାର ସଂକଳକଙ୍କୁ ଆତଙ୍କିତ କରିଛି । ପ୍ରଥମ ଖଣ୍ଡରେ ସ୍ଥାନିତହୋଇଛି ତେର ଗୋଟି ସ୍ୱରବର୍ଣ୍ଣାଦ୍ୟ ଶବ୍ଦ ଏବଂ ଏହାର ପୃଷ୍ଠା ସଂଖ୍ୟା ୧୧୯୩ । ଦ୍ୱିତୀୟ ଖଣ୍ଡରେ ରହିଛି ପାଞ୍ଚଗୋଟି ବ୍ୟଞ୍ଜନ ବର୍ଣ୍ଣାଦ୍ୟ ଶବ୍ଦ । ଫଳତଃ ସମଗ୍ର ଅଭିଧାନ ପାଞ୍ଚଗୋଟି ଭାଗରେ ପ୍ରକାଶ ପାଇବ ବୋଲି ପୁନଃ ଅନୁମାନ କରାଯାଇଛି । ପୃଷ୍ଠା ସଂଖ୍ୟାର ଆଶାତୀତ ବୃଦ୍ଧି, ବ୍ୟୟକୁ ଦୁର୍ଭାର କରିବାର କାରଣ ହୋଇଛି । ଓଡ଼ିଆ ଭାଷାର ଶବ୍ଦ ଭଣ୍ଡାରକୁ ଦୁଇ ଖଣ୍ଡ କୋଷରେ ଆବଦ୍ଧ କରିବାର ଯୋଜନା ଅସମ୍ଭବ ପ୍ରମାଣିତ ହୋଇଛି । କୋଷଗ୍ରନ୍ଥକୁ ପାଞ୍ଚଗୋଟି ଭାଗ କରିବାପାଇଁ ସିଦ୍ଧାନ୍ତ ନିଆଯାଇଛି ଏବଂ ମୁଦ୍ରଣ ବ୍ୟୟ ଷାଠିଏ ହଜାର ଟଙ୍କାକୁ ବୃଦ୍ଧିପାଇଛି । ଗ୍ରନ୍ଥର କଳେବର କିପରି ସଂକୋଚନ କରାଯାଇପାରିବ, କର୍ମକର୍ତ୍ତାମାନେ ସେଥିପ୍ରତି ଯତ୍ନଶୀଳ ହୋଇଛନ୍ତି ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଭାଷାକୋଷ ଏକ ବର୍ଣ୍ଣନାତ୍ମକ ଅଭିଧାନ । ତେଣୁ ଗୋଟିଏ ଶବ୍ଦ ଯେଉଁ ଭିନ୍ନ ଭିନ୍ନ ରୀତିରେ ଲୋକମୁଖରେ ଉଚ୍ଚାରିତ ହୋଇଥାଏ, ପ୍ରହରାଜ ସେହି ଶବ୍ଦଗୁଡ଼ିକୁ ସ୍ୱତନ୍ତ୍ର ଭାବରେ ଉଲ୍ଲେଖ କରିଛନ୍ତି (ଦ୍ରଷ୍ଟବ୍ୟ : ପୁନ୍ନାଗ୍ର-୫) ଏବଂ ଏହାହିଁ ଗ୍ରନ୍ଥର ପୃଷ୍ଠା ବୃଦ୍ଧିର ଅନ୍ୟତମ କାରଣହୋଇଛି । ଦ୍ୱିତୀୟ ଖଣ୍ଡର ପ୍ରକାଶନ ପରେ ସଂକଳନର ଉକ୍ତ ଶୈଳୀ ପରିହାରପାଇଁ ସିଦ୍ଧାନ୍ତ ନେଇଛନ୍ତି । ତାଙ୍କରି ଶବ୍ଦରେ କହିଲେ –

୧. ଧ୍ୱନିରେ ସାମଞ୍ଜସ୍ୟ ଥିବା ଦୁଇଟି ଏକାର୍ଥକାରକ ଶବ୍ଦକୁ ଦୁଇଟି ସ୍ୱତନ୍ତ୍ର ମୂଳ ଶବ୍ଦ ରୂପେ ନ ଲେଖି ବନ୍ଧନୀ ସାହାଯ୍ୟରେ ଗୋଟିଏ ଶବ୍ଦ ପରି ଲେଖାଯାଇଛି, ଯଥା – ଖୋଜାଇବ, ଖୋଜାଇବା, ଇତ୍ୟାଦି ।

୨. ଏକ ପ୍ରକୃତି ନିଷ୍ପନ୍ନ ଏକାଧିକ ଶବ୍ଦକୁ ସ୍ୱତନ୍ତ୍ର ରୂପେ ନ ରଖି, ସେଥିରୁ ଗୋଟିଏ ମୂଳ ଶବ୍ଦ ରୂପେ ଓ ଅନ୍ୟମାନଙ୍କୁ ସେହି ଶବ୍ଦର ତଳେ ନୋଟ୍ ଦିଆଯାଇଛି ।

୩. ଯେଉଁ ଶବ୍ଦମାନ ଭାଷାର ଏକାଧିକ ଆକାରରେ ବ୍ୟବହୃତ ହୁଏ, ତହିଁରୁ ଗୋଟିକୁ ମୂଳ ରୂପେ ରଖାଯାଇ, ଅନ୍ୟ ଆକାରମାନଙ୍କୁ ତହିଁ ତଳେ ଅନୁରୂପ ଭାବେ ନୋଟ୍ କରାଯାଇଛି । କାରଣ ଅଭିଧାନକୁ ମୁଦ୍ରଣ ଦୃଷ୍ଟିରୁ ରୁଚିପୂର୍ଣ୍ଣ କରିବା ହୋଇଛି ତାଙ୍କର ଅନ୍ୟତମ ଉଦ୍ଦେଶ୍ୟ ।

ଯଥା – ଡମାଉଲ > ଡମାଡୌଲ > ଡମାଡୋଲ୍

୪. ପ୍ରଥମେ କେତେଗୋଟି କାଣ୍ଡରେ ପ୍ରତ୍ୟେକ ପୃଷ୍ଠାର ଶିରୋନାମାରେ ବର୍ଣ୍ଣମାଳା ସଂପର୍କରେ ଯେଉଁ ସାଧାରଣ ସଂକେତମାନ ସୂଚିତ ହୋଇଥିଲା, ପରବର୍ତ୍ତୀ କାଳରେ ସଂକେତମାଳାକୁ ପ୍ରତ୍ୟେକ ପୃଷ୍ଠାରେ ଉଲ୍ଲେଖ ନ କରି ୫୦ ବା ୧୦୦ ପୃଷ୍ଠାର ପ୍ରଦାନ କରାଯାଇଛି । ପ୍ରକାଶ ଥାଉକି, ଭାଷାକୋଷର ଉଚ୍ଚାରଣଗତ ସଂକେତ ପ୍ରଦାନ ରୀତି ହିଁ ଇଂରାଜୀ ଓଏବ୍‌ଷ୍ଟର ଡିକ୍‌ସନାରୀର ଅନୁରୂପ ।

ଓଏବ୍‌ଷ୍ଟର ଡିକ୍‌ସନାରୀର ବାମ ପାର୍ଶ୍ୱ ପୃଷ୍ଠାରେ –

Fate, Far, Fall, Final, Cane, At, Mete, Prey, Her, Met, Pine, Marine, Bird, Pin, Note, Move, For, Aton, Not, Moon, Book

ଏବଂ ଦକ୍ଷିଣ ପାର୍ଶ୍ୱରେ –

Use, Bull, Brut, Turn, Up, Cry, Myth, Cat, Machine, Ace, Church, Chord, Gem, Anger, (Fr.), Bari, As, This, Thin, Azure.

a-fate, a-far, a-fast, a-fall, a-rinal, a-care, a-at, o, o, o, o, o, etc.

ପ୍ରଦତ୍ତ ନିର୍ଦ୍ଦେଶପରି, ଭାଷାକୋଷରେ ରହିଛି -

ବାମପାର୍ଶ୍ୱ ପୃଷ୍ଠା –

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ଦୁଇ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରା-ଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଗାଈ ନ ମିଳିଲେ ଗାଇ ଖୋଜିବେ, କୂଅ ନ ମିଳିଲେ କୁଅ ଖୋଜିବେ, ବନ୍ଧୁ ନ ମିଳିଲେ ବନ୍ଧୁ ଦେଖିବେ, ଆଞ୍ଜା ନ ପାଇଲେ ଆଞ୍ଜା ଦେଖିବେ, ଅଲବଦ୍ ନ ପାଇଲେ ଅଲ୍‌ବଦ୍ ଦେଖିବେ ।

ଗ୍ରନ୍ଥର ଦକ୍ଷିଣ ପାର୍ଶ୍ୱରେ

... ଏ ହସନ୍ତ, ଅନୁନାସିକ, କ୍ଷ ଦ ଶ ଞ୍ଛ ଇୟ ଉ ଅ ହ୍ନ ୧-ଇ, ଉ, ର, ବର୍ଣ୍ଣ ଯୁକ୍ତାକ୍ଷର ଷ

ଅନୁସ୍ୱାର

ଅକାରାନ୍ତ ବା ଖ୍ୟ, ଯ ସ ଗ୍ୟଁ ଇଅ ଓ୍ୱ ନ ୨ ଇ ଉ ରୁ କୁ ଯେ ବର୍ଣ୍ଣ ଚନ୍ଦ୍ରବିନ୍ଦୁ ଯୁକ୍ତବର୍ଣ୍ଣ

ଏହିପରି ପଦ୍ଧତି ଅବଲମ୍ବନ କରିବାପାଇଁ, ବାସ୍ତବତଃ, ତାଙ୍କୁ ହରିଶ୍ଚନ୍ଦ୍ର ବଡ଼ାଳ ହିଁ ବାରମ୍ବାର ସଚେତନ କରିଦେଇଛନ୍ତି । (The Purnachandra Oriya Bhasakosa : The Baitarani Vol. vii, No vii and viii, 1933) ଏବଂ, ଏହା ସୁଫଳ ଦେଇଛି ।

ମାତ୍ର ଉପର୍ଯ୍ୟୁକ୍ତ ପଦକ୍ଷେପ ନେବା ସତ୍ତ୍ୱେ ଅଭିଧାନର ପୃଷ୍ଠା ସଂଖ୍ୟା କ୍ରମଶଃ ବଢ଼ିବାରେ ଲାଗିଛି । ଚତୁର୍ଥ ଭାଗ ପ୍ରକାଶନ ପରେ ଦେଖାଯାଇଛି ଯେ, ଏଥିରେ ମାତ୍ର ଦ, ଧ, ନ, ପ, ବ୍ୟଞ୍ଜନ ବର୍ଣ୍ଣାଦ୍ୟ ଶବ୍ଦଗୁଡ଼ିକ ହିଁ ସ୍ଥାନିତ ହୋଇଛି । ଗ୍ରନ୍ଥ ପଞ୍ଚମ ପରିବର୍ତ୍ତେ, ଷଷ୍ଠ ଖଣ୍ଡରେ ଶେଷ କରିବାପାଇଁ ସିଦ୍ଧାନ୍ତ ନିଆଯାଇଛି । ମାତ୍ର ଷଷ୍ଠ ଖଣ୍ଡ ଳ ଓ ଷ ବର୍ଣ୍ଣାଦ୍ୟ ଶବ୍ଦଗୁଡ଼ିକରେ ହିଁ ଶେଷ ହୋଇଯାଇଛି । ତେଣୁ ଅଭିଧାନକୁ ମୁଣ୍ଡି ମାରିବାକୁ ସପ୍ତମ ଖଣ୍ଡର ଆବଶ୍ୟକତା ପଡ଼ିଛି । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଅଭିଧାନ ପୃଷ୍ଠା ସଂକୋଚନ କରିବାପାଇଁ କେବଳ ପଦକ୍ଷେପ ନିଆଯାଇ ନାହିଁ, ପାଞ୍ଚ ଗୋଟି ଖଣ୍ଡରେ ଏହାକୁ ଯେକୌଣସି ଉପାୟରେ ଶେଷ କରିବା ଉଦ୍ଦେଶ୍ୟରେ ଚତୁର୍ଥ ଖଣ୍ଡଠାରୁ ପୃଷ୍ଠା ସଂଖ୍ୟା ୧୨ ଶହରୁ ୧୬ ଶହକୁ ବଢ଼ାଯାଇଛି । ମାତ୍ର ପ୍ରହରାଜଙ୍କ ସବୁ ପରିକଳ୍ପନା ଆପାତତଃ ବ୍ୟର୍ଥ ହୋଇଛି । କୋଷଗ୍ରନ୍ଥ ଶେଷକୁ ସପ୍ତକାଣ୍ଡୀ ହୋଇଛି ।

ଭାଷାକୋଷର ପ୍ରଥମ ଖଣ୍ଡ ପ୍ରକାଶ ପାଇଛି ୧୯୩୧ ମସିହା ସେପ୍ଟେମ୍ବର ମାସରେ । ଦଶମାସ ଅନ୍ତରରେ ଅନ୍ୟ କାଣ୍ଡଗୁଡ଼ିକର ପ୍ରକାଶନପାଇଁ ସେ ଯୋଜନା କରିଛନ୍ତି । ତେଣୁ ଯୋଜନା ଅନୁଯାୟୀ ୧୯୩୫ ମସିହା ମଧ୍ୟରେ ଏହା ଶେଷ ହେବା କଥା । ମାତ୍ର ଏହାର ଶେଷଭାଗ ପ୍ରକାଶ ପାଇଛି ୧୯୪୦ ମସିହା ସେପ୍ଟେମ୍ବର ମାସରେ । ଅର୍ଥାତ୍ ପ୍ରଥମରୁ ସପ୍ତମ ଖଣ୍ଡ ପ୍ରକାଶନ ମଧ୍ୟରେ ସମୟଗତ ବ୍ୟବଧାନ ଦଶବର୍ଷ । ତେଣୁ ପ୍ରକାଶନ ପୂର୍ବରୁ ଗ୍ରନ୍ଥର ଧାର୍ଯ୍ୟ ମୂଲ୍ୟ ବୃଦ୍ଧି ପାଇବା ସ୍ୱାଭାବିକ । ୧୯୩୦ ମସିହାରେ ଗ୍ରନ୍ଥର ପ୍ରତି ସାରକୁ ଟ ୪୦/-ରେ ବିକ୍ରିପାଇଁ ବିଜ୍ଞାପନ ପ୍ରକାଶ ପାଇଛି । ମାତ୍ର ପ୍ରକାଶକ ନିଜ ପ୍ରତିଶ୍ରୁତି ପାଳନ କରିପାରି ନାହାନ୍ତି । ପ୍ରତ୍ୟେକ ଖଣ୍ଡ ପ୍ରକାଶିତ ହେବା ପରେ, ପରବର୍ତ୍ତୀ ଖଣ୍ଡର ମୂଲ୍ୟ ଘୋଷଣା କରାଯାଇଛି । ଶେଷ ଖଣ୍ଡରେ, ସାତ ଖଣ୍ଡର ଅବନ୍ଧା ଓ ବନ୍ଧେଇ ଏକ ସେଟ୍‌ର ମୂଲ୍ୟ ଯଥାକ୍ରମେ ୧୫୦/-ଏବଂ ଏକ ଖଣ୍ଡକୁ, ଯଥାକ୍ରମେ ୨୦/- ଓ ୨୫/- ଟଙ୍କାରେ ଯୋଗାଇ ଦେବାକୁ ପ୍ରକାଶକ ଘୋଷଣା କରିଛନ୍ତି । ଏକ ଭାଷାର ଅଭିଧାନ ଗ୍ରନ୍ଥର ଏହି ମୂଲ୍ୟ ପାଠକମାନଙ୍କର କ୍ରୟ ଶକ୍ତିକୁ କିଛି କମ୍ ପ୍ରଭାବିତ କରିନି । ସମୟ ଆସିଛି, ବିଶିଷ୍ଟ ବ୍ୟକ୍ତିବିଶେଷ, ରାଜା, ମହାରାଜା, ଜମିଦାର ଓ ପ୍ରାଦେଶିକ ସରକାର ଅଭିଧାନ କିଣିବାପାଇଁ ପ୍ରତିଶ୍ରୁତି ଦେଇ ସୁଦ୍ଧା, ପରବର୍ତ୍ତୀ କାଳରେ ତାହା ପ୍ରତ୍ୟାହାର କରିନେଇଛନ୍ତି । ଗ୍ରାହକ ସଂଖ୍ୟା ଆଶାତୀତ ଭାବେ ହ୍ରାସପାଇଛି । ଗ୍ରନ୍ଥର

ବିକ୍ରି ସଂକ୍ରାନ୍ତ ବିବରଣୀ ଅନୁଶୀଳନ କଲେ ଜଣାଯାଏ, ସମକାଳରେ ମୋଟ ତିନି ଶହ ଅଶୀ ଜଣ ଅଗ୍ରିମ ଗ୍ରାହକ ସଂଗୃହୀତ ହୋଇଛନ୍ତି ଏବଂ ମାତ୍ର ସାତ ସାର ଅଭିଧାନ ଉପହାରସ୍ୱରୂପ ବିଭିନ୍ନ ବ୍ୟକ୍ତିବିଶେଷ ଓ ଅନୁଷ୍ଠାନକୁ ପ୍ରଦାନ କରାଯାଇଛି । ପ୍ରକାଶକଙ୍କ ଘରେ ସ୍ତୂପାୟିତ କୋଷଗ୍ରନ୍ଥକୁ ଦେଖି ବିଚରା ସଂକଳକଙ୍କ ହଂସା ଉଡ଼ିଯାଇଛି । ଗୋଦାମ ଖାଲିକରିବା ଉଦ୍ଦେଶ୍ୟରେ ଓଡ଼ିଶାର ପ୍ରାୟ ପ୍ରତ୍ୟେକ ବିଦ୍ୟାଳୟକୁ ଏକ ସେଟ୍ କରି ଅଭିଧାନ ସାହାଯ୍ୟସ୍ୱରୂପ ପ୍ରଦାନ କରିବାପାଇଁ ସେ ସିଦ୍ଧାନ୍ତ ନେଇଛନ୍ତି । ଗ୍ରନ୍ଥର ବିପୁଳ ଆକାର, ବନ୍ଧୁମାନଙ୍କର ପ୍ରତିଶ୍ରୁତି ପ୍ରତ୍ୟାହାର ଓ ଅବିକ୍ରିଜନିତ ଅସନ୍ତୋଷ ପ୍ରହରାଜଙ୍କୁ ବ୍ୟଥିତ କରିଛି ।

ସମକାଳୀନ ଚିନ୍ତାଶୀଳଙ୍କ ମଧ୍ୟରେ ଶ୍ରୀଯୁକ୍ତ ପ୍ରହରାଜ ଜଣେ ବ୍ୟତିକ୍ରମ । ନିଜ ଜୀବଦ୍ଦଶାରେ କୌଣସି ପରିସ୍ଥିତିରେ ଆଦର୍ଶ ଓ ବିଚାର ସହିତ ସାଲିସ୍ କରି ନାହାନ୍ତି । ତେଣୁ ଅଭିଧାନ ସମାପ୍ତିପାଇଁ ଅର୍ଥ ସମସ୍ୟା ତାଙ୍କୁ ଅବଶ୍ୟ ବ୍ୟଥିତ କରିଛି ସତ, ମାତ୍ର କବଳିତ କରିପାରି ନାହିଁ । ସେ ଭିକାରି ବେଶରେ ଗଡ଼ଜାତର ରାଜା ଓ ଜମିଦାରଙ୍କ ଉଆସ ଭିତରକୁ ଯାଇଛନ୍ତି । ଶତ୍ରୁପକ୍ଷର ନେତୃସ୍ଥାନୀୟମାନେ ତାଙ୍କ ବାଟରେ କଣ୍ଟା ପକେଇଛନ୍ତି । ଗଡ଼ଜାତ ଭ୍ରମଣ ସେତେ ଭଲ ଅମଳ ଦେଇନି । ଢେଙ୍କାନାଳର ରାଜା ମଜା ଦେଖିବାପାଇଁ ଦିନେ ସଞ୍ଜରେ ତାଙ୍କୁ ଘନ ଜଙ୍ଗଲ ଭିତରେ ଛାଡ଼ିଦେଇ ଆସିଛନ୍ତି । ସାରା ରାତି ସେ ଗଛ ସହିତ ମିତ ବସିଛନ୍ତି ଏବଂ ସକାଳୁ କଟକ ଫେରିଛନ୍ତି । ଜୀବନର ମାର୍ମିକ ଅନୁଭବକୁ ସେ ରମ୍ୟନୀତିରେ ପ୍ରକାଶ କରିଛନ୍ତି ''ଭାଷାକୋଷ ପାଇଁ ସଫର'' ଓ ''ସ୍ୱପ୍ନରେ ରାଜଯୋଗ'' ଶୀର୍ଷକ ଆଲୋଚନାରେ । ଯେଉଁ ରାଜା ଓ ବିଦ୍ୱାନ୍‌ମାନେ ତାଙ୍କୁ ସାହାଯ୍ୟ କରିଛନ୍ତି, ସେମାନଙ୍କର ପ୍ରଶସ୍ତି ଗାନରେ ସେ ଆଦୌ କୁଣ୍ଠିତ ହୋଇ ନାହାନ୍ତି । ଦାତାମାନଙ୍କ ନାମ ଭାଷାକୋଷର ମୁଖବନ୍ଧରେ ସେ ପ୍ରକାଶ କରିଛନ୍ତି । ଅର୍ଥସଂଗ୍ରହ ଓ ଅନ୍ୟ କାର୍ଯ୍ୟ ଉପଲକ୍ଷରେ ସେ ଯେତେବେଳେ ବାହାରକୁ ଯାଇଛନ୍ତି, ଭାଷାକୋଷକୁ ସାଥିରେ ନେଇଛନ୍ତି । ବନ୍ଧୁ ଓ ସାଧାରଣ ଲୋକମୁଖର କଥିତ ଶବ୍ଦଗୁଡ଼ିକୁ ଟିପାଖାତାରେ ସଂପାଦିଛନ୍ତି । ରାତିରେ କେଉଁଠି କେତେବେଳେ ଟିକିଏ ସମୟ ପାଇଲେ, ସଂଗୃହୀତ ଶବ୍ଦମାନଙ୍କ ସେବାରେ ଲାଗିପଡ଼ିଛନ୍ତି । ଭାଷାକୋଷପାଇଁ ଯେମିତି ସେ କୁମ୍ଭାର ଘର ବୋହୂ, ବଡ଼ ସରକାରୀ ହାକିମଙ୍କ ଅର୍ଦ୍ଦଳୀ On His Majesty's Service ଯେପରି ତାଙ୍କ ଜୀବନର ବ୍ରତ ହୋଇଛି । କାମରେ କୋଉଠି ଝୁଣ୍ଟି ପଡ଼ି ନାହାନ୍ତି କି ସମୟର ଅପଚୟ କରି ନାହାନ୍ତି । ପର୍ବତୋପମ ଆର୍ଥିକ ସମସ୍ୟା ତାଙ୍କୁ ସଜଫୁଲ ପରି ଲାଗିଛି ।

॥ ଚାରି ॥

ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ସଂକଳିତ ମୋଟ ଶବ୍ଦ ସଂଖ୍ୟା ପ୍ରାୟ ଏକ ଲକ୍ଷ ପଞ୍ଚାଅଶୀ ହଜାର । ସାତଗୋଟି ଖଣ୍ଡର ପୃଷ୍ଠା ସଂଖ୍ୟା ନ' ହଜାର ପାଞ୍ଚ ଶହ ତିନି । ଓଡ଼ିଆ ଭାଷାର ପ୍ରଚଳିତ, ଅପ୍ରଚଳିତ, ଲୋକ କଥିତ (ଘରୋଇ), ଆଞ୍ଚଳିକ, ବୈଦେଶିକ, ତଦ୍‌ସମ ଶବ୍ଦଗୁଡ଼ିକର ଏହା କୋଠଘର । ଏଥିରେ ବ୍ୟୟିତ ଅର୍ଥର ପରିମାଣ ପ୍ରାୟ ଏକ ଲକ୍ଷ ପଚାଶ ହଜାର ଏବଂ ଗ୍ରନ୍ଥ ସମାପ୍ତିର ସମୟ ସୀମା ୧୯୧୩ରୁ ୧୯୪୦ ମସିହା ପର୍ଯ୍ୟନ୍ତ ପ୍ରାୟ ସତେଇଶ ବର୍ଷ ।

ଏକ ଭାଷାକୋଷର ବିଭବ – ଏଥିରେ ସଂଯୋଜିତ ଶବ୍ଦ । ଏକ ଜୀବନ୍ତ ଭାଷାର କେଉଁ କେଉଁ ଶବ୍ଦ, କେଉଁ ପଦ୍ଧତିରେ କୋଷଗ୍ରନ୍ଥରେ ସ୍ଥାନିତ ହେବ, କୋଷବିଜ୍ଞାନୀମାନେ ତଦ୍‌ସମ୍ବନ୍ଧରେ ବିଶଦ ଆଲୋଚନା କରିଛନ୍ତି । କେତେକ ବିଦ୍ୱାନ୍, ସାହିତ୍ୟରେ ଉଲ୍ଲିଖିତ ଏବଂ ଅନ୍ୟ କେତେକ ଦେଶ ପ୍ରଚଳିତ୍ ସମସ୍ତ ଶବ୍ଦ ଗ୍ରନ୍ଥର ସମ୍ପଦ ହେବା ସମ୍ପର୍କରେ ଯୁକ୍ତି କରିଛନ୍ତି ଏବଂ ଅଭିଧାନ ଶବ୍ଦାର୍ଥର କେବଳ ତାଲିକା ନୁହେଁ; ସେଗୁଡ଼ିକର ଉତ୍ପତ୍ତି, କ୍ରମବିକାଶ, ବ୍ୟବହାର, ଜାତି (ପ୍ରକାର) ଓ ଇତିହାସର ଆପାତଃ ଅପବାଦରହିତ ଆକର ଗ୍ରନ୍ଥ ହେବା ଉଚିତ ବୋଲି ସେମାନେ ମତବ୍ୟକ୍ତ କରିଛନ୍ତି । କାରଣ କୌଣସି ଶବ୍ଦ ବ୍ୟକ୍ତିର ଭାବପ୍ରକାଶର ମାଧ୍ୟମ ନୁହେଁ, ଏକ ଜାତିର ସଂସ୍କୃତି, ଜୀବନ ଓ ପରିବର୍ତ୍ତିତ ସାମାଜିକ ଓ ରାଜନୀତିକ୍ ଇତିହାସର ମଧ୍ୟ ପ୍ରତୀକ । ତେଣୁ ଅଭିଧାନ ସଂକଳନ କେବଳ ଜଣେ ଭାଷାଶାସ୍ତ୍ରୀର ପାଣ୍ଡିତ୍ୟର ଉଚ୍ଚାରଣ ନୁହେଁ; ସମାଜବିଜ୍ଞାନୀ, ଐତିହାସିକ, ନୃତତ୍ତ୍ୱବିତ୍, ସାହିତ୍ୟିକ, ବୈଜ୍ଞାନିକମାନଙ୍କ ମନନ, ଅଧ୍ୟୟନ ଓ ବିଚାରର ନିରପେକ୍ଷ ଅଭିବ୍ୟକ୍ତି । ଏହି ଦୁରୂହ କାର୍ଯ୍ୟ ସଂପାଦନ ସଂପୃକ୍ତ ସମୂହର କାର୍ଯ୍ୟଦକ୍ଷତା, ସାଧନା ଓ ନିଷ୍ଠାର ପ୍ରସଙ୍ଗ ।

ଗୋପାଳ ଚନ୍ଦ୍ର ପ୍ରହରାଜ ଜଣେ ଅଭିଧାନକାରର ଆଦର୍ଶ ସମ୍ପର୍କରେ ସଚେତନ ରହିଛନ୍ତି । ସେ ଅନୁଭବ କରିଛନ୍ତି – ଭାଷା ଏକ ଚିରସ୍ରୋତା ନଦୀ । ଏକ ଜୀବନ୍ତ ଭାଷାର ଶବ୍ଦସଂଖ୍ୟା ବଢ଼ିବଢ଼ି ଚାଲେ । ଲିଖିତ ଭାଷା, ଲୋକମୁଖରେ କେତେ ବାଗରେ ବଦଳି ଯାଉଥାଏ । ତୁଣ୍ଡରେ ବଦଳିଯାଉଥିବା ଶବ୍ଦ, ଲିଖିତ ରୂପ ନେଉଥାଏ । ତେଣୁ ''ଲୋକମୁଖରେ ହେଉ ବା ପୁସ୍ତକରେ ହେଉ, ଦେଶ ବିଶେଷରେ ହେଉ ବା ଜାତି ବିଶେଷରେ ହେଉ, ଯେଉଁଠାରେ ସେ ଗୋଟିଏ ଶବ୍ଦ ଏକାଧିକ ଲୋକଙ୍କଦ୍ୱାରା ବ୍ୟବହୃତ ହେଉଥିବାର ଦେଖିବେ, ତାହା ସଂଗ୍ରହ କରିଆଣି ଅଭିଧାନରେ ରଖିଦେବେ । ×× ଅଭିଧାନର ଶବ୍ଦ ସଂକଳୟିତାଙ୍କର କେବଳ ମାତ୍ର ଶବ୍ଦ ସଂଗ୍ରହ ଓ ଶବ୍ଦାର୍ଥ ଲିପିବଦ୍ଧ କରିବା କର୍ତ୍ତବ୍ୟ । ×× କିଏ ଶୁଦ୍ଧ, କିଏ ଅଶୁଦ୍ଧ, କେଉଁ ନିୟମ (principle) ଅନୁସାରେ ବା କେଉଁ ଆଦର୍ଶ (standard) ଅନୁସାରେ ଶବ୍ଦର ଶୁଦ୍ଧି ଅଶୁଦ୍ଧି ନିର୍ଣ୍ଣୀତ ହେବ, ତାହା ଅଭିଧାନକାରଙ୍କ ଇଲାକା ନୁହେଁ ! ×× ଦେଶାଙ୍ଗ ପ୍ରଚଳିତ, ଇତରଜନ ବ୍ୟବହୃତ ଶବ୍ଦମାନ, ଜନସାଧାରଣ ଯାହାକୁ ×× ଉଚ୍ଚାରଣ ଓ ଅର୍ଥ ଦୃଷ୍ଟିରୁ ଅଶୁଦ୍ଧ କହନ୍ତି ×××× (ଚାଉର, ବଉର, ଗଡ଼, ପରଚନ୍ଥୁ,

ଚରୁ ×× ଗୁଡ଼, ଗୋଡ଼) ସେଗୁଡ଼ିକ ସ୍ଥାନ ପାଇବା ଉଚିତ । ×× ଉକ୍ତ ଶବ୍ଦଗୁଡ଼ିକର ଅର୍ଥ ସଙ୍ଗେ ତହିଁର ନୋଟ୍ ଦେବା ଉଚିତ । ପରନ୍ତୁ ଏପରି ପ୍ରୟୋଗକୁ ଅଶୁଦ୍ଧି କହିବାରେ ଆପତ୍ତି ନାହିଁ । କିନ୍ତୁ ଗୋଟିଏ ପ୍ରଚଳିତ ଶବ୍ଦକୁ ଏକାବେଳକେ ଅଭିଧାନର ହତାରୁ ବାହାର କରି ଦେଲେ, ଉକ୍ତ ଅଭିଧାନଟି ଅସଂପୂର୍ଣ୍ଣ ରହିଯିବ । (ପୂ.ଓ.ଭା. ମୁଖବନ୍ଧ, ପ୍ରଥମ ଖଣ୍ଡ) ବୋଲି ସେ ଦୃଢ଼ ଭାବରେ ଘୋଷଣା କରିଛନ୍ତି । ସେ ଏକଥା ମଧ୍ୟ କହିଛନ୍ତି, ''କଥିତଭାଷାରେ ଓ ଲିଖିତ ସାହିତ୍ୟରେ ଯେଉଁ ଶବ୍ଦଗୁଡ଼ିକ ସାଧାରଣତଃ ବ୍ୟବହୃତ ହେଉଥିବାର ଦେଖାଯାଏ, ସେଗୁଡ଼ିକର ଆକ୍ଷରିକ, ପ୍ରାକୃତିକ ଓ ପ୍ରଚଳିତ ଅର୍ଥ, ବ୍ୟବହାର, ଇତିହାସ, ପ୍ରକୃତି ଆଦି ଲିପିବଦ୍ଧ କରି ରଖିବା ଅଭିଧାନ ସଂକଳକଙ୍କର କର୍ତ୍ତବ୍ୟ ଏବଂ ଶବ୍ଦଗୁଡ଼ିକର ଅଶୁଦ୍ଧତା ଓ ବିଶୁଦ୍ଧତା ନିରୂପଣ ଭାଷାତତ୍ତ୍ୱବିତ୍ ଓ ସାହିତ୍ୟିକମାନଙ୍କର ଧର୍ମ । (ପୂ.ଓ.ଭା.ମୁଖବନ୍ଧ. ପ୍ରଥମ ଖଣ୍ଡ) ତେଣୁ ଦେଶଜ ଶବ୍ଦଗୁଡ଼ିକର ସଂଗ୍ରହ ଓ ସଂକଳନ କାଳରେ ସେଗୁଡ଼ିକୁ ''ଗ୍ରାମ୍ୟବ୍ୟବହାର, କଥାବାର୍ତ୍ତା ବା ଲେଖାରେ ବ୍ୟବହୃତ, ଅଶୁଦ୍ଧ ଉଚ୍ଚାରଣ, ମାର୍ଜିତ, ସାହିତ୍ୟରେ ପରିହାର୍ଯ୍ୟ'' ଆଦି ଉପବିଭାଗରେ ବିଭକ୍ତ କରିଛନ୍ତି । ଧ୍ୱନିତାତ୍ତ୍ୱିକ ଓ ପ୍ରୟୋଗବିଧି ଆଧାରରେ ବିଚାର କଲେ, ପ୍ରହରାଜଙ୍କ ଯୁକ୍ତିକୁ ବିଜ୍ଞାନସମ୍ମତ ବୋଲାଯାଇପାରେ ।

ଓଡ଼ିଆ ଭାଷାରେ ଲୋକମୁଖରେ କଥିତ ଶବ୍ଦର ଗ୍ରନ୍ଥାୟନପାଇଁ ପ୍ରଥମେ ଆଗ୍ରହ ପ୍ରକାଶକରିଛନ୍ତି ରେଭରେଣ୍ଡ ଆମସ୍ ସଟନ୍ । ଶ୍ରୀ ଭୁବନାନନ୍ଦ ନ୍ୟାୟାଳଂକର ପରି ଓଡ଼ିଆ ପଣ୍ଡିତ ତାଙ୍କୁ ଏହି କାର୍ଯ୍ୟରେ ସହଯୋଗ କରିଛନ୍ତି । ଉଭୟ ପଣ୍ଡିତ ଏତେ ଭାବରେ ଦୁଃସାହସୀ ଯେ, ଶବ୍ଦର ଶ୍ଳୀଳତା ଓ ଅଶ୍ଳୀଳତା ବିଷୟରେ ମଧ୍ୟ ମଥା ଖେଳେଇ ନାହାନ୍ତି । ନାରୀର ଜନନେନ୍ଦ୍ରିୟ କୈନ୍ଦ୍ରିକ ଅଶ୍ଳୀଳ ଶବ୍ଦକୁ ନିର୍ବିକାରରେ ସଂକଳିତ କରିଛନ୍ତି । ଲୋକମୁଖର ଉଚ୍ଚାରଣ ଉପରେ ଗୁରୁତ୍ୱ ଦେଇଛନ୍ତି । ସଟନଙ୍କର ଅନେକ ପରେ, ୧୯୧୬ ମସିହାରେ ତାଙ୍କ ଆଦର୍ଶର ପୁନର୍ମୂଲ୍ୟାୟନ କରିଛନ୍ତି ପଣ୍ଡିତ ଗୋପୀନାଥ ନନ୍ଦଶର୍ମା । ଆପଣାର 'ଶବ୍ଦତତ୍ତ୍ୱବୋଧ ଅଭିଧାନ' ସଂକଳନ କାଳରେ ଲୋକମୁଖର ଉଚ୍ଚାରଣ ଉପରେ ସେ ଗୁରୁତ୍ୱ ଦେଇଛନ୍ତି । ଶ, ଷ, ସ; ଇ, ଈ; ରୁ, ର, ଆଦି ବର୍ଣ୍ଣଗୁଡ଼ିକର ଲିଖନ କାଳରେ, ଲୋକମୁଖକୁ ସେ ସମ୍ମାନ ଦେଇଛନ୍ତି । ସେମାନଙ୍କ ତୁଣ୍ଡର ସ୍ୱାଧୀନତାକୁ ସେ ମୂର୍ଖତା ରୂପରେ ମୂଲ୍ୟାୟନ କରି ନାହାନ୍ତି । ଉଚ୍ଚାରଣଗତ ବୈଚିତ୍ର୍ୟର କାରଣର ବ୍ୟାଖ୍ୟା କରିଛନ୍ତି । ଶବ୍ଦଗୁଡ଼ିକର ଉତ୍ପତ୍ତି ଓ ଉଚ୍ଚାରଣର ଉତ୍ସ ଖୋଜି ଖୋଜି ପ୍ରାକୃତ ଓ ଅପଭ୍ରଂଶ ସାହିତ୍ୟ ପାଖରେ ପହଞ୍ଚିଛନ୍ତି । ମାତ୍ର ଅଭିଧାନ ଗ୍ରନ୍ଥ ପ୍ରକାଶ ପାଇବା ମାତ୍ରକେ ହିଁ ସେ ଅଶାଳୀନ ଓ କଠୋର ସମାଲୋଚନାର ଶରବ୍ୟ ହୋଇଛନ୍ତି । ଏକ କୋଷଗ୍ରନ୍ଥକୁ କେନ୍ଦ୍ର କରି ଓଡ଼ିଶାର ପଣ୍ଡିତମାନେ ଦୁଇ ଗୋଷ୍ଠୀରେ ବିଭକ୍ତ ହୋଇଛନ୍ତି । ଓଡ଼ିଆ ସାହିତ୍ୟର କ୍ଷେତ୍ରପାଳ ଭାବରେ ନିଜ ନିଜ ଅହଂକାର ଭିତରେ ବିହରୁଥିବା କଟକ ସହରର ସାହିତ୍ୟ ବିଶାରଦମାନଙ୍କ ସଙ୍ଗଠନ 'ଉତ୍କଳ ସାହିତ୍ୟ ସମାଜ' କୀର୍ତ୍ତନର ମଣ୍ଡପ ହୋଇଛି ଏବଂ ଅନ୍ୟ ପକ୍ଷରେ ଦକ୍ଷିଣୀ ପଣ୍ଡିତ ନନ୍ଦ ମହାଶୟଙ୍କୁ ନିର୍ଭୁଲ ପ୍ରମାଣିତ କରିବାପାଇଁ ସଂକଳ୍ପ କରିଛନ୍ତି ଶ୍ରୀଯୁକ୍ତ

ଶଶିଭୂଷଣ ରଥ ଓ ଅନ୍ୟ ସମଧର୍ମାମାନେ । ଶ୍ରୀଯୁକ୍ତ ରଥଙ୍କୁ ମଧ୍ୟ ସମର୍ଥନ କରିଛନ୍ତି ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ ଆଦି ସତ୍ୟବାଦୀ ଗୋଷ୍ଠୀର ତରୁଣ ଓ ଶ୍ରୀଯୁକ୍ତ ଫକୀରମୋହନ ସେନାପତିଙ୍କ ପରି ବୟସ୍କମାନେ । *ଆଶା* ପତ୍ରିକା ସେମାନଙ୍କର ବିଚାରର ମୁଖପତ୍ର ହୋଇଛି । କଟକ ଶିବିରର ନେତୃତ୍ୱ ନେଇଛନ୍ତି ଶ୍ରୀ ଗୌରୀଶଙ୍କର ରାୟ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ପଣ୍ଡିତ ପୁରୁଷୋତ୍ତମ ତର୍କାଳଙ୍କାର ଓ ଅନ୍ୟମାନେ । 'ଓଡ଼ିଆ ଓ ନବସମ୍ବାଦ' (ପତ୍ରିକା) ମଧ୍ୟ ଶ୍ରୀ ଗୌରୀଶଙ୍କରଙ୍କୁ ସମର୍ଥନ କରିଛି । 'ଉତ୍କଳ ଦୀପିକା' ସମ୍ବାଦପତ୍ରର ଏପ୍ରିଲ୍ ମାସ ଏକ ତାରିଖରେ 'ଉତ୍କଳ ସାହିତ୍ୟ ସମାଜର ଜନୈକ ସଭ୍ୟ'ଙ୍କ ନାଁରେ ପ୍ରକାଶିତ ଅଭିଧାନ ସଂକ୍ରାନ୍ତ ଏକ ପତ୍ରରୁ ମସୀ-ସମରର ଶୁଭାରମ୍ଭ ହୋଇଛି ଏବଂ ଏହା ଚାଲୁ ରହିଛି ସେପ୍‌ଟେମ୍ବର ମାସ ପର୍ଯ୍ୟନ୍ତ । ଉତ୍କଳ ସାହିତ୍ୟ ସମାଜ ତରଫରୁ ପଣ୍ଡିତ ମୃତ୍ୟୁଞ୍ଜୟଙ୍କୁ ଅଭିଧାନ ସମ୍ପର୍କରେ ପ୍ରବନ୍ଧ ପାଠପାଇଁ ଅନୁରୋଧ କରାଯାଇଛି ଏବଂ ପ୍ରବନ୍ଧପାଠର ଆବଶ୍ୟକତା, ସମାଜର ଅଧିକାର ସଂକ୍ରାନ୍ତରେ ମଧ୍ୟ ପ୍ରଶ୍ନ ଉଠିଛି । ପାରଳାଖେମୁଣ୍ଡିର ମଦନ ମୋହନ ଦାସ, ଏକ ପତ୍ରରେ, ଅଭିଧାନର ସମାଲୋଚକଙ୍କୁ "ଦେଶ ମଧ୍ୟରେ ଯଦି ଏଭଳି ଦୁରାଚାରୀ, ଦୁରାଲୋଚକ ବାହାରନ୍ତି, ଦେଶର ନେତୃସ୍ଥାନୀୟ ପତ୍ରିକା ସମ୍ପାଦକମାନେ ଯଦି ଭଲମନ୍ଦ ବିଚାର ନ କରି ସେମାନଙ୍କୁ ପ୍ରଶ୍ରୟ ଦିଅନ୍ତି, ତେବେ ଏ ହତଭାଗ୍ୟ ଦେଶରେ ଅମୃତ କାହିଁକି ବିଷରେ ପରିଣତ ନ ହେବ ?" (ଉତ୍କଳ ଦୀପିକା – ଏପ୍ରିଲ୍, ୧୯୧୬) ଏବଂ ସ୍ୱୟଂ ଗୌରୀଶଙ୍କର, ଫକୀରମୋହନ ସେନାପତିଙ୍କୁ ଏକ ପତ୍ରରେ "ବୟୋବୃଦ୍ଧ ଉତ୍କଳ ସରସ୍ୱତୀ ଫକୀରମୋହନଙ୍କୁ ପଚାରୁ, ଅନୁଗ୍ରହ କରି ଏଥିର ମୀମାଂସା କରିବେ । ନ କରିଲେ, କି ନ କରି ଦେଲେ ଦୋଷ କାହାର ? ×× ମୂର୍ଖକୁ ମାର୍ଗ ନାହିଁ କି ବଡ଼ ଲୋକଙ୍କୁ ଉତ୍ତର ନାହିଁ ×× ଏତେ ଦୋଷ ଫକୀରମୋହନଙ୍କ ଦୃଷ୍ଟିରେ ପଡ଼ିଲା ନାହିଁ । ନ ପଡ଼ିଲେ ଦୋଷ କାହାର ? ଅବଶ୍ୟ ଦୃଷ୍ଟିର ଦୋଷ । ଆମ୍ଭେ କହୁଁ, ସେ ଚଷମା ଦିଅନ୍ତି ନାହିଁ । ନିଜ ପାଇଁ ସିନା ଦିଅନ୍ତି ନାହିଁ, କିନ୍ତୁ ପରକାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବାକୁ ହେଲେ ପରଚକ୍ଷୁ ଅତ୍ୟାବଶ୍ୟକ । ଅଳମତି ବିସ୍ତରେଣ । (ଉ.ଦୀପିକା ୨୦, ମେ ୧୯୧୬)* ଉପର୍ଯ୍ୟୁକ୍ତ ପ୍ରସଙ୍ଗ ଏଠାରେ ଉଲ୍ଲେଖ କରିବାର କାରଣ – ଏକ ଶବ୍ଦକୋଷରେ ଦେଶଜ ତଦ୍‌ସମ, ତଦ୍ଭବ ଶବ୍ଦର ଗ୍ରାମ୍ୟ ଉଚ୍ଚାରଣର ସଂଯୋଜନକୁ କେନ୍ଦ୍ରକରି ବୟସ୍କମାନଙ୍କ ମଧ୍ୟରେ ଯେଉଁ ବାକ୍-ସମର ଆକାଶାୟିତ ହୋଇଛି, ଲୋକମନସ୍କ ଗୋପାଳ ଚନ୍ଦ୍ର ପ୍ରହରାଜ ବେଶ୍ ସଚେତନ ଭାବରେ ତାହାର ପୁଲକ ଅନୁଭବ କରିଛନ୍ତି । ଗ୍ରାମ୍ୟପ୍ରୀତିର ପରାଭବ ଯେ ଦିନେ ତାଙ୍କୁ ଭୋଗିବାକୁ ହେବ, ସେଥିପାଇଁ ମାନସିକ ସ୍ତରରେ ସେ ନିଜକୁ ପ୍ରସ୍ତୁତ କରିପାରିଛନ୍ତି ଏବଂ ତାହାହିଁ ହୋଇଛି ।

* ବିଶେଷ ଦ୍ରଷ୍ଟବ୍ୟ : ଶବ୍ଦତତ୍ତ୍ୱବୋଧ ଅଭିଧାନ ଓ ପଣ୍ଡିତ ଗୋପୀନାଥ ନନ୍ଦ, ଗୌରାଙ୍ଗ ଚରଣ ଦାଶ, ଏଷଣା : ଜୁନ : ୨୦୦୩, ସଂଖ୍ୟା ।

ଗ୍ରାମ୍ୟ ଶବ୍ଦଗୁଡ଼ିକ ବ୍ୟତୀତ, ସଂକଳକ ତତ୍‌ସମ, ତଦ୍‌ଭବ ଓ ବୈଦେଶିକ ଶବ୍ଦଗୁଡ଼ିକର ଉତ୍ପତ୍ତି, ପ୍ରୟୋଗ, ବ୍ୟାକରଣିକ, ଆଭିଧାନିକ ଓ ବ୍ୟଞ୍ଜିତ ରୂପ ସଂକ୍ରାନ୍ତରେ ଉଲ୍ଲେଖ କରିଛନ୍ତି । ଉଦାହରଣ ମାଧ୍ୟମରେ ଅନେକ ଶବ୍ଦର ପ୍ରୟୋଗ-ବୈଚିତ୍ର୍ୟ ମଧ୍ୟ ପ୍ରତିପାଦିତ କରିଛନ୍ତି । ମୁଖ୍ୟତଃ ଆରବୀ, ଇଂରାଜୀ, ଇତାଲୀୟ, ଉର୍ଦ୍ଦୁ, ଗୁଜୁରାଟୀ, ମହାରାଷ୍ଟ୍ରୀ, ହିନ୍ଦୀ, ହିବ୍ରୁ, ତେଲୁଗୁ, ତାମିଲ, ଦ୍ରାବିଡ଼, ପର୍ତ୍ତୁଗୀଜ୍, ଫରାସୀ, ବଙ୍ଗଳା, ତୁର୍କୀ ଆଦି ଭାଷାର ଶବ୍ଦଗୁଡ଼ିକର ନୋଟ୍ ପ୍ରଦାନ କରିଛନ୍ତି । ଏତଦ୍‌ବ୍ୟତୀତ ଗଣିତ, ଜ୍ୟୋତିଷ, ଆଇନ୍, ପ୍ରାଣିବିଜ୍ଞାନ, ଉଦ୍ଭିଦବିଜ୍ଞାନ, ଜ୍ୟାମିତି, ଭୂଗୋଳ, ତର୍କ, ଦର୍ଶନ, ଇତିହାସ, ରସାୟନ ଓ ପଦାର୍ଥବିଜ୍ଞାନ ଆଦି ବିଭିନ୍ନ ବିଦ୍ୟାବିଷୟକ ଶବ୍ଦଗୁଡ଼ିକର ସଂପର୍କରେ ସୂଚନା ଦେଇଛନ୍ତି । ଏଥିପାଇଁ ସଂପୃକ୍ତ ବିଦ୍ୟାବିଷୟକ କୋଷଗ୍ରନ୍ଥ ଓ ତଦ୍‌ବିଦ୍‌ମାନଙ୍କର ସାହାଯ୍ୟ ନେଇଛନ୍ତି । କୋର୍ଟ କଚେରିର ପ୍ରଚଳିତ ଶବ୍ଦଗୁଡ଼ିକର ସଂଯୋଜନ ଭାଷାକୋଷର ଅନ୍ୟ ଏକ ବିଶେଷତ୍ୱ । ଜଣେ ଆଇନ୍‌ଜୀବୀ ଥିବାରୁ କଚେରିଆ ଭାଷା ସହିତ ତାଙ୍କର ଅନ୍ତରଙ୍ଗ ପରିଚୟ ଥିଲା । ତେଣୁ, ଏଥିପାଇଁ, ତାଙ୍କୁ ପ୍ରାୟତଃ ଅନ୍ୟର ସାହାଯ୍ୟ ନେବାକୁ ପଡ଼ି ନାହିଁ । ଏତଦ୍‌ବ୍ୟତୀତ, ସେ କାବ୍ୟନାଟକରେ ବିଶେଷ ଭାବରେ ବ୍ୟବହୃତ ଶବ୍ଦ ଓ କେତେକ ଶବ୍ଦର ବିପରୀତ ଅର୍ଥ ସଂକ୍ରାନ୍ତ 'ନୋଟ୍' ମଧ୍ୟ ଉଲ୍ଲେଖ କରିଛନ୍ତି ।

ସଂକଳିତ ଶବ୍ଦଗୁଡ଼ିକର ଉତ୍ପତ୍ତି ଓ ରୂପ ନିରୂପଣ କାଳରେ ସଂକଳକ ବ୍ୟାକରଣବିଦ୍ ଓ ଭାଷାବିଜ୍ଞାନୀମାନଙ୍କର ସାହାଯ୍ୟ ନେଇଛନ୍ତି । ଶବ୍ଦଗୁଡ଼ିକର ବ୍ୟାକରଣିକ ରୂପ ସମ୍ପର୍କରେ ସୂଚନା ଦେବାକୁ ଯାଇ ବିଭକ୍ତି, କ୍ରିୟା, ସର୍ବନାମ, ବଚନ, ଲିଙ୍ଗ, କାରକ, ଅବ୍ୟୟ, କ୍ରିୟା ବିଶେଷଣ, ବିଶେଷଣର ବିଶେଷଣ, ସନ୍ଧି, ସମାସ ଆଦିର ବ୍ୟାଖ୍ୟା କରିଛନ୍ତି । ମାତ୍ର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ – ଅଭିଧାନରେ ପାଲୀ ଓ ପ୍ରାକୃତ ଭାଷା ସଂପର୍କରେ ସୂଚନା ରହିଥିଲେ ସୁଦ୍ଧା, ତଦ୍‌ଭବ ଶବ୍ଦଗୁଡ଼ିକ କେଉଁ ବିଶେଷ ରୀତିରେ ଲୋକମୁଖରେ ବିବର୍ତ୍ତିତ ହୋଇ ସାଂପ୍ରତିକ ରୂପ ପରିଗ୍ରହ କରିଛି, ତଦ୍‌ସଂକ୍ରାନ୍ତରେ ଆଦୌ ସୂଚନା ଦେଇ ନାହାନ୍ତି । ତେଣୁ ଭାଷାକୋଷରେ ବହୁ ଶବ୍ଦର ରୂପଗତ ଐତିହାସିକ ଅନୁଶୀଳନ କରାଯାଇ ନାହିଁ କହିଲେ ଅପଳାପ ହେବ ନାହିଁ । ମାତ୍ର ଅନେକତ୍ର ଶବ୍ଦଗୁଡ଼ିକର ଅର୍ଥଗତ ପରିବର୍ତ୍ତନ ଓ ପ୍ରୟୋଗ ସଂପର୍କରେ ମଧ୍ୟ ଉଲ୍ଲେଖ ରହିଛି ଏବଂ ସଂସ୍କୃତ ଓ ଓଡ଼ିଆ ଶ୍ଳୋକ, ଏପରିକି କଥାଗ୍ରନ୍ଥର ବାକ୍ୟମାନ ମଧ୍ୟ ଉଦ୍ଧାର କରିଛନ୍ତି । ଶବ୍ଦଗୁଡ଼ିକର ପ୍ରୟୋଗ–ବୈଚିତ୍ର୍ୟ ନିରୂପଣରେ ପୂର୍ବରୁ ଶ୍ରୀଜଗନ୍ନାଥ ରାଓ ଓ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ଶ୍ରଦ୍ଧା ପ୍ରକାଶ କରିଥିଲେ ଏବଂ ଗୋପାଳଚନ୍ଦ୍ର ଏହି କ୍ଷେତ୍ରରେ ପୂର୍ବସୂରୀମାନଙ୍କୁ ଅତିକ୍ରମ କରିଯାଇଛନ୍ତି ବୋଲି ସ୍ପଷ୍ଟତଃ କୁହାଯାଇପାରେ ।

ଶବ୍ଦଗୁଡ଼ିକର ବର୍ଣ୍ଣାନୁକ୍ରମ ସଜ୍ଜୀକରଣ ରୀତିରେ ମଧ୍ୟ ପ୍ରହରାଜଙ୍କର ବୈଶିଷ୍ଟ୍ୟ ରହିଛି । ଅଭିଧାନର ପ୍ରତ୍ୟେକ ଖଣ୍ଡରେ ଓଡ଼ିଆ ବର୍ଣ୍ଣମାଳାର ସୂଚନା ଦେଇଛନ୍ତି । 'କ' ବର୍ଣ୍ଣାଦ୍ୟ

ଶବ୍ଦର ଶେଷରେ 'କ୍ଷ' (କ + ଷ), 'ଜ' ବର୍ଣ୍ଣାଦ୍ୟ ଶବ୍ଦର ଶେଷରେ 'ଜ୍ଞ (ଜ + ନ)' ବର୍ଣ୍ଣାଦ୍ୟ ଶବ୍ଦଗୁଡ଼ିକୁ ସ୍ଥାନିତ କରିଛନ୍ତି । ଅବର୍ଗ୍ୟ 'ବ' ଶବ୍ଦ ସଂକଳନ କ୍ଷେତ୍ରରେ ସଂକଳକଙ୍କର ବିଚାର ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର । ସଂସ୍କୃତ ଭାଷାରେ ଅବର୍ଗ୍ୟ 'ବ' ପରି ଓଡ଼ିଆ ଭାଷାରେ ସ୍ୱତନ୍ତ୍ର ଲିପି (ୱ) ସହିତ ଏବଂ ବର୍ଣ୍ଣାଦ୍ୟ ଏକ ଧ୍ୱନି କିମ୍ବା ଏକକ ବର୍ଣ୍ଣ ଭାବରେ ଏହା ଉଚ୍ଚାରିତ ଓ ଲିଖିତ ହୁଏ ନାହିଁ । ଅଥଚ ଓଡ଼ିଆ ବର୍ଣ୍ଣମାଳାର ଏକ ବର୍ଣ୍ଣ, ଧ୍ୱନି ଓ ଫଳା ରୂପରେ ଏହାର ସ୍ଥାନ ଅସ୍ୱୀକାର କରାଯାଇ ନ ପାରେ । ମୁଖ୍ୟତଃ, ଯୁକ୍ତାକ୍ଷର ଭାବରେ ଅବର୍ଗ୍ୟ 'ବ' ଶବ୍ଦର ଆଦ୍ୟ, ମଧ୍ୟ ଓ ଅନ୍ତରେ ଉଚ୍ଚାରିତ ହୋଇଥାଏ । ତେଣୁ ଓଡ଼ିଆ ଭାଷାରେ ଅବର୍ଗ୍ୟ 'ବ'/'ଉଅ' ଭାବରେ ଉଚ୍ଚାରିତ ବର୍ଣ୍ଣାଦ୍ୟ ଶବ୍ଦଗୁଡ଼ିକୁ ଓଡ଼ିଆ ଭାଷାରେ ଅବର୍ଗ୍ୟ 'ବ' ଶବ୍ଦମାଳା ପରିସରଭୁକ୍ତ କରିଛନ୍ତି ।

ଅବର୍ଗ୍ୟ 'ବ' ପାଇଁ ଓଡ଼ିଆରେ ଏକ ସ୍ୱତନ୍ତ୍ର ଲିପି 'ଓ୍ୱ' ପ୍ରହରାଜଙ୍କ ସଂଯୋଜନ । ଭାଷାତତ୍ତ୍ୱର ନିୟମ ଅନୁସାରେ ସ୍ୱରବର୍ଣ୍ଣରେ ଅନ୍ୟ କୌଣସି ମାତ୍ରା ବା ଫଳା ଯୁକ୍ତ ହେବା ଦୋଷଦୁଷ୍ଟ । ସଂକଳକ ଭାଷାତତ୍ତ୍ୱର ଏହି ନିୟମ ବିଷୟରେ ଅବଗତ ଥାଇ ମଧ୍ୟ ଏକ ପ୍ରମାଦକୁ ସନ୍ନିଧାନାୟିତ କରିବା କମ୍ ସାହସର ପ୍ରସଙ୍ଗ ନୁହେଁ । ନିଜ ଯୁକ୍ତିକୁ ପ୍ରଭାବଶାଳୀ କରିବା ଉଦ୍ଦେଶ୍ୟରେ ଭାଷାକୋଷ ଗ୍ରନ୍ଥରେ ଏକ ଦୀର୍ଘ ଆଲୋଚନା ପ୍ରସ୍ତୁତ କରିଛନ୍ତି ଏବଂ ଏହା ପୂର୍ବରୁ *ବାରୁଣୀ* ପତ୍ରିକାରେ ମଧ୍ୟ ଏକ ପ୍ରବନ୍ଧ ପ୍ରକାଶ କରିଛନ୍ତି । (ଆଲୋଚନା, ଏହି ଗ୍ରନ୍ଥରେ ସଂଯୋଜିତ ।) ଅନ୍ୟ କେଉଁ କେଉଁ ଭାଷାର ତଦ୍‌ବିଦ୍‌ମାନେ ଏହି ନୂତନ ଲିପିକୁ ଗ୍ରହଣ କରିଛନ୍ତି, ତାହାର ଉଦାହରଣ ଦେଇଛନ୍ତି । ମାତ୍ର ଏତେ ଯୁକ୍ତି ଓ ଗୌରଚନ୍ଦ୍ରିକାର ଅବତାରଣା ନ କରି ଅବର୍ଗ୍ୟ 'ବ' ଆଦ୍ୟ ଶବ୍ଦଗୁଡ଼ିକୁ 'ଉଅ' ଉଆ ଓ ଓଏ ରୀତିରେ ଉଲ୍ଲେଖ କରିଥିଲେ, ସମ୍ଭବତଃ ତାଙ୍କୁ ଅଧିକ ସମାଲୋଚନାର ଶରବ୍ୟ ହେବାକୁ ନ ଥା'ନ୍ତା ।

| | | | |
|---|---|---|---|
| ଯଥା – ଓ୍ୱେବ୍‌ଷ୍ଟର | ଓଏବ୍‌ଷ୍ଟର | ଓ୍ୱାବ୍ | ଉଆବ୍ |
| ଓ୍ୱାରେଣ୍ଟ୍ | ଉଆରେଣ୍ଟ୍ | ଓ୍ୱାଜିବ୍ | ଉଆଜିବ୍ |
| ଓ୍ୱାପସ୍ | ଉଆପସ୍ | ଓ୍ୱେଷ୍ଟ୍ | ଓଏଷ୍ଟ ଇତ୍ୟାଦି । |

ଏବଂ ସ୍ୱରବର୍ଣ୍ଣରେ କୌଣସି ମାତ୍ରା ବା ଫଳା ଯୁକ୍ତ ନ କରି ସମସ୍ୟା ସମାଧାନ କରାଯାଇପାରିଥାନ୍ତା । ସମ୍ପ୍ରତି ସାଧାରଣ ଜନତା, ପ୍ରହରାଜଙ୍କ ସୃଷ୍ଟ ଏହି ନୂତନ ବର୍ଣ୍ଣକୁ ବହୁଳ ବ୍ୟବହାର କରାଯାଇଥିବାର ଲକ୍ଷ୍ୟ କରାଯାଉଛି । ଏହି ନୂତନତାକୁ ସ୍ୱୀକାର କରିବା କାଳରେ ସଂକଳକ ସମ୍ଭବତଃ ଏ କଥା ମଧ୍ୟ ପାସୋରି ପକାଇଛନ୍ତି 'ବର୍ଗ୍ୟ ବ' ଓ 'ଅବର୍ଗ୍ୟ ବ' ର ସାଙ୍କେତିକ ଚିହ୍ନରେ ମଧ୍ୟ କୌଣସି ପାର୍ଥକ୍ୟ ନାହିଁ ଯଥା –

| (ବ ଫଳା) | (ଉଅ ଫଳା) |
|---|---|
| ଆମ୍ + ବ = ଆମ୍ବ | ପକ୍ + ଉଅ = ପକ୍ୱ |
| ବିମ୍ + ବ = ବିମ୍ବ | ଅଶ୍ + ଉଅ = ଅଶ୍ୱ |
| କଦମ + ବ = କଦମ୍ବ | ଭାସ୍ + ଉଅ = ଭାସ୍ୱ |

ଅନୁରୂପ ଭାବରେ ନଶ୍ୱର, ଶ୍ୱଶୁର, ଚତ୍ୱର ଆଦି ଶବ୍ଦର ଲେଖନ ଓ ଉଚ୍ଚାରଣରେ ମଧ୍ୟ ପାର୍ଥକ୍ୟ ଅନୁଭୂତ ହୋଇଥାଏ । 'ବ' କିମ୍ବା 'ଉଅ' ଫଳା ବ୍ୟତୀତ ବର୍ଗ୍ୟ ଜ କିମ୍ବା ଅବର୍ଗ୍ୟ ଯ (ୟ ଫଳା) ମଧ୍ୟ ସମସମସ୍ୟା ସୃଷ୍ଟି କରିଥାନ୍ତି । ଯଥା – ମସ୍ୟ, ହାସ୍ୟ, ଦାସ୍ୟ, ସଖ୍ୟ, ଧନ୍ୟ, ମାନ୍ୟ, କାରୁଣ୍ୟ, ହିରଣ୍ୟ, ମୂର୍ଦ୍ଧନ୍ୟ, ରମ୍ୟ, ହର୍ମ୍ୟ ଇତ୍ୟାଦି । 'ର' ( ୍ର ) ଫଳା (ଶତ୍ରୁ, ତ୍ରୁଟି, ଅଶ୍ରୁ, ଶ୍ମଶ୍ରୁ) ଏବଂ ର ( ୃ )କାର (ନେତୃତ୍ୱ, କର୍ତ୍ତୃତ୍ୱ, ତୃଣ, ତୃଷା, ଜାମାତୃ, ଦାତୃ) ର ଉଚ୍ଚାରଣ କ୍ଷେତ୍ରରେ ମଧ୍ୟ ସମସମସ୍ୟା ରହିଛି । ହ୍ରସ୍ୱ 'ଉ' ( ୁ ), ଦୀର୍ଘ ଉ ( ୂ ), ହ୍ରସ୍ୱ ଇ ( ି ), ଦୀର୍ଘ ଇ (ୀ), ତାଲବ୍ୟ 'ଶ', ମୂର୍ଦ୍ଧନ୍ୟ 'ଷ' ଓ ଦନ୍ତ୍ୟ 'ସ'ର ଉଚ୍ଚାରଣ ସଂପର୍କରେ ଓଡ଼ିଆମାନେ ଯେ ଆଦୌ ସଚେତନ ନୁହନ୍ତି – ଏହା ଉଲ୍ଲେଖ କରିବା ନିଷ୍ପ୍ରୟୋଜନ । ଲିଖନର ଏହି ରୀତି, ଅର୍ଥତତ୍ତ୍ୱକୁ ପ୍ରଭାବିତ କରୁଥିବାରୁ ସାଧାରଣ ଜନତା 'ଫଳା ଓ ମାତ୍ରା' ର ବ୍ୟବହାରରେ ଅଭ୍ୟସ୍ତ ହୋଇଗଲେଣି । ତଥାପି ସମସ୍ୟା ଯେ ଲୋପ ପାଇଯିବ, ଏହା ସମ୍ଭବ ନୁହେଁ । କେବଳ ଓଡ଼ିଆ ଏବଂ ଅନ୍ୟ ଭାରତୀୟ ଭାଷା ନୁହେଁ, ସମଗ୍ର ପୃଥିବୀରେ ପ୍ରାୟ ସବୁ ଭାଷାରେ ଶବ୍ଦର ଲିଖନ ଓ ଉଚ୍ଚାରଣକୁ କେନ୍ଦ୍ର କରି ଉଣାଅଧିକେ ଏହି ସମସ୍ୟା ଅନୁଭୂତ ହୋଇଥାଏ । ଇଂରେଜୀ ଭାଷାରେ ଏହି ସମସ୍ୟା ଅଧିକ ଉତ୍କଟ । ପ୍ରକାଶ ଥାଉ କି, ବିଖ୍ୟାତ ନାଟ୍ୟକାର ବର୍ଣ୍ଣାଡ ଶ, ଇଂରାଜୀ ଭାଷାରେ ପରିଲକ୍ଷିତ ଲିଖନ ଓ ଉଚ୍ଚାରଣଗତ ଜଟିଳ ଓ ଅବୈଜ୍ଞାନିକ ସମସ୍ୟାର ସମାଧାନପାଇଁ ଆପଣାର ଉପାର୍ଜିତ ବିପୁଳ ସଂପତ୍ତି ଦାନର ଘୋଷଣା କରିଛନ୍ତି । ଯେଉଁଠି ଟିକିଏ ସଚେତନ ହେଲେ ଏକ ମାମୁଲି ସମସ୍ୟାକୁ ସହଜରେ ଟାଳି ଦିଆଯାଇପାରିବ, ସେଠାରେ ସମସ୍ୟା ସୃଷ୍ଟି କରିବା ଯେ ଅନାବଶ୍ୟକ, ପ୍ରହରାଜ ସମ୍ଭବତଃ ଏକଥା ଭୁଲିଯାଇଛନ୍ତି । ବଙ୍ଗଳା ଭାଷାର ପ୍ରଭାବରେ, ଓଡ଼ିଆ ଲିପିମାଳାରେ 'ୱ' ଆକାରର ଲିପି ତିଆରିକରି, ଭ୍ରମର ଭଉଁରୀ ଭିତରକୁ ପାଠକମାନଙ୍କୁ ଠେଲିଦେଇଛନ୍ତି । ଇଂରାଜୀ ଏବଂ ଅନ୍ୟ ବୈଦେଶିକ ଭାଷାଗୁଡ଼ିକରେ 'ଉଅ' ବର୍ଣ୍ଣାଦ୍ୟ ଶବ୍ଦଗୁଡ଼ିକୁ ଓଡ଼ିଆ ଶବ୍ଦମାଳାରେ ଅବର୍ଗ୍ୟ 'ବ' ବର୍ଣ୍ଣାଦ୍ୟ ଶବ୍ଦ ସ୍ଥାନରେ ସଂକଳିତ କରାଯାଇଥିଲେ, ଏକ ଅପବାଦକୁ ସହଜରେ ଏଡ଼େଇ ଦିଆଯାଇ ପାରିଥାଆନ୍ତା ।

ଓଡ଼ିଆ ଶବ୍ଦଗୁଡ଼ିକର ଇଂରେଜୀ ଲିପିକରଣ ସହିତ ପ୍ରତିଶବ୍ଦ ଲିଖନ ଭାଷାକୋଷର ଅନ୍ୟତମ ବୈଶିଷ୍ଟ୍ୟ । ଏହା ଓଡ଼ିଆ ଲିପି ଅନଭିଜ୍ଞମାନଙ୍କୁ ଭାଷା ସହିତ ପରିଚିତ କରାଇଦିଏ

ଏବଂ ଅନୁବାଦ କ୍ଷେତ୍ରରେ ମଧ୍ୟ ଉପାଦେୟ ତଥ୍ୟ ଯୋଗାଇଦିଏ । ଏଠାରେ ଗୋଟିଏ ଶବ୍ଦର ଉଦାହରଣ ଦିଆଯାଇପାରେ ।

ଅଇଘରା – ଦେ.ବି. (ସଂ. ଅଗ୍ନି ଉତ୍ସବ, ସଂ. ଅଗ୍ନି + ହରିକା) ରାକ୍ଷସୀ ବିଶେଷ

Aigharā

୧. ମାଘପୂର୍ଣ୍ଣିମା (ଏଦିନ ରାତିରେ ଗ୍ରାମମଣ୍ଡପରେ କୁଟା ଆଦି ଗଦା କରାଯାଇ ଅଗ୍ନି ଉତ୍ସବ ହୁଏ । ଏହି ନିଆଁକୁ ଅଗ୍ନି ଓ ନିଆଁ ଜଳାଇବାକୁ ଅଗିଜଳା କୁହାଯାଏ ।

The fullmoon of the month of night of which villagers light a bonfire at the extremity of the village.

୨. ଅଗି, ମାଘ ପୂର୍ଣ୍ଣିମା ରାତିରେ ଗାଁଦାଣ୍ଡରେ ଜଳାଯିବା ନିଆଁଗଦା

Bonfire lighted on the fullmoon of the month of Magha.

୩. ଦୋଳପୂର୍ଣ୍ଣିମାର ପୂର୍ବରାତି

The night preceding the fullmoon of the month of Magha.

୪. ଦୋଳ ପୂର୍ଣ୍ଣିମାର ପୂର୍ବ ରାତ୍ରିରେ ସନ୍ଧ୍ୟାଠାରୁ ରାତି ପାହିବା ପର୍ଯ୍ୟନ୍ତ ଗ୍ରାମ ମୁଣ୍ଡରେ କରାଯିବା ଅଗ୍ନି ଉତ୍ସବ ।

Bonfire lighted at the end of the village on the night preceding the fullmoon of the month of Magha.

ଗୋଟିଏ ଶବ୍ଦର ଉପର୍ଯ୍ୟୁକ୍ତ ବ୍ୟାଖ୍ୟାକୁ ଲକ୍ଷ୍ୟ କରି ଜଣେ ସାଧାରଣ ପାଠକ ହୁଏତ ଅଭିଯୋଗ କରିପାରେ ଯେ, ଏହା ଅତିକଥନର ଏକ ଚମତ୍କାର ଉଦାହରଣ । ଭାଷାବିଜ୍ଞାନୀ ଡକ୍ଟର ଖଗେଶ୍ୱର ମହାପାତ୍ର ଆପଣାର ଓଡ଼ିଆ ଲିପି ଓ ଭାଷା ଗ୍ରନ୍ଥରେ "ଏହି ପଦ୍ଧତି ବୈଧାନିକ (Preserptive) ନୁହେଁ, ବସ୍ତୁପରକ ଓ ବର୍ଣ୍ଣନାତ୍ମକ । ତେଣୁ ସମକାଳୀନ (synchronic) ଓ କାଳକ୍ରମିକ, ଉଭୟ ସ୍ତରରେ ଉପଲବ୍ଧ ଯାବତୀୟ ରୂପ ସେ ଗ୍ରହଣ କରିଛନ୍ତି । ସାମୁଏଲ୍ ଜୋନ୍‌ସନ୍, ନୋଆ ଓଏବ୍‌ଷ୍ଟର୍‌ଙ୍କ ପରି ସେ ଆଦୌ ବିଚାରି ନାହାନ୍ତି ଯେ, ମାନବ ଭାଷା (standard) ର ଶୁଦ୍ଧତା ରକ୍ଷା କରିବା ଅଭିଧାନ ସଂକଳୟିତାଙ୍କର ଅନନ୍ୟ କର୍ତ୍ତବ୍ୟ ।" * ଡକ୍ଟର ମହାପାତ୍ରଙ୍କର ଉପର୍ଯ୍ୟୁକ୍ତ ଉକ୍ତି ପାର୍ଶ୍ୱିକ, ସଂପୂର୍ଣ୍ଣ ଗ୍ରହଣୀୟ ନୁହେଁ । ଏହା ବର୍ଣ୍ଣନାତ୍ମକ, ବସ୍ତୁପରକ – ଏକଥା ଅବଶ୍ୟ ସ୍ୱୀକାର୍ଯ୍ୟ । ମାତ୍ର ଏହି ପଦ୍ଧତିକୁ ସଂକଳକ ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ହିଁ ଗ୍ରହଣ କରିଛନ୍ତି । ଭାଷାକୋଷକୁ ଜ୍ଞାନକୋଷିକ କରିବା ଆଦର୍ଶର ହିଁ ଏକ ଫଳଶ୍ରୁତି । କୋଷଗ୍ରନ୍ଥର ପୃଷ୍ଠାବୃଦ୍ଧି ଓ

* ମହାପାତ୍ର, ଖଗେଶ୍ୱର : (୧୯୭୭) ଓଡ଼ିଆ ଲିପି, ଭାଷା ଓ ସାହିତ୍ୟ, କଟକ, ଗ୍ରନ୍ଥମନ୍ଦିର, ପୃଷ୍ଠା ୩୦ ।

ବ୍ୟୟବାହୁଲ୍ୟର ଏହା ପ୍ରଧାନ କାରଣ । ଭାଷାକୋଷର ଗ୍ରାମ୍ୟ, ଆଞ୍ଚଳିକ ବା ଲୋକକଥିତ ଶବ୍ଦଗୁଡ଼ିକୁ ଉପଲକ୍ଷ୍ୟ ଭାବରେ ଗ୍ରହଣ କରି ଭାଷାର ମାନକ ବା ଶୁଦ୍ଧତା ସମ୍ପର୍କରେ ଡଃ ମହାପାତ୍ର ଯେଉଁ ଯୁକ୍ତି ଉପସ୍ଥାପନ କରିଛନ୍ତି, ଆଧୁନିକ ସାହିତ୍ୟରେ ବ୍ୟବହୃତ ଗ୍ରାମ୍ୟ ଶବ୍ଦର ବହୁଳତାକୁ ଲକ୍ଷ୍ୟ କଲେ, ତାଙ୍କ ଯୁକ୍ତି ଯେ କେତେ (ଅ) ପ୍ରାସଙ୍ଗିକ, ତାହା ଆଲୋଚନା କରାଯାଇପାରେ । ପ୍ରହରାଜଙ୍କପାଇଁ ଅଭିଧାନ କୌଣସି ଭାଷାର ବାଇବେଲ୍ ନୁହେଁ, ଏକ ଜାତିର ଜୀବନ ସ୍ରୋତ ।

ଅଭିଧାନତତ୍ତ୍ୱ ଦୃଷ୍ଟିରୁ ବିଚାର କଲେ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ଫର୍ଗୁସନଙ୍କ 'ହିନ୍ଦୁସ୍ଥାନୀ-ଇଂରାଜୀ ଅଭିଧାନ,' ନୋଆ ଓଏବଷ୍ଟରଙ୍କ 'ଓଏବ୍‌ଷ୍ଟର ଡିକ୍ସନାରୀ,' କିମ୍ୱା ବିଶ୍ୱବିଖ୍ୟାତ 'ଅକ୍ସଫୋର୍ଡ଼ ଡିକ୍ସନାରୀ' ସହ ତୁଳନୀୟ । ସମଗ୍ର ଭାରତବର୍ଷରେ ଏଯାବତ୍ ସଂକଳିତ କୋଷଗ୍ରନ୍ଥଗୁଡ଼ିକ ମଧ୍ୟରେ ଏହା ସର୍ବବୃହତ୍ । ଏଚ୍. ଏଚ୍. ଶିବାଜୀରାଓ ଗାଇକ୍‌ୱାଡ୍ ଅବଶ୍ୟ ଗୁଜୁରାଟୀ ଭାଷାରେ 'ଶିବାଜୀ ଶାସନ କଳ୍ପତରୁ' ନାମରେ ଏକ ବହୁଭାଷିକ ଅଭିଧାନ (୧୯୩୧) ସଂକଳନ କରିଛନ୍ତି । ମାତ୍ର କଳେବର ଓ ଗୁଣାତ୍ମକ ଦୃଷ୍ଟିରୁ ପ୍ରହରାଜଙ୍କ ଚତୁର୍ଭାଷିକ କୋଷଗ୍ରନ୍ଥ ସ୍ୱତନ୍ତ୍ର ଓ ବହୁଚର୍ଚ୍ଚିତ ।

ଆଶ୍ଚର୍ଯ୍ୟର କଥା ସମକାଳୀନ ଓଡ଼ିଶାର ବହୁ ବିଦ୍ୱାନ୍, ସଂକଳକ ଓ ତାଙ୍କର କୋଷଗ୍ରନ୍ଥକୁ କଟୁ ସମାଲୋଚନା କରିଛନ୍ତି । ସେମାନେ ବସ୍ତୁତଃ ଭୁଲିଯାଇଛନ୍ତି ଯେ ଭାଷାକୋଷ ଓଡ଼ିଶାର କୌଣସି ଏକ ନିର୍ଦ୍ଦିଷ୍ଟ ଅଂଶ ଉପରେ କେନ୍ଦ୍ରୀଭୂତ ନ ହୋଇ ସାମୂହିକ ଭାବେ ଓଡ଼ିଆ ଭାଷାକୁ ଗ୍ରହଣ କରିଛି – ଏଥିରେ ପ୍ରଚଳିତ, ଐତିହାସିକ ଓ ତୁଳନାମୂଳକ ତିନୋଟି ବିଷୟ ଅଭିଧାନର ବିଷୟବସ୍ତୁ ଏକତ୍ରିତ ହୋଇଛି *। ସମାଲୋଚନା ଅନେକ ସ୍ଥଳରେ ତାଙ୍କ ବ୍ୟକ୍ତିକ ଜୀବନକୈନ୍ଦ୍ରିକ ହୋଇପଡ଼ିଛି । କୁତ୍ସାରଟନା ସେମାନଙ୍କ ବିଚାରର ଆଦର୍ଶ ହୋଇଛି । ଶ୍ରୀଯୁକ୍ତ ଶରତ ଚନ୍ଦ୍ର ମୁଖାର୍ଜୀ, ଶ୍ରୀଯୁକ୍ତ ଗୋଦାବରୀଶ ମହାପାତ୍ର, ଶ୍ରୀଯୁକ୍ତ ରାମପ୍ରସାଦ ସିଂହ, ଶ୍ରୀଯୁକ୍ତ ବସନ୍ତ କୁମାର ବେହୁରା ଏବଂ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ପ୍ରମୁଖଙ୍କୁ ଏଠାରେ ସ୍ମରଣ କରାଯାଇପାରେ । ବାଳକୃଷ୍ଣ କରଙ୍କ ସମ୍ପାଦିତ 'ସହକାର' ଏବଂ ଗୋଦାବରୀଶଙ୍କ 'ନିଆଁଖୁଣ୍ଟା' ପତ୍ରିକା ପ୍ରତିବାଦୀମାନଙ୍କର ମୁଖପତ୍ର ହୋଇଛି । 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ସମ୍ବନ୍ଧରେ କେତୋଟି କଥା' ଶୀର୍ଷକରେ ଗୋଦାବରୀଶ 'ସହକାର'ର ପାଞ୍ଚଗୋଟି ସଂଖ୍ୟା (ଚତୁର୍ଦ୍ଦଶ ଭାଗ ୧୦ମ, ୧୧ଶ, ୧୨ଶ ଓ ପଞ୍ଚଦଶ ଭାଗ ୨ୟ ଓ ୫ମ)ରେ ଶ୍ରୀଯୁକ୍ତ ପ୍ରହରାଜଙ୍କୁ ଏକପ୍ରକାର ଲଙ୍ଗଳା କରିଛନ୍ତି । ଶ୍ରୀ ରାମପ୍ରସାଦ ସିଂ 'ଗଣ ସାହିତ୍ୟ ଓ ତାହାର ଆଲୋଚନା' ଶୀର୍ଷକରେ (ସହକାର : ୧୩୪୪ ସାଲ, ୧୧/୧୨ଶ ସଂଖ୍ୟା) ପ୍ରସଙ୍ଗ ନ ଥାଇ ମଧ୍ୟ ପ୍ରହରାଜଙ୍କୁ ପତ୍ରସ୍ଥ କରିଛନ୍ତି । ବସନ୍ତ କୁମାର ବେହୁରାଙ୍କ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ଭୁଲ୍'

* ମହାପାତ୍ର, ବିଜୟ ପ୍ରସାଦ (୧୯୮୩), ଓଡ଼ିଆ ଭାଷାତାତ୍ତ୍ୱିକ ପ୍ରବନ୍ଧ, କଟକ, ଗ୍ରନ୍ଥମନ୍ଦିର ।

ଆଲୋଚନା ପ୍ରକାଶିତ ହୋଇଛି ପଣ୍ଡିତ ନୀଳକଣ୍ଠ ଦାସଙ୍କ ସମ୍ପାଦିତ ନବଭାରତ (୧୯୪୦ ମସିହା ୫ମ ସଂଖ୍ୟା)ରେ । ଏଠାରେ ପ୍ରସଙ୍ଗକ୍ରମେ ଶ୍ରୀଯୁକ୍ତ ସିଂ ଓ ଶ୍ରୀଯୁକ୍ତ ମହାପାତ୍ରଙ୍କ ଆଲୋଚନାର କେତେକାଂଶ ଉଦ୍ଧାର କରାଯାଇପାରେ ।

ରାମପ୍ରସାଦ ସିଂ –

''ଭାଷାକୋଷକୁ ଦାନ କରିବା ଯେକୌଣସି ନୀତି ଦୃଷ୍ଟିରୁ ଦେଖିଲେ ମଧ୍ୟ ସରକାରଙ୍କ ପକ୍ଷରେ ବୁଦ୍ଧି, ବିବେଚନାର ଓ ଦାୟିତ୍ୱ ଜ୍ଞାନର ଅଭାବ ଛଡ଼ା ଆଉ କିଛି କହିହେବ ନାହିଁ । ଭାଷାକୋଷ ଜଣେ ବ୍ୟକ୍ତିର ବ୍ୟକ୍ତିଗତ ସମ୍ପତ୍ତି । ବଙ୍ଗଳା ଭାଷାକୋଷ ଓ ହିନ୍ଦୀ ଶବ୍ଦସାଗରର ଏକତ୍ର ସମାବେଶ ସହିତ କେତେକ ଓଡ଼ିଆ ଶବ୍ଦର ଦଣ୍ଡବୈଠକୀ ଓ କସରତର ସମାବେଶ ଏହାର ଆକାର ବୃଦ୍ଧି କରିଛି । କିନ୍ତୁ ଗୋଟାଏ ମାତ୍ର ବହି –ଏହା ପଛରେ ଯେଉଁ କଦର୍ଯ୍ୟ ଇତିହାସ ରହିଛି, ତାହା ଅନ୍ତତଃ କଂଗ୍ରେସ ଦଳ ଭୁଲିଯିବା ଉଚିତ ନୁହେଁ । ମନେହୁଏ, ଏହାର ପ୍ରତ୍ୟେକ ପୃଷ୍ଠାରେ ନିରୀହ ସତ୍ୟାଗ୍ରହୀର ରକ୍ତଲିପ୍ତ ହୋଇ ରହିଛି । ଜଣେ ଲେଖକର ବ୍ୟକ୍ତିଗତ ସ୍ୱାର୍ଥପାଇଁ ଅଯାଚିତ ଭାବରେ ଲକ୍ଷ ଲକ୍ଷ ଲୋକଙ୍କ ଧନରୁ ଟଙ୍କାଟିଏ ମାତ୍ର ବ୍ୟୟ କରିବା ଯେ ସରକାରୀ ଦାୟିତ୍ୱ ଦୃଷ୍ଟିରୁ ଅସମୀଚୀନ, ଏହା ସ୍ୱତଃ ହିଁ ପ୍ରତିଭାତ ହେବ । (ସହକାର : ୧୩୪୪ ସାଲ, ୧୧।୧୨ ସଂଖ୍ୟା-ପୃ. ୧୦୪୦-୪୧)

ଗୋଦାବରୀଶ ମହାପାତ୍ର –

୧. ପାଣ୍ଡୁଲିପି ଅବସ୍ଥାରେ ଥିଲା ବେଳେ ଏହାର ଖଣ୍ଡି ଖଣ୍ଡି କାଗଜକୁ ଯୋଡ଼ିଲେ, କେତେ ମାଇଲ୍ ଲମ୍ବ ହେବ, କେତେ ଶବ୍ଦ ଅଛି – ଇତ୍ୟାଦି କଥା ଖବରକାଗଜ ମାର୍ଫତ୍‌ରେ ଶୁଣାଯାଇଛି । ଏ ଅଭିନବ ବିରାଟ ଉଦ୍ୟମପାଇଁ ପ୍ରଶଂସା ନ କରି ରହି ହେଉ ନାହିଁ । (ସହକାର : ୧୪ଶ ବର୍ଷ/୧୦ମ ସଂଖ୍ୟା ପୃ. ୯୩୫-୯୪୧)

୨. ମୋର ଏହି ଲେଖାଟିରେ ଯେବେ କେତେଥର ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କଦ୍ୱାରା ସଂଗୃହୀତ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ବୋଲି ଲେଖିବାକୁ ପଡ଼େ, ତେବେ ଏହି ନାଁଟିରେ ହିଁ ଏହା ପୂର୍ଣ୍ଣ ହୋଇଯିବ । ତେଣୁ ଯାକୁ ଛୋଟେଇ ଦେଇ, ସମସ୍ତଙ୍କର ସୁବିଧାପାଇଁ 'ପାଜକୋଷ' ବୋଲି ଲେଖୁଛି । ×× ଏଥିରେ ଓଡ଼ିଶା ଦେଶର ସବୁ ଅଞ୍ଚଳର ବହୁ ଶବ୍ଦ ସଂଗୃହୀତ ହୋଇଛି । ମାତ୍ର ପାଜଗୋଛାର ଅଗ, ମୂଳ, ଚୂଳ ନ ଥିଲା ପରି, ସଂଗ୍ରାହକ ସେଗୁଡ଼ିକର ଅଗ-ମୂଳ-ଚୂଳ ଠିକ୍ କରି ସଂଯତ ଭାବରେ ସଜାଇ ପାରି ନାହାନ୍ତି । (ସହକାର : ୧୪ଶ ଭାଗ, ୧୦ମ ସଂଖ୍ୟା ପୃ. ୯୩୬)

୩. ଏହିପରି ବାଛିବସିଲେ କମଳ ଯାକ ବାଳ । ଏହା ବାଛିବାକୁ ହେଲେ ଆଉ ଏକ ଭିନ୍ନ ଶବ୍ଦକୋଷ ହୋଇଯିବ । (ସହକାର:୧୪ଶ ଭାଗ, ୧୦ମ ସଂଖ୍ୟା ପୃ ୯୩୯)

୪. ଠାଏ ଠାଏ କେଉଁଠି ସଂଗ୍ରାହକ ଦେଶବାସୀଙ୍କୁ ଜଣାଇଛନ୍ତି ଯେ, ତାଙ୍କ କୋଷରେ ଏକ ଲକ୍ଷରୁ ଅଧିକ ଶବ୍ଦ ଅଛି । ଆଡ୍‌ଭାଇସ୍, ଆଡ୍‌ଭାଇସରି କମିଟି, ଆଡ୍‌ମିରାଲ୍‌ଟୀ, ଅକ୍ସିଜେନ୍, ଏକ୍‌ସଟ୍ରିମିଷ୍ଟ, ଏକ୍‌ଷ୍ଟ୍ରାକରି, ଏକ୍‌ସ୍‌ଟେନ୍‌ସନ୍ ପ୍ରଭୃତିକୁ ଓଡ଼ିଆ ଶବ୍ଦ ବୋଲି ସଂଗ୍ରାହକ ଯେବେ ଏଥିରେ ଭର୍ତ୍ତି କରିଥାଆନ୍ତି, ତାହା ହେଲେ ଆହୁରି ଲକ୍ଷ ଲକ୍ଷ ଓଡ଼ିଆ ଶବ୍ଦ ବାକି ରହିଯାଇଛି । (ସହକାର : ୧୪ଶ ଭାଗ, ୧୦ମ ସଂଖ୍ୟା ପୃ. ୯୩୯)

୫. ଏପରି ଗୋଟିଏ ଗ୍ରନ୍ଥର ସମାଲୋଚନା କରିବା କଷ୍ଟକର ବ୍ୟାପାର ହେଲେ ସୁଦ୍ଧା ମୁଁ ଏଥିରେ ହାତ ଦେବାକୁ ଯାଉଛି । କେହି କେହି ଭାବିପାରନ୍ତି, ସମାଲୋଚକର ଦୋଷ ଓ ଗୁଣ ଉଭୟ ଦେଖାଇବା ଆବଶ୍ୟକ; ମାତ୍ର ମୋ ଲେଖାରେ ଗୁଣ ଆଲୋଚନା ପୂର୍ବରୁ ଦୋଷ ଆଲୋଚନା କରିବାର କାରଣ ଏହି ଯେ, ଦୋଷଗୁଡ଼ିକ ଏହାର ଶରୀରକୁ ଏତେ ପୃଥୁଳ କରିଦେଇଛି ଯେ, ରାଶି ରାଶି କରି ସେଗୁଡ଼ିକ ବାଛି ନ ଦେଲେ ଗୁଣଗୁଡ଼ିକ ସହଜରେ ଧରା ପଡ଼ିବ ନାହିଁ । ×× ଆମ ଭୁଲ୍‌ଭ୍ରାନ୍ତିକୁ ଦେଶ ବାହାରେ ଲୋକେ ଜାଣି ନ ପାରି ପ୍ରଶଂସା କରିଗଲେ ଯେ, ଆମେ ସେହି ଭୁଲ୍‌କୁ ଠିକ୍ ମାନିନେବା, ଏଥିର କୌଣସି କାରଣ ନାହିଁ । ପୁଣି ଆମ ଭାଷାର ଏତେ ବଡ଼ ବଡ଼ ଗ୍ରନ୍ଥରେ ଭୁଲ୍ ରହିଗଲା ବୋଲି ଅନ୍ୟ ଲୋକେ ଜାଣିଗଲେ ଯେ ସିଂହଭୂମ, ମେଦିନୀପୁର, ଜୟପୁର ପ୍ରଭୃତି ଅଞ୍ଚଳ ଓଡ଼ିଶା ପ୍ରଦେଶରେ ନ ମିଶିଲା ଭଳିଆ କିଛି ଗୋଟିଏ ଗୁରୁତର କ୍ଷତି ହୋଇଯିବ, ଏପରି କୌଣସି ଆଶଙ୍କା କରିବାର କାରଣ ମଧ ନାହିଁ । ତାହା ପରେ କେତେକ ଲୋକ କୋଷଗ୍ରନ୍ଥର ପ୍ରକାଣ୍ଡତାରେ ମୁଗ୍ଧ ଓ ଚମତ୍କୃତ, ମାତ୍ର ସେହି ପ୍ରକାଣ୍ଡତା ଯେ ଏହାର ଦୋଷ –ଏ କଥା ଅନେକେ ଭିତରର ଜିନିଷଟା ଦେଖିବାର ଅବସର ପାଇ ନ ଥିବାରୁ ବୁଝିପାରି ନାହାନ୍ତି ।

୬. ମୋଟ ଉପରେ ତାହା ପାଳଗୋଛା ବାନ୍ଧିଲା ପରି ହୋଇଛି । ଗ୍ରନ୍ଥଟି କୋଷ ତ ନିଶ୍ଚୟ, ସୌଷ୍ଠବର ଅଭାବରୁ ତାକୁ 'ପାଳକୋଷ' ଛଡ଼ା ଆଉ କି ନାମ ଦେଲେ ନାମଟା ଯଥାର୍ଥ ହୁଅନ୍ତା, ×× ଅବଶ୍ୟ ଆଉ କେତେ ନାମ, ଅର୍ଥାତ୍ 'ରାଜକୋଷ', 'ଚନ୍ଦ୍ରକୋଷ', 'ପୂର୍ଣ୍ଣକୋଷ' ଆଦି ନାମ ଦିଆଯାଇପାରିଥା'ନ୍ତା; କିନ୍ତୁ ଏ ସବୁରେ ଗ୍ରନ୍ଥର ପୂରା ପରିଚୟ ମିଳନ୍ତା ନାହିଁ । ×× କବିସୂର୍ଯ୍ୟଙ୍କ ପରେ ଆଉ ଜଣେ ନିକୃଷ୍ଟ କବି ଜନ୍ମ ହେବାରୁ ତାଙ୍କୁ ଲୋକେ କବିଚନ୍ଦ୍ର ବୋଲି କହୁଥିଲେ । ଏପରି ଗୋଟିଏ ଗ୍ରନ୍ଥକୁ ଚନ୍ଦ୍ରକୋଷ ବୋଲି ଆଖ୍ୟା ଦେଲେ ପ୍ରହରାଜେ ନିଶ୍ଚୟ ମନସ୍ତାପ କରନ୍ତେ । ଶେଷରେ ମୋର ଏହାକୁ ସୂର୍ଯ୍ୟକୋଷ ବୋଲି ଆଖ୍ୟା ଦେବା ଇଚ୍ଛା ଥିଲା । କିନ୍ତୁ ତାହା ହେଲେ ଗ୍ରନ୍ଥ ଉପରେ ନାମ ଲେଖାଯିବା ଉଚିତ ଥିଲା – 'ସୂର୍ଯ୍ୟବଂଶ ଅବତଂଶ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' । ଏକ ଶବ୍ଦର ବିଭିନ୍ନ ରୂପାନ୍ତରର ସ୍ଥାନ

ଭାଷାକୋଷରେ କେତେ ଦୂର, ପୁଣି ସେହି ରୂପାନ୍ତରକୁ ଯଥା ସ୍ଥାନରେ ସନ୍ନିବେଶିତ କରି ପ୍ରତ୍ୟେକର ସୋଦାହରଣ ବ୍ୟାଖ୍ୟା, ଟୀକାଟିପ୍ପଣୀପାଇଁ ପ୍ରୟୋଜନୀୟତା ଭାଷାକୋଷକାର ଯେତେ ଦୂର ଠଉରାଇ ପାରିଛନ୍ତି, ପାଠକମାନେ ସେତେ ଦୂର ଠଉରାଇ ପାରୁଥିଲେ, ଏ ବିଚରାର କହିବାର କିଛି ନାହିଁ । ଏହି ପନ୍ଥା ଅବଲମ୍ବନ କଲେ ଦୀନଦରିଦ୍ର, ବନ୍ୟା, ଦୁର୍ଭିକ୍ଷ ପ୍ରପୀଡ଼ିତ ହତଭାଗ୍ୟ ଉତ୍କଳର ଭାଷାକୋଷ କ୍ରମେ କ୍ରମେ ଦେଶର ରାଜକୋଷରୁ ତଥା ମହାରାଜାଙ୍କ ଧନକୋଷରୁ ସହସ୍ର ସହସ୍ର ଟଙ୍କା ସାହାଯ୍ୟ ପାଇ ଇନ୍ଦ୍ରଜାଲ ମାୟାପରି ଦିନକୁ ଦିନ ଫୁଲିଉଠିବ, ଏବଂ ଏହା ବିଶିଷ୍ଟ, ଅବଶିଷ୍ଟ, ପରିଶିଷ୍ଟ, ହେଲେ ଖଣ୍ଡେ କାହିଁକି, ପୁଣି ପାଞ୍ଚ ଖଣ୍ଡରେ ପରିପୁଷ୍ଟ ହେବ । (ସହକାର : ୧୪ଶ ଭାଗ, ୧୧ଶ ସଂଖ୍ୟା : ପୃ. ୧୦୫୪-୧୦୬୧)

୭. ଏଥିରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତ ପ୍ରଚଳିତ, ଅପ୍ରଚଳିତ ଏତେ ଇତର, ଦେଶଜ, ବୈଦେଶିକ ନାମ, କଚିରିଆ, ପ୍ରାକୃତ, ଅପ୍ରାକୃତ, ବଚନ, ପ୍ରବଚନ, କଥା, ଢଗ, ସହଚର, ଗ୍ରାମ୍ୟ, ହାକିମିଆ, ଶ୍ଳୀଳ, ଅଶ୍ଳୀଳ ଶବ୍ଦ ଅଛି ଯେ ଓଡ଼ିଶାର ଏକ ପ୍ରାନ୍ତବାସୀ ଅନ୍ୟ ପ୍ରାନ୍ତ ଶବ୍ଦ ବୁଝିବା ବଡ଼ କଠିନ ।

୮. ପୂର୍ବଥରମାନଙ୍କରେ ଯାହା ଦେଖାଇ ଦିଆଯାଇଛି, ତାହା ପଢ଼ି ହୁଏତ କେହି ଭାବିପାରନ୍ତି ଯେ ସମଗ୍ର ଗ୍ରନ୍ଥଟା ତ ଏପରି ଅଶ୍ଳୀଳ ଅର୍ଥାତ୍ 'ଅଶ୍ରିଳ' ହୋଇଛି, ଆଉ ପୁଣି ଅଶ୍ଳୀଳତାର କଥା କାହିଁକି ? ସେପରି ଯେବେ କିଏ ଭାବିଥା'ନ୍ତି, ତାହା ଭୁଲ୍ । ଗ୍ରନ୍ଥର ଗୌରବମୟ ଅଧ୍ୟାୟ ଏପର୍ଯ୍ୟନ୍ତ ଆରମ୍ଭ ହୋଇ ନାହିଁ । ସଂଗ୍ରାହକ ଭାଷାର ଅଶ୍ଳୀଳତା ଭିତରେ ଯେ ଶ୍ଳୀଳତାର ସୀମା ଲଙ୍ଘନ କରି ଜାତିକି ଶବ୍ଦ ସମ୍ଭାର ଦାନ କରିଛନ୍ତି, ସେହି କଥା କେବଳ ଏଠାରେ କୁହାଯାଉଛି । ×× ପ୍ରହରାଜଙ୍କର ଅଶ୍ଳୀଳ ଶବ୍ଦ ପ୍ରତି ନିତାନ୍ତ ଯଦି ଏତେ ମମତା ହେଲା ଏବଂ ନିତାନ୍ତ ପକ୍ଷରେ ସେହି ସବୁ ଶବ୍ଦ ଯେବେ 'କୋଷ' ରେ ସ୍ଥାନ ଦେବା ଦରକାର ପଡ଼ିଲା, ତାହାହେଲେ କେବଳ ମୂଳ ଶବ୍ଦଟିମାନ ଦେଇ (ବିଶିଷ୍ଟ ପ୍ରୟୋଗ Idioms, ବାକ୍ୟାଂଶ Phrase ନ ଦେଇ) ତା' ପାଖରେ କେବଳ ଅଶ୍ଳୀଳ ବୋଲି ଲେଖି ଦେଇଥିଲେ କ'ଣ ଚଳି ନ ଥା'ନ୍ତା ? ନାହିଁ ଯଦି ଶବ୍ଦର ବିଶେଷ ବ୍ୟାଖ୍ୟା ଦେବା ଆବଶ୍ୟକ ହେଲା, ତେବେ ସେସବୁକୁ ଭାଷାର ଆବରଣ ଭିତରେ ରଖି କେବଳ ଦିଇ ଚାରି ପଦରେ କ'ଣ ବ୍ୟକ୍ତ କରାଯାଇପାରି ନ ଥା'ନ୍ତା ? ତାହା ନ ହୋଇ ସେଥିରେ ଯେଉଁ ଟୀକା, ଟିପ୍ପଣୀ, ଶିଷ୍ଟ ପ୍ରୟୋଗ, ଉଦାହରଣ, ତର୍ଜମା ହୋଇଛି ତାହା ଅଶ୍ଳୀଳତାର ସୀମାକୁ ବଳି ପଡ଼ିଛି । ୨୨୨୩ ପୃଷ୍ଠାର ଦ୍ୱିତୀୟ ସ୍ତମ୍ଭ ପଞ୍ଚମ ଧାଡ଼ିରେ 'ଭଉଣୀ' ସହିତ ଏବଂ ୨୨୯୪ ପୃଷ୍ଠାର ପ୍ରଥମ ସ୍ତମ୍ଭ ୩୭ ଧାଡ଼ିରେ ଘୋଡ଼ା ସହିତ ସମ୍ପର୍କ ରଖି

ଯେଉଁ ଶବ୍ଦ ଗଢ଼ାଯାଇ ଉଦାହରଣ ଦିଆହୋଇଛି, ତାହା ଓଡ଼ିଆ ଜାତୀୟ ଚରିତ୍ରକୁ କେତେ ଦୂର ଫୁଟାଇଛି –ପାଠକେ ବୁଝିପାରିବେ । ସେହିଭଳି ସମସ୍ତ ଶବ୍ଦ ଯେବେ 'ପାଳକୋଷ'ରେ ସ୍ଥାନ ପାଇବା କଥା ତାହାହେଲେ ତ ଶ୍ୱଶୁର, ରାଣ୍ଡ, ପରପୁରୁଷ, ପଠାଣ ପ୍ରଭୃତି ନାନା ଶବ୍ଦ ସଙ୍ଗେ ସଂପର୍କ ରଖି ନିତାନ୍ତ ଇତର, ଅଶ୍ଳୀଳ ପ୍ରୟୋଗମାନ ଲୋକମୁଖରେ ଖୋଜିବାକୁ ହେବ । (ସହକାର : ୧୪ଶ ଭାଗ, ୧୨ଶ ସଂଖ୍ୟା, ପୃ. ୧୧୫୨-୧୧୫୭)

୯. ବିଷୟ ନିର୍ବାଚନରେ କିପରି ଅସମତା ଅଛି, ସେ ବିଷୟରେ ବେଶି କିଛି ନ କହି, ଭାଷାକୋଷର ପୃଷ୍ଠା ଚିହ୍ନାଇ ଦେଲେ ଚଳିବ । ୩୨୯୦ ପୃଷ୍ଠା ଠାରୁ ୩୨୯୩ ପୃଷ୍ଠା ପର୍ଯ୍ୟନ୍ତ ଢିଙ୍କିର ବ୍ୟାଖ୍ୟା ତର୍ଜମାରେ ପାଞ୍ଚଟି ସ୍ତମ୍ଭ ପୂର୍ଣ୍ଣ । ତାହା ଭିତରେ 'ଢିଙ୍କି ଗୀତ', ଢିଙ୍କି ସମକାଇବା ଗୀତ ପ୍ରଭୃତି ଦିଆଯାଇଛି । ଢିଙ୍କି ଗିଳିବା, ଢିଙ୍କି ଗିଳାଇବା, ଢିଙ୍କିରେ ଧାନ ପେଲିବା ପ୍ରଭୃତି ବିଷୟରେ ଯେବେ ଗୋଟିଏ ଗୋଟିଏ ଗୀତ ଦିଆଯାଇପାରିଥା'ନ୍ତା, ତାହାହେଲେ ଦଶ ପଚାଶ ସ୍ତମ୍ଭ ସ୍ଥାନ ପାଇପାରିଥାଆନ୍ତା । 'ଢିଙ୍କି' ପ୍ରତି ଏତେ ପକ୍ଷପାତ, ଅଥଚ ଚାନ୍ଦବାଲି ପରି ପ୍ରସିଦ୍ଧ ପ୍ରାଚୀନ ବନ୍ଦର ବିଷୟରେ ପାଞ୍ଚ ସ୍ତମ୍ଭ ତ ଦୂରର କଥା, ପାଞ୍ଚର ଦୁଇଗୁଣ ଧାଡ଼ି ସୁଦ୍ଧା ନାହିଁ । ××

୧୦. ଆଉ ଗୋଟିଏ ବିଷୟ ଲେଖି ଏ କିସ୍ତିର ସମାଲୋଚନା ଶେଷ କରିବି । ଗ୍ରନ୍ଥକାର ଭାଷାକୋଷର ଭୂମିକାରେ ଶିଷ୍ଟପ୍ରୟୋଗ ବିଷୟ ଅବତାରଣା କରି ଓଡ଼ିଶାର କେତେକ ଲେଖକଙ୍କ ନାମ ଦେଇଛନ୍ତି । ସେହି ଲେଖକମାନଙ୍କ ଲେଖାରୁ ଭାଷାକୋଷରେ ନିହିତ ଶବ୍ଦର ବ୍ୟବହାର ଉଦ୍ଧାର କରିଛନ୍ତି । ଏ ସମ୍ପର୍କରେ ମଧ୍ୟ ଗ୍ରନ୍ଥକାର ଠିକ୍ ବୁଝିପାରି ନାହାନ୍ତି ବୋଲି ମନେହୁଏ । ×× ମୁଁ ନୂତନ ଯୁବକ ଲେଖକମାନଙ୍କ ବିଷୟରେ କହୁ ନାହିଁ । କିନ୍ତୁ ସ୍ୱର୍ଗୀୟ ଉତ୍କଳମଣି ଗୋପବନ୍ଧୁ, ପଣ୍ଡିତ ଗୋଦାବରୀଶ, କବି ପଦ୍ମଚରଣ, କବି ଲକ୍ଷ୍ମୀକାନ୍ତ, କବି କୃଷ୍ଣମୋହନ, ଲେଖକ ରାମଚନ୍ଦ୍ର ଆଚାର୍ଯ୍ୟ, ସାହିତ୍ୟିକ ଶଶିଭୂଷଣ ରାୟ ପ୍ରଭୃତିଙ୍କ ନାମ ଗନ୍ଧ ସେଥିରେ ନାହିଁ । ଏହି ସମ୍ପର୍କରେ ଆଉ ଗୋଟିଏ କଥା ମଧ୍ୟ ଉଲ୍ଲେଖ କରାଯିବା ଉଚିତ । ଗ୍ରନ୍ଥକାର ଶବ୍ଦର ବ୍ୟବହାର ଦେଖାଇବା ନିମନ୍ତେ କିପରି ଶବ୍ଦସବୁ ନିର୍ବାଚନ କରିଛନ୍ତି, ଦେଖାଯାଉ । ସେଥିରୁ ତାଙ୍କର ରୁଚି ବିଷୟରେ ପାଠକମାନଙ୍କର ସମାନ ସୁମତ ହେବ ନାହିଁ । ଗୋଟିଏ ଦୁଇଟି ଉଦାହରଣରୁ ଏହାର ସତ୍ୟତା ବୁଝାଯିବ –୨୯୬୧ ପୃଷ୍ଠାରେ 'ଜାନୁ-ଯଉବନ' ଶବ୍ଦ ତଳେ ଶିଷ୍ଟ ପ୍ରୟୋଗ ଛଳରେ ଢଗ ଦିଆଯାଇଛି –

ଗୁଣୁଝୁଣୁ ହୋଇ ଗାଧୋଇ ପାଧୋଇ
ନଇରୁ ଆସୁଛି ଗୋରୀ,
ଜାନୁଯଉବନ ସବୁ ଦିଶୁଅଛି
ସରୁ ଲୁଗା ଫୁଟି କରି ।

୩୬୦୪ ପୃଷ୍ଠାରେ 'ଥନ ଯଉବନ' ଶବ୍ଦ ତଳେ ଅଛି –

ଆଗେରେ କାଳିଆ ! ନାହିଁ କରୁଥିଲୁ
ସିଂଘାଣି ନାକକୁ ଦେଖି
ଏବେରେ କାଳିଆ ଝୁରି ମରୁଅଛୁ
'ଥନ ଯଉବନ' ଦେଖି ।

୨୯୫୭ ପୃଷ୍ଠାରେ 'ଜାତି ଦେବା' ଶବ୍ଦ ତଳେ ଅଛି –

ପିନ୍ଧିକରି ପାଟ ଶାଢ଼ି
ଜାତି ନବ ବୋଲି ପଠାଣ ଟୋକାଟା
ଦୁଆର ବସିଲା ମାଡ଼ି ।

ସେ ଯାହାହେଉ, ଏପରି ଢଗଢମାଳିରୁ ଶିଷ୍ଟ ପ୍ରୟୋଗ ବାହାର କରିବାକୁ ହେଲେ ଉତ୍କଳରେ କ୍ଷେତ୍ରର ଅଭାବ ନାହିଁ । ଏ କ୍ଷେତ୍ରମାନଙ୍କ ମଧ୍ୟରେ ପ୍ରଧାନ କ୍ଷେତ୍ର ହେଉଛି 'ଶ୍ରୀକ୍ଷେତ୍ର' । ଶ୍ରୀକ୍ଷେତ୍ରରେ ରଥଯାତ୍ରା ସମୟରେ ଥରେ ପ୍ରହରାଜ ମହାଶୟ ନିଜେ ଆସି କିମ୍ବା ତାଙ୍କର ଭାଷାକୋଷ ସହକର୍ମୀମାନଙ୍କ ମଧ୍ୟରୁ କାହାକୁ ପ୍ରତିନିଧି ପଠାଇ ରଥ ଉପର ଗାଉଣାରୁ ବିଷୟ ସଂଗ୍ରହ କରିନେଲେ, ତାଙ୍କଦ୍ୱାରା ଭାଷାକୋଷରେ ନିହିତ ଏକ ଶ୍ରେଣୀର ଶବ୍ଦମାନଙ୍କପାଇଁ ଯଥେଷ୍ଟ ଶିଷ୍ଟପ୍ରୟୋଗ ପାଇଯିବେ । (ସହକାର : ୧୫ଶ ଭାଗ/୨ୟ ସଂଖ୍ୟା : ପୃ. ୧୪୭-୧୫୨)

୧୧. କେହି କେହି କହିବେ, ତାଙ୍କର ଭୌଗୋଳିକ ଜ୍ଞାନର ଅଭାବ ଅଛି, ଆଉ କେହି କେହି କହିବେ, ତାଙ୍କର ସ୍ଥାନାସ୍ଥାନ ବା କାଳାକାଳ ବିଚାର ନାହିଁ । ଏହିପରି କେତୋଟି ବିଷୟ ହିଁ ତଳେ ଦିଆଯାଉଛି । ଗ୍ରନ୍ଥର ୧୦୩ ପୃଷ୍ଠାର 'ଅଙ୍କ ନାମା ଧନ୍ଦା' ଶବ୍ଦ ତଳେ ଲେଖାଯାଇଛି – ''ରାମମହେନ୍ଦ୍ରୀର କାବେରୀ ନଦୀ କୂଳେ ବାସ କରୁଥିବା...'' ରାଜମହେନ୍ଦ୍ରୀ କାବେରୀ ନଦୀ ଠାରୁ ଛଅଶହ ମାଇଲ୍ ଦୂରରେ । ଜଣେ ଲୋକ କିପରି ଏକ ସମୟରେ କାବେରୀ ନଦୀ କୂଳରେ ଓ ରାଜମହେନ୍ଦ୍ରୀରେ ରହିପାରେ, ତାହା ପ୍ରହରାଜେ କହିପାରିବେ ? ୨୩୯୩ ପୃଷ୍ଠାରେ ଲେଖା ଅଛି – ''ଗୋଦାବରୀ ମାନ୍ଦ୍ରାଜ ପ୍ରଦେଶର ଗୋଟିଏ ଜିଲ୍ଲା'' – ସ୍କୁଲ୍‌ର ଛାତ୍ରମାନେ କହିପାରିବେ ଯେ ମାନ୍ଦ୍ରାଜ ପ୍ରଦେଶରେ ଗୋଦାବରୀ ବୋଲି କୌଣସି ଜିଲ୍ଲା ନାହିଁ ।

ପୂର୍ବ ଗୋଦାବରୀ ଓ ପଶ୍ଚିମ ଗୋଦାବରୀ ବୋଲି ଦୁଇଟି ଜିଲ୍ଲା ଅଛି । ଗଞ୍ଜାମ ଜିଲ୍ଲାର ଗୋପାଳପୁର ଗୋଟିଏ ପ୍ରଧାନ ସ୍ଥାନ । ହଜାର ହଜାର ଓଡ଼ିଆ ପ୍ରତିଦିନ ସେହି ବାଟେ ବ୍ରହ୍ମଦେଶ ଯାଉଛନ୍ତି । ସ୍ୱାସ୍ଥ୍ୟନିବାସରୂପେ ତାହା ଶତ ଶତ ଲୋକଙ୍କୁ ଆକର୍ଷଣ କରୁଛି । ମାତ୍ର ସେହି ଗୋପାଳପୁରକୁ ପ୍ରହରାଜେ କୋଷରେ ସ୍ଥାନ ଦେଇ ନାହାନ୍ତି । ଗଞ୍ଜାମ, ଆସିକା, ଉଦୟଗିରି, ଛତ୍ରପୁର ଆଦି କି ଦୋଷ କଲେ ? କୋଷରେ ତ ଓଡ଼ିଶାର ଓ ଓଡ଼ିଶା ବାହାରର ଅନେକ ଗ୍ରାମ, ସହର, ଜିଲ୍ଲାର ନାମ ପରିଚୟ ଦିଆଯାଇଛି – କେନ୍ଦ୍ରାପଡ଼ା, ଖୋରଧା, କଟକ, ଗାର୍ଣ୍ଣର, କାନପୁର, ଅକ୍ସଫୋର୍ଡ ପ୍ରଭୃତି ସ୍ଥାନ ପାଇଛି । ଛତ୍ରପୁର, ଗଞ୍ଜାମ ଜିଲ୍ଲାର ରାଜଧାନୀ । ଜିଲ୍ଲାର ରାଜଧାନୀ ହିସାବରେ ବାଲେଶ୍ୱର, କଟକ ପରି ତାହା ପ୍ରସିଦ୍ଧ । ମାତ୍ର ଲେଖକ ଯେତେବେଳେ ଖୋଦ୍ ଗଞ୍ଜାମ ଜିଲ୍ଲାକୁ ଗ୍ରନ୍ଥରେ ସ୍ଥାନ ଦେଇ ନାହାନ୍ତି, ରାଜଧାନୀକୁ ବା ଦେବେ କାହିଁକି ? ବିଶେଷରେ ଗ୍ରନ୍ଥ ଭିତରେ ଅନେକ ଶବ୍ଦ ପାଖେ 'ଗଞ୍ଜାମ' ପ୍ରୟୋଗ ବୋଲି ଲେଖାଅଛି । ମାତ୍ର ସେଇ ଗଞ୍ଜାମଟା ଜିଲ୍ଲା କି ପାହାଡ଼, କି ସମୁଦ୍ର ବାହାର ପାଠକେ କ'ଣ ବୁଝିବେ ? ଗୋପୀଭାଷା ଓଡ଼ିଶାର ଗୋଟିଏ ଅତି ପ୍ରାଚୀନ ପ୍ରସିଦ୍ଧ ଲେଖା । ତାହା ଘରେ ଘରେ ପଢ଼ାଯାଏ । ମାତ୍ର ଭାଷାକୋଷ ପ୍ରଣେତା ତାଙ୍କ ଗ୍ରନ୍ଥର ୨୩୨୧ ପୃଷ୍ଠାରେ ଗୋପୀଭାଷାର ଲେଖକରୂପେ କେଉଁଆଡୁ ଟାଣିଆଣି ଭକ୍ତଚରଣ ଦାସଙ୍କୁ ଥୋଇଛନ୍ତି । ଭକ୍ତଚରଣ ମଥୁରା ମଙ୍ଗଳର ଲେଖକ । ଗୋପୀ ଭାଷା, ମଥୁରାମଙ୍ଗଳ ଦୁଇଟି ଅଲଗା ଅଲଗା ଗ୍ରନ୍ଥ ଜାଣିଥିଲେ ବୋଧହୁଏ ଗ୍ରନ୍ଥକର୍ତ୍ତା ଏପରି ପ୍ରମାଦ ପଙ୍କରେ ଗୋଡ଼ ପୂରାଇ ନ ଥା'ନ୍ତେ । ଆଉ ଏଣିକି ପଞ୍ଚମ ଖଣ୍ଡ ବାହାର ନ କରି ତାହାରି ସ୍ଥାନରେ ଶୁଦ୍ଧିପତ୍ର ଖଣ୍ଡ ସଂକଳନରେ ଲାଗିଗଲେ ଲୋକେ ବହୁ ପ୍ରମାଦରୁ ରକ୍ଷା ପାଇବେ । (ସହକାର : ୧୫ଶ ଭାଗ' ୫ମ ସଂଖ୍ୟା : ପୃଷ୍ଠା-୪୪୪-୪୪୭)

୧୯୩୪ ମସିହା ପରେ ଶ୍ରୀଯୁକ୍ତ ମହାପାତ୍ର ସହକାର ପୃଷ୍ଠାରେ ନିରବ ରହିଛନ୍ତି ଏବଂ ନିଆଁଖୁଣ୍ଟା ପତ୍ରିକାରେ ତାଙ୍କର କ୍ରୋଧାଗ୍ନି ସର୍ବଗ୍ରାସୀ ମାନସିକତାରେ ସତେଯେପରି ଅନ୍ଧ ହୋଇଯାଇଛି । ଏଠାରେ ତାଙ୍କର ଆକ୍ଷେପର କେତେଗୋଟି ଉଦାହରଣ ଦିଆଯାଇପାରେ ।

୧. ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କଦ୍ୱାରା ସମ୍ପାଦିତ 'ପାଳକୋଷ' ଗ୍ରନ୍ଥରେ ଉତ୍କଳ ଶବ୍ଦର ଅର୍ଥ ଭାରବାହକ, ବେହେରା, Carrier ବୋଲି ଲେଖାଯାଇଛି । ବେଦରୁ ଆରମ୍ଭ କରି ସଂସ୍କୃତ ପୁରାଣ, ଶାସ୍ତ୍ର, ତନ୍ତ୍ର, କାବ୍ୟରେ ଉତ୍କଳର ଏ କଦର୍ଥ ଲେଖା ନାହିଁ । କେବଳ ପାଳକୋଷରେ ଅଛି । ପଡ଼ୋଶୀ ଜାତି ଉତ୍କଳର ଏ ଅର୍ଥ ସୃଷ୍ଟି କରିଛନ୍ତି ଏବଂ ଓଡ଼ିଶାର ବିଜ୍ଞ ସାହିତ୍ୟିକ, ଅପମାନକୁ ବରଣ କରି ଓଡ଼ିଆ ଭାଷାର

ପାଳକୋଷରେ ଗ୍ରହଣ କରିଚନ୍ତି । ଓଡ଼ିଆ ଜାତି ଏହା ମୁଣ୍ଡ ପାତି ସହିଛି । ଓଡ଼ିଆ ଯୁବକ ଏ ଅର୍ଥ ପଢ଼ି ନିରବ ରହିଛି ଓ ଓଡ଼ିଶାର ମନ୍ତ୍ରିମଣ୍ଡଳ ଏ ଗ୍ରନ୍ଥପାଇଁ ଜାତିର କୋଷଭଣ୍ଡାରରୁ ଅର୍ଥଦାନ କରିଛନ୍ତି । ଏଥିର କି ପ୍ରତିକାର ନାହିଁ ?

ପତ୍ରିକାର ମୁଖପୃଷ୍ଠା ଓ ଷଷ୍ଠପୃଷ୍ଠାରେ ଏକ ଚିତ୍ର ରହିଛି । ତଳେ ଲେଖାଯାଇଛି, ଉତ୍କଳ ଭାରବାହକ । ଚିତ୍ରରେ ଆଗରେ ରହିଛନ୍ତି ଗୋପାଳ ଚନ୍ଦ୍ର ପ୍ରହରାଜ ଓ ପଛରେ ଗୋଦାବରୀଶ ମିଶ୍ର । (ନିଆଁଖୁଣ୍ଟା :୨.୬. ୧୯୩୮/ଗୁରୁବାର-ବ୍ରହ୍ମପୁର/ପୃ.୦୬)

୨. ଅମରକୋଷରେ ଏବଂ ପ୍ରହରାଜଙ୍କ ପାଳକୋଷରେ ଏତେ ନାଁ ଥାଉ ଥାଉ ନିଆଁଖୁଣ୍ଟା ନାଁ ଉପରେ ଯେ ଏତେ ପ୍ରେମ କାହିଁକି ବର୍ଷିଗଲା, ତା'ର କୈଫିୟତ୍ ଯେତେବେଳେ ଲୋକେ ପଚାରିଲେଣି, ସମସ୍ତଙ୍କୁ ମୌଖିକ ଉତ୍ତର ଦେଲେ କବିବରଙ୍କ ଅଂଶୁପା ହ୍ରଦ କଥା ତ ତେଣିକି ଥାଉ, ଖୋଦ୍ କାସ୍ପିୟାନ୍ ସାଗର ମଧ ଶୁଖିଯିବାକୁ ପଡ଼ିବ । (ନିଆଁଖୁଣ୍ଟା : ତା ୨୩.୩.୩୮)

୩. ପଣ୍ଡିତ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପାଳକୋଷ କାମ ଶେଷ ହୋଇଛି । ଏଣିକି ସେ ଦେଶରେ ନେତାକୋଷ କାମରେ ହାତଦେଲେ ନିଶ୍ଚୟ କୃତକାର୍ଯ୍ୟ ହେବେ । ତାଙ୍କୁ ପ୍ରଧାନମନ୍ତ୍ରୀଙ୍କ ଭାଷାରେ ସହାୟ କରିବାକୁ ତଳେ କେତୋଟି ସୂଚନା ଦିଆଗଲା ।

| | |
|---|---|
| ସବ୍‌ଜାନ୍ତା ନେତା | ନୀଳକଣ୍ଠ ଦାସ |
| ଚାଷୀ ନେତା | ନବକୃଷ୍ଣ ଚୌଧୁରୀ |
| ଅସାଧାରଣ ନେତା | ଗୋପବନ୍ଧୁ ଚୌଧୁରୀ |

(ନିଆଁଖୁଣ୍ଟା : ତା. ୧.୧୦.୩୮/ପୃ.୨)

୪. ଓଡ଼ିଶାର ଉପର ମହଲରୁ କେତେ ଜଣ ବଛା ବଛା ବଡ଼ଲୋକ ସବୁ ତୀର୍ଥ କରି ବାହାରିଛନ୍ତି । ପ୍ରହରାଜେ ପାଳକୋଷ ନୈବେଦ୍ୟ ଦେଇ ଯମୁନା କୂଳରେ ଲାଟ ଦେବତାଙ୍କୁ ପୂଜା କରିବାକୁ ଯାଉଛନ୍ତି । ଶାସ୍ତ୍ରରେ ତ ଅଛି, ସ୍ତ୍ରୀ ଅଭାବରେ ସ୍ତ୍ରୀର ସ୍ୱର୍ଣ୍ଣମୂର୍ତ୍ତି ଧରି କାମ କରାଯାଇପାରେ । ଭାଗ୍ୟକୁ ସୁନାର ରଙ୍ଗଟା ପୀତବର୍ଣ୍ଣ । (ମୁଖପୃଷ୍ଠାରେ ପ୍ରହରାଜଙ୍କ ଦିଲ୍ଲୀଯାତ୍ରାର ଛବି ରହିଛି ଓ ତଳେ ଲେଖାଯାଇଛି – 'ଓଡ଼ିଶାରେ ପୁଣ୍ୟ ଅର୍ଜନ' । ପତ୍ନୀଙ୍କ ଅନୁଜ୍ଞା ପୀତାମ୍ବରୀ ଦେବୀଙ୍କୁ ପୀତବର୍ଣ୍ଣ ଶବ୍ଦରେ ବ୍ୟଙ୍ଗ କରାଯାଇଛି । (ନିଆଁଖୁଣ୍ଟା : ୨ୟ ବର୍ଷ/୧୪ଶ ସଂଖ୍ୟା/ପୃ.୧୩)

୫. ଓଡ଼ିଶାରେ ବିରାଟ ଅପମାନ : ପାଳକୋଷ (ନିଆଁଖୁଣ୍ଟା : ୨ୟ ବର୍ଷ/୨୩ଶତମ ସଂଖ୍ୟା/ପୃ.୧୧)

୬. ଆମ ନୂଆ ବର୍ଷ : ଗୋପାଳ ଚନ୍ଦ୍ର ପ୍ରହରାଜ ଓଡ଼ିଆଙ୍କୁ ଗଧ ବୋଲି କହି ମଧ ଚାନ୍ଦା ଆଦାୟ କରିପାରେ । (ନିଆଁଖୁଣ୍ଟା : ୨ୟ ବର୍ଷ/୨୮ଶ ସଂଖ୍ୟା/ପୃ.୨)

୭. ପ୍ରହରାଜଙ୍କ ବିହାରୀ କୋଷ : ଏ ନାଁ ରୁ ପାଠକମାନେ ହଠାତ୍ ମନେ କରିବେ ଯେ, ଓଡ଼ିଶାର ଶ୍ରଦ୍ଧେୟ ପାଳକୋଷ ଲେଖକ ରାୟବାହାଦୁର ଗୋପାଳ ଚନ୍ଦ୍ର ପ୍ରହରାଜ ଓଡ଼ିଆ ଭାଷା ପରେ ବିହାରୀ ଭାଷା ଉପରେ ଏକ କୋଷ ଲେଖୁଛନ୍ତି; କିନ୍ତୁ ତାହା ଠିକ୍ ନୁହେଁ । ଏ ହେଉଛି ପ୍ରହରାଜ + ଓଡ଼ିଶାର ପ୍ରଧାନ ଦସ୍ୟୁ ବିହାରୀ ନାଏକ + ତା'ର ଅର୍ଥ ଭଣ୍ଡାର ବା କୋଷ = ପ୍ରହରାଜଙ୍କ ବିହାରୀ କୋଷ । (ନିଆଁଖୁଣ୍ଟା : ୨ୟ ବର୍ଷ, ୨୮ଶତମ ସଂଖ୍ୟା ପୃ୧୩/୧୪)

୮. 'ବୋଲ ହରି ହରି' ଶୀର୍ଷକରେ ଏକ କବିତା

'ପ୍ରତି ଦିନ' ଛାଡ଼ି କହ 'ରୋଜ' ନିତି ନିତି
ପାଳକୋଷ କାଢ଼ି ରଖ, ପାଦାଣ୍ଠିରେ ପ୍ରୀତି ।
ପୋଲେନ୍ କହ ହେ ପୁଣି ପାଳକୋଷ ଘୋଷି
ଚିକ୍କଣ ଅର୍ଥରେ ଲେଖିଛନ୍ତି ପାଳଚାଷୀ ।
ଓଡ଼ିଶାର ଅର୍ଥ 'ଉଡ଼େ' ବଙ୍ଗାଳୀଙ୍କ ଗାଳି
ଲେଖିଛନ୍ତି ପ୍ରହରାଜେ ବୋଲ୍ ହରି ହରି ।
(ନିଆଁଖୁଣ୍ଟା : ୧.୨.୧୯୪୨)

୯. କେଉଁଠୁ କ'ଣ ମିଳେ । ବହୁତ କାଗଜ : ପାଳକୋଷ ଆଶ୍ରମରେ (ନିଆଁଖୁଣ୍ଟା/ ୨୮ଶତମ ସଂଖ୍ୟା, ପୃଷ୍ଠା ୨)

୧୦. ଦିଲ୍ଲୀଯାତ୍ରା (କଳାକଳେବର କହ୍ନାଇ ବୃତ୍ତେ ଗୀୟତେ)

ପାଳକୋଷ ପ୍ରାୟ ପାଳଙ୍କ ପଦେ ରଖ ହେ ଚିତ୍ତ
କରନ୍ତି ସେ ଦିଲ୍ଲୀ ବିଜୟ ଦାଣ୍ଡେ ଦେଖ ସଙ୍ଗାତ । xxx
ପାଳକୋଷ ପିତା ମାତା ଏ ଦେଖ ଯାଆନ୍ତି ଦାଣ୍ଡେ
ଓଡ଼ିଆକୁ ଲେଖିପାରନ୍ତି ଭାରବାହୀ ଯେ ଚାଣ୍ଡେ ।
ଏ ଦେଶ ଧନରେ ପାଳିତ ପ୍ରିୟ ଏ ପାଳକୋଷ
ଘର ନିଆଁ ଏ ଯେ ଅଣ୍ଟିରେ ରଖ ନାହିଁ କି ଦୋଷ । xx
ଜାତି ନାଆଁପକା ବୀର ଏ ଦେଇ ଜାତିକି ଗାଳି
ତଥାପି ବୋଲାନ୍ତି ଦେଶେ ଏ ଜ୍ଞାନ ବିଭବଶାଳୀ ।

ପତ୍ରିକାର ମୁଖପୃଷ୍ଠାରେ ଗୋପାଳ ଚନ୍ଦ୍ର ପ୍ରହରାଜ ଓ ଶ୍ରୀମତୀ ପୀତାମ୍ବରୀ ଦେବୀଙ୍କର ବ୍ୟଙ୍ଗଚିତ୍ର ରହିଛି । ଭାଷାକୋଷ/ପାଳକୋଷକୁ ମଥାରେ ଥୋଇ ଉଭୟ ଦିଲ୍ଲୀଯାତ୍ରା କରୁଛନ୍ତି । (ନିଆଁଖୁଣ୍ଟା : ଦ୍ୱିତୀୟ ବର୍ଷ/୧୮ଶତମ ସଂଖ୍ୟା-୧୯୪୦)

## ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ 'ପାଠ୍ୟପୁସ୍ତକ' ସମାଲୋଚନାର ପ୍ରତିବାଦ

''ଏବେ ତାଙ୍କୁ ଅଲଗା ଭାବରେ ବହି ଆକାରରେ ଛପାଉଛନ୍ତି । ଖାଲି ସେ ଛପାଇ ନାହାନ୍ତି, ସାରା ଓଡ଼ିଶା ଦେଶରେ ଭାଷାକୋଷ ଓରଫ୍ ପାଳକୋଷ ବାବଦରେ ରାଜା ମହାରାଜାଙ୍କଠାରୁ ପାଇଥିବା ଟଙ୍କାକୁ ଅଫିମ ଖର୍ଚ୍ଚ ବାଦ୍, ଡାକଟିକେଟ୍ ଖର୍ଚ୍ଚ କରି ନାନା ଲୋକଙ୍କଠାରୁ ପଠାଇବାରେ ଲାଗିଛନ୍ତି । ×× ତାଙ୍କ ପରି ସଦାଚାରୀ ତଥା ସତ୍ୟ ସମାଚାରୀ ପଣ୍ଡିତ ଥାଉ ଥାଉ ଓଡ଼ିଆ ସାହିତ୍ୟ ଭାସିଗଲା ବୋଲି କାହିଁକି ଚିତ୍କାର କରୁଛନ୍ତି ×× କିଛି ଜରୁରୀ ନ ପଡ଼ିଲେ ପ୍ରହରାଜେ କଲମ ଧରନ୍ତି ନାହିଁ ×× ପଣ୍ଡିତ କୁଳମଣି ଦାଶଙ୍କ ବହି ପାଠ୍ୟପୁସ୍ତକ କମିଟି କାଟିଦେବାରୁ ×× ଏ ସମାଲୋଚନା ଲେଖାଗଲା । ×× ଓଡ଼ିଆ ବୋଲି ଓଡ଼ିଶାରେ ନିର୍ଭୀକ ଓଡ଼ିଆ ଅଛନ୍ତି ବୋଲି ସେ ଗାଳି ଦେଇ ରାୟବାହାଦୁର ପ୍ରଶଂସା ଓ ହଜାର ଟଙ୍କା ପାଉଛନ୍ତି ।

(ନିଆଁଖୁଣ୍ଟା : ୧ମ ବର୍ଷ ୧୭ଶ ସଂଖ୍ୟା ତା ୨୬.୩.୩୮. ପୃ.୬-୭ ।)

ଗୋଦାବରୀଶ ମହାପାତ୍ରଙ୍କ ପରି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ଆପଣା ସମ୍ପାଦିତ 'ଡଗର' ପତ୍ରିକାର ବିଭିନ୍ନ ସଂଖ୍ୟାରେ *ଶ୍ରୀ ଶ୍ରୀ ହନୁମନ୍ତ କପିବର ନକଲ ନବିସ୍* ଛଦ୍ମନାମରେ ବହୁ ଶବ୍ଦର ଲାକ୍ଷଣିକ ଅର୍ଥ ଉଲ୍ଲେଖ କରିଛନ୍ତି । ସଂକଳିତ ଶବ୍ଦଗୁଡ଼ିକ ପାରୋଡ଼ି ବା ଲାଳିକା ଶ୍ରେଣୀର । ସଂକଳନର ଶୀର୍ଷକ ରଖାଯାଇଛି 'ଅର୍ଦ୍ଧଚନ୍ଦ୍ର ଦେଢ଼ିଆ ଭାଷାକୋଷ' ।

ଏପରିକି ଶ୍ରୀମତୀ ସରଳାଦେବୀ ଆପଣାର 'ଭାଷା ବ୍ୟବଧାନ' ପ୍ରବନ୍ଧ (ସହକାର, ୧୩୪୪ ସାଲ, ୧୧/୧୨ ସଂଖ୍ୟା, ପୃଷ୍ଠା ୧୦୪୦-୪୫)ରେ ପ୍ରହରାଜଙ୍କ ଭାଷା ବିଚାର ପ୍ରତି କଟୁ ଟିପ୍‌ପଣୀ ଦେଇଛନ୍ତି ।

ଭାଷାକୋଷ ସଂକ୍ରାନ୍ତରେ ଉପର୍ଯ୍ୟୁକ୍ତ ଆଲୋଚକମାନଙ୍କର ବିଚାର ଯେ ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ – ଏ କଥା ନୁହେଁ । କେତେକ ଶବ୍ଦ ପ୍ରତି ସେ ଅଧିକ ଦୁର୍ବଳତା ପ୍ରକାଶ କରିଥିଲାବେଳେ, ଆଉ କେତେକ ପ୍ରତି ପ୍ରାୟତଃ ଗୁରୁତ୍ୱ ଦେଇ ନାହାନ୍ତି । ବହୁ ଶବ୍ଦର ବିଶଦ ଚର୍ଚ୍ଚା ମଧ୍ୟ ଅନାବଶ୍ୟକ ବୋଧହୋଇଛି । ପ୍ରତ୍ୟେକ ଆଲୋଚକ କୋଷଗ୍ରନ୍ଥର ଅଭାବ ସମ୍ପର୍କରେ ପ୍ରହରାଜଙ୍କୁ ସଚେତନ କରିଦେଇଛନ୍ତି ଏବଂ ସେ ମଧ୍ୟ ସେମାନଙ୍କୁ ସମ୍ମାନ ଦେଇଛନ୍ତି । ମାତ୍ର ଆଲୋଚନା ଅନେକତ୍ର ଗଠନାତ୍ମକ ପରିବର୍ତ୍ତେ କୁତ୍ସା ରଟନାରେ ଭାରାକ୍ରାନ୍ତ ହୋଇଛି । ଗୋରା ସରକାରଙ୍କ ପ୍ରତି ପ୍ରହରାଜଙ୍କ ମାତ୍ରାଧିକ ଆନୁଗତ୍ୟ ପ୍ରଦର୍ଶନ; ପତ୍ନୀଙ୍କ ସହିତ ମତାନ୍ତର ଏବଂ ଶାଳୀ ପୀତାମ୍ବରୀ ଦେବୀଙ୍କ ସହ ସମ୍ପର୍କ; କଂଗ୍ରେସୀ ସତ୍ୟାଗ୍ରହୀମାନଙ୍କୁ ତୀବ୍ର ସମାଲୋଚନା; କୋଷଗ୍ରନ୍ଥ ସଂକଳନ ଉଦ୍ଦେଶ୍ୟରେ ରାଜା, ମହାରାଜା, ସମ୍ଭ୍ରାନ୍ତ ବ୍ୟକ୍ତିବିଶେଷ, ପଦସ୍ଥ ସରକାରୀ କର୍ମଚାରୀ, ବିଭିନ୍ନ ଅନୁଷ୍ଠାନ ଓ ସରକାରଙ୍କ ଆର୍ଥିକ ଅନୁଦାନ ଲାଭ; ଗ୍ରନ୍ଥରେ ସମଧର୍ମୀ ବ୍ୟକ୍ତିମାନଙ୍କ ପ୍ରତି ଅହେତୁକ

ଗୁରୁତ୍ୱ ଏବଂ ଲୋକ-କଥିତ ଓ ଅଶ୍ଳୀଳ ଶବ୍ଦର ସଂଯୋଜନ ଓ ବ୍ୟାଖ୍ୟା ସେମାନଙ୍କୁ ପ୍ରତିକ୍ରିୟାଶୀଳ କରିଛି ।

ଏହା ଅବଶ୍ୟ ସତ୍ୟ, ଶ୍ରୀଯୁକ୍ତ ପ୍ରହରାଜ ଇଂରେଜମାନଙ୍କର ସ୍ତାବକତା କରିଛନ୍ତି । କଂଗ୍ରେସୀ କର୍ମୀମାନଙ୍କୁ, ସେମାନଙ୍କ କାର୍ଯ୍ୟଧାରାକୁ ମର୍ମଭେଦୀ ଓ ଗାତ୍ରଦାହୀ ଭାଷାରେ ସମାଲୋଚନା କରିଛନ୍ତି । ସ୍ୱରାଜ୍ୟକୁ ଏକ ମନଗଢ଼ା ମିଥାଦ, ଶ୍ୱରାଜ୍ୟ ଓ ସୁଆଙ୍ଗ ବୋଲି କହିଛନ୍ତି । ଗାନ୍ଧିଜୀଙ୍କୁ ମଧ କଟୁ ସମାଲୋଚନା କରିବାକୁ କିନ୍ତୁ ମଣି ନାହାନ୍ତି । ତାଙ୍କ ସମ୍ପାଦିତ ସତ୍ୟ ସମାଚାର (୧୯୩୦-୩୬) ଓ ପ୍ରଜାମିତ୍ର (୧୯୩୬) ସମ୍ବାଦପତ୍ରରେ ପ୍ରକାଶିତ ସମ୍ବାଦଗୁଡ଼ିକ ପ୍ରାୟତଃ ସମଭାବାଦର୍ଶର ଉଚ୍ଚାରଣ । ପ୍ରଜା, ରାଜା, ମହାରାଜା, ଜମିଦାର ଆଦି ପ୍ରଜାପୀଡ଼କ ଓ ଶୋଷକମାନଙ୍କୁ ଏବଂ ଯେଉଁମାନେ ତାଙ୍କ ରାଜକୀୟ ଭିକ୍ଷାବୃତ୍ତିକୁ ସ୍ୱୀକାର କରି ନାହାନ୍ତି, ସେମାନଙ୍କ ଗୋଇ ଖୋଳିଛନ୍ତି । ଆପଣା ସ୍ୱାର୍ଥକୁ ଆଗ ଦେଖିଛନ୍ତି । ଏପରିକି ଉତ୍କଳ ସମ୍ମିଳନୀର କର୍ମକର୍ତ୍ତାମାନଙ୍କୁ ମଧ ରଇଜଳା ଶବ୍ଦରେ ସମ୍ମାର୍ଜନ କରିଛନ୍ତି । ଭାଷାକୋଷର ବିଭିନ୍ନ ଖଣ୍ଡକୁ ସାର୍ ଜନ୍ ଅଷ୍ଟିନ୍ ହବାକ୍, ଏନ୍. ଏଫ୍. ପେକ୍, ନାରାୟଣ ପ୍ରସାଦ ଦେବ, ବିକ୍ରମ ଦେବବର୍ମା, କୃଷ୍ଣଚନ୍ଦ୍ର ନାରାୟଣ ଦେବ, ରାଜେନ୍ଦ୍ର ନାରାୟଣ ସିଂହଦେଓ, ମାନ୍ୟବର ଲର୍ଡ଼ ଲିନ୍‌ଲିଥ୍‌ଗୋ : ବଡ଼ଲାଟଙ୍କ ସହଯୋଗୀ, ସାହାର୍ଯ୍ୟଦାତା, ସମ୍ଭ୍ରାନ୍ତ ବ୍ୟକ୍ତିବିଶେଷମାନଙ୍କର ଫଟୋଚିତ୍ର ଓ ସେମାନଙ୍କ ନାମ ମଧ ପ୍ରକାଶ କରିଛନ୍ତି । ଆୟବ୍ୟୟର ଟିକିନିଖି ହିସାବ ରଖିଛନ୍ତି । କୋଷଗ୍ରନ୍ଥ ସହିତ ସମ୍ବନ୍ଧିତ ପ୍ରତ୍ୟେକଙ୍କ ଶ୍ରଦ୍ଧାକୁ ସ୍ୱୀକାର କରିଛନ୍ତି, ସମ୍ମାନ ଦେଇଛନ୍ତି । ଏହି କାର୍ଯ୍ୟ ସମ୍ପାଦନ କରିବାକୁ ତାଙ୍କୁ ବ୍ୟୟ କରିବାକୁ ପଡ଼ିଛି ପ୍ରାୟ ଏକ ଲକ୍ଷ ପଚିଶହଜାର ଟଙ୍କା । ଏଠାରେ ଉଲ୍ଲେଖ କରିବା ଉଚିତ ମଣୁଚି ଯେ, କେତେକ ଛିଦ୍ରାନ୍ୱେଷୀ, ପ୍ରହରାଜଙ୍କ ବ୍ୟୟ-ସ୍ୱଚ୍ଛତା ସଂକ୍ରାନ୍ତରେ ପ୍ରଶ୍ନ କରିଥା'ନ୍ତି । ମାତ୍ର ଅନୁରୂପ ଅଭିଯୋଗ ଅତ୍ୟନ୍ତ ଅମୂଳକ । ପ୍ରହରାଜ, ଭାଷାକୋଷ ସଂପାଦନପାଇଁ ସଂଗୃହୀତ ଅର୍ଥ ଓ ତାହାର ବ୍ୟୟ ସଂପର୍କରେ ଟିକିନିଖି ହିସାବ ରଖିଛନ୍ତି । ଏଥିପାଇଁ ଏକ ବନ୍ଧେଇ ମୋଟା ଖାତା ବ୍ୟବହାର କରିଛନ୍ତି । ଏଥିରେ ଚିଠି ଓ ଟେଲିଗ୍ରାମଠାରୁ ଆରମ୍ଭ କରି ସକଳ କର୍ମଚାରୀଙ୍କ ପ୍ରାପ୍ୟ ସଂକ୍ରାନ୍ତରେ ସ୍ପଷ୍ଟ ଉଲ୍ଲେଖ ରହିଛି । ତାଙ୍କ ହିସାବଖାତାକୁ ନିଜ ଆଖିରେ ଦେଖିଥିବା ଯେକୌଣସି ବ୍ୟକ୍ତି, ଏହି ଅଭିଯୋଗ ଅମୂଳକ ବୋଲି ସ୍ୱୀକାର କରିବ ଏବଂ ଆମକୁ ଏକଥା ମଧ ସ୍ୱୀକାର କରିବାକୁ ପଡ଼ିବ ଯେ, ଅନେକ ସଚେତନ ବ୍ୟକ୍ତିଙ୍କ ଆର୍ଥିକ, ଶାରୀରିକ ଓ ବୌଦ୍ଧିକ ସାହାଯ୍ୟ ଥିଲା ଶବ୍ଦକୋଷ ସଂକଳନର ପ୍ରକୃତ ଉତ୍ସ । ଏହି ଜାତୀୟ କାର୍ଯ୍ୟକୁ ସମ୍ପାଦନ ଉଦ୍ଦେଶ୍ୟରେ ପ୍ରହରାଜ ଯେକୌଣସି ନିନ୍ଦନୀୟ ଆଚରଣକୁ ନିର୍ବିକାର ଚିତ୍ତରେ ସ୍ୱୀକାର କରିଛନ୍ତି । ଅନ୍ୟର ନାକଟେକା ଓ ବୋଲୁଅ ମାଡ଼କୁ ଆପଣେଇ ନେଇଛନ୍ତି । ଭାଷାକୋଷର ସଂକଳନ ଓ ଓଡ଼ିଆ ଭାଷାର ବିଦ୍ୱାନ୍ ଭାବରେ କୈଶୋର-ଇ-ହିନ୍ଦ (ସେପ୍ଟେମ୍ବର ମାସ ୧୬

ତାରିଖ, ୧୯୩୩ ମସିହା), ସାହିତ୍ୟ ବିଶାରଦ (ଆନ୍ଧ୍ର ଭାରତୀ ତୀର୍ଥ ବିଶ୍ୱବିଦ୍ୟାଳୟ), ରାୟବାହାଦୁର (ଭାରତ ସରକାର, ୧୯୩୬ ମସିହା) ଆଦି ଉପାଧିରେ ଅଳଙ୍କୃତ ହୋଇଛନ୍ତି । ୧୯୩୪ ମସିହାରେ ଧରାକୋଟଠାରେ ଅନୁଷ୍ଠିତ ନିଖିଳ ଉତ୍କଳ କବି ସମ୍ମିଳନୀ ମଧ୍ୟ ତାଙ୍କୁ ସମ୍ବର୍ଦ୍ଧିତ କରିଛି । ମାତ୍ର ଯେଉଁମାନେ ତାଙ୍କୁ ଜାତିଦ୍ରୋହୀ ଭାବରେ ପରିଚର୍ଚ୍ଚା କରିଛନ୍ତି, ସେମାନେ କେହି ଜଣେ ହେଲେ ତାଙ୍କ ଭିତରେ ସମୂହର ସାମଗ୍ରିକ ବିକାଶପାଇଁ ବ୍ୟାକୁଳିତ ମଣିଷର ଉଦ୍ୟମକୁ ଅନୁଭବ କରିପାରି ନାହାନ୍ତି । ସ୍ୱାଧୀନତା ପାଇବାପାଇଁ ମଣିଷକୁ ପ୍ରଥମେ ନିଜକୁ ଯୋଗ୍ୟ କରିବାକୁ ପଡ଼େ ଏବଂ ଯେପର୍ଯ୍ୟନ୍ତ ଭାରତୀୟମାନେ ଏଥିପାଇଁ ଯୋଗ୍ୟ ହୋଇ ନାହାନ୍ତି, ରାଜନୀତିକ ସ୍ୱାଧୀନତା ସେମାନଙ୍କପାଇଁ ଅର୍ଥହୀନ ଓ ଭୟଙ୍କର ହୋଇପଡ଼ିବ –ତାଙ୍କ ଅନୁରୂପ ବିଚାରକୁ ସମକାଳୀନମାନେ ଗ୍ରହଣ କରିପାରି ନାହାନ୍ତି । ବିଦେଶୀ ପଦଲେହନକାରୀ ରୂପେ ତାଙ୍କ ବ୍ୟକ୍ତିତ୍ୱକୁ ପୁରୀଷଚର୍ଚ୍ଚିତ କରିଛନ୍ତି ।

ଭାଷାକୋଷର ସମାଲୋଚକମାନଙ୍କର ଅନ୍ୟତମ ଅଭିଯୋଗ – ଏହା ସଂକଳକଙ୍କର ଯୌନବିକୃତିର କୋଷାୟନ । ଭାଷାକୋଷରେ 'ଗାଣ୍ଡି' ପଦକୈନ୍ଦ୍ରିକ ଶବ୍ଦ ସଂଖ୍ୟା ଏକାବନ । (ଭାଷାକୋଷ : ୨ୟ ଖଣ୍ଡ ୨୧୮୮-୨୧୯୨) 'ଚୋଦ' ପଦକୈନ୍ଦ୍ରିକ ଶବ୍ଦ ସଂଖ୍ୟା ଚଉଦ । (ଭାଷାକୋଷ: ୨ୟ ଖଣ୍ଡ ପୃ-୨୮୩୫) ଏବଂ ପ୍ରତ୍ୟେକ ଶବ୍ଦର ଅର୍ଥକୁ ଇଂରାଜୀରେ ମଧ୍ୟ ଉଲ୍ଲେଖ କରାଯାଇଛି । ଉପର୍ଯ୍ୟୁକ୍ତ ଶବ୍ଦଗୁଡ଼ିକ ଅଶ୍ଳୀଳ, ତେଣୁ ସାହିତ୍ୟରେ ବର୍ଜ୍ଜନୀୟ । ମାତ୍ର ମାନବ ସଭ୍ୟତା ଓ ସଂସ୍କୃତି ଅନୁଶୀଳନ କ୍ଷେତ୍ରରେ ଏଗୁଡ଼ିକ ଯେ ଅମୂଲ୍ୟ ସଂପଦ, ଯେକୌଣସି ସମାଜବିଜ୍ଞାନୀ, ମନୋବିଜ୍ଞାନୀ ଓ ନୃତତ୍ତ୍ୱବିଦ୍ ଏହା ସ୍ୱୀକାର କରିବ । ଆଦର୍ଶାନ୍ଧମାନେ ଏହା ଅନୁଭବ କରିପାରି ନାହାନ୍ତି । ବିଚରା ସଂକଳକଙ୍କୁ କଟୂକ୍ତିରେ କ୍ଷତାକ୍ତ କରିଛନ୍ତି ।

ଉତ୍କଳ ଶବ୍ଦର ଅର୍ଥ ଓ ବ୍ୟାଖ୍ୟାକୁ କେନ୍ଦ୍ର କରି ଜାତୀୟତାବାଦୀମାନେ ପ୍ରହରାଜଙ୍କୁ ହଲାପଟା କରିଛନ୍ତି । ମାତ୍ର ଶବ୍ଦ ଓ ଅର୍ଥକୁ ଆଧାର କରି ଉତ୍କଳୀୟମାନଙ୍କର ପ୍ରହରାଜଙ୍କ ପ୍ରତି ଷଣ୍ଢୁଆସୀ ଆକ୍ରମଣ ଆଦୌ ଆକସ୍ମିକ ଥିଲା । ପ୍ରଥମେ ରାଜେନ୍ଦ୍ରଲାଲ ମିତ୍ରଙ୍କ ଅଣ୍ଟିକିଉଟିଜ୍ ଓରିସା, ପ୍ରଥମ ଭାଗ ୧୯୭୫ ଦ୍ୱିତୀୟ ଭାଗ, ୧୮୮୦ (ପ୍ରକାଶକ : ଓଏମନ୍ ଆଣ୍ଡ୍ କୋ, ୧୦ ହୋରେଷ୍ଟ୍ରିଟ୍ ଆଣ୍ଡ୍ ଏସ୍, କାଉନ୍‌ସିଲ୍ ହାଉସ୍‌ଷ୍ଟ୍ରିଟ୍) ନଗେନ୍ଦ୍ର ନାଥ ବସୁଙ୍କ ବାଙ୍ଗ୍‌ଲା ବିଶ୍ୱକୋଷ ଏବଂ ପ୍ରକୃତିବାଦ ଅଭିଧାନ (ପ୍ରହରାଜ ଏହି ଦୁଇ ଗ୍ରନ୍ଥକୁ ପ୍ରଥମ ସହାୟକ ଗ୍ରନ୍ଥ ଭାବରେ ଉଲ୍ଲେଖ କରିଛନ୍ତି) ରେ ଉତ୍କଳ ଶବ୍ଦର ଅନୁରୂପ ଚର୍ଚ୍ଚା ପ୍ରକାଶ ପାଇଛି । ସମ୍ଭବତଃ ଏହି ଅପମାନସୂଚକ ଚର୍ଚ୍ଚାପାଇଁ ସମକାଳରେ ଓଡ଼ିଆ ପତ୍ରପତ୍ରିକାରେ ରାଜେନ୍ଦ୍ରଲାଲ୍‌ଙ୍କ ଗ୍ରନ୍ଥର ସମୀକ୍ଷା ପ୍ରକାଶ ପାଇ ନାହିଁ । ମାତ୍ର ପଣ୍ଡିତ ମୃତ୍ୟୁଞ୍ଜୟ ରଥ ପ୍ରକୃତିବାଦ ଅଭିଧାନକାରଙ୍କ ବିଚାର ବିରୋଧ ତୁଣ୍ଡ ଖୋଲିଛନ୍ତି । ଉତ୍କଳ ଦୀପିକାରେ ସେ ଉଲ୍ଲେଖ କରିଛନ୍ତି –

ଉତ୍କଳ : ଉତ୍ (ଉର୍ଦ୍ଧ୍ୱ) କଳ (ଗମନ) + ଅ = ଉତ୍କଳ ଦେଶ, ରାଜା ବିଶେଷ/ ଉତ୍କ + ଲା (ଗ୍ରହଣ) + ଅ = ଭାରବାହକ, ଉତ୍କଳ ଅର୍ଥ ଉନ୍ମନା ବା ଉନ୍ନିଶ । ତାକୁ ଯେ ଗ୍ରହଣ କରେ ସେ ଭାରବାହକ ହେବ କିପରି ?

ଉଡ୍ରଦେଶ/ଉତ୍କଳ

ତ୍ରିକାଣ୍ଡ କୋଷ : ଉଡ୍ରା ଉତ୍କଳ ସମାନଃ । ହରିବଂଶ –

ଗ୍ରନ୍ଥର ପ୍ରକାଶକ ଶ୍ରୀ ବି. ବାନାର୍ଜୀ, ୨୫ କର୍ଣ୍ଣୱାଲିସ୍ ଷ୍ଟ୍ରୀଟ୍, କଲିକତାଙ୍କ ନିକଟକୁ ପ୍ରତିବାଦ ପତ୍ର ପଠାଯିବା ସଙ୍ଗେ ସଙ୍ଗେ ଏହି ଭ୍ରମର ସଂଶୋଧନପାଇଁ ଅନୁରୋଧ କରାଯାଇଛି । (ଉତ୍କଳ ଦୀପିକା : ୧୯ ଫେବୃଆରୀ, ୧୯୧୬) ପ୍ରହରାଜଙ୍କ ଶାଣିତ ଆଖି ଏହି ସମ୍ବାଦ ପ୍ରତି ଯେ ସତର୍କ ନ ଥିଲା, ଏ କଥା ନୁହେଁ । ସବୁ ଜାଣି ସୁଦ୍ଧା ପ୍ରକୃତିବାଦ ଅଭିଧାନର ବ୍ୟାଖ୍ୟାକୁ ସେ ଭାଷାକୋଷରେ ସ୍ୱୀକାର କରିଛନ୍ତି । କଟୂକ୍ତିର ଶରବ୍ୟ ହୋଇଛନ୍ତି ଏବଂ ଉତ୍ତରରେ ଉଲ୍ଲେଖ କରିଛନ୍ତି – ''ଉତ୍କଳ ଶବ୍ଦର ଏହି ଅର୍ଥ ଏକାଧିକ ପ୍ରାମାଣିକ ସଂସ୍କୃତ ଶବ୍ଦକୋଷରେ ଦିଆଯାଇଥିବାବେଳେ 'ଭାରବାହକ' ଅର୍ଥ ଓଡ଼ିଆ ଜାତିଙ୍କ ପ୍ରତି ଅସମ୍ମାନଜନକ ହେବ ବୋଲି ଭାଷାକୋଷର ସଂଗ୍ରାହକ ଏ ଅର୍ଥଟାକୁ ବାଦ୍ ଦେଇପାରନ୍ତେ କି ? 'ଉତ୍କଳ' ଶବ୍ଦର ଆଉ ଗୋଟିଏ ଅର୍ଥ ବ୍ୟାଧ ବା 'ଚଢ଼େଇମାରୁ' । 'ଭାରବାହକ' ଅପେକ୍ଷା 'ବ୍ୟାଧ' ଶବ୍ଦଟା ତ ଆହୁରି ଅପମାନଜନକ । ଏ ଅର୍ଥଟି ପ୍ରାଚୀନ ଓଡ଼ିଶାର ରାଜା ପୁରୁଷୋତ୍ତମ ଦେବ (ଖ୍ରୀଷ୍ଟ ପଞ୍ଚଦଶ ଶତାବ୍ଦୀ) ସଂକଳିତ ତ୍ରିକାଣ୍ଡ କୋଷ ନାମକ ସଂସ୍କୃତ ଅଭିଧାନରେ ଅଛି । ଏଥିପାଇଁ ସମାଲୋଚକଙ୍କର କି ଉତ୍ତର ଅଛି ? ଆପଣା ଜାତିର ଅପମାନସୂଚକ ହେବ ବୋଲି ଅଭିଧାନରୁ ଗୋଟିଏ ପ୍ରାମାଣିକ ଓ ବହୁ ଅଭିଧାନ ଗୃହୀତ ଅର୍ଥକୁ ଉଡ଼ାଇ ଦେବାକୁ ହେବ । ଯେବେ ଏ ଯୁକ୍ତି କରାଯାଏ, ତେବେ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ସଂଗ୍ରାହକ ନାଚାର ଓ ସେ ଅପରାଧୀ ସାବ୍ୟସ୍ତ ହେବେ । ଏହିପରି ମେଦିନୀପୁରବାସୀମାନେ ଓଡ଼ିଆ ଅର୍ଥରେ ଉଡ଼େ ଶବ୍ଦ ବ୍ୟବହାର କରନ୍ତି । ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ଏହି ଉଡ଼େ ଶବ୍ଦକୁ ପ୍ରାଦେଶିକ: ମେଦିନୀପୁର ଲେଖାଯାଇଛି । ଏ ଶବ୍ଦକୁ ମଧ୍ୟ ଭାଷାକୋଷ ସଂଗ୍ରାହକ କିଆଁ ଦେଲେ, ଏଥିପାଇଁ ତାଙ୍କୁ ଦୋଷୀ କରାଯାଇଥିବା ଆଶା କରାଯାଏ ।'' (ସତ୍ୟସମାଚାର, ୨୪ ଜୁଲାଇ ୧୯୩୫) ଶବ୍ଦକୋଷପାଇଁ ଶବ୍ଦସଂଗ୍ରହ ଓ ଅର୍ଥଲିଖନ କାଳରେ, ସେ ଯେଉଁ ଆଦର୍ଶକୁ 'ମାନକ' ଭାବରେ ଗ୍ରହଣ କରିଛନ୍ତି, ଯେତେ ଅପ୍ରୀତିକର ଓ ବିପଜ୍ଜନକ ହେଲେ ସୁଦ୍ଧା ସମ୍ମାନ ଦେଇଛନ୍ତି । ଅତି ସ୍ପଷ୍ଟ ଶବ୍ଦରେ ସେ ଉଲ୍ଲେଖ କରିଛନ୍ତି – ''କଥିତଭାଷାରେ ଓ ଲିଖିତ ସାହିତ୍ୟରେ ଯେଉଁ ଶବ୍ଦଗୁଡ଼ିକ ସାଧାରଣତଃ ଉଲ୍ଲେଖ ହେବାର ଦେଖାଯାଏ, ସେଗୁଡ଼ିକର ଆକ୍ଷରିକ, ପ୍ରାକୃତିକ ଓ ପ୍ରଚଳିତ ଅର୍ଥ, ବ୍ୟବହାର, ଇତିହାସ, ପ୍ରକୃତି ଆଦି ଲିପିବଦ୍ଧ କରି ରଖିବା ଅଭିଧାନ ସଂକଳକଙ୍କର କର୍ତ୍ତବ୍ୟ ଏବଂ ଶବ୍ଦଗୁଡ଼ିକର ଅଶୁଦ୍ଧତା ଓ ବିଶୁଦ୍ଧତା ନିରୂପଣ ଭାଷାତତ୍ତ୍ୱବିଦ୍ ଓ ସାହିତ୍ୟିକମାନଙ୍କର ଧର୍ମ ।'' (ପୂ. ଓ. ଭାଷାକୋଷ, ମୁଖବନ୍ଧ, ପ୍ରଥମ ଖଣ୍ଡ)

ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ୧୯୧୬ ମସିହାରେ ଶବ୍ଦତତ୍ତ୍ୱବୋଧ ଅଭିଧାନର ଶବ୍ଦ ସଂକଳନ ପଦ୍ଧତିକୁ କେନ୍ଦ୍ର କରି ଓଡ଼ିଶାର ପଣ୍ଡିତମାନଙ୍କ ମଧ୍ୟରେ ଯେଉଁ ବିଚିତ୍ର ଗୋଳର ସୂତ୍ରପାତ ହୋଇଥିଲା, ୧୯୩୩ରୁ ୪୦ ମସିହା ମଧ୍ୟରେ ପୂ.ଓ. ଭାଷାକୋଷକୈନ୍ଦ୍ରିକ ବିତର୍କ ଥିଲା ତାହାର ଉଲ୍ଲଙ୍ଗ ଓ ଉଗ୍ର ଅଭିବ୍ୟକ୍ତି । ସେତେବେଳେ କଟକ ସହର ଓଡ଼ିଶାର ଆଧୁନିକମାନଙ୍କର ପ୍ରଧାନ ବିହାର ଭୂମି ରୂପେ ମୁଣ୍ଡ ଟେକିଛି । ତାହା କ୍ଷମତା ବିସ୍ତାରଣ କେନ୍ଦ୍ର ହେଉଛି ଏବଂ ଆଧୁନିକ ଶିକ୍ଷାପ୍ରାପ୍ତମାନେ ସେଠାରେ ନିଜ ନିଜର ଆସ୍ଥାନମାନ ପ୍ରତିଷ୍ଠା କରି କର୍ତ୍ତୃତ୍ୱ ଜାହିରପାଇଁ ମଗଜ ଖଟେଇଛନ୍ତି । ସେମାନଙ୍କ ଭାଷା ଯେ ଶୁଦ୍ଧ ଓଡ଼ିଆ, ଏବଂ ସେମାନେ ଯେ ନବ-ଓଡ଼ିଶାର ଭାଗ୍ୟବିଧାତା – ଅନୁରୂପ ଦର୍ପ ସେମାନଙ୍କୁ ଭାରି ସନ୍ତାପିତ କରିଛି । ଅବଶିଷ୍ଟ ଓଡ଼ିଆ ଭାଷାଭାଷୀ ମଣିଷମାନଙ୍କୁ ଆପଣା ଆସ୍ଥାନମୁଖୀ ନ କରିବାପାଇଁ ସେମାନେ ଚକ୍ରାନ୍ତ କରିଛନ୍ତି ଏବଂ ସଂସ୍କୃତି ଓ ସାହିତ୍ୟ-କେନ୍ଦ୍ରଠାରୁ ବହୁଦୂରରେ ଥିବା ଗଞ୍ଜାମ ଓ ପାରଳାଖେମୁଣ୍ଡିରେ ବସ୍ଥିବା ପଣ୍ଡିତମାନଙ୍କୁ ସେମାନେ ଆପଣା ବିଚାରର ଗୋଟି କରିଛନ୍ତି । *ଶବ୍ଦତତ୍ତ୍ୱବୋଧ ଅଭିଧାନ* ହୋଇଛି ଗୋଷ୍ଠୀର କର୍ତ୍ତୃତ୍ୱ ବିସ୍ତାରଣ ଖେଳର ଏକ ମାଧ୍ୟମ । 'ଆଶା' ପତ୍ରିକାର ସମ୍ପାଦକ ଶଶିଭୂଷଣ ରଥ କଳହରେ ଏକପ୍ରକାର ଫଶି ଯାଇଛନ୍ତି ଏବଂ ତାଙ୍କୁ ସତ୍ୟବାଦୀ ଗୋଷ୍ଠୀର ବିଦ୍ୱାନ୍‌ମାନେ ନିଜ ଇଚ୍ଛା ମୁତାବକ ନଚେଇଛନ୍ତି । ମାତ୍ର ଏହି ଗୋଳର ଅବଧି ମାତ୍ର ତିନି ଚାରି ମାସ । ନାନା କାରଣରୁ ଗୌରୀଶଙ୍କର ରାୟ ମଧ୍ୟ ଗୋଳ ଭିତରକୁ ଆସି ମଧ୍ୟ ପରେ ନିରବ ରହିଛନ୍ତି ।

ଅନ୍ୟ ପକ୍ଷରେ, ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ଉପରେ ଷଣ୍ଢୁଆସୀ ଆକ୍ରମଣ ଆରମ୍ଭ ହୋଇଛି ଗଞ୍ଜାମରୁ । ଏହାର ନେତୃତ୍ୱ ନେଇଛନ୍ତି ଅନ୍ୟତମ ଦକ୍ଷିଣୀ ପଣ୍ଡିତ ଓ ଜାତୀୟତାବାଦୀ ଶ୍ରୀ ଗୋଦାବରୀଶ ମହାପାତ୍ର । ପରବର୍ତ୍ତୀ କାଳରେ, ୧୯୩୮ ମସିହା ବେଳକୁ ସେ ଅବଶ୍ୟ ବ୍ରହ୍ମପୁରରୁ କଟକ ଆସିଛନ୍ତି । ମାତ୍ର ତାଙ୍କ ସହିତ ହାତ ମିଳେଇଛନ୍ତି *ସହକାର* ପତ୍ରିକାର ସମ୍ପାଦକ ଶ୍ରୀଯୁକ୍ତ ବାଳକୃଷ୍ଣ କର । ତେଣୁ ଭାଷାକୋଷକୈନ୍ଦ୍ରିକ ମସୀ-ସମରର ନୈପଥ୍ୟରେ ରହିଛନ୍ତି ଗୋଟିଏ ଗ୍ରାମ ମୂଳବସନ୍ତର ଦୁଇ ସହୋଦର ବୀର – ବାଳକୃଷ୍ଣଙ୍କ ସହକାର ଓ ବିଶ୍ୱନାଥଙ୍କ ଉତ୍କଳ ସାହିତ୍ୟ ପତ୍ରିକା ୗ ମାତ୍ର *ଶବ୍ଦତତ୍ତ୍ୱବୋଧ ଅଭିଧାନ* ଓ *ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ*କୈନ୍ଦ୍ରିକ ବିତର୍କ ମଧ୍ୟରେ ବ୍ୟତିକ୍ରମ ହେଉଛି – ଶ୍ରୀଯୁକ୍ତ ପ୍ରହରାଜ, ପଣ୍ଡିତ ନନ୍ଦ ମହାଶୟଙ୍କ ପରି ଆପଣାକୁ ପରଦା ଆଢୁଆଳରେ ରଖି ନାହାନ୍ତି । ସତ୍ୟ ସମାଚାର ଓ ଉତ୍କଳ ସାହିତ୍ୟ ପୃଷ୍ଠାରେ, ବେଶ୍ ସ୍ପଷ୍ଟ ଭାବରେ, ନିଜସ୍ୱ କଥନ ରୀତିରେ ସମାଲୋଚନାର ଉତ୍ତର ଦେଇଛନ୍ତି । ନିଜ ଆଦର୍ଶ ସହିତ ସାଲିସ୍ କରି ନାହାନ୍ତି । ଉତ୍କଳ ସାହିତ୍ୟ ( ୧୩୪୩ ସାଲର ବୈଶାଖ, ଜ୍ୟେଷ୍ଠ, ଆଷାଢ଼ )ରେ ପ୍ରକାଶିତ ଭାଷାକୋଷ

ପାଇଁ ସଫର ଏବଂ ଓଡ଼ିଆ ଭାଷା ବ୍ୟବହାରରେ ସ୍ୱାଧୀନତା (୧୩୪୫ ସାଲ, ଶ୍ରାବଣ) ଶୀର୍ଷକ ଆଲୋଚନାକୁ ଆମେ ତାଙ୍କ ଆତ୍ମାର ସ୍ୱୀକାରୋକ୍ତି ଭାବରେ ଗ୍ରହଣ କରିପାରିବା ।

ମୁଁ ପୂର୍ବରୁ ଉଲ୍ଲେଖ କରିଛି ଯେ, ପ୍ରହରାଜ, ରାଜା, ମହାରାଜା, ଜମିଦାର ଓ ଓଡ଼ିଶା ରାଜକୋଷରୁ ବିପୁଳ ପରିମାଣର ଅର୍ଥ ଆଣି ବିନର୍ବ୍ୟୟ କରୁଥିଲେ । ଅଭିଯୋଗର ଉତ୍ତର ଦେବାକୁ ଯାଇ ପ୍ରହରାଜ ଉଲ୍ଲେଖ କରିଛନ୍ତି, –''ମୁଁ ଭାଗ୍ୟକୁ କେଉଁଠୁ ପାଇଛି ଟଙ୍କାବିଡ଼ା, କାହୁଁ ହାତୀଘୋଡ଼ା, କାହୁଁ ହୁକୁମ ବିଡ଼ା, କାହୁଁ ବୁଢ଼ାହଡ଼ା, କାହୁଁ ଘଷିକଣ୍ଡା, କାହୁଁ କୁଣ୍ଡାନଡ଼ା, ଖାରିଆଖଡ଼ା, କାହୁଁ କହୁଣି କୋରଣା, କାହୁଁ ଲେଉଟା ନାକପୋଡ଼ା, କାହିଁ ଟଣାଭିଡ଼ା, କାହିଁ ଡିଙ୍କିମଡ଼ା, କାହିଁ ଘଣାପେଡ଼ା, କାହିଁ ଜାଉଁଳି ଭିଡ଼ା, କାହିଁ ଶିଙ୍ଗି ବୁଡ଼ା, କେତେଠେଇଁ ଭେଟିଲି ଓଲଟା ଗଧଚଢ଼ା, ହୁକୁମ କଡ଼ା, ରସ ଚିପୁଡ଼ା, ଚୋପାଛଡ଼ା ହଂସାଉଡ଼ା । (ଭାଷାକୋଷପାଇଁ ସଫର – ଉ.ସା. ଆଷାଢ଼ ୧୩୪୩) ଦାନ କରିବାର ପ୍ରତିଶ୍ରୁତି ଦେଇ ବିଶିଷ୍ଟମାନେ ତାଙ୍କୁ କିପରି ରାଜକୀୟ ରୀତିରେ ପ୍ରତାରିତ କରୁଥିଲେ, ଭାଷାକୋଷର ପ୍ରାୟ ପ୍ରତ୍ୟେକ ଖଣ୍ଡରେ ସେ ପ୍ରକାଶ କରିଛନ୍ତି । 'ସ୍ୱପ୍ନରେ ରାଜଯୋଗ' (ନବଭାରତ: ୧୩୪୧ ସାଲ/ପ୍ରଥମ ଭାଗ ୪ର୍ଥ, ୫ମ, ୬ଷ୍ଠ ଓ ଦ୍ୱିତୀୟ ଭାଗ ୪ର୍ଥ, ୫ମ ସଂଖ୍ୟା) ଓ 'ସ୍ୱପ୍ନରେ ରାଜଧାନୀ ଯୋଗ' (ନବଭାରତ ୧୩୪୩ ସାଲ/୩ୟ ବର୍ଷ ୨ୟ ସାଲ) ତାଙ୍କ ପ୍ରତାରିତ ବ୍ୟକ୍ତିତ୍ୱର ପ୍ରତିକ୍ରିୟା ।

ସମାଲୋଚକମାନଙ୍କ ଅନ୍ୟ କେତେକ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସେ ଅନ୍ୟତ୍ର ଲେଖିଛନ୍ତି – ''ଏ ସମ୍ପର୍କୀୟ ଗସ୍ତରେ ମୋର ଯେଉଁ ଅନୁଭୂତି ହୋଇଛି, ଉତ୍କଳରେ ଭବିଷ୍ୟଦ୍‌ରେ ଏହିପରି ଦୁରୂହ କର୍ମରେ ହାତଦେବା ବ୍ୟକ୍ତିଙ୍କ ଅବଗତି ଓ ଅନୁଶାସନ ନିମନ୍ତେ ମୁଁ ସେହିସବୁ ଅନୁଭୂତିକୁ 'ଭାଷାକୋଷର ସଫର ଶିରୋନାମ' ଦେଇ ଉତ୍କଳ ସାହିତ୍ୟରେ ଧାରାବାହିକ ଲେଖୁଛି । ମୁଁ ସେ ବିବୃତିମାନଙ୍କରେ ବ୍ୟକ୍ତିଗତ ଆକ୍ଷେପ ଓ ଆକ୍ରମଣକୁ ଯଥାଶକ୍ତି ଏଡ଼େଇବାକୁ ଚେଷ୍ଟା କରିଛି । କାରଣ ବ୍ୟକ୍ତିବିଶେଷଙ୍କୁ ଗାଳି ଦେବା କିମ୍ବା ଲୋକଙ୍କୁ ଚିହ୍ନେଇବା ମୋର ଉଦ୍ଦେଶ୍ୟ ନୁହେଁ । କେବଳ ଭବିଷ୍ୟଦ୍ କର୍ମୀମାନଙ୍କୁ କି କି ପ୍ରକାର ବୋଲୁଅ ମାଡ଼ରୁ ଆପଣା ଦିହକୁ ବଞ୍ଚେଇ କାମ କରିବାକୁ ହେବ, ତାହାହିଁ ସୂଚନା ଦେବା ମୋର ଉଦ୍ଦେଶ୍ୟ ଅଟେ । ଆପେ କାମ କରିବା ନାହିଁ, କିନ୍ତୁ ଅନ୍ୟ ଯେ କରିବ, ତାକୁ ଶୋଧିବା; ତା'ର ଅନିଷ୍ଟ ଚିନ୍ତା କରିବା; ତା'ର ଦୁର୍ନାମ କରିବା, ତା' ନାଁରେ ଚୁଗୁଲି କରିବା, ଦେଶସେବକ ମୁଖା ବାନ୍ଧି ତା' କାର୍ଯ୍ୟରେ ପ୍ରକାଶ୍ୟରେ ଓ ପ୍ରଚ୍ଛନ୍ନ ଭାବରେ ବାଧା ଜନ୍ମାଇବାରୂପକ ବ୍ରତରେ ମୋର ଗୁଡ଼ାଏ ବନ୍ଧୁ ଆଜକୁ ୫।୭ ବର୍ଷ ହେଲା ଲାଗିଛନ୍ତି । ଗତ ୨୦ ବର୍ଷରେ ଭାଷାକୋଷ ଆଶ୍ରମରେ ଥରେ ମୁହଁ ବା ଟାପୁ ମାରି ନାହାନ୍ତି କିମ୍ବା ଭାଷାକୋଷର ସଙ୍କଳନ, ଶବ୍ଦସଂଗ୍ରହ, ଅର୍ଥସଂଗ୍ରହ, ଗ୍ରାହକ ସଂଗ୍ରହ ବିଷୟରେ ମୋତେ ସାହାଯ୍ୟ କରି ନାହାନ୍ତି କିମ୍ବା ମୋ ପାଖକୁ ଆସି ଭାଷାକୋଷରେ ପରିଲକ୍ଷିତ କୌଣସି ଭ୍ରାନ୍ତି ବା ପ୍ରମାଦ ବା ଦୋଷ ପ୍ରତି ମୋ ଦୃଷ୍ଟି ଆକର୍ଷଣ କରି ନାହାନ୍ତି । କିନ୍ତୁ ଭାଷାକୋଷର ପ୍ରଥମ

ଓ ପରବର୍ତ୍ତୀ ଖଣ୍ଡମାନ ପ୍ରକାଶିତ ହେବାର ଦେଖି ସେମାନଙ୍କର ପିଳେହି ପାଣି ହୋଇଯାଉଛି । ପାଠକେ ଅବଧାନ, କ୍ଷମା କରିବେ । ଏ ବାକ୍ୟଟା ପୁଣି କୁରୁଚି ବା ଅଶ୍ଳୀଳତା ଆଡ଼କୁ ମୁହାଁଇଲା ବୋଲି ଆପଣ ନାକ ଟାଉ ଟାଉ କରନ୍ତୁ ନାହିଁ । କାରଣ ଏ ବାକ୍ୟକୁ ଶ୍ଳୀଳ, ସୁରୁଚିମୟ, ସାଧୁ ଶବ୍ଦରେ ବା କଥାନ୍ତର କଲେ, ଏହା ପ୍ଲୀହାଜଳୀଭୂତ ହେଉଛି ହେବ । ପ୍ଲୀହା ଜଳୀଭୂତ ହେବା ବାକ୍ୟ ବା ତହିଁର ଅର୍ଥ କି ଭାଷାକୋଷ କି ପାଲକୋଷ, କି ବୈଦିକକୋଷ, କାହିଁରେ ମିଳିବ ନାହିଁ । ଆଉ ଜଣେ ଶୁକ୍ରାଚାର୍ଯ୍ୟ ବିଳିବିଳେଇଲେ କି ଭାଷାକୋଷକୁ ଭ୍ରମକୋଷ ବୋଲା ଯାଇପାରେ ।'' (ଭାଷାକୋଷ ପାଇଁ ସଫର – ଚାରି, ଉତ୍କଳ ସାହିତ୍ୟ : ବୈଶାଖ ପୃ.୩୫-୩୭)

ପରିହାସପ୍ରିୟ ଶ୍ରୀଯୁକ୍ତ ପ୍ରହରାଜ ନିଜ ଶୈଳୀରେ ଶ୍ରୀ ଗୋଦାବରୀଶ ମହାପାତ୍ରଙ୍କୁ ଅବଶ୍ୟ ଶୁକ୍ରାଚାର୍ଯ୍ୟ କହିଛନ୍ତି । ଅନ୍ୟ ଛିଦ୍ରାନ୍ୱେଷୀମାନଙ୍କ ବକ୍ତବ୍ୟ ପ୍ରତି ଧାପେ ବି ଗୁରୁତ୍ୱ ଦେଇ ନାହାନ୍ତି । ମାତ୍ର ଏହାର ଅର୍ଥ ନୁହେଁ ଯେ, ସେ ନିଜର ଭ୍ରମ ସମ୍ପର୍କରେ ସଚେତନ ନ ଥିଲେ । ଭାଷାକୋଷର ମୁଖବନ୍ଧରେ, ଉଭୟ ଓଡ଼ିଆ ଓ ଇଂରେଜୀ ଶବ୍ଦମାଳାରେ ଆପଣାର ଜ୍ଞାନ ଦାରିଦ୍ର୍ୟକୁ ନମ୍ରତାର ସହ ପ୍ରକାଶ କରିଛନ୍ତି । ନିଜ ପାଦର ଫାଟଗୁଡ଼ିକୁ ସେ ଦେଖିଛନ୍ତି । ଫାଟର ଜ୍ୱାଳା ଅନୁଭବ କରିଛନ୍ତି ଏବଂ ଲେଖିଛନ୍ତି – ''ଏକ ଅଭିଧାନ ସଂକଳନ କରିବାପାଇଁ ଯେଉଁ ଭାଷାବିଜ୍ଞତା, ଅନୁସନ୍ଧିତ୍ସା, ଅଧ୍ୟବସାୟ, ଶବ୍ଦପାଣ୍ଡିତ୍ୟ, ଭ୍ରମଣଶୀଳତା, ନାନା ସ୍ଥାନ ଓ ପୁସ୍ତକରୁ ଶବ୍ଦସଂଗ୍ରହ କରିବାର ସମୟ ଓ ଶକ୍ତି ଆବଶ୍ୟକ, ତାହା ମୋର ନାହିଁ । କେତେକ ସାହିତ୍ୟିକ ବନ୍ଧୁଙ୍କୁ ଏହା ଗ୍ରହଣ କରିବା ଲାଗି ଅନୁରୋଧ କଲି । କିନ୍ତୁ ଫଳତଃ କାହାରିକୁ ଏ କ୍ଷେତ୍ରରେ ନିଷ୍ଠାର ସହିତ ଅଗ୍ରସର ହେବାର ଦେଖିଲି ନାହିଁ । ଏପରି ସ୍ଥଳରେ ଅଗତ୍ୟା ଏ ଗୁରୁଦାୟିତ୍ୱରେ ହସ୍ତକ୍ଷେପ କଲି ଓ ଉତ୍କଳଭାଷୀ ଅଞ୍ଚଳରେ ଅଭିଜ୍ଞ ଓ ସାହିତ୍ୟନିଷ୍ଠ ବନ୍ଧୁମାନଙ୍କୁ ଦେଖାଇ ଏ ଶବ୍ଦକୋଷକୁ ଓଡ଼ିଆ ଭାଷାରcomprehensive ଶବ୍ଦକୋଷ ରୂପରେ ସର୍ବସାଧାରଣଙ୍କ ହସ୍ତରେ ଅର୍ପଣ କରିବି ବୋଲି ଇଚ୍ଛା କରି ଶ୍ରୀ ପରାତ୍ପରଙ୍କ ନାମରେ ଏ ଦୁରୂହ କାର୍ଯ୍ୟରେ ହସ୍ତକ୍ଷେପ କରୁଅଛୁ ।'' ଏବଂ ''It is not the work of a single individual of speledour means and scanty requirements like the present compiler. The New Standard Dictionary of the English Language of four volumes recently published represents the labour of 380 specialists and scholars, 400 professional readers and the expenditure over 40 lakhs of rupees as given out by the publisher. XX May that day come, when the civilised world will realize how rich phonetics and ancient Oriya language is and when the Oriya language will be given its legitimate place of honour among the cultured modern languages,'' (ଭାଷାକୋଷ: ୨ୟ ଭାଗ Introduction) ।

କେବଳ New Standard English Dictionary ନୁହେଁ, ଓଏବ୍‌ଷ୍ଟର୍, ଅକ୍‌ସଫୋର୍ଡ଼ ଡିକ୍‌ସନାରିର ଶବ୍ଦ ସଂକଳନ ପଦ୍ଧତିକୁ ମଧ୍ୟ ସେ ଅନୁଶୀଳନ କରିଛନ୍ତି । ଶବ୍ଦ ଯେ ଏକ ଜାତି ଓ ତା'ର ସଂସ୍କୃତିର ଭାବପିଣ୍ଡ – ଏହା ମର୍ମେ ମର୍ମେ ଅନୁଭବ କରିଛନ୍ତି । ଶବ୍ଦ ଅଧ୍ୟୟନରେ ସୂକ୍ଷ୍ମତା ଓ ଶବ୍ଦଭଣ୍ଡାରର ବିପୁଳତା – ଉଭୟ ସମ୍ପଦକୁ ଭାର କରି ବାଟ ଚାଲିଛନ୍ତି । ଅଭିଧାନରେ ସେ ସଜେଇ ରଖିଛନ୍ତି ଓଡ଼ିଆ ଭାଷାର ପ୍ରାୟ ଏକ ଲକ୍ଷ ପଞ୍ଚାଅଶୀ ହଜାର ଶବ୍ଦ । ମାତ୍ର ଗୋଟିଏ ପରେ ଗୋଟିଏ ଭାଗ ପ୍ରକାଶ ପାଉଥିଲେ ସୁଦ୍ଧା ଶବ୍ଦ ସାଉଁଟା ଅଭ୍ୟାସକୁ ସେ ଛାଡ଼ିପାରି ନାହାନ୍ତି । ସାତକାଣ୍ଡି ଗ୍ରନ୍ଥ ପ୍ରକାଶ ପାଇଲା ପରେ ଟିପାଖାତାରୁ ସେ ଆବିଷ୍କାର କରିଛନ୍ତି ପ୍ରାୟ ପନ୍ଦର ହଜାର ଶବ୍ଦ ଏବଂ ଅନ୍ୟ ଏକ ସ୍ୱତନ୍ତ୍ର ଖଣ୍ଡରେ ସେଗୁଡ଼ିକର ପ୍ରକାଶନପାଇଁ ଯୋଜନା କରିଛନ୍ତି । ଏହା ସମ୍ଭବ ହୋଇନି । ୧୯୪୦ ମସିହା ବେଳକୁ ଓଡ଼ିଆ ଭାଷାର ଶବ୍ଦଭଣ୍ଡାର ଯେ ପ୍ରାୟ ଦୁଇଲକ୍ଷରୁ ଅଧିକ, ସେ ଏହା ପ୍ରତିପାଦନ କରିଛନ୍ତି ।

ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଜୀବନ ଓ କୃତିର ସମାଲୋଚକ ଅବଶ୍ୟ ଥିଲେ, ମାତ୍ର ପ୍ରଶଂସକମାନଙ୍କ ସଂଖ୍ୟା ଯେ କମ୍ ଥିଲା – ତାହା ନୁହେଁ । ବହୁ ଦେଶୀ ଓ ବିଦେଶୀ ବିଦ୍ୱାନ୍ ତାଙ୍କୁ ବେଶ୍ ପ୍ରଶଂସା କରିଛନ୍ତି । ଇଟାଲୀ ବିଶ୍ୱବିଦ୍ୟାଳୟର ମୁଖପତ୍ରରେ ଗ୍ରୁ୍ୟ ସେଫଟଲ୍ଲି ଉଲ୍ଲେଖ କରିଛନ୍ତି – The dictionary is an account of its size and wealth of documentation, the most complete that could be designed. XX Gopal Praharaj has highly deserved well of his country and the rebirth of vernacular studies in India. XX This work will facilitate literature which has also many points of contact with the literature of Bengal and is not any mean, one of the least interesting in India. (ପୂ. ଓ ଭା. ୩ୟ ଖଣ୍ଡ ମୁଖବନ୍ଧ) ।

ବିଶ୍ୱକବି ରବୀନ୍ଦ୍ରନାଥ ମଧ୍ୟ ଏକ ପତ୍ରରେ ("The Purna Chandra Odia Bhasakosha is an encyclopaedic dictionary which has been useful for the work of our research department in the Viswa-Bharati. The compiler Mr. G.C. Praharaj and his co-laborators deserve our sincere thanks for the excellent work they have done.' ପ୍ରହରାଜଙ୍କ ଶତମୁଖ ପ୍ରଶଂସା କରିଛନ୍ତି । *ବିଖ୍ୟାତ ଭାଷାବିଜ୍ଞାନୀ ଡକ୍ଟର ସୁନୀତି କୁମାର ଚାଟାର୍ଜୀ ମଧ୍ୟ ଭାଷାକୋଷ ସଂକ୍ରାନ୍ତରେ ମୂଲ୍ୟବାନ୍ ମନ୍ତବ୍ୟ ପ୍ରଦାନ କରିଛନ୍ତି । କାବ୍ୟରତ୍ନ ବଳଭଦ୍ର ବହିଦାର "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ସମ୍ବଲପୁରୀ ପ୍ରାଦେଶିକ ଶବ୍ଦ (ସହକାର/୨୩ଶ ବର୍ଷ/୧୧ଶ ସଂଖ୍ୟା/ ପୃ. ୪୨୦-୪୨୨) ଆଲୋଚନାରେ ଭାଷାକୋଷରେ ସଂକଳିତ ସମ୍ବଲପୁରୀ ଶବ୍ଦର ଶୁଦ୍ଧରୂପର ପ୍ରୟୋଗ ଓ ତେତିଶ ଗୋଟି ଶବ୍ଦର ରୂପ ପ୍ରଦାନ କରିଛନ୍ତି । ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର "ଓଡ଼ିଆ ଭାଷାକୋଷ ଶୀର୍ଷକ ଏକ କବିତା ଲେଖିଛନ୍ତି (ଉତ୍କଳ ସାହିତ୍ୟ/

୧୩୪୪ସାଲ/ଆଷାଢ଼/ ପୃ ୧୬୦) ଗୋପବନ୍ଧୁ ଦାସ 'ସମାଜ'ର ସଂପାଦକୀୟରେ ପ୍ରହରାଜଙ୍କର ଶତମୁଖ ପ୍ରଶଂସା କରିଛନ୍ତି (ସମାଜ - ତା ୨୭.୮.୨୭) ଏବଂ ପଣ୍ଡିତ ନୀଳକଣ୍ଠ ଦାସ ଉଲ୍ଲେଖ କରିଛନ୍ତି - ''ଓକିଲାତି ତାଙ୍କର ଉପଜୀବ୍ୟ ଥିଲା । ରାଜନୀତିରେ ତାଙ୍କର କୌଣସି ଦୃଢ଼ ମତ ନ ଥିଲା । କିନ୍ତୁ ଅକାଟ୍ୟ ଓ ଅଖଣ୍ଡ ସାହିତ୍ୟ ସାଧନାରେ ଓଡ଼ିଶାରେ ଏବେବି ସେ ଅଦ୍ୱିତୀୟ । ଉପଜୀବ୍ୟ ବୋଲ, ମତବାଦ ଓ କ୍ରିୟା ବୋଲ, ସବୁ ତାଙ୍କର ଥିଲା ଏକା ସାହିତ୍ୟ ସାଧନାପାଇଁ । ସେ ଯାହାକୁ ସାହିତ୍ୟ ସାଧନା ବୋଲି ବୁଝିଥିଲେ, ତାହାରି ଅନୁକୂଳ ଜୀବିକା ହିଁ ତାଙ୍କର ଜୀବିକା । ତାହାରି ଅନୁକୂଳ କାର୍ଯ୍ୟ ହିଁ ତାଙ୍କର କାର୍ଯ୍ୟ । ଜୀବନ ପ୍ରାରମ୍ଭରେ ସେ ସଂସ୍କାର ଦୃଷ୍ଟିରେ ଲେଖକ ଚରିତ୍ର ଓ ସଂସ୍କାରର ସୁନ୍ଦର ରହସ୍ୟମୟ ଆଲୋଚନାରେ ସାହିତ୍ୟ ଆରମ୍ଭ କରିଥିଲେ । ପରିଣତ ବୟସରେ ତାଙ୍କ ସାଧନାର ଫଳ ଓଡ଼ିଆ ଭାଷାକୋଷ । ପୁଣି ପୁସ୍ତକ ଓ ପତ୍ରପତ୍ରିକା ସଂଗ୍ରହରେ ତାଙ୍କ ଭଳି ଓଡ଼ିଶାରେ ଆଉ କେହି ନାହିଁ । ଖାଲି ସଂଗ୍ରହ କରୁ ନ ଥିଲେ, ସବୁ ତନ୍ନ ତନ୍ନ କରି ପଢ଼ି ସେ ଶବ୍ଦାଦି ସଂଗ୍ରହ କରୁଥିଲେ । (ନବ ଭାରତ ନୂତନ ପ୍ରସ୍ଥ - ଅକ୍ଟୋବର ୧୩୪୬ ସାଲ) ବିଶ୍ୱ ଭାଷାକୋଷକୁ ଦେଖି ଚକିତ ହୋଇଛି ।

ଅଭିଧାନତତ୍ତ୍ୱ ଦୃଷ୍ଟିରୁ ବିଚାରକଲେ, ଭାଷାକୋଷ ଯେ ସମ୍ପୂର୍ଣ୍ଣ ପ୍ରମାଦମୁକ୍ତ ତାହା ନୁହେଁ । କୋଷ ଗ୍ରନ୍ଥର ସବୁଠାରୁ ବଡ଼ ଦୁର୍ବଳତା, ଉଦାହରଣ ମାଧମରେ ସେ ଶବ୍ଦଗୁଡ଼ିକର କାଳକ୍ରମିକ ବିକୃତି ସମ୍ପର୍କରେ ଉଲ୍ଲେଖ କରି ନାହାନ୍ତି । ଉଚ୍ଚାରଣଗତ ବାସ୍ତବତା ପ୍ରତି ଅବହେଳା କରାଯାଇଛି । ତେଣୁ ଶବ୍ଦଗୁଡ଼ିକର ଲୋମାନୀକରଣ ପ୍ରୟାସ ପଣ୍ଡଶ୍ରମରେ ପରିଣତି ହୋଇଛି ଏବଂ ଆବଶ୍ୟକସ୍ଥଳେ ଶବ୍ଦଗୁଡ଼ିକର ଫଟୋ ଅଥବା ରେଖାଚିତ୍ର ସଂଯୋଜନ କରି ନାହାନ୍ତି । କେବଳ ଗୋପାଳ ଚନ୍ଦ୍ର ପ୍ରହରାଜ ନୁହନ୍ତି, ଓଡ଼ିଆ ଭାଷାର କୌଣସି ଆଭିଧାନକାର – କେଜାଣି କାହିଁକି ଉପର୍ଯ୍ୟୁକ୍ତ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା ପ୍ରତି ଆଖି ବୁଜି ଦେଇଛନ୍ତି । ଅନେକ କ୍ଷେତ୍ରରେ ଦୀର୍ଘ ଉଦାହରଣ ଓ ଅନାବଶ୍ୟକ ବର୍ଣ୍ଣନା ବାହୁଲ୍ୟ ହିଁ ଏହାର ପୃଥୁଳ ଶରୀରର କାରଣ ହୋଇଛି ।

ସଂପ୍ରତି ପ୍ରହରାଜଙ୍କର ଭାଷାକୋଷର ପୁନର୍ମୁଦ୍ରଣର ଆବଶ୍ୟକତା ରହିଛି କି ? କିମ୍ବା ଏହାର ପୁନର୍ମୁଦ୍ରଣ କାଳରେ କେଉଁ ପଦ୍ଧତି ଅନୁସରଣ କରାଯିବ – ତଦ୍‌ସଂକ୍ରାନ୍ତରେ ଚର୍ଚ୍ଚା କରିବାର ସମୟ ଆସିଛି । ମାତ୍ର ଛାତ୍ର ଓ ସାଧାରଣ ପାଠକ ଉପଯୋଗୀ ଏହାର ସଂକ୍ଷିପ୍ତ ସଂସ୍କରଣ ଯେ ଏକାନ୍ତ ଆବଶ୍ୟକ – ଏ କଥା ଅସ୍ୱୀକାର କରାଯାଇ ନ ପାରେ । ନିଜେ ସଂକଳକ ମଧ ଆପଣାର ଜୀବଦଶାରେ ଅନୁରୂପ ସ୍ୱପ୍ନ ଦେଖିଛନ୍ତି (ଭାଷାକୋଷ, ୪ର୍ଥ ଖଣ୍ଡ, ଉପସଂହାର) ତାଙ୍କ ଜୀବିତାବସ୍ଥାରେ ଏହା ସମ୍ଭବ ହୋଇପାରି ନାହିଁ । ସଂକଳକଙ୍କ ଦେହାନ୍ତ (୧୯୪୫) ପରେ ତାଙ୍କ ସହଯୋଗୀମାନେ ମଧ ଏହି କାର୍ଯ୍ୟ ସଂପାଦନ କରିପାରିଥା'ନ୍ତେ । ସେମାନେ ସେଥିପ୍ରତି ସାମାନ୍ୟ ଆଗ୍ରହ ଦେଖାଇ ନାହାନ୍ତି । ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥ ଓ ଶ୍ରୀ ଜଗନ୍ନାଥ ତ୍ରିପାଠୀ ନିଜ ନାମରେ ଦୁଇଗୋଟି ଛାତ୍ରୋପଯୋଗୀ ଅଭିଧାନ ପ୍ରକାଶ କରିଅଛନ୍ତି । ପଣ୍ଡିତ କୃଷ୍ଣଚନ୍ଦ୍ର କରଙ୍କ 'ତରୁଣ ଶବ୍ଦକୋଷ' ଗ୍ରନ୍ଥ ମଧ

ପ୍ରହରାଜଙ୍କ ସାନ୍ନିଧ ଲାଭର ଅନ୍ୟ ଏକ ଫଳଶ୍ରୁତି । ଅଭିଧାନକାରମାନେ ଅବଶ୍ୟ ଆମ ଆବଶ୍ୟକତା ପୂରଣ କରିଛନ୍ତି । ମାତ୍ର ଆଧୁନିକ ପୃଥିବୀର କୋଷଗ୍ରନ୍ଥ ବିପଣୀ ଭିତରକୁ ପଶିଗଲେ, ବିପଣୀର ବିଭବ ଓ ବୈଚିତ୍ର୍ୟକୁ ଦେଖି ଯେକୌଣସି ଓଡ଼ିଆ ନିଜକୁ ବିଶ୍ୱାସ କରିପାରିବ ନାହିଁ । ଅନ୍ୟର ଛିଦ୍ର ଅନ୍ୱେଷଣ ଓ ଗଭୀର ସୁଷୁପ୍ତିଜନିତ ସୁଖବିଭୋରତା ଯେପରି ଓଡ଼ିଆମାନଙ୍କର ଜାତୀୟ ଚରିତ୍ର । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ସାଧାରଣ ଜନତାର କ୍ରୟଶକ୍ତି ଓ ଆବଶ୍ୟକତା ପ୍ରତି ଦୃଷ୍ଟିଦେଇ ଅକ୍ସଫୋର୍ଡ, ଓଏବ୍‌ଷ୍ଟର ଆଦି ଅଭିଧାନଗୁଡ଼ିକର ସାଧାରଣ ଓ ଛାତ୍ର ସଂସ୍କରଣମାନ ପ୍ରକାଶ ପାଇଛି ଏବଂ ଏହି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସରକାରୀ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର ଆର୍ଥିକ ଅନୁଦାନ ଓ ପାଠକୀୟ ଆଗ୍ରହଯୋଗୁଁ ସମ୍ଭବ ହୋଇପାରିଛି । ଓଡ଼ିଆମାନଙ୍କ ଚେତନାରେ ଅନୁରୂପ ଆବଶ୍ୟକତା ଏପର୍ଯ୍ୟନ୍ତ ଅଙ୍କୁରିତ ହୋଇ ନାହିଁ । ଏତଦ୍‌ବ୍ୟତୀତ, ଭାଷାକୋଷକୁ ଆଧାର କରି ସ୍ୱତନ୍ତ୍ର ରୂପରେ ଆଞ୍ଚଳିକ ଓଡ଼ିଆ ଶବ୍ଦକୋଷ, ଲୌକିକ ଶବ୍ଦକୋଷ, ବୈଦେଶିକ ଶବ୍ଦକୋଷ, ପ୍ରାଚୀନ ତଥା ମଧ୍ୟଯୁଗୀୟ ଶବ୍ଦକୋଷ, ବୈଦ୍ୟକ କୋଷ ପରି ବହୁ କୋଷଗ୍ରନ୍ଥ ସଂକଳିତ ହୋଇପାରନ୍ତା । ଇତି ମଧ୍ୟରେ ଭାଷାକୋଷ ପ୍ରକାଶିତ ହେବାର ଦୀର୍ଘ ପ୍ରାୟ ସତୁରି ବର୍ଷ ଗତ ହୋଇଗଲାଣି । ଓଡ଼ିଆଭାଷା ବହୁ ନୂତନ ଶବ୍ଦରେ ନିଜକୁ ଶ୍ରୀମନ୍ତ କଲାଣି । ମାତ୍ର ବର୍ତ୍ତମାନର ଆବଶ୍ୟକତାକୁ ପୂରଣ କଲାପରି ଅଭିଧାନ ଖଣ୍ଡେ ମଧ୍ୟ ଆମ ହାତରେ ନାହିଁ । ଓଡ଼ିଆମାନେ ପୃଥିବୀର ସଭ୍ୟ ଦେଶର ଭାଷା ସାମ୍ରାଜ୍ୟକୁ ଅରକ୍ଷିତଙ୍କ ପରି ଅନେଇ ରହିଛନ୍ତି – ୧୯୪୦ ମସିହା ପରେ ଭାଷାକୋଷର ସୁବିପୁଳ ସ୍ତୂପ ଆଡ଼କୁ ଶ୍ରୀଯୁକ୍ତ ପ୍ରହରାଜ ଯେମିତି ଅନେଇ ରହିଥିଲେ, ଠିକ୍ ସେମିତି ।

॥ ପାଞ୍ଚ ॥

ଭାଷାକୋଷର ମୁଦ୍ରଣ ଶେଷ ହୋଇଛି । ପ୍ରସବ ପରର ସୁଖଦ ମୁହୂର୍ତ୍ତକୁ ପ୍ରହରାଜ ପ୍ରାଣଭରି ଉପଭୋଗ କରିଛନ୍ତି – ଜୀବନର ପ୍ରାୟ ଦୀର୍ଘ ସତେଇଶ ବର୍ଷର ଅବିରାମ ସଂଗ୍ରାମଜନିତ ଅନୁଭବ । ପାଖରେ ସ୍ଥାବର-ଅସ୍ଥାବର ସମ୍ପତ୍ତି ନାହିଁ । ସବୁ ଶେଷ ହୋଇଯାଇଛି । ପତ୍ନୀ ନାହିଁ । ପୁତ୍ର ବି ନାହିଁ । ଝଗଡୁଥିବା ସହୃଦୟମାନେ ମଧ୍ୟ ଜଣ ଜଣ ହୋଇ ଚାଲିଗଲେଣି । ସହୃଦୟା ମଣୁଥିବା ଶାଳୀ ପୀତାମ୍ବରୀ ଦେବୀ ମଧ୍ୟ ନାନା କାରଣରୁ ରୁଷ୍ଟା ହେଲେଣି । ଜୀବନ ସାରା ଉଭୟ ଶତ୍ରୁ ଓ ମିତ୍ରମାନଙ୍କ ପାଖରେ ଅବୋଧ ରହିଯାଇଥିବା ସୃଜନଶୀଳ ଏବଂ ନିଜ ଇଚ୍ଛାର ଈଶ୍ୱରଜଣକ ଟିକିଏ ଶାନ୍ତିପାଇଁ ଭାଷାକୋଷ ପାଖରେ ପହଞ୍ଚିଛନ୍ତି ଏବଂ ସେଠି ମଧ୍ୟ ତାଙ୍କ ବର୍ତ୍ତମାନ ଓ ଭବିଷ୍ୟତ୍‌ପାଇଁ ଅପେକ୍ଷା କରି ରହିଛି ଆକାଶୋପମ ଅସନ୍ତୋଷ । ବନ୍ଧା ଓ ଅବନ୍ଧା ଅବସ୍ଥାରେ ବହିମାନେ ପଡ଼ିରହିଛନ୍ତି । ସେମାନଙ୍କପାଇଁ ରହିବାକୁ ଜାଗା ନାହିଁ । ସେମାନଙ୍କୁ କିଣିବାପାଇଁ ଗ୍ରାହକ ନାହାନ୍ତି । ଯେଉଁମାନେ ନେବାପାଇଁ କଥା ଦେଇଥିଲେ, ସେମାନେ ନିରବ ରହିଛନ୍ତି । ପଚାରିଲେ ହଁ କି ହୁଁ କରି

ନାହାନ୍ତି । ଗୋଦାମ ଘର ଖାଲି କରିବାପାଇଁ ବିଭିନ୍ନ ବିଦ୍ୟାଳୟ, ପାଠାଗାରକୁ କେବଳ ବନ୍ଧେଇ ମୂଲ ଦେଇ ଗ୍ରନ୍ଥ ନେବାପାଇଁ ସେ ଅନୁରୋଧ କରିଛନ୍ତି । କେଉଁ ଦୂରଦୂରାନ୍ତରୁ କଟକ ସହରକୁ ଆସି ବୋଝେ ଛପା କାଗଜ ନେବାପାଇଁ ମଧ୍ୟ ଶିକ୍ଷିତ ଓ ବୀର ଓଡ଼ିଆ ପୁଅମାନେ ରାଜି ହୋଇ ନାହାନ୍ତି । କ୍ରମଶଃ କାଗଜଗଦା ମୂଷା ଓ ଉଇମାନଙ୍କ ସୁଖାଦ୍ୟ ହୋଇଛି । ମୁଁ ଶୁଣିଛି – ଅବସ୍ଥା କାଳେ ଏତେ ଅଣାୟତ୍ତ ହୋଇଛି ଯେ, ଓଡ଼ିଶାର ସ୍ୱାଭିମାନ ଓ ଶବ୍ଦ କୋଣାର୍କ, ଅନାବଶ୍ୟକ କାଗଜ ଭାବରେ ବଜାରର ଠୁଙ୍ଗାବାଲାଙ୍କ ଅଭାବ ପୂରଣ କରିଛି । ଏବଂ ଶବ୍ଦ-ସ୍ଥପତି ପ୍ରହରାଜଙ୍କ ଅସ୍ୱାଭାବିକ ମୃତ୍ୟୁ (୧୯୪୫) ପରେ ସଂପତ୍ତିକୁ କେନ୍ଦ୍ର କରି କୁହୁଳୁଥିବା ଅହଂକାର, ଅଧିକାର, ପ୍ରତିହିଂସା ଓ ପ୍ରତିଶୋଧର ନିଆଁ ଭାଷାକୋଷର ଆଶ୍ରମକୁ ପୋଡ଼ି ଶେଷ କରିଦେଇଛି । ମାମଲା କୋର୍ଟକୁ ଯାଇଛି । ଆଶ୍ରମରେ ଗଦା ହୋଇଥିବା ବହି, କାଗଜମାନେ କେଉଁଆଡ଼େ କେମିତି ଚାଲିଗଲେ, ତା'ର ହିସାବ ରହିନି । ଶ୍ରୀଯୁକ୍ତ ବିଶ୍ୱନାଥ କରଙ୍କ ଉତ୍କଳ ସାହିତ୍ୟ ପ୍ରେସ୍ ମଧ୍ୟ ନିଜର ତେଜ ହରେଇଛି । ତାଙ୍କ ପୁଅ, ଝିଅମାନେ ସମ୍ପତ୍ତି ଓ ସୁଖ୍ୟାତିର ସଂରକ୍ଷଣରେ ସମର୍ଥ ହୋଇ ନାହାନ୍ତି । ଲାଳନ ପାଳନ ତ କାହିଁ କେତେ ଦୂରର କଥା । ଭାଷାକୋଷ ଯେ ଜଣେ ବ୍ୟକ୍ତିର ନୁହେଁ, ଜାତୀୟ ସଂପତ୍ତି, ଓଡ଼ିଆମାନେ ଏହା ଅନୁଭବ କରିପାରି ନାହାନ୍ତି ଏବଂ ସବୁଠାରୁ ଆଶ୍ଚର୍ଯ୍ୟର କଥା – ଯେଉଁମାନେ ଶ୍ରୀଯୁକ୍ତ ପ୍ରହରାଜଙ୍କ ସହକର୍ମୀ ଥିଲେ, ସେମାନେ ମଧ୍ୟ ଭାଷାକୋଷର ବର୍ତ୍ତମାନ ଓ ଭବିଷ୍ୟତ୍ ସଂକ୍ରାନ୍ତର ମଥା ଖେଳେଇ ନାହାନ୍ତି । ପୃଥିବୀର ଭାଷା ପରିଚର୍ଚ୍ଚା ଇତିହାସରେ ଶ୍ରୀଯୁକ୍ତ ପ୍ରହରାଜଙ୍କ ଭାଷାକୋଷକୈନ୍ଦ୍ରିକ ଘଟଣାବଳୀକୁ କେବଳ ଏକ ଅଭିନବ ମହାନାଟକ, ଏକ ବିଡ଼ମ୍ୱନା ବ୍ୟତୀତ ଆଉ କିଛି କୁହାଯାଇ ନ ପାରେ ।

କେହି କେହି ହୁଏତ କହିପାରନ୍ତି, ପାଳକୋଷକୁ ସମୟର ନିଆଁ ଖାଇଯାଇଛି, ଭଲ ହୋଇଛି । ମାତ୍ର ସତରେ କ'ଣ ତାହା ଶେଷ ହୋଇଯାଇଛି ? ତାହା ହୋଇଥିଲେ ଆମେ ଆଧୁନିକ ସାମନ୍ତମାନେ ଜମାରୁ ତାକୁ ଏତେ ଖୋଜୁ ନ ଥାନ୍ତୁ । ଆଜି ଆମେ ଆମ ସଂସ୍କୃତି ଓ ଜୀବନକୁ ଖୋଜିଲା ବେଳେ ଭାଷାକୋଷର ପୃଷ୍ଠା ଆଡ଼ୋଉଛୁ । 'ଇତରତା'-ଦୋଷଦୁଷ୍ଟ ତାହାର ବିପୁଳ କଳେବରକୁ ଅମୂଲ୍ୟ ବିଭବ ତୁଲ୍ୟ ଜ୍ଞାନକରୁଛୁ । ଖୋଜିଲେ ପାଉନୁ ।

॥ ଛଅ ॥

ଭାଷାକୋଷ ପୁନଃ ପ୍ରକାଶିତ ହୋଇପାରିବ କି ନା, ଯଦି ପ୍ରକାଶିତ ହୁଏ, ତାହା କେଉଁ ରୂପ ନେବ, ତାହା ଓଡ଼ିଶାର ଭାଷାବିଜ୍ଞାନୀ, ଅଭିଧାନତତ୍ତ୍ୱବିଦ୍‌ମାନେ ବିଚାର କରିବେ । ମାତ୍ର *ପ୍ରହରାଜଙ୍କ ରଚନା ସମଗ୍ର*ର ଏହି *ତୃତୀୟ ଭାଗରେ*, ଭାଷାକୋଷର ମୁଖପୃଷ୍ଠା, ଉତ୍ସର୍ଗପତ୍ର, ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ଲିଖିତ ମୁଖବନ୍ଧ, ଭାଷା ବିଷୟକ ଛ'ଗୋଟି ଆଲୋଚନା ଏବଂ ପୁଚ୍ଛାଗ୍ରରେ ଉଭୟ ଇଂରାଜୀ ଭାଷାରେ ଲିଖିତ prospectus ବା ଅନୁମୋଦନପତ୍ର, ଭାଷାକୋଷ ସଂକ୍ରାନ୍ତ ନିର୍ବାଚିତ ବିଜ୍ଞାପନ, ପ୍ରତିକ୍ରିୟା ଏବଂ ସଂକ୍ଷେପରେ

ଭାଷାକୋଷ ପତ୍ର ସ୍ଥାନପାଇଛି । ରମ୍ୟକଥନ ରୀତିରେ ପ୍ରକାଶିତ 'ଭାଷାକୋଷପାଇଁ ସଫର' ତାଙ୍କ କୋଷକୈନ୍ଦ୍ରିକ ବିଚାର ଓ କୋଷ ପ୍ରକାଶନ ସମସ୍ୟାର ଅନ୍ୟତମ ଇସ୍ତାହାର । ଏହି ସକଳ ଆଲୋଚନା ପ୍ରହରାଜଙ୍କ ବ୍ରିଟିଶସଂପ୍ରୀତି ଓ ଦେଶପ୍ରୀତି, ସଂସ୍କୃତିପ୍ରୀତି, ଶତ୍ରୁପ୍ରୀତି ଓ ମିତ୍ରପ୍ରୀତି, ଅର୍ଥପ୍ରୀତି ଓ ପରମାର୍ଥପ୍ରୀତି, ପ୍ରଶଂସାପ୍ରାପ୍ତି- ପ୍ରୀତି ଓ ଆତ୍ମ, ପରଛିଦ୍ରାନ୍ୱେଷୀ ପ୍ରୀତି ଏବଂ ସର୍ବୋପରି ଏ ବହୁବିଧ ପ୍ରୀତି ସହିତ ସଂପୃକ୍ତ ବ୍ୟକ୍ତି ଓ ସମସ୍ୟାଗୁଡ଼ିକର ବିଶ୍ୱସ୍ତ ଓ ଅନୁଭବପୁଷ୍ଟ ସ୍ୱୀକାରୋକ୍ତି ଭାବରେ ଗ୍ରହଣ କରାଯାଇପାରିବ । ଅନ୍ୟ ଶବ୍ଦରେ କହିଲେ- ଏହା ଓଡ଼ିଆ ଜାତି, ଓଡ଼ିଆ ଓ ଓଡ଼ିଆ-ସଂପୃକ୍ତମାନଙ୍କର ବିଚାର ଓ ଜୀବନ ସଂକ୍ରାନ୍ତ ଦଲିଲ, ଓଡ଼ିଆ ଭାଷାର ଇତିହାସ, ସାହିତ୍ୟ ଓ ସଂସ୍କୃତିଚର୍ଚ୍ଚାର ଅଭିନବ କୋଠଘର । ତେଣୁ ଯେଉଁମାନେ ପ୍ରହରାଜଙ୍କୁ ବ୍ରିଟିଶ୍ ସ୍ତାବକ, ଜାତିଦ୍ରୋହୀ ମାନସିକତାର ପ୍ରତୀକ ରୂପରେ ଗ୍ରହଣ କରିଛନ୍ତି, ସେମାନଙ୍କ ବିଚାର ଯେ ଅତ୍ୟନ୍ତ ପାର୍ଶ୍ୱିକ ଓ ଉଦ୍ଦେଶ୍ୟ ପ୍ରଣୋଦିତ, ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ତାହାର ସ୍ପଷ୍ଟ ପ୍ରମାଣ । ଭାଷାହିଁ ମଣିଷ ସହିତ ମଣିଷର ଯୋଡ଼ଣ-ସୂତ୍ର । ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମଣିଷମାନେ ତୁଣ୍ଡର ଭାଷାକୁ କୋଷାୟନ କରି, ପ୍ରହରାଜ ଏକ ବୃହତ୍ତର ଓଡ଼ିଶାର ପ୍ରକୃତିକ ମାନଚିତ୍ର ଶ୍ରଦ୍ଧାର ସହିତ ଆଙ୍କିଛନ୍ତି । ଯେଉଁ ଆଦର୍ଶକୁ ଆଜି ମଧ୍ୟ ଓଡ଼ିଆମାନେ ଅନୁଭବ କରିପାରି ନାହାନ୍ତି, ତାହାକୁ ଗତ ଶତାବ୍ଦୀରେ ଜଣେ ମଣିଷ ଯେ କାର୍ଯ୍ୟରେ ରୂପାନ୍ତରିତ କରିପାରିଥିଲା, ଏହା ନିଶ୍ଚିତଭାବରେ ଏକ ଦୁଃସାହସିକ ଅଭିଯାତ୍ରା । ଏବେ ଏହି ଜାତୀୟବାଦୀ ଶବ୍ଦ ପ୍ରେମିକଙ୍କ ବିଚାରକୁ କାର୍ଯ୍ୟକାରୀ କରିବାରେ ସମୟ ଆସିଛି ।

ମୁଁ ଜାଣେନି, ଏହି ଅଭିଯାତ୍ରା ବାସ୍ତବାୟିତ ହେବ କି ନା । ମାତ୍ର ପ୍ରହରାଜଙ୍କ ଭାଷା ସଂକ୍ରାନ୍ତ ବିଚାରକୁ ସଂକଳାୟିତ କରିବାର ଉଦ୍ଦେଶ୍ୟ, ସଚେତନ ଓଡ଼ିଆମାନଙ୍କ ଚେତନାରେ ସମଭାବର ତରଙ୍ଗାୟନ । ଏହି ତରଙ୍ଗ ସର୍ଜନାର ସଚେତନାର ସୂତ୍ରଧର ଶ୍ରୀଯୁକ୍ତ ପୀତାମ୍ବର ମିଶ୍ର । ମୋ ଜାଣିବାରେ, ଭାଷାକୋଷକୁ ସତରେ ଭଲପାଉଥିବା ମଣିଷମାନଙ୍କ ମଧ୍ୟରେ ସେ ନିଶ୍ଚିତଭାବରେ ଅନ୍ୟତମ ଓ ସ୍ୱତନ୍ତ୍ର ।

ବିଶ୍ୱାସ ଏହି ସଂକଳନ, ଓଡ଼ିଆ ଭାଷାର ଶବ୍ଦକୋଣାର୍କର ସୃଷ୍ଟିରହସ୍ୟ ଓ ସଂକଳକଙ୍କ ଜୀବନ, ଭାଷାବୋଧ ଓ ସୃଜନ-ରହସ୍ୟ ଅନୁଭବରେ ପାଠକମାନଙ୍କୁ ବିଚାରକୁ ଅବଶ୍ୟ ପୁଷ୍ଟ କରିବ ଏବଂ ସେମାନେ ଆମକୁ ଧନ୍ୟ କରିବେ ।

୧୪, ଜାନୁଆରି, ୨୦୦୮ **ଗୌରାଙ୍ଗ ଚରଣ ଦାଶ**

ଆନନ୍ଦ ଆଶ୍ରମ

# ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ

## PŪRṆṆACHANDRA OṚḌĪĀ BHĀSHĀKOSHA

## ମୁଖବନ୍ଧ

### ୧୯୩୧-୪୦

### ସୂଚନା

ସମଗ୍ର ପୃଥିବୀରେ ବିଭିନ୍ନ ଭାଷାରେ ସଂକଳିତ ଅଭିଧାନଗୁଡ଼ିକ ମଧ୍ୟରେ *ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ*ର ସ୍ୱତନ୍ତ୍ର ସ୍ଥାନ ରହିଛି । ଓଡ଼ିଆ, ବଙ୍ଗଳା, ହିନ୍ଦୀ ଓ ଇଂରାଜୀ ଭାଷାର ଏହା ଏକ ଚତୁର୍ଭାଷିକ (ଚତୁର୍ଲିପିକ) ଅଭିଧାନ । ରୟାଲ କ୍ୱାର୍ଟୋ ଅକ୍ଷରରେ ମୁଦ୍ରିତ ଓ ସାତ ଖଣ୍ଡରେ ପ୍ରକାଶିତ ଏହାର ଶବ୍ଦ ସଂଖ୍ୟା ପ୍ରାୟ ଏକଲକ୍ଷ ପଞ୍ଚାଅଶୀ ହଜାର, ପୃଷ୍ଠାସଂଖ୍ୟା ନ' ହଜାର ପାଞ୍ଚଶହ ତିନି (୯୨୫୩ - ସଂଗୃହୀତ ଶବ୍ଦର ପୃଷ୍ଠା + ଫଟୋ ଚିତ୍ର + ମୁଖବନ୍ଧ ୧୫୩ ପୃଷ୍ଠା) ଖର୍ଚ୍ଚର ପରିମାଣ ପ୍ରାୟ ଏକଲକ୍ଷ ପଚିଶହଜାର ଟଙ୍କା ଏବଂ ପ୍ରକାଶନର ଅବଧି ଦଶବର୍ଷ (ସେପ୍‌ଟେମ୍ବର ୧୯୩୧ରୁ ସେପ୍‌ଟେମ୍ବର ୧୯୪୦ ମସିହା)

ଓଡ଼ିଆ ଭାଷାଭାଷୀ ଅଞ୍ଚଳର ସାଧାରଣ ଲୋକତୁଣ୍ଡର କଥିତ ଓଁ ସାହିତ୍ୟରେ ବ୍ୟବହୃତ ଶବ୍ଦଗୁଡ଼ିକର ଏହା କୋଠଘର । ପୁନଶ୍ଚ ଏହା ଏକ ବ୍ୟୁତ୍ପତ୍ତିମୂଳକ, ବର୍ଣ୍ଣନାତ୍ମକ ଓ ଜ୍ଞାନକୋଷିକ ଅଭିଧାନ । ଏବଂ ଏହି କୋଷଗ୍ରନ୍ଥ ସଂକଳନର ପ୍ରଧାନ ଉଦ୍ଦେଶ୍ୟ, ବିଶ୍ୱରେ ଓଡ଼ିଆଜାତିର ସମୃଦ୍ଧ ରାଜନୀତିକ, ସାଂସ୍କୃତିକ ଐତିହ୍ୟର ପ୍ରାମାଣିକ ଉପସ୍ଥାପନ ।

ପ୍ରକାଶ ଥାଉ କି, କଥିତ ଶବ୍ଦର ବାହୁଲ୍ୟ, ଅଶ୍ଳୀଳ ଓ ଅବ୍ୟବହୃତ ଶବ୍ଦଗୁଡ଼ିକର ସଂଯୋଜନ; କେତେକ ଶବ୍ଦର ଭ୍ରମାତ୍ମକ ବ୍ୟୁତ୍ପତ୍ତି, ବ୍ୟାଖ୍ୟା ଓ ଅର୍ଥଲିଖନ; ଓଡ଼ିଆ-ଅସ୍ମିତାର ଅପମାନଜନକ ଚର୍ଚ୍ଚା; ସଂକଳକଙ୍କ ବ୍ୟକ୍ତିକ ଜୀବନଚର୍ଯ୍ୟା; ରାଜା, ମହାରାଜା, ଜମିଦାର, ପ୍ରାଦେଶିକ ସରକାର, ପ୍ରଶାସକ, ବିଭିନ୍ନ ବିଶିଷ୍ଟ ବ୍ୟକ୍ତିବିଶେଷ, ଅନୁଷ୍ଠାନ ଓ ଗ୍ରାହକମାନଙ୍କଠାରୁ ସଂଗୃହୀତ ଅର୍ଥର ଅପବ୍ୟୟ ଓ ତୋଷରପାତ ଏବଂ ଗ୍ରନ୍ଥର ଅତ୍ୟଧିକ ମୂଲ୍ୟ ଆଦି ନାନା କାରଣ ଯୋଗୁଁ ଏହା ବିକ୍ରି ହୋଇପାରି ନାହିଁ । ସଂକଳକ ଘୋର ଆର୍ଥିକ ଅନଟନ, ଅପନିନ୍ଦା ଓ ସ୍ତୂପାୟିତ କୋଷଗ୍ରନ୍ଥର ଦୁର୍ଭାରରେ କ୍ରମଶଃ ମାନସିକ ଓ ଶାରୀରିକ ଦୁର୍ବଳତାର ଶିକାର ହୋଇଛନ୍ତି ଏବଂ ଏହା ତାଙ୍କ ଅପମୃତ୍ୟୁର କାରଣ ହୋଇଛି । ତାଙ୍କ ଅନ୍ତେ, ଏହି ବିପୁଳାୟତନ ଗ୍ରନ୍ଥ ଉଇ, ପୋକ, ମୂଷାମାନଙ୍କର ଖାଦ୍ୟ ହୋଇଛି । ଓଡ଼ିଆଜାତି

ଜଣେ ସଚ୍ଚା ଜାତୀୟତାବାଦୀର ଶ୍ରମ ଓ ସାଧନାକୁ ସମ୍ମାନ ଦେବା ତ ଦୂରର କଥା, ବୁଝିବାରେ ସମର୍ଥ ହୋଇ ନାହିଁ ଏବଂ ଯେତେବେଳେ ତା'ର ଆଖି ଖୋଲିଛି, ସେତେବେଳକୁ ଏହି ଜାତୀୟ ସଂପତ୍ତି ଦୁର୍ଲଭ ହୋଇପଡ଼ିଛି ।

ପ୍ରହରାଜ, ଓଡ଼ିଆଭାଷା ଜାଣି ନ ଥିବା ଦେଶୀ ଓ ବିଦେଶୀମାନଙ୍କୁ, ଆପଣାର ଆଭିମୁଖ୍ୟ ସଂପର୍କରେ ଅବଗତ କରାଇବା ଉଦ୍ଦେଶ୍ୟରେ ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରେ, ଭାଷାକୋଷର ମୁଖବନ୍ଧ ଲେଖିଛନ୍ତି । ପ୍ରସ୍ତୁତ ସଂକଳନ, ସାତ ଖଣ୍ଡରେ ମୁଦ୍ରିତ ମୁଖବନ୍ଧର ପୁନର୍ମୁଦ୍ରଣ । ମୁଖବନ୍ଧଗୁଡ଼ିକରେ ରହିଛି, (କ) ଅର୍ଥଦାତା, ଶୁଭେଚ୍ଛୁ, ସଂକଳନ - ସହଯୋଗୀ ଓ ବିଶିଷ୍ଟମାନଙ୍କର ନାମ ଓ ଫଟୋଚିତ୍ର, (ଖ) ସଂଗୃହୀତ ଅର୍ଥର ପରିମାଣ, (ଗ) ସଂପାଦନା-ସହଯୋଗୀ, ଶବ୍ଦ ସଂଗ୍ରାହକ, କେତେକ ନିର୍ଦ୍ଦିଷ୍ଟ ବିଷୟର ବିଶଦ-ଚର୍ଚ୍ଚାକାର, (ଘ) ସହାୟକ ଆକର ଗ୍ରନ୍ଥଗୁଡ଼ିକର ନାମ, (ଙ) ଶବ୍ଦଗୁଡ଼ିକର ଜାତି, ପ୍ରକାର ସଂକ୍ରାନ୍ତ ସୂଚୀ, (ଚ) ଅଭିଧାନତତ୍ତ୍ୱ ଚର୍ଚ୍ଚା ଏବଂ (ଛ) ସର୍ବୋପରି ଏହି ଦୁରୂହ କାର୍ଯ୍ୟ ସୁସଂପାଦନରେ ତାଙ୍କ ସୁଖ, ଆନନ୍ଦ, ସମସ୍ୟା, ଯନ୍ତ୍ରଣାର ଭାବଗର୍ଭୀ ଚିତ୍ର । ଏହି ମୁଖବନ୍ଧ, ଜଣେ ବ୍ୟକ୍ତିର କେବଳ ଶବ୍ଦ-ପ୍ରୀତି ନୁହେଁ, ଶବ୍ଦ ସଂକଳନ ପରି ଏକ ବିରକ୍ତିକର, ଆୟାସସାଧ୍ୟ ଅଥଚ ପ୍ରୀତିପ୍ରଦ କାର୍ଯ୍ୟକୁ କିପରି ସହଜ କରାଯାଇପାରେ, ତାହା ଅବବୋଧରେ ପାଠକମାନଙ୍କୁ ସୁଯୋଗ ଦେଇଥାଏ ।

ଏହି ସଂକଳନରେ ଭାଷାକୋଷର ବିଭିନ୍ନ ଖଣ୍ଡରେ ମୁଦ୍ରିତ କେତେକ ଅଂଶର ଅନୁରୂପ ଓ ଅନ୍ୟ କେତେକର ଆବଶ୍ୟକୀୟ ପରିବର୍ତ୍ତିତ ରୂପ ପ୍ରକାଶିତ । ଯଥା (କ) ସଂକଳକ ପ୍ରତ୍ୟେକ ଖଣ୍ଡରେ ସାହାଯ୍ୟ ଦେଇଥିବା ଆକର ଗ୍ରନ୍ଥ, ବିଷୟ ଓ ଭାଷା-ବିଶେଷଜ୍ଞ ଏବଂ ଅନ୍ୟ ସହଯୋଗୀମାନଙ୍କ ନାମ ପ୍ରକାଶ କରିଛନ୍ତି ଏବଂ ପ୍ରଥମ ସଂଖ୍ୟାଠାରୁ ସପ୍ତମ ସଂଖ୍ୟା ପର୍ଯ୍ୟନ୍ତ ସେମାନଙ୍କ ସଂଖ୍ୟା କ୍ରମଶଃ ଅଧିକ ହୋଇଛି । ମାତ୍ର ଏହି ଗ୍ରନ୍ଥରେ ପ୍ରଥମ ଖଣ୍ଡରେ ସଂଯୋଜିତ ସକଳ ନାମ ଓ ପରବର୍ତ୍ତୀ ଖଣ୍ଡଗୁଡ଼ିକରେ ସଂଯୋଜିତ ନ ହୋଇ, କେବଳ ନୂଆ ନାମଗୁଡ଼ିକ ମୁଦ୍ରିତ ହୋଇଛି ।

(ଖ) ଭାଷାକୋଷର ପ୍ରଥମ ଖଣ୍ଡର ପ୍ରତ୍ୟେକ ପୃଷ୍ଠାରେ ଓଡ଼ିଆ ବର୍ଣ୍ଣମାଳା, ବର୍ଣ୍ଣ ଓ ଶବ୍ଦଗୁଡ଼ିକର ଓ ସଂଯୋଜନ ବିଧି ସ୍ୱତନ୍ତ୍ର ଭାବରେ ଦୁଇଗୋଟି ଟେବୁଲ ମଧ୍ୟରେ ମୁଦ୍ରିତ ହୋଇଛି । ଏହି ପଦ୍ଧତି, ଗ୍ରନ୍ଥର ପୃଷ୍ଠାସଂଖ୍ୟା ବୃଦ୍ଧିର କାରଣ ହୋଇଥିବାରୁ, କେତେକ ଶୁଭଚିନ୍ତକଙ୍କ ପରାମର୍ଶକ୍ରମେ, ପରବର୍ତ୍ତୀକାଳରେ ତହିଁରେ ପରିବର୍ତ୍ତନ ଆଣିଛନ୍ତି । ପୁନଶ୍ଚ ଏହି ରୀତି ବିଖ୍ୟାତ ଆମେରିକୀୟ ଅଭିଧାନକାର ନୋଆ ଓଏ୍ଷ୍ଟରଙ୍କ ଓଏବଷ୍ଟର ଇଂଲିଶ ଆମେରିକୀୟ ଡିକ୍ସିନାରିର ଅନୁରୂପ । ଗ୍ରନ୍ଥର ପରିଶିଷ୍ଟରେ ଏହି ଟେବୁଲଗୁଡ଼ିକ ସଂଯୋଜିତ ।

(ଗ) ଏହି ବିପୁଳାକାୟ କୋଷ ଗ୍ରନ୍ଥର ବ୍ୟୟଭାର ନିର୍ବାହପାଇଁ ସଂକଳକ ସମକାଳୀନ ସାହିତ୍ୟ ଓ ଭାଷାପ୍ରେମୀ ଏବଂ ବିହାର-ଓଡ଼ିଶା, ମାନ୍ଦ୍ରାଜ ସରକାରଙ୍କ ଦ୍ୱାରସ୍ଥ ହୋଇଛନ୍ତି ।

ଏଥିପାଇଁ ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରେ, ଆପଣାର ଉଦ୍ଦେଶ୍ୟ ଓ ଶବ୍ଦ-ସଂକଳନ ରୀତି-କୈନ୍ଦ୍ରିକ ପ୍ରସ୍‌ପେକ୍‌ଟସ୍ ସେମାନଙ୍କ ପାଖକୁ ପଠାଇଛନ୍ତି । ଓଡ଼ିଆ ଭାଷାରେ ମୁଦ୍ରିତ ପ୍ରସ୍‌ପେକ୍‌ଟସ ଏହି ଗ୍ରନ୍ଥର ପରିଶିଷ୍ଟରେ ସଂଯୋଜିତ । ଇଂରାଜୀ ପ୍ରସ୍‌ପେକ୍‌ଟସ ସଂପର୍କରେ ଅନେକତ୍ର ସୂଚନା ରହିଥିଲେ ସୁଦ୍ଧା, ତାହା ମୁଁ ପାଇ ନ ଥିବାରୁ ଏହି ଗ୍ରନ୍ଥରେ ସଂଯୋଜନ ସମ୍ଭବ ହୋଇପାରି ନାହିଁ । ପୁନଶ୍ଚ ଏହି ନମୁନା ପୁସ୍ତକ ଓ ଅନୁରୋଧ ପତ୍ର ସଂପର୍କରେ ପାଠକୀୟ ପ୍ରତିକ୍ରିୟା ଜାଣିବା ଉଦ୍ଦେଶ୍ୟରେ, *ନବୀନ* ପତ୍ରିକାରେ ପ୍ରକାଶିତ ଏକ ସମ୍ବାଦ, କୋଷଗ୍ରନ୍ଥ ସଂକ୍ରାନ୍ତ ପ୍ରଥମ ବିଜ୍ଞାପନ ଓ ଉତ୍କଳ ଶବ୍ଦର ଅର୍ଥ ସଂପର୍କରେ ଜାତୀୟତାବାଦୀମାନଙ୍କର ପ୍ରତିକ୍ରିୟାକୁ ସଂକଳକ କେଉଁପରି ଗ୍ରହଣ କରିଛନ୍ତି, ତାହା ମଧ୍ୟ ଏଥିରେ ସଂଯୋଜିତ । (ଡ) ଏବଂ, ଭାଷାକୋଷ ଶବ୍ଦ ସଂକଳନ ପଦ୍ଧତି ସହିତ ଅପରିଚିତ ପାଠକମାନଙ୍କର ଜାଣିବା ନିମିତ୍ତ ପ୍ରଥମ ଓ ସପ୍ତମ ଖଣ୍ଡର କେତେକ ଶବ୍ଦ ନମୁନା ସ୍ୱରୂପ ମୁଦ୍ରିତ ହୋଇଛି ।

ଏଠାରେ ମୋତେ କ୍ଷୋଭର ସହିତ ଲେଖିବାକୁ ପଡୁଛି ଯେ, ପ୍ରହରାଜ, ଯେଉଁ ବ୍ୟକ୍ତି, ଅନୁଷ୍ଠାନ ଓ ଗ୍ରାହକମାନଙ୍କଠାରୁ କେବେ ଏବଂ କେତେ ପରିମାଣର ଅର୍ଥ ପାଉଥିଲେ ଏବଂ କେଉଁ ବାବଦକୁ କେତେ ଅର୍ଥ ଖର୍ଚ୍ଚ କରୁଥିଲେ, ତାହାର ଟିକିନିଖି ହିସାବ ରଖୁଥିଲେ । ତଥ୍ୟ ସଂଗ୍ରହ କାଳରେ, ଏକ ବେଶ୍ ମୋଟା ହିସାବଖାତା ମୁଁ ତାଙ୍କ ନାତିମାନଙ୍କ ପାଖରେ ଦେଖିଥିଲି । ତହିଁରୁ କେତୋଟି ପୃଷ୍ଠାର ଫଟୋକପି ସେମାନଙ୍କୁ ମାଗିଲି । ମାତ୍ର ସେମାନେ କୌଣସି କାରଣରୁ ମୋତେ ସେହି ସୁଯୋଗ ଦେଇ ନ ଥିଲେ । ଏହି ସଂକଳନରେ ତାହାର କେତୋଟି ପୃଷ୍ଠା ମୁଦ୍ରିତ ହେବାର ଆବଶ୍ୟକତା ରହିଛି, ମାତ୍ର ସମ୍ଭବ ହେଉ ନାହିଁ । କେବେ, ଈଶ୍ୱରଙ୍କ ଇଚ୍ଛାରୁ, ଏହା ପାଇବାରେ ସମର୍ଥ ହେଲେ ଗ୍ରନ୍ଥାବଳୀର ଶେଷ ଖଣ୍ଡରେ ମୁଦ୍ରିତ କରିବାର ଆଶା ରଖୁଛି ।

ଭାଷାକୋଷ ସଂକ୍ରାନ୍ତ ବହୁ ମତ ଓ ମନ୍ତବ୍ୟ ସମକାଳର ପତ୍ରପତ୍ରିକାଗୁଡ଼ିକରେ ପ୍ରକାଶ ପାଇଛି । ଏହି ସଂକଳନର ମୁଖବନ୍ଧର, ସେହିଗୁଡ଼ିକର ସୂଚନା ଓ ଚର୍ଚ୍ଚା ରହିଛି । ସହୃଦୟ ପାଠକମାନେ ତାହାର ସୁଯୋଗ ନେବେ ବୋଲି ବିଶ୍ୱାସ ।

ସଂପାଦକ

# ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ

ପ୍ରଥମ ଖଣ୍ଡ

(ସ୍ୱରବର୍ଣ୍ଣ, ଅ-ଔ)

ସଂଗ୍ରାହକ

**ଗୋପାଳ ଚନ୍ଦ୍ର ପ୍ରହରାଜ**

ସହକର୍ମିଗଣ

ଶ୍ରୀମତୀ ପୀତାମ୍ବରୀ ଦେବୀ

ଶ୍ରୀ ଚନ୍ଦ୍ରଶେଖର ମିଶ୍ର, ବି.ଏ.

ଶ୍ରୀ କୁଞ୍ଜମଣି ଦାଶ, କାବ୍ୟତୀର୍ଥ

ପଣ୍ଡିତ ଶ୍ରୀ ରାମଚନ୍ଦ୍ର ରଥ

PŪRṆṆACHANDRA

OṚḌĪĀ BHĀSHĀKOSHA

(A Lexicon of the Oriya Language)

Volume I

(The vowels)

Compiler

**G. C. Praharaj**

Advocate

Patna High Court, Cuttack

B.N.R, Orissa (India)

with the help of body of Colleagues

Printed and Published by V. Kar

THE UTKAL SAHITYA PRESS

CUTTACK, 1931

**The First Volume of the**

**PŪRṆṆACHANDRA ORDIĀ BHĀSĀKOSHA**

**(Oriya Lexicon)**

**is dedicated to**

**J. A. Hubback, Esq. M.A.** (Cantab). **I.C.S.**

Sometimes Commissioner of the Orissa Division
in grateful recognition of his sincere solicitude for the publication
of the work and the valuable encouragement afforded by him
to the cause of Oriya literature and his genuine sympathy
for the Oriyas which he evinced as Chairman of the
Provincial Banking Enquiry Committee
Bihar & Orissa.

By his admirer

CUTTACK — THE COMPILER

September, 1931. — G. C. PRAHARAJ

ଏହି ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ମୁଦ୍ରଣ ଓ ପ୍ରକାଶପାଇଁ ଯେଉଁ ମହୋଦୟ ଗଭୀର ହୃଦୟାବେଗ ପ୍ରକାଶପୂର୍ବକ ମୋତେ ନାନାପ୍ରକାର ଉତ୍ସାହିତ କରି ଓଡ଼ିଆ ଭାଷା ପ୍ରତି ଜ୍ୱଳନ୍ତ ଅନୁରାଗ ପ୍ରଦର୍ଶନ କରିଅଛନ୍ତି ଏବଂ ଯେ ବିହାର-ଓଡ଼ିଶାର ପ୍ରାଦେଶିକ ବ୍ୟାଙ୍କିଙ୍ଗ୍ ତଦନ୍ତ କମିଟିର ସଭାପତିରୂପେ ଓଡ଼ିଆମାନଙ୍କ ପ୍ରତି ଆନ୍ତରିକ ସହାନୁଭୂତି ଦେଖାଇଅଛନ୍ତି, ଏ କ୍ଷୁଦ୍ର ହୃଦୟରେ ତଜ୍ଜନିତ ଉପଜାତ କୃତଜ୍ଞତାର ଯତ୍କିଞ୍ଚିତ୍ ନିଦର୍ଶନ ସ୍ୱରୂପ ଓଡ଼ିଶାର ସେହି ଭୂତପୂର୍ବ କମିଶନର୍ ଶ୍ରୀଯୁକ୍ତ ଜେ.ଏ. ହବାକ୍, ଏମ୍.ଏ., ଆଇ.ସି.ଏସ୍.ଙ୍କ ମହନୀୟ ନାମରେ ଏ ଭାଷାକୋଷର ପ୍ରଥମ ଖଣ୍ଡ ଉତ୍ସର୍ଗ କଲି ।

ତଦୀୟ ଗୁଣମୁଗ୍ଧ

କଟକ — ସଂଗ୍ରାହକ

ସେପ୍ଟେମ୍ବର, ୧୯୩୧ — ଗୋପାଳ ଚନ୍ଦ୍ର ପ୍ରହରାଜ

# INTRODUCTION

Sir George Greierson in his Linguistic Survey of India has grouped the Indian languages into 7 groups.

**GROUP I.** Austric family (having 7 languages and 14 dialects) spoken by about 4 1/2 millions of people in the Malaya Peninsula, Nicobar islands, by the Mundas, the Juangs and Kols of Orissa and the Chotanagpur highlands.

**GROUP II.** Karen family (having 1 language and 14 dialects) spoken by about one million of people on the borders of Burma.

**GROUP III.** Man family (with 2 languages) spoken by about a thousand persons.

**GROUP IV.** Tibeto-Chinese family (with 116 languages and 86 dialects) spoken by about 13 millions of people in the North Eastern frontier tracts of India.

**GROUP V.** Dravidian family (with 16 languages and 23 dialects) spoken by about 65 millions of people in Southern India, including Telugu, Tamil, Malayalam, Canarese. Oraon, Kui, Kandhi and Gondi languages.

**GROUP VI.** Indo-European family (With 38 languages and 402 dialects) spoken by about 230 millions of people in Western, Northern and Central India.

**GROUP VII.** Unclassed languages (with 2 languages and 19 dialects) spoken by about one hundred thousands of people, including the Andamanese and the Gipsy Languages.

According to the Census of 1921 the above 7 groups of languages are spoken by 315 millions of people inhabiting India. These groups consist of 179 languages and 544 dialects.

Of these groups the Dravidian has no extra-Indian origin and was the language of the pre-historic immigrants who had driven out the aborigines and who in their turn were driven out towards the south by the Aryans who came to India through the North-Western frontier. Of the languages used by the aboriginals we have no certain data.

edition of the work. Kind suggestions for improvement will, if approved, be carried out in the subsequent volumes.

Srijukta Visvanath Kar, Editor of the Utkal Sahitya magazine and Proprietor of the Utkal Sahitya Press, Cuttack ushered me to the work of letters, and my literary activities are due to his initiative. He has been unremitting in supplying with books, seeing the work through the press, and securing for me help and co-operation. Had it been for his lively interest in the publication, my life's labours would not have so soon seen the light of the day. Still, if I am not spared to see the subsequent volumes published, I shall cherish the fond in my death-bed that Srijukta Visvanath Kar, Pandit Kulamani Das and my younger colleagues and supporters and lastly the Benign Government of Bihar and Orissa, will not let the remaining portion unpublished.

The Oriya language is one of the oldest vernaculars in India, but the outside word has got no idea of the richness of its classics and its vocabulary, My humble efforts at making the Oriya language known, appreciated and admired not only by the sister nations in India but by the civilized world of letters, by linking it with the medium of taught of the civilized world (namely English), with he Lingua-franca of India (namely Hindi) and with one of the most advanced sister-languages (namely Bengali), deserve encouragement and support from every true patriot. This humble undertaking pushed on through a period of 17 years, has been appreciated and blessed by eminent scholars, both Indian and European, subsidized by the Government Bihar and Orissa and highly spoken of by almost all the news-papers and periodicals of the land. Throughout this long period of compilation I have kept in view the hope that this humble work may serve as the starting point of many a research scholar in Grammar, in Philology, in History. In Religion and even in Astronomy, Botany and Medicine.

Thy will be done ! Oh Father of all !

Cuttack;Orissa.
September 1931.

G. C. Praharaj

# ଅବତରଣିକା

## ୧. ଓଡ଼ିଆ ଭାଷାର ଉତ୍ପତ୍ତି

ସଂସ୍କୃତ ଭାଷାରେ ଲିଖିତ ପ୍ରାଚୀନ ନାଟକ ଓ ଅଳଙ୍କାର ପ୍ରଭୃତି ଗ୍ରନ୍ଥ ପଢ଼ିଲେ ଜଣାଯାଏ ଯେ, ଉନ୍ନତତମ ଯୁଗରେ ଭାରତର ସଂସ୍କୃତ ଭାଷା ରାଜଭାଷା - (Court language) ରୂପେ ଗୃହୀତ ହୋଇଥିଲା । ଶିକ୍ଷିତ ଲୋକେ ସଂସ୍କୃତରେ କଥା କହୁଥିଲେ, ମାତ୍ର ଅର୍ଦ୍ଧଶିକ୍ଷିତ, ଅଶିକ୍ଷିତ ତ଼ଥା ସ୍ତ୍ରୀଲୋକମାନେ ପ୍ରାକୃତ ଭାଷା ବ୍ୟବହାର କରୁଥିଲେ । ପ୍ରାଚୀନ ଭାରତରେ ବହୁବିଧ ପ୍ରାକୃତ ଭାଷାର ପ୍ରଚଳନ ଥିଲା । ତନ୍ମଧ୍ୟରେ ଶୌରସେନୀ, ମାଗଧୀ, ମହାରାଷ୍ଟ୍ରୀ, ଅର୍ଦ୍ଧମାଗଧୀ, ପ୍ରାଚ୍ୟା, ଅବନ୍ତିକା, ଦାକ୍ଷିଣାତ୍ୟା ବାହ୍ଲିକା, ଶାବରୀ, ଦ୍ରାବିଡ଼ୀ, ଆଭୀରୀ, ଚାଣ୍ଡାଳୀ, ପୈଶାଚୀ ପ୍ରଭୃତି ପ୍ରଧାନ । ଭାଷାମାନଙ୍କ ନାମରୁ ଭାରତର କେଉଁ ପ୍ରଦେଶରେ କେଉଁ ପ୍ରାକୃତ ଭାଷାର ପ୍ରଚଳନ ଥିଲା, ତାହା କେତେକ ପରିମାଣରେ ଜଣାଯାଏ । ଭାଷାତତ୍ତ୍ୱବିତ୍ ପଣ୍ଡିତମାନେ ସ୍ଥିର କରିଅଛନ୍ତି ଯେ, ବର୍ତ୍ତମାନର ଓଡ଼ିଆ ଭାଷା ପ୍ରାଚୀନ ମାଗଧୀ ପ୍ରାକୃତରୁ ଉତ୍ପନ୍ନ । କିନ୍ତୁ ପ୍ରାଚୀନ ପ୍ରାକୃତ ଭାଷାର ପ୍ରକୃତିଠାରୁ ଆଧୁନିକ ଓଡ଼ିଆ ଭାଷାର ପ୍ରକୃତି ସ୍ୱତନ୍ତ୍ର । ସହସ୍ର ସହସ୍ର ବର୍ଷ ପୂର୍ବେ ଆମ୍ଭମାନଙ୍କର ପୂର୍ବପୁରୁଷମାନେ ଯେଉଁ ଭାଷାରେ କଥା କହୁଥିଲେ, ଆମ୍ଭେମାନେ ବର୍ତ୍ତମାନ ଠିକ୍ ସେହି ଭାଷା ବ୍ୟବହାର କରୁ ନାହୁଁ । କାଳସ୍ରୋତର ପ୍ରବାହରେ ସେହି ପ୍ରାଚୀନ ମାଗଧୀ ପ୍ରାକୃତ ନାନା ଅବସ୍ଥା, ଘଟନା ଓ ପ୍ରଭାବ ମଧ୍ୟରେ ବିଭିନ୍ନ ରୂପ ଧାରଣ କରି ବର୍ତ୍ତମାନ ଆକାର ପାଇଅଛି ।

ପୁରାତତ୍ତ୍ୱବିତ୍ ପଣ୍ଡିତମାନେ ଅନୁମାନ କରନ୍ତି, ବୈଦିକ ଯୁଗରେ ଭାରତରେ ଯେଉଁ ପ୍ରାକୃତ ଭାଷାର ପ୍ରଚଳନ ଥିଲା, ତାହାକୁ ପରିମାର୍ଜିତ ଅଥବା ସଂସ୍କାରଯୁକ୍ତ କରି ଶିକ୍ଷିତମାନେ ଯେଉଁ ଭାଷାର ସୃଷ୍ଟି କଲେ, ତାହା 'ସଂସ୍କୃତ' ଭାଷା ନାମରେ ଅଭିହିତ ହେଲା । ପ୍ରାକୃତ ଭାଷାରେ ଭାବପ୍ରକାଶୋପଯୋଗୀ ଶବ୍ଦର ଅଭାବ ଦେଖି ସଂସ୍କୃତ ଭାଷାରେ ପରବର୍ତ୍ତୀ କାଳରେ ଅନେକ ନୂତନ ଶବ୍ଦର ସୃଷ୍ଟି କରାଗଲା । ତେଣୁ ଏ ଭାବରେ ଦେଖିଲେ, ପ୍ରାକୃତ ଭାଷା ମୂଳ, ସଂସ୍କୃତ ଭାଷା (Refined language) ତାହାର ପରବର୍ତ୍ତୀ ମାର୍ଜିତ ଆକାର । ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ପରବର୍ତ୍ତୀ ଯୁଗରେ ଭାବପ୍ରକାଶର ସୁବିଧା ପାଇଁ ସଂସ୍କୃତ ଭାଷାରୁ ପ୍ରାକୃତ ଭାଷାମାନଙ୍କରେ ଶତ ଶତ ଶବ୍ଦ ଗ୍ରହଣ କରାଯାଇଅଛି ଏବଂ ସଂସ୍କୃତ ଭାଷାର ଶବ୍ଦ ଓ ଭାବବିଭବରେ ପ୍ରାକୃତ ଭାଷାମାନ ଉନ୍ନତ ହୋଇଅଛି; କିନ୍ତୁ 'ସଂସ୍କୃତ' ଏହି ନାମକରଣରୁ ସ୍ପଷ୍ଟ ଜଣାଯାଏ ଯେ, ପ୍ରାକୃତ ଭାଷାକୁ ସଂସ୍କୃତ ବା ମାର୍ଜିତ କରି ଏହି ଭାଷାର ସୃଷ୍ଟି କରାଯାଇଥିଲା ।

ଆର୍ଯ୍ୟଜାତି ଭାରତରେ ଉପନିବେଶ ସ୍ଥାପନ କରିବା ପୂର୍ବେ ଏ ଦେଶ ଆଦିମ ଅଧିବାସୀମାନଙ୍କର ବାସସ୍ଥଳ ଥିଲା । ସେହି ପ୍ରାଚୀନ ଜାତି ମଧ୍ୟରେ ଦ୍ରାବିଡ଼ୀୟମାନେ ପ୍ରଧାନ । ଆର୍ଯ୍ୟମାନଙ୍କ ଆଗମନ ପୂର୍ବେ ଦ୍ରାବିଡ଼ୀୟ ସଭ୍ୟତା ଭାରତରେ ପ୍ରଭାବ ବିସ୍ତାର କରିଥିଲା । ସେତେବେଳେ ଦ୍ରାବିଡ଼ୀୟମାନେ ଅଳ୍ପ ଉନ୍ନତ ନ ଥିଲେ । ଶିଳ୍ପ, ବିଜ୍ଞାନ, ସଙ୍ଗୀତ, ସାହିତ୍ୟ ପ୍ରଭୃତିରେ ସେମାନଙ୍କ ଅସାଧାରଣତ୍ୱର ନିଦର୍ଶନ ଅନେକତ୍ର ଦେଖାଯାଏ । ଆର୍ଯ୍ୟସଭ୍ୟତା ନିକଟରେ ସେମାନଙ୍କ ସଭ୍ୟତାର ଜ୍ୟୋତି ମଳିନ ଓ ନିସ୍ତେଜ ହୋଇ ଉଠିଲା; କିନ୍ତୁ ଦୁଇ ବିଭିନ୍ନ ଜାତିର ପରସ୍ପର ସଂଘର୍ଷରୁ ପ୍ରକୃତିର ନିୟମ ଅନୁସାରେ ଉନ୍ନତତର ଆର୍ଯ୍ୟଭାଷାରେ ମଧ୍ୟ ଦ୍ରାବିଡ଼ୀୟ ଶବ୍ଦ ଓ ପ୍ରଭାବମାନ ପ୍ରବେଶ କଲା । ସଂସ୍କୃତରେ 'ଅପ୍' ଅର୍ଥରେ 'ନୀର', 'କୋକିଳ' ଅର୍ଥରେ 'ପିକ', 'ବାନର' ଅର୍ଥରେ 'ମର୍କଟ' ଶବ୍ଦର ବ୍ୟବହାର ଏହାର ପ୍ରକୃଷ୍ଟ ଉଦାହରଣ । ଭାଷାତତ୍ତ୍ୱବିତ୍ ପଣ୍ଡିତମାନେ ଏହିପରି ଶତ ଶତ ଦ୍ରାବିଡ଼ୀୟ ଶବ୍ଦ ସଂସ୍କୃତ ଭାଷାରେ ପ୍ରବେଶ କରିଅଛି ବୋଲି ପ୍ରମାଣ କରିଅଛନ୍ତି । ସଂସ୍କୃତରେ ପ୍ରବେଶ କରିଥିବା ଏହିସବୁ ଦ୍ରାବିଡ଼ୀୟ ଶବ୍ଦାବଳୀ ପରବର୍ତ୍ତୀ କାଳରେ ଭାରତର ବିଭିନ୍ନ ପ୍ରାଦେଶିକ ଭାଷାରେ ମଧ୍ୟ ପ୍ରବେଶ କରିଅଛି । ତେଣୁ ହିନ୍ଦୀ, ବଙ୍ଗଳା, ମରହଟ୍ଟୀ ପ୍ରଭୃତି ପ୍ରାଦେଶିକ ଭାଷାମାନଙ୍କରେ ମଧ୍ୟ ଏହି ଦ୍ରାବିଡ଼ୀୟ ଶବ୍ଦମାନ ଦେଖାଯାଏ ।

ଆର୍ଯ୍ୟମାନେ ପ୍ରଥମେ ଉତ୍ତର-ଭାରତରେ ବସତି ବିସ୍ତାର କରିଥିଲେ । ଆର୍ଯ୍ୟ ପ୍ରଭାବ ସହି ନ ପାରି ଆଦିମ ଅନାର୍ଯ୍ୟ ଓ ଦ୍ରାବିଡ଼ୀୟମାନେ ଉତ୍ତରଭାରତ ତ୍ୟାଗ କରି ଦାକ୍ଷିଣାତ୍ୟର ପର୍ବତସଙ୍କୁଳ ପ୍ରଦେଶର ଆଶ୍ରୟ ନେଇଥିଲେ । ବହୁକାଳ ଯାଏ ଦାକ୍ଷିଣାତ୍ୟ ଦ୍ରାବିଡ଼ୀୟ ସଭ୍ୟତାର ଲୀଳାକ୍ଷେତ୍ର ଥିଲା । ଆର୍ଯ୍ୟମାନେ ଉତ୍ତରାଖଣ୍ଡରେ ନିଜର ସଭ୍ୟତା ବିସ୍ତାର କରୁଥିଲେ । ବଙ୍ଗଦେଶ ଓ ଉତ୍କଳ ଯଥାକ୍ରମେ ପୂର୍ବ ଦକ୍ଷିଣାଞ୍ଚଳରେ ସର୍ବପରବର୍ତ୍ତୀ ଆର୍ଯ୍ୟ ଉପନିବେଶ ବୋଲି ମନେହୁଏ ।

କେଉଁ ଶତାବ୍ଦୀରେ ଉତ୍ତରାଖଣ୍ଡବାସୀ ଆର୍ଯ୍ୟମାନେ ଓଡ଼ିଶାରେ ଆସି ଉପନିବେଶ ସ୍ଥାପନ କରିଥିଲେ, ତାହା ଜାଣିବାର ଉପାୟ ନାହିଁ । ମନୁସଂହିତା ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀରେ ରଚିତ ହୋଇଥିଲା, ତାହାର ବହୁପୂର୍ବେ ଏ ଅଞ୍ଚଳ ଯେ ଆର୍ଯ୍ୟ ଉପନିବେଶରେ ପରିଣତ ହୋଇଥିଲା, ଏଥିରେ ସନ୍ଦେହ ନାହିଁ । ମନୁ 'ଉଡ୍ର'ମାନଙ୍କୁ 'ବ୍ରାତ୍ୟ' ବା ପତିତ କ୍ଷତ୍ରିୟ ବୋଲି ବର୍ଣ୍ଣନା କରିଅଛନ୍ତି । ଏଥିରୁ ଜଣାଯାଏ ଯେ, ଆର୍ଯ୍ୟମାନଙ୍କର ପବିତ୍ର ଲୀଳାକ୍ଷେତ୍ର ଉତ୍ତରାଖଣ୍ଡ ତ୍ୟାଗ କରି ଅନାର୍ଯ୍ୟବହୁଳ ଅଞ୍ଚଳରେ ବାସ କରିଥିବା ହେତୁରୁ ମନୁ ଏ ଦେଶରେ ଉପନିବେଶ ସ୍ଥାପନ କରିଥିବା କ୍ଷତ୍ରିୟ ଜାତିଙ୍କୁ 'ପତିତ କ୍ଷତ୍ରିୟ' ବୋଲି କହିଅଛନ୍ତି ।

ଯେଉଁ ଆର୍ଯ୍ୟମାନେ ପ୍ରଥମେ ଏ ଅଞ୍ଚଳରେ ଆସି ବସତି ବିସ୍ତାର କରିଥିଲେ, ସେମାନେ ଉତ୍ତରାଖଣ୍ଡରେ ତତ୍‌କାଳ ପ୍ରଚଳିତ ମାଗଧୀପ୍ରାକୃତରେ କଥା କହୁଥିଲେ । ଏହି ମାଗଧୀପ୍ରାକୃତ ପରବର୍ତ୍ତୀ କାଳରେ 'ପାଲୀ' ନାମରେ ପରିଚିତ ହେଲା । ଖାରବେଳ ଓ ଅଶୋକ ପ୍ରଭୃତି ଉତ୍ତରଭାରତର ରାଜାମାନେ ଯେତେବେଳେ ଉତ୍କଳ ଅଧିକାର କଲେ,

ସେତେବେଳେ ଏ ଦେଶରେ ସେହି ପାଲୀ ଭାଷା ସାହାଯ୍ୟରେ ନିଜ ନିଜର ଅନୁଶାସନ ଓ ସାମୟିକ ବିବରଣୀମାନଙ୍କର ପ୍ରଚାର ଆରମ୍ଭ କଲେ । ଜଉଗଡ଼, ଧଉଳି ଓ ଖଣ୍ଡଗିରି ପର୍ବତରେ ଅଶୋକ ଓ ଖାରବେଳଙ୍କର ଯେଉଁସବୁ ଅନୁଶାସନମାନ ଖୋଦିତ ହୋଇଅଛି, ସେଗୁଡ଼ିକ ପାଲୀ ଭାଷାରେ ଲିଖିତ । ବୌଦ୍ଧ ରାଜାମାନେ ବୌଦ୍ଧଧର୍ମକୁ ଲୋକରଞ୍ଜନ କରିବା ନିମିତ୍ତ ଜନସାଧାରଣଙ୍କଦ୍ୱାରା ବ୍ୟବହୃତ ଭାଷାକୁ ରାଜକୀୟ ଘୋଷଣାମାନଙ୍କରେ ବ୍ୟବହାର କରୁଥିଲେ । ତେଣୁ ଜଣାଯାଏ, ଖାରବେଳ (ଖ୍ରୀ. ପୂ. ୧୦୦) ଓ ଅଶୋକ (ଖ୍ରୀ. ପୂ. ୩୦୦)ଙ୍କ ସମୟରେ ଏ ଅଞ୍ଚଳରେ ଲୋକେ ପାଲୀ ବା ମାଗଧୀ ଭାଷା ବୁଝୁଥିଲେ ଏବଂ ବ୍ୟବହାର କରୁଥିଲେ । ଏହା ପରେ ଖ୍ରୀଷ୍ଟୀୟ ଦ୍ୱିତୀୟ ଓ ତୃତୀୟ ଶତାବ୍ଦୀରେ ଲିଖିତ କେତେକ ନାଟକରେ ବ୍ୟବହୃତ ପ୍ରାକୃତ 'ଉଡ୍ର' ଭାଷାକୁ ବିଭାଷା ବା ଅପଭାଷା ନାମରେ ଅଭିହିତ କରାଯାଇଅଛି । ଏଥିରୁ ଅନୁମିତ ହୁଏ, ସେତେବେଳକୁ ଏ ଅଞ୍ଚଳବାସୀ ଆର୍ଯ୍ୟମାନେ ଆଉ ସେହି ମାଗଧୀପ୍ରାକୃତ ବା ପାଲୀ ବ୍ୟବହାର କରୁ ନ ଥିଲେ । ନାନା ଅନୁସନ୍ଧାନଦ୍ୱାରା ପଣ୍ଡିତମାନେ ନିର୍ଣ୍ଣୟ କରିଅଛନ୍ତି ଯେ, ସେତେବେଳେ ଏ ଦେଶରେ 'ଶବର' ନାମରେ ଏକଜାତୀୟ ଦ୍ରାବିଡ଼ୀୟ ଅନାର୍ଯ୍ୟ ବାସ କରୁଥିଲେ, ଆର୍ଯ୍ୟମାନେ ସେମାନଙ୍କ ସଙ୍ଗେ ମିଳିମିଶି ରହିଲେ ଏବଂ ଏହି ସୂତ୍ରରେ ସେମାନଙ୍କ ଭାଷା ଆର୍ଯ୍ୟମାନଙ୍କ ବ୍ୟବହୃତ ପାଲୀ ଭାଷା ସଙ୍ଗେ ମିଳିତ ହୋଇ ଗୋଟିଏ ନୂତନ ଆକାର ଧାରଣ କଲା । ଏହିପରି ପ୍ରଥମେ ଓଡ଼ିଆ ଭାଷା ମାଗଧୀ ପ୍ରାକୃତ ଓ ଦ୍ରାବିଡ଼ୀୟ ଭାଷାର ସମ୍ମିଶ୍ରଣରେ ଉତ୍ପତ୍ତି ଲାଭ କରିଅଛି ।

ଗଙ୍ଗବଂଶୀୟ ରାଜାମାନେ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଏ ଦେଶରେ ରାଜତ୍ୱ ଆରମ୍ଭ କରିଥିଲେ । ସେମାନେ ମଧ୍ୟ ଦ୍ରାବିଡ଼ୀୟ ବୋଲି ପରିଚିତ । ସୁତରାଂ, ସେମାନଙ୍କ ରାଜତ୍ୱ କାଳରେ ଅନେକ ଦ୍ରାବିଡ଼ୀୟ ଶବ୍ଦ ଯେ ଆମ୍ଭମାନଙ୍କ ଭାଷାରେ ପଶିଥିବ, ଏପରି ଅନୁମାନ କରିବା ଅସଙ୍ଗତ ନୁହେଁ । ମାତ୍ର ଶବ୍ଦଗୁଡ଼ିଏ ଭିନ୍ନ ଭାଷାରୁ ଗ୍ରହଣ କରିବାଦ୍ୱାରା କୌଣସି ଜୀବନ୍ତ ଭାଷାର ପ୍ରକୃତି ପରିବର୍ତ୍ତିତ ହୁଏ ନାହିଁ, ବରଂ ସେହିସବୁ ଶବ୍ଦବିଭବରେ ଭାଷା ଅଧିକତର ସୌଷ୍ଠବାନ୍ୱିତ ଓ ଭାବପ୍ରକାଶର ଉପଯୋଗୀ ହୁଏ । ବର୍ତ୍ତମାନ ଯୁଗରେ ଇଂରାଜୀ ଭାଷା ଏହାର ନିଦର୍ଶନ । ଭାଷାର ଶ୍ରୀବୃଦ୍ଧି ସାଧନ ନିମିତ୍ତ ଇଂରେଜ ଜାତି କେତେ ଯେ ଶବ୍ଦ ଅନ୍ୟାନ୍ୟ ଭାଷାରୁ ଗ୍ରହଣ କରିଅଛି ଏହାର ଇୟତ୍ତା ନାହିଁ । ଏହିପରି କେତେକାଳ ଅତୀତ ହେଲା ପରେ ଯେତେବେଳେ ସେହି କଥିତ ଭାଷା ଲିଖିତ ଭାଷାରେ ପରିଣତ ହେଲା, ସେତେବେଳେ ଭାବପ୍ରକାଶର ସୁବିଧା ନିମିତ୍ତ ସଂସ୍କୃତରୁ ନାନାବିଧ ଶବ୍ଦ ଭାଷାରେ ପ୍ରବେଶ କଲା ।

ମୁଷଲମାନ ରାଜତ୍ୱରେ ଆରବୀ ପାରସୀ ଭାଷା ଏ ଦେଶରେ ରାଜଭାଷା ରୂପରେ ଚଳିଲା । ଆହୁରି ମଧ୍ୟ ମୁସଲମାନମାନେ ଏ ଦେଶରେ ଉପନିବେଶ ସ୍ଥାପନ କରି ରହିବାରୁ ଏ ଦେଶର ଭାଷାମାନଙ୍କରେ ଅନେକ ଯାବନିକ ଶବ୍ଦ ପ୍ରବେଶର ପଥ ପରିଷ୍କୃତ ହେଲା ।

'ବଜାର୍, ଦୋକାନ୍, ଆଇନ୍, ଅଦାଲତ୍, ଦୁଆତ୍, କଲମ୍, କାଗଜ୍' ପ୍ରଭୃତି ଶତ ଶତ ଯାବନିକ ଶବ୍ଦ ଓ ଜମିଦାରୀ ସିରସ୍ତା ଓ କଚେରିମାନଙ୍କରେ ବ୍ୟବହୃତ ଅଧିକାଂଶ ଶବ୍ଦ ମୁଷଲମାନ ଓ ମୋଗଲ ରାଜତ୍ୱବେଳେ ଆମ୍ଭମାନଙ୍କ ଭାଷାକୁ ଆସିଲା । ଏହି ଯାବନିକ ଶବ୍ଦାବଳି ଏ ଦେଶରେ ଏପର୍ଯ୍ୟନ୍ତ ଏତେ ଲୋକପ୍ରିୟ ହୋଇଅଛି ଯେ, ସାଧାରଣ ଲୋକେ ତଥା ଶିକ୍ଷିତ ଲୋକେ ମଧ୍ୟ ଏହି ଶବ୍ଦସମୂହକୁ ନିଜ ନିଜ ଲେଖାରେ ଏବଂ କଥାଭାଷାରେ ଆନନ୍ଦରେ ବ୍ୟବହାର କରୁଅଛନ୍ତି । ସେହି ଶବ୍ଦମାନଙ୍କର ଅନ୍ୟ ଉପଯୁକ୍ତ ପ୍ରତିଶବ୍ଦ ଏପର୍ଯ୍ୟନ୍ତ ଆମ୍ଭମାନଙ୍କ ଭାଷାରେ ପ୍ରାୟ ନାହିଁ - ଏପରିକି ସଂସ୍କୃତ ଭାଷାରେ ମଧ୍ୟ ଅନେକ ଶବ୍ଦର ଉପଯୁକ୍ତ ପ୍ରତିଶବ୍ଦ ଅଛି କି ନାହିଁ ସନ୍ଦେହ । ସେହି ଶବ୍ଦମାନଙ୍କ ମଧ୍ୟରୁ ଅଧିକାଂଶ ଉଚ୍ଚାରଣ ଦୋଷରୁ ବିକୃତ ହୋଇଗଲାଣି ଏବଂ କେତେକ ଅବିକୃତ ଭାବରେ ଏପର୍ଯ୍ୟନ୍ତ ଭାଷାରେ ଚଳୁଅଛି । ତେଣୁ ବୈଦେଶିକ ହେଲେହେଁ, ସେହିସବୁ ଯାବନିକ ଶବ୍ଦ ଆମ୍ଭମାନଙ୍କ ଭାଷାରେ ଦୃଢ଼ରୂପେ ପ୍ରତିଷ୍ଠିତ ହୋଇଗଲାଣି । ପରବର୍ତ୍ତୀ କାଳର ଅନେକ କବି ମଧ୍ୟ ଯାବନିକ ଶବ୍ଦମାନ ସ୍ୱ ସ୍ୱ ରଚନାରେ ଅଙ୍ଗୀଭୂତ କରି ଭାଷାରେ ସେଗୁଡ଼ିକର ବ୍ୟବହାରକୁ ସମର୍ଥନ କରିଯାଇଅଛନ୍ତି ।

ମୁଷଲମାନ ରାଜତ୍ୱ ପରେ ଭାରତ ଇଉରୋପୀୟ ଜାତିମାନଙ୍କ ସଂସ୍ରବରେ ଆସିଲା । ପର୍ତ୍ତୁଗୀଜ୍, ଓଲନ୍ଦାଜ୍, ଦିନାମାର୍ ଓ ଫରାସୀ ଜାତି ପଞ୍ଚଦଶ ଶତାବ୍ଦୀରୁ ସପ୍ତଦଶ ଶତାବ୍ଦୀ ମଧ୍ୟରେ ଏ ଦେଶକୁ ସେମାନଙ୍କ ବାଣିଜ୍ୟର ଲୀଳାକ୍ଷେତ୍ର କରିଥିଲେ । ସୁତରାଂ ସେମାନଙ୍କ ଭାଷାରେ ଅନେକ ଶବ୍ଦ ଏହି ସମୟରେ ଆମ୍ଭମାନଙ୍କ ଭାଷାରେ ପ୍ରବେଶ କଲା । ବର୍ତ୍ତମାନ ଇଂରେଜ ଜାତି ଏ ଦେଶର ରାଜା, ସେମାନେ ମଧ୍ୟ ବାଣିଜ୍ୟ ଲକ୍ଷ୍ୟରେ ପ୍ରଥମେ ଏ ଦେଶକୁ ଆସିଥିଲେ । ଗତ ଦେଢ଼ଶହ ବର୍ଷକାଳ ଇଂରେଜମାନଙ୍କ ସମ୍ପର୍କରେ ରହି ଆମ୍ଭେମାନେ ଅନେକ ଇଂରେଜୀ ଶବ୍ଦ ମଧ୍ୟ ଭାଷାରେ ଗ୍ରହଣ କରିଅଛୁଁ ।

ଏହିପରି ଭାବରେ ବିଚାର କରି ଦେଖିଲେ ଜଣାଯାଏ ଯେ, ମାଗଧୀ-ପ୍ରାକୃତ ବା ପାଲୀ ଓଡ଼ିଆ ଭାଷାର ମୂଳ ହେଲେହେଁ, ତହିଁରେ ପରବର୍ତ୍ତୀ କାଳରେ ବହୁତ ସଂସ୍କୃତ ଶବ୍ଦ, ଦ୍ରାବିଡ଼ୀୟ ଶବ୍ଦ, ଆରବୀ, ପାର୍ସୀ ଓ ଉର୍ଦ୍ଦୁ ଶବ୍ଦ ଏବଂ ପର୍ତ୍ତୁଗୀଜ୍, ଓଲନ୍ଦାଜ, ଦିନାମାର, ଫରାସୀ ଓ ଇଂରେଜୀ ଶବ୍ଦ ପ୍ରବେଶ କରିଅଛି ଏବଂ ଏହି ଭାବରେ ବର୍ତ୍ତମାନ ପ୍ରଚଳିତ ଓଡ଼ିଆ ଭାଷାର ଉତ୍ପତ୍ତି ହୋଇଅଛି । ଉନବିଂଶ ଓ ବିଂଶ ଶତାବ୍ଦୀରେ ଓଡ଼ିଆମାନେ ବଙ୍ଗୀୟ, ତେଲୁଗୁ, ମରହଟ୍ଟା ଓ ହିନ୍ଦୁସ୍ଥାନୀ ଭାଷା ସଂସ୍ରବରେ ଆସି ତତ୍ତଦ୍ ଭାଷାମାନଙ୍କରୁ ଗୁଡ଼ିଏ ଲେଖାଏଁ ଶବ୍ଦ ଗ୍ରହଣ କରିଅଛନ୍ତି । ଏବେ ମଧ୍ୟ ଏ ପଦ୍ଧତି ଚାଲିଅଛି ।

ଭାରତବର୍ଷରେ ବର୍ତ୍ତମାନ ୧୭୯ ପ୍ରକାର ଭାଷା ଓ ୫୪୪ ଉପଭାଷା ପ୍ରଚଳିତ ଅଛି । ପ୍ରସିଦ୍ଧ ପ୍ରାଚ୍ୟ-ଭାଷାତତ୍ତ୍ୱବିଦ୍ ପାଶ୍ଚାତ୍ୟ ପଣ୍ଡିତ ଗ୍ରିଅରସନ୍ ଏହି ଭାଷାମାନଙ୍କୁ ସାତ ପ୍ରଧାନ ଭାଗରେ ବିଭକ୍ତ କରିଅଛନ୍ତି ।

୧. ଅଷ୍ଟ୍ରିକ ଶାଖାର ଭାଷା - ପ୍ରାୟ ୪୫ ଲକ୍ଷ ଲୋକ ଏହି ଭାଷାରେ କଥା କହନ୍ତି । ମାଳୟ ଉପଦ୍ୱୀପ, ନିକୋବର ଦ୍ୱୀପପୁଞ୍ଜରେ ଏହି ଭାଷା ଚଳେ । ଆମ ଦେଶରେ ମୁଣ୍ଡା, କୋହ୍ଲ, ଜୁଆଙ୍ଗ ପ୍ରଭୃତି ଏହି ଭାଷାରେ କଥା କହନ୍ତି ।

୨. କାରେନ ପରିବାରର ଭାଷା - ପ୍ରାୟ ୧୦ ଲକ୍ଷ ଲୋକ ଏ ଭାଷାରେ କଥା କହନ୍ତି ।

୩. ମାନ୍ ପରିବାରର ଭାଷା - ପ୍ରାୟ ୧ ହଜାର ମାତ୍ର ଲୋକ ଏ ଭାଷା ବ୍ୟବହାର କରନ୍ତି ।

୪. ତିବ୍ବତୀୟ - ଚୀନକ ପରିବାରର ଭାଷା - ଏକ କୋଟି ତିରିଶ ଲକ୍ଷ ଲୋକ ଏ ଭାଷାରେ କଥା କହନ୍ତି ।

୫. ଦ୍ରାବିଡ଼ୀୟ ପରିବାରର ଭାଷା - ଛଅ କୋଟି ପଚାଶ ଲକ୍ଷ ଲୋକ ଏ ଭାଷାରେ କଥା କହନ୍ତି । ତାମିଲ, ତେଲୁଗୁ, ମାଲାୟାଲାମ୍, କାନାରି, ଓରାଁ, କୁଇ, କନ୍ଧୀ, ଗଣ୍ଡୀ ପ୍ରଭୃତି ଭାଷା ଏହାର ଅନ୍ତର୍ଗତ ।

୬. ଇଣ୍ଡୋ-ଇଉରୋପୀୟ ପରିବାରର ଭାଷା - ପ୍ରାୟ ୨୩ କୋଟି ଲୋକ ଏହି ପରିବାରର ଅନ୍ତର୍ଗତ । ସଂସ୍କୃତ, ହିନ୍ଦୀ, ବଙ୍ଗଳା, ଓଡ଼ିଆ, ମହାରାଷ୍ଟ୍ରୀ, ସିନ୍ଧୀ, ଗୁଜରାଟୀ, ପଞ୍ଜାବୀ, ସିଂହଳୀ, ଆସାମୀ ଭାଷାରେ ଏମାନେ କଥାଭାଷା କରନ୍ତି ।

୭. ଆଣ୍ଡାମାନୀୟ ପରିବାରର ଭାଷା - ଏମାନେ ସ୍ୱତନ୍ତ୍ର, ପ୍ରାୟ ଏକ ଲକ୍ଷ ଲୋକ ଏ ଭାଷାରେ କଥା କହନ୍ତି ।

ପୂର୍ବୋକ୍ତ ହିସାବରୁ ଦେଖାଯାଉଅଛି ଯେ, ଆମ୍ଭମାନଙ୍କ ଓଡ଼ିଆ ଭାଷା ଭାରତର ସର୍ବଶ୍ରେଷ୍ଠ ଇଣ୍ଡୋ-ଇଉରୋପୀୟ ପରିବାରର ଅନ୍ତର୍ଭୁକ୍ତ ଆର୍ଯ୍ୟଭାଷା ମଧ୍ୟରୁ ଏକତମ । ହିନ୍ଦୀ, ବଙ୍ଗଳା ପ୍ରଭୃତି ଭାଷା ଯେଉଁ ଶ୍ରେଣୀୟ, ଆମ୍ଭମାନଙ୍କ ଭାଷା ସେହି ଶ୍ରେଣୀୟ । ଏହି ସବୁ ସମଶ୍ରେଣୀୟ ଭାଷାମାନଙ୍କଠାରୁ ଓଡ଼ିଆ ଭାଷାର ବିଶେଷତ୍ୱ ପରେ କ୍ରମଶଃ ଆଲୋଚିତ ହେବ ।

ଏହି ଆର୍ଯ୍ୟଭାଷାର ପ୍ରଚଳିତ ଶବ୍ଦମାନଙ୍କୁ ପଣ୍ଡିତ ଗ୍ରିଅର୍‌ସନ ଏହି କେତେଗୋଟି ବିଭାଗରେ ବିଭକ୍ତ କରିଅଛନ୍ତି -

୧. ସଂସ୍କୃତ - ଆଜ୍ଞା, ଲତା, ବୃଥା, ଶନୈଃ ପ୍ରଭୃତି ଯେଉଁସବୁ ଶବ୍ଦ ଅବିକୃତ ଭାବରେ ସଂସ୍କୃତରୁ ଗୃହୀତ ହୋଇଅଛି ।

୨. ତତ୍ସମ - ରାଜା, ନର, ପର୍ବତ, ଗୃହ, ବଂଶ ପ୍ରଭୃତି ଯେଉଁସବୁ ଶବ୍ଦ ସଂସ୍କୃତ ବିଭକ୍ତି ପରିବର୍ତ୍ତରେ ଭାଷାରେ ବିଭିନ୍ନ ବିଭକ୍ତିଯୁକ୍ତ ହୋଇ ବ୍ୟବହୃତ ହୁଏ ।

୩. ତଦ୍ଭବ - ମଣିଷ, ଘୋଡ଼ା, ଲୁଣ, ଛତା, ଢହ୍ଲ ପ୍ରଭୃତି ଯେଉଁ ଶବ୍ଦଗୁଡ଼ିକ ସଂସ୍କୃତ ଶବ୍ଦରୁ ବିକୃତ ବା ଅପଭ୍ରଷ୍ଟ ହୋଇ ଭାଷାରେ ଚଳେ ବା ଯେଉଁସବୁ ପ୍ରାକୃତ ଶବ୍ଦ ସଂସ୍କାର ପ୍ରାପ୍ତ ହୋଇ ସଂସ୍କୃତ ଭାଷାରେ ଗୃହୀତ ହୋଇଥିଲା ।

୪. ଦେଶ୍ୟ ବା ଦେଶଜ - ଗିନା, କଟରା, କୁଲା, ଢିଙ୍କି, ଛାଞ୍ଚୁଣୀ ପ୍ରଭୃତି ଯେଉଁସବୁ ଶବ୍ଦର ତଦର୍ଥବୋଧକ ସଂସ୍କୃତ ଶବ୍ଦ ସଙ୍ଗେ ସାଦୃଶ୍ୟ ନାହିଁ ବା ଯେଉଁସବୁ ଶବ୍ଦ ମୂଳ ପ୍ରାକୃତର ଅନୁରୂପ ବା ଯହିଁର ମୂଳ ସଂସ୍କୃତ ଶବ୍ଦ ଅନିର୍ଦ୍ଦେଶ୍ୟ କିମ୍ବା ଯେଉଁମାନ ଦ୍ରାବିଡ଼ ଭାଷାରୁ ଗୃହୀତ ।

୫. ବୈଦେଶିକ ଶବ୍ଦ - ବଜାର୍, ଦୋକାନ୍, ମେଜ୍, ମେହନତ୍, ରାସ୍ତା, ଅଫିସ୍, ସ୍କୁଲ ପ୍ରଭୃତି ଯେଉଁସବୁ ଶବ୍ଦ ପରବର୍ତ୍ତୀ କାଳରେ ଆରବୀ, ପାରସୀ, ଇଂରେଜୀ ଆଦି ଭାଷାରୁ ଗୃହୀତ ହୋଇଅଛି ।

ପୂର୍ବୋକ୍ତ ଶ୍ରେଣୀବିଭାଗର ଅନୁବର୍ତ୍ତନରେ ଆଲୋଚନାର ସୁବିଧାପାଇଁ ଏହି ଅଭିଧାନରେ ଶବ୍ଦମାନଙ୍କୁ ନିମ୍ନୋକ୍ତ ବିଭାଗରେ ବିଭକ୍ତ କରାଯାଇଅଛି ।

୧. ସଂସ୍କୃତ - ସଂସ୍କୃତ ଭାଷାରୁ ଯେଉଁସବୁ ଶବ୍ଦ ସଂସ୍କୃତ ବିଭକ୍ତିଯୁକ୍ତ ହୋଇ ବା ଅବିକୃତ ଭାବରେ ଗୃହୀତ ହୋଇଅଛି, ଯଥା - ରାଜା, ଲତା, ଗୁଣୀ, ନଦୀ, କୃଷ୍ଣ, ପରନ୍ତୁ, କିନ୍ତୁ ଇତ୍ୟାଦି ଶବ୍ଦ ଏହି ଶ୍ରେଣୀର ଅନ୍ତର୍ଗତ । ଗ୍ରିଅର୍‌ସନ୍‌ଙ୍କ ସଂସ୍କୃତ ଓ ତତ୍ସମ ଶବ୍ଦାବଳୀ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ।

୨. ଦେଶଜ - ମଣିଷ, ଘୋଡ଼ା, ବଳଦ, ଗିନା, କଟରା ପ୍ରଭୃତି ଯେଉଁ ସକଳ ଶବ୍ଦ ବହୁକାଳରୁ ଭାଷାରେ ଏକଭାବରେ ବ୍ୟବହୃତ ହେଉଅଛି ଏବଂ ଯେଉଁସବୁ ଶବ୍ଦ ମଧ କେତେକ ସଂସ୍କାରଯୁକ୍ତ ହୋଇ ସଂସ୍କୃତ ଶବ୍ଦରୂପରେ ଗୃହୀତ ବା ସଂସ୍କୃତରୁ ଅପଭ୍ରଷ୍ଟ ହୋଇଅଛି । ଗ୍ରିଅର୍‌ସନ୍‌ଙ୍କ ତଦ୍ଭବ ଓ ଦେଶ୍ୟ ଶବ୍ଦମାନ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ।

୩. ପ୍ରାଦେଶିକ - ଢୁଙ୍ଗୀ, ନାଆଁତରା, ଜୁଇ, ଟିକରା, ପାଏନ୍ ପ୍ରଭୃତି ଯେଉଁସବୁ ଶବ୍ଦ କେବଳ ଉତ୍କଳର ବିଭିନ୍ନ ଅଞ୍ଚଳରେ ବ୍ୟବହୃତ ବା ବିଶିଷ୍ଟ ଶ୍ରେଣୀର ଲୋକଙ୍କଦ୍ୱାରା ବ୍ୟବହୃତ ହୁଏ ଏବଂ ଯେଉଁସବୁ ଶବ୍ଦ ଓଡ଼ିଆ ( Standard language) ବା ସର୍ବତ୍ର ପ୍ରଚଳିତ ଓଡ଼ିଆ ଭାଷାର ଅନ୍ତର୍ଗତ ନୁହେଁ, ସେଗୁଡ଼ିକ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ।

୪. ଗ୍ରାମ୍ୟ - ନେଉର, ଚାଉର, ଶବଦ, କନିଆଁ, ବ୍ରତମାନ, ଅନ୍ଧକାର ପ୍ରଭୃତି ଯେଉଁ ସବୁ ଶବ୍ଦ କେବଳ ଅଶିକ୍ଷିତ ଓ ଗ୍ରାମ୍ୟ ଲୋକଙ୍କ ଉଚ୍ଚାରଣ ଦୋଷରୁ ବିକୃତ ହୋଇଅଛି, ସେଗୁଡ଼ିକ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ।

୫. ବୈଦେଶିକ - ଫାରସୀ, ଆରବୀ, ଇଂରେଜୀ ପ୍ରଭୃତି ଭାଷାରୁ ଯେଉଁ ଶବ୍ଦମାନ ଆମ୍ଭମାନଙ୍କ ଭାଷାରେ ବିକୃତ ବା ଅବିକୃତଭାବରେ ପଶିଅଛି, ସେଗୁଡ଼ିକ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ।

ଏହି ଶ୍ରେଣୀ ବିଭାଗରୁ ବୁଝିବାକୁ ହେବ ଯେ, ସଂସ୍କୃତ ଓ ଦେଶଜ ଶବ୍ଦମାନ ଆଦର୍ଶ ଓଡ଼ିଆ ସାହିତ୍ୟର ଉପଯୋଗୀ; ଅବଶ୍ୟ ଅପ୍ରଚଳିତ ସଂସ୍କୃତ ଶବ୍ଦାବଳୀ ଆଦର୍ଶ ଓଡ଼ିଆ ସାହିତ୍ୟର ଉପଯୋଗୀ ନୁହେଁ । ଦୋକାନ, ବଜାର, ସ୍କୁଲ, କଚେରି, ଅଫିସ୍ ପ୍ରଭୃତି ଯେଉଁସବୁ ଶବ୍ଦର ଉପଯୁକ୍ତ ପ୍ରତିଶବ୍ଦ ଭାଷାରେ ନାହିଁ, ସେଗୁଡ଼ିକ ଯେ ଆଦର୍ଶ ସାହିତ୍ୟର ଉପଯୋଗୀ,

ଏହା ସ୍ୱୀକାର କରିବାକୁ ହେବ । କିନ୍ତୁ ଗ୍ରାମ୍ୟ ଓ ପ୍ରାଦେଶିକ ଶବ୍ଦମାନଙ୍କର ସାଧାରଣ ବା ଆଦର୍ଶ ସାହିତ୍ୟରେ ସ୍ଥାନ ରହିବା ଉଚିତ ନୁହେଁ । ପ୍ରାଚୀନ ଗ୍ରନ୍ଥମାନଙ୍କରେ ଓ ପଦ୍ୟର ଅନୁରୋଧରେ ଯେଉଁ ଶବ୍ଦମାନ ବିକୃତ ଓ ଖଣ୍ଡିତ ହୋଇ ବ୍ୟବହୃତ ହେବାର ଦେଖାଯାଏ, ଆଦର୍ଶ ଗଦ୍ୟସାହିତ୍ୟରେ ସେ ଶବ୍ଦଗୁଡ଼ିକ ମଧ୍ୟ ପରିହାର୍ଯ୍ୟ ।

## ୨. ଓଡ଼ିଆ ଲିପି

ବୈଦିକ ଯୁଗରେ ପ୍ରଥମେ ଯେଉଁ ଅକ୍ଷରରେ ବେଦାଦି ଲିଖିତ ହୋଇଥିଲା, ତାହା 'ବ୍ରାହ୍ମୀ' ନାମରେ କଥିତ । ଏହି ବ୍ରାହ୍ମୀଲିପି କୁଟିଳ ଓ ଦେବନାଗରୀ ଅକ୍ଷରର ଜନନୀ । ହିନ୍ଦୀ ଓ ମହାରାଷ୍ଟ୍ରୀ ପ୍ରଭୃତି ଭାଷା ଏହି ଦେବନାଗରାକ୍ଷରରେ ଲେଖାଯାଏ । ବର୍ତ୍ତମାନ ଓଡ଼ିଆ ଭାଷାରେ ଯେଉଁ ଲିପିର ପ୍ରଚଳନ ଅଛି, ଦେବନାଗରୀ ଅକ୍ଷର ସଙ୍ଗେ ତୁଳନା କଲେ ଜଣାଯିବ ଯେ, ଓଡ଼ିଆର ଅଧିକାଂଶ ଅକ୍ଷର ଦେବନାଗରୀ ଅକ୍ଷରର ମୂଳଦୁଆ ଉପରେ ଢଳା । ଓଡ଼ିଶାର ତାମ୍ରଫଳକମାନଙ୍କରେ ଯେଉଁ ଲିପି ବ୍ୟବହୃତ ହୋଇଅଛି, ତାହା କୁଟିଳ ଲିପି । ଏହି କୁଟିଳ ଲିପିରୁ ଯେପରି ଦେବନାଗର ଅକ୍ଷରର ଉତ୍ପତ୍ତି ହୋଇଅଛି, ସେହିପରି ଓଡ଼ିଆ ଓ ବଙ୍ଗଳା ଅକ୍ଷରର ମଧ୍ୟ ଉତ୍ପତ୍ତି ହୋଇଅଛି । ବଙ୍ଗଳା ଓ ଓଡ଼ିଆ ଅକ୍ଷର ମଧ୍ୟରେ ପରସ୍ପର ସାଦୃଶ୍ୟ ଏତେ ଘନିଷ୍ଠ ଯେ, ଏହି ଦୁଇ ପ୍ରକାର ଅକ୍ଷର ଯେ ପ୍ରାଚୀନ କୁଟିଳ ଲିପିରୁ ଉଦ୍ଭୂତ - ଏଥିରେ ସନ୍ଦେହ ନାହିଁ । ଓଡ଼ିଆ ଲିପି ଲୁହାଲେଖନ ସାହାଯ୍ୟରେ ତାଳପତ୍ର ଉପରେ ଲେଖାଯାଉଥିଲା । ତାଳପତ୍ରର ଶିରାରେ ସମାନ୍ତର - ଲମ୍ବ ରେଖାମାନ ପକାଇଲେ ତାଳପତ୍ର ଚିରିଯିବ, ତେଣୁ ଅକ୍ଷରମାନଙ୍କର ମସ୍ତକ ରେଖାକାର ନ ହୋଇ ଗୋଲାକାର ହୋଇଯାଇଅଛି । ତାମିଲ ଓ ତୈଲଙ୍ଗୀୟ ଲିପିଗୁଡ଼ିକର କେତେକ ଅଂଶ ମଧ୍ୟ ଏହିପରି ଗୋଲାକୃତି । ଏଥିରୁ ଜଣାଯାଉଅଛି ଯେ, ବର୍ତ୍ତମାନ କାଳର ଓଡ଼ିଆ ଅକ୍ଷର କୁଟିଳ ଲିପିରୁ ଉତ୍ପତ୍ତି ଲାଭ କରି ଲେଖନ ତାଳପତ୍ରର ବ୍ୟବହାର ଯୋଗୁଁ ଓ ଦ୍ରାବିଡ଼ୀୟ ଲିପିମାନଙ୍କ ଅନୁକରଣରେ ଗୋଲାକୃତି ଧାରଣ କରିଅଛି ।

## ୩. ଓଡ଼ିଆ ଭାଷାର ପ୍ରାଚୀନତା

କଟକ ଜିଲ୍ଲାର ପଟିଆ ଗ୍ରାମରୁ ଓ ପୁରୀ ଜିଲ୍ଲାର ଭୁବନେଶ୍ୱରରୁ କେତେ ଖଣ୍ଡ ତାମ୍ରଫଳକ ଆବିଷ୍କୃତ ହୋଇଅଛି । ସେ ସବୁ କେଶରୀବଂଶୀୟ ଜନୈକ ରାଜା ଶୁଭଙ୍କର କେଶରୀଙ୍କ ରାଜତ୍ୱ କାଳରେ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଲିଖିତ ହୋଇଥିଲା । ଏହି ତାମ୍ରଫଳକମାନଙ୍କର ଭାଷା ଓଡ଼ିଆ, ମାତ୍ର କୁଟିଳ ଅକ୍ଷରରେ ସେସବୁ ଲିପିବଦ୍ଧ । ଏଥିପୂର୍ବେ ଯେଉଁ ଓଡ଼ିଆ ଭାଷା ଚଳୁଥିଲା, ତାହାର ପ୍ରମାଣ ଆଜିଯାଏ ମିଳି ନାହିଁ । ସୁତରାଂ ସପ୍ତମ ଶତାବ୍ଦୀ ବେଳକୁ ଓଡ଼ିଆ ଯେ ଲିଖିତ ଭାଷାରେ ପରିଣତ ହୋଇଥିଲା, ଏଥିରେ ସନ୍ଦେହ ନାହିଁ ।

ମହାମହୋପାଧ୍ୟାୟ ପଣ୍ଡିତ ଶ୍ରୀ ହରପ୍ରସାଦ ଶାସ୍ତ୍ରୀ M.A., C.I.E. ଅଳ୍ପଦିନ ପୂର୍ବେ 'ବୌଦ୍ଧଗାନ ଓ ଦୋହା' ନାମରେ ନେପାଳ ରାଜ୍ୟରୁ ମିଳିଥିବା ଖଣ୍ଡିଏ ପୁରୁଣା ଗ୍ରନ୍ଥ ବଙ୍ଗାକ୍ଷରରେ ମୁଦ୍ରିତ କରି ପ୍ରକାଶ କରିଅଛନ୍ତି । ସେହି ପୁସ୍ତକର ଭାଷାରୁ ଶାସ୍ତ୍ରୀ ମହୋଦୟ

ପ୍ରମାଣ କରିବାକୁ ଯାଇଅଛନ୍ତି ଯେ, ତାହା ବଙ୍ଗ ଭାଷାର ମୂଳ । ନାନା ଆଲୋଚନାଦ୍ୱାରା ସେ ସ୍ଥିର କରିଅଛନ୍ତି ଯେ, ଶଂସିତ ପୁସ୍ତକଖଣ୍ଡି ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀରେ ରଚିତ ହୋଇଥିଲା । ଆମ୍ଭେମାନେ ସେହି ପୁସ୍ତକର କେତେକ ଅଂଶ ଆଲୋଚନା କରି ଦେଖିଅଛୁଁ । ତହିଁରୁ ଆମ୍ଭମାନଙ୍କର ଧାରଣା ହୋଇଅଛି ଯେ, 'ବୌଦ୍ଧଗାନ ଓ ଦୋହା' ପ୍ରକୃତରେ ବଙ୍ଗଳା ଭାଷାର ମୂଳ ନୁହେଁ । ପ୍ରାଚୀନ ଓ ଆଧୁନିକ ଓଡ଼ିଆ ଭାଷା ସଙ୍ଗେ ଏହାର ସାଦୃଶ୍ୟ ଯେତେ ସୁସ୍ପଷ୍ଟ, ବଙ୍ଗଳା ଭାଷା ସଙ୍ଗେ ସେତେ ସୁସ୍ପଷ୍ଟ ନୁହେଁ । ଉଦାହରଣସ୍ୱରୂପ ଆମ୍ଭେମାନେ ଏଠାରେ 'ବୌଦ୍ଧଗାନ ଓ ଦୋହା'ରୁ କେତେକ ପଙ୍‌କ୍ତି ଉଦ୍ଧାର କରୁଅଛୁଁ ।

**ବୌଦ୍ଧ ଓ ଦୋହା**

''ଏକ ସେ ଶୁଣ୍ଡିନିଣୀ ଦୁଇ ଘରେ ସାନ୍ଧଅ,
ଚୀଅଣ ବା କଳଅ ବାରୁଣୀ ବାନ୍ଧଅ ।
ସହଜେ ଥିରକରୀ ବାରୁଣୀ ସାନ୍ଧେ
ଜେଁ ଅଜରାମର ହୋଇ ଦିଟ କାନ୍ଧେ ।
ଦଶମି ଦୁଆରତ ଚିହ୍ନ ଦେଖଇଆ,
ଆଇଲ ଗରାହକ ଅପଣେ ବହିଆ ।
ଚଉଷଠୀ ଘଡ଼ିଏ ଦେଟ ପସାରା,
ପଇଠେଲ ଗରାହକ ନାହିଁ ନିସାରା ।
ଏକସ ଡୁଲୀ ସଇରୁ ନାଲ,
ଭଣନ୍ତି ବିରୁଆ ଥିରକରି ଚାଲ

(୭)

''ଅଲିଏଁ କାଲିଏଁ ବାଟ ରୁନ୍ଧେଲା,
ତା ଦେଖି କାହ୍ନୁ ବିମନ ଭଇଲା ।
କାହ୍ନୁ କାହିଁ ଥଇ କରିବ ନିବାସ,
ଯୋ ମନ ଗୋଅର ସେ ଉଆସ ।
ତେ ତିନି ତେ ତିନି ତିନି ହୋ ଭିନ୍ନା,
ଭଣଇ କାହ୍ନୁ, ଭବପରିଚ୍ଛନ୍ନା ।
ଜେ ଜେ ଅଇଲା ତେ ତେ ଗଲା,
ଅବଣା ଗବଣେ କାହ୍ନୁ ବିମନ ଭଇରିଲା ।
ହେରି ସେ କାହ୍ନୁ ଣିଅଡି ଜିନହର ବଟ୍ଟଇ,
ଭଣଇ କାହ୍ନୁ ମୋହି ଅହି ନ ପଇସଇ ।''

ଏହି ଗ୍ରନ୍ଥରେ ବ୍ୟବହୃତ ଅଛଇ, ଅଧରାତି, ଅନ୍ଧାରି, ଅଇଲା, ଆଖି, ଆଗେ, ଆଜି, ଆଲୋ, ଆହ୍ମେ, ଉପାଡ଼ି, ଉଠି, ଘରଣୀ, ଦିଶଇ, ପୋଥି, କୁରାଢ଼ି, ବଳଦ, ବିଆଏଲ, ଛୁଞ୍ଚଅ, ମୋହର, ଉଆସ, କାହ୍ନୁ, ଶାସୁ, ନଣନ୍ଦ, ବାପୁଡ଼ା, କୁଡ଼ିଆ, ଖଣ୍ଡଣ, ଗରାହକ, କେଡୁଆଳ, ବିଆଣ, ଗୁଞ୍ଜରୀମାଳୀ, ଦାରୀ, ଲୋଡ଼ିବା, ବଖାଣି ପ୍ରଭୃତି ଶବ୍ଦଗୁଡ଼ିକ ଏ ପର୍ଯ୍ୟନ୍ତ ଓଡ଼ିଆ ଭାଷାରେ ଚଳୁଅଛି । କେବଳ ଏତିକି ନୁହେଁ, ‘ଦୋହା’ ବା ‘ଧୂଆ’ ନାମରେ ଏକ ପ୍ରକାର ପଦ୍ୟ ଓଡ଼ିଶାରେ ଗ୍ରାମେ ଗ୍ରାମେ ପରିଚିତ । ‘ଯୋଗୀନ୍ଦ୍ର ଦାଣ୍ଡଧୂଆ’, ‘ଶରୀରଭେଦ ଭଜନ’ (ଏକଜାତୀୟ ଦୁହା) ଭାଷା ତଥା ଭାବରେ ‘ବୌଦ୍ଧଗାନ ଓ ଦୋହା’ର ସମ୍ପୂର୍ଣ୍ଣ ଅନୁରୂପ । ପୁରୀ ଜଗନ୍ନାଥ ମନ୍ଦିରରେ ରଖାଯାଇଥିବା ‘ମାଦଳାପାଞ୍ଜି’ ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀରେ ଚୋରଗଙ୍ଗ ଦେବଙ୍କ ରାଜତ୍ୱକାଳରୁ ଗଦ୍ୟରେ ଲେଖାହୋଇ ଆସୁଅଛି । ପରବର୍ତ୍ତୀ କାଳରେ ତାହାର ଭାଷା ଓ ବିଷୟରେ କିଞ୍ଚିତ୍ ପରିବର୍ତ୍ତନ ବିହିତ ହୋଇଥିଲେ ହେଁ, ତହିଁର-ଗଣ୍ଠି (Structure) ଯେ ଏକାଦଶ ଶତାବ୍ଦୀର ଓଡ଼ିଆ ଗଦ୍ୟ ଭାଷା, ଏଥିରେ ସନ୍ଦେହ ନାହିଁ । ସେ ଭାଷା କ୍ରମେ ପରିବର୍ତ୍ତିତ ହୋଇ ଆଧୁନିକ ଓଡ଼ିଆ ଭାଷାରେ ପରିଣତ ହୋଇଅଛି । ଏଥିରୁ ଜଣାଯାଉଅଛି ଯେ, ଏକାଦଶ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷା ନିର୍ଦ୍ଦିଷ୍ଟ ଆକୃତିପ୍ରାପ୍ତ ହୋଇଥିଲା ଓ ପରବର୍ତ୍ତୀ କାଳରେ ନାନା ଅବସ୍ଥା ମଧ୍ୟରେ ଭିନ୍ନ ଆକାର ଧାରଣ କରିଅଛି ।

ମାର୍କଣ୍ଡ ଦାସଙ୍କ ପ୍ରଣୀତ ‘କେଶବ କୋଇଲି’ ବର୍ତ୍ତମାନ ମିଳୁଥିବା ଓଡ଼ିଆ ପୁସ୍ତକମାନଙ୍କ ମଧ୍ୟରେ ପ୍ରାଚୀନତମ ଜଣାଯାଇଅଛି । ମାର୍କଣ୍ଡ ଦାସ ସମ୍ଭବତଃ ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀରେ ଜନ୍ମଗ୍ରହଣ କରିଥିଲେ । ଏହା ଏକପ୍ରକାର ଚଉତିଶା । ପରବର୍ତ୍ତୀ କାଳରେ ଅନେକ କବି ଏହାକୁ ଅନୁକରଣ କରି ନାନାପ୍ରକାର ଚଉତିଶା ବା ଚଉତିରିଶ ବ୍ୟଞ୍ଜନ ବର୍ଣ୍ଣ କ୍ରମରେ ପ୍ରତ୍ୟେକ ଧାଡ଼ିର ଆଦ୍ୟ ଅକ୍ଷର ରଖି ପଦ୍ୟ ଲେଖିଅଛନ୍ତି । ‘କେଶବ କୋଇଲି’ର ଭାଷା ଦେଖିଲେ ଜଣାଯାଏ ଯେ, ତାହା ଭାଷାର ପ୍ରାଥମିକ ଅବସ୍ଥାର ଆକାର ନୁହେଁ । ଲେଖାର ରୀତି ବା ପ୍ରଣାଳୀ ଆଧୁନିକ ଓଡ଼ିଆପରି ମାର୍ଜିତ ଓ ଉନ୍ନତ ନ ଥିଲେ ହେଁ ତାହା ଯେ ସେ ଅବସ୍ଥାକୁ ଆସିବା ପୂର୍ବେ ଅନ୍ୟ ଅନେକ ପ୍ରାଥମିକ ଅବସ୍ଥା ଅତିକ୍ରମ କରିଥିଲା, ଏଥିରେ ଅଣୁମାତ୍ର ସନ୍ଦେହ ହୋଇ ନ ପାରେ । ତତ୍‌ପୂର୍ବର କୌଣସି ଗ୍ରନ୍ଥ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନାହିଁ ସତ୍ୟ, ମାତ୍ର ତତ୍‌ପୂର୍ବେ ସେହିପରି ଯେ ଅନେକ ଗ୍ରନ୍ଥ ରଚିତ ହୋଇଥିବ, ଏଥିରେ ସନ୍ଦେହ ହୋଇ ନ ପାରେ । ମହାମହୋପାଧ୍ୟାୟ ପଣ୍ଡିତ ହରପ୍ରସାଦ ଶାସ୍ତ୍ରୀଙ୍କ ଆବିଷ୍କୃତ ‘ବୌଦ୍ଧଗାନ ଓ ଦୋହା’ରେ ଯେଉଁ ଓଡ଼ିଆ ଶବ୍ଦ ଓ ବାକ୍ୟମାନ ଦେଖାଯାଏ, ସେସବୁ ‘କେଶବ କୋଇଲି’ର ତିନିଶତାବ୍ଦୀ ପୂର୍ବର ଓଡ଼ିଆ ଭାଷା ବୋଲି ଅନୁମାନ କରିବାର ସୁସଂଗତ କାରଣ ଅଛି । ତହିଁର ରଚନା ପୂର୍ବରୁ ମଧ୍ୟ ଓଡ଼ିଆ ଭାଷା ଗୁଡ଼ିଏ ପ୍ରାଥମିକ ଅବସ୍ଥା ଅତିକ୍ରମ କରିଥିବ, ଏହା ବିଚିତ୍ର ନୁହେଁ । କାଳଗତିରେ ଅନେକ ପ୍ରାଥମିକ ଓଡ଼ିଆ ଭାଷାର ରଚନା ନଷ୍ଟ ହୋଇଅଛି ବା ଏ ପର୍ଯ୍ୟନ୍ତ ପ୍ରକାଶିତ ନ ହୋଇ ସ୍ଥାନେ ସ୍ଥାନେ ଭାଗବତଗାଦିର ଅନ୍ତର୍ଭୁକ୍ତ ହୋଇ ପୂଜା ପାଉଅଛି ।

ତାହା ପରେ ଓଡ଼ିଆ ଭାଷାରେ ପୁରାଣ ଅନୁବାଦର ଯୁଗ । ତ୍ରୟୋଦଶ ଶତାବ୍ଦୀରେ ସାରଳା ଦାସ ଯେତେବେଳେ ମହାଭାରତ ରଚନା କରିଥିଲେ, ସେତେବେଳକୁ ଓଡ଼ିଆ ଭାଷା ପୂର୍ଣ୍ଣତା ଆଡ଼କୁ ଅଗ୍ରସର ହୋଇଥିଲା । ତପୂରେ ନୃସିଂହପୁରାଣ, ଶିବପୁରାଣ, ବିଷ୍ଣୁପୁରାଣ ପ୍ରଭୃତି ଅନେକ ପୁରାଣ ଭାଷାରେ ଅନୁବାଦିତ ଓ ରଚିତ ହୋଇଥିଲା । ଚତୁର୍ଦ୍ଦଶ ଶତାବ୍ଦୀରେ ଜଗନ୍ନାଥ ଦାସ ଭାଗବତ ଓ ବଳରାମ ଦାସ ରାମାୟଣ ରଚନା କରିଥିଲେ, ସେତେବେଳକୁ ଓଡ଼ିଆ ଭାଷା ପୂର୍ଣ୍ଣତା ଧାରଣ କଲାଣି ।

ଏହି ପୌରାଣିକ ଯୁଗ ପରେ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ଓଡ଼ିଆ କାବ୍ୟଯୁଗର ଆରମ୍ଭ । ଏକାଦଶ ଶତାବ୍ଦୀଠାରୁ ଷୋଡ଼ଶ ଶତାବ୍ଦୀପର୍ଯ୍ୟନ୍ତ ଯେଉଁସବୁ ଓଡ଼ିଆ ପୁସ୍ତକ ରଚିତ ହୋଇଥିଲା, ସେଥିମଧ୍ୟରୁ ଅଧିକାଂଶ ସଂସ୍କୃତରୁ ଅନୁବାଦିତ ବା ସଂସ୍କୃତ ପୁସ୍ତକର ଅନୁକରଣରେ ରଚିତ ଓ ସେଗୁଡ଼ିକ ପଦ୍ୟ । ସେ କାଳରେ କୌଣସି ମୌଳିକ ଗ୍ରନ୍ଥ ଓଡ଼ିଆରେ ପ୍ରାୟ ରଚିତ ହୋଇ ନାହିଁ । ଏହାର କାରଣ, ସେତେବେଳେ ବ୍ରାହ୍ମଣମାନେହିଁ ଏ ଦେଶରେ ବିଦ୍ୟା, ବିଶେଷତଃ ସଂସ୍କୃତ ସାହିତ୍ୟର ଆଲୋଚନା କରୁଥିଲେ । ବ୍ରାହ୍ମଣମାନଙ୍କର ତାହା ଜାତୀୟ ବ୍ୟବସାୟ ଥିଲା ଓ ବ୍ରାହ୍ମଣମାନେ ବଂଶପରମ୍ପରାକ୍ରମେ ବୁଦ୍ଧିଶକ୍ତିଶାଳୀ ଥିଲେ । ସେମାନେ ସେ କାଳରେ ପ୍ରାକୃତ ଜନକଥିତ ଓଡ଼ିଆରେ କୌଣସି ଗ୍ରନ୍ଥ ଲେଖିବାକୁ ଘୃଣା କରୁଥିଲେ । ଭାରତର ଅନ୍ୟାନ୍ୟ ଖଣ୍ଡ ପରି ଏହି ଉତ୍କଳ ଖଣ୍ଡରେ ମଧ ସେ କାଳରେ ସଂସ୍କୃତ ସାହିତ୍ୟ ସମ୍ୟକ୍‌ରୂପେ ଆଲୋଚିତ ହେଉଥିଲା । କେଉଁ କେଉଁ ସଂସ୍କୃତ କବି ବା ଲେଖକ ସେ କାଳରେ ଓଡ଼ିଶାରେ ଜନ୍ମଗ୍ରହଣ କରିଥିଲେ, ତାହା ଜାଣିବା ସହଜ ନୁହେଁ । ତଥାପି ଏହା ନିଃସନ୍ଦେହ ରୂପେ ଜଣାଯାଇଅଛି ଯେ, ସଂସ୍କୃତ ଧର୍ମଶାସ୍ତ୍ରମାନଙ୍କର ପ୍ରସିଦ୍ଧ ଟୀକାକାର ଶ୍ରୀଧର ସ୍ୱାମୀ, ବୈଦ୍ୟକ ନିଦାନ ଗ୍ରନ୍ଥର ପ୍ରଣେତା ମାଧବକର, ପ୍ରସିଦ୍ଧ ଅଳଙ୍କାର ଗ୍ରନ୍ଥ ପ୍ରଣେତା ଶ୍ରୀ ବିଶ୍ୱନାଥ କବିରାଜ, ପ୍ରସିଦ୍ଧ ଅଭିଧାନକାର ହେମଚନ୍ଦ୍ର ଏବଂ ଆଧୁନିକ ଯୁଗର ପ୍ରସିଦ୍ଧ 'ଜ୍ୟୋତିଷଗ୍ରନ୍ଥ'ର ରଚୟିତା ଚନ୍ଦ୍ରଶେଖର, 'ରୁକ୍ମିଣୀ ପରିଣୟ' କାବ୍ୟପ୍ରଣେତା ଆଠଗଡ଼ର ସ୍ୱର୍ଗୀୟ ରାଜା ବିଶ୍ୱନାଥ ପ୍ରଭୃତି ମନୀଷୀମାନେ ଏହି ଉତ୍କଳ ଦେଶରେ ଜନ୍ମଗ୍ରହଣ କରିଥିଲେ । ଏହିପରି ଆଉ କେତେ ଯେ ମନୀଷୀ ସେ ଯୁଗରେ ଏହି ଉତ୍କଳ ଖଣ୍ଡରେ ଜନ୍ମି ସଂସ୍କୃତ ସାହିତ୍ୟର ଭିନ୍ନ ଭିନ୍ନ ବିଭାଗରେ କେତେ ଗ୍ରନ୍ଥ ରଚନା କରିଥିବେ, ଏହା ସହଜରେ ଅନୁମାନ କରାଯାଇପାରେ । ସେମାନେ କେବଳ ସଂସ୍କୃତ ଭାଷାରେ ପୁସ୍ତକ ରଚନା ନ କରି ଯେବେ ଓଡ଼ିଆଭାଷାରେ କରିଥାଆନ୍ତେ, ତେବେ ଆଜି ଓଡ଼ିଆ-ସାହିତ୍ୟ-ଭଣ୍ଡାର କେତେ ଯେ ମୂଲ୍ୟବାନ୍ ରତ୍ନରେ ମଣ୍ଡିତ ହୋଇଥାନ୍ତା, ତାହାର କଳ୍ପନା କରି ହେଉ ନାହିଁ । ତଥାପି ପ୍ରାଚ୍ୟ ଓ ପାଶ୍ଚାତ୍ୟ ଅନେକ ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତ ଏକ ବାକ୍ୟରେ ସ୍ୱୀକାର କରିଅଛନ୍ତି ଯେ, ଭାରତର ପ୍ରାଦେଶିକ ଭାଷାମାନଙ୍କ ମଧ୍ୟରେ ଓଡ଼ିଆ ଭାଷାହିଁ ପ୍ରାଚୀନ ସାହିତ୍ୟ ବିଭବରେ ଶୀର୍ଷ ସ୍ଥାନୀୟ । ଯେତେବେଳେ ଆମ୍ଭମାନଙ୍କର ପ୍ରତିବେଶୀ ବଙ୍ଗଳା ଭାଷାର ଆଦୌ ଉତ୍ପତ୍ତି ହୋଇ ନ

ଥିଲା, ସେତେବେଳେ ଓଡ଼ିଆ ଭାଷା ଯେ ଗୋଟିଏ ପୂର୍ଣ୍ଣାଙ୍ଗ ଭାଷାରେ ପରିଣତ ହୋଇଥିଲା, ତାହା ପ୍ରସିଦ୍ଧ ଭାଷାତତ୍ତ୍ୱବିତ୍ ମନୀଷୀବର ବୀମ୍‌ସଙ୍କ ନିମ୍ନୋଦ୍ଧୃତ ମନ୍ତବ୍ୟରୁ ଅନୁମିତ ହେବ ।

"Oriya language used at the time of Upendra Bhanja continues to be used now, while Bidyapati's (a contemporary of Bhanja) language is different from the present Bengali.

At a period when Oriya was already a fixed and settled language, Bengali did not exist. The Bengalis spoke a vast variety of corrupt forms of Eastern Hindi. It is not till quite recent times that we find anything that can with properiety be called a Bengali language (Beams Comparative Grammar of four languages Vol. I. p. 119).

We may place the Hindi with its subsidiary forms Gujrati and Punjabi first fixing their rise and establishment as modern languages distinct from their previous existence as Prakrut till the 12th or 13th century. Oriya must have quite completed its transformation by the end of the 14th century. Bengali was no separate independent language but a maze of dialects without a distinct national or provincial type till the 17th or beginning of the 18th century. It was not till the gradual decay of the central Mahommedan power of Delhi enabled the provincial governors to assume an independent position that Bengali severed itself from Hindi and assumed characteristics which now vindicate for it a right to be considered a separate language.

(Beams Comparative Grammar of four languages Vol.I.P. 120)

ଷୋଡ଼ଶରୁ ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ଓଡ଼ିଆ ଭାଷାରେ ଯେଉଁ କବିମାନେ କାବ୍ୟ, ଛାନ୍ଦ, ସଙ୍ଗୀତ ପ୍ରଭୃତି ରଚନା କରି ଯାଇଅଛନ୍ତି, ସେମାନଙ୍କ ମଧ୍ୟରେ ବିଶ୍ୱନାଥ, ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, ବଳଦେବ ପ୍ରଭୃତି ପ୍ରଧାନ । ଊନବିଂଶ ଓ ବିଂଶ ଶତାବ୍ଦୀରେ ନାନା କାରଣରୁ ଓଡ଼ିଆ ଭାଷା ବଙ୍ଗଳା ପ୍ରଭୃତି ଭାଷା ପରି ଉନ୍ନତ ହୋଇପାରି ନାହିଁ; କିନ୍ତୁ ପ୍ରାଚୀନ କାଳରେ ଏହା ଯେ ପ୍ରାଦେଶିକ ଭାଷାମାନଙ୍କର ଶୀର୍ଷସ୍ଥାନୀୟ ଥିଲା, ଏଥିରେ ସନ୍ଦେହ ନାହିଁ ।

ଯେଉଁ ବଙ୍ଗ ସାହିତ୍ୟ ବର୍ତ୍ତମାନ ଭାରତରେ ପ୍ରାଦେଶିକ ଭାଷାମାନଙ୍କ ମଧ୍ୟରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଅଛି, ପାଞ୍ଚ ଶହ ବର୍ଷ ପୂର୍ବରେ ତାହାର ନାମ ସୁଦ୍ଧା ନ ଥିଲା, ମାତ୍ର ଓଡ଼ିଆ ସାହିତ୍ୟଭଣ୍ଡାର ସେତେବେଳେ ବହୁ ରତ୍ନରେ ପୂର୍ଣ୍ଣ । ପଞ୍ଚଦଶ ଶତାବ୍ଦୀରେ ଚୈତନ୍ୟଦେବଙ୍କ ଆବିର୍ଭାବ ପୂର୍ବେ କେତେଜଣ ଓଡ଼ିଆ ବଙ୍ଗଦେଶରେ ପଦ୍ୟ ରଚନା କରି ଭୂୟସୀ ପ୍ରଶଂସା ଲାଭ କରିଥିଲେ । ସେମାନଙ୍କ ମଧ୍ୟରେ ବଙ୍ଗଳା ଟପ୍ପା ଓ କାହାଣୀର ପ୍ରଣେତା ଗୋପାଳ, 'ରସିକମଙ୍ଗଳ' ନାମକ ବଙ୍ଗଳା ପୁସ୍ତକ ରଚୟିତା ଗୋପୀବଲ୍ଲଭ ଓ

ସଦାନନ୍ଦ କବିଙ୍କ ନାମ ଆମ୍ଭେମାନେ ସେହି ବଙ୍ଗବାସୀମାନଙ୍କଠାରୁ ପାଇଅଛୁଁ । ଚୈତନ୍ୟଙ୍କ ପରେ ବଙ୍ଗଳା ଭାଷା ବୈଷ୍ଣବସାହିତ୍ୟ ପ୍ରଭାବରୁ ଏକ ଅଭିନବ ଛାଞ୍ଚରେ ଢଳା ହେଲା । ଚୈତନ୍ୟଦେବଙ୍କ ସଙ୍ଗରେ ଅନେକ ବଙ୍ଗାଳୀ ଭକ୍ତ ସେ ସମୟରେ ଓଡ଼ିଶାରେ ବାସ କରିଥିଲେ । ବହୁକାଳ ଏ ଦେଶରେ ବାସ କରିବାଦ୍ୱାରା ସେମାନେ ଓଡ଼ିଆ ଭାଷା ଓ ସାହିତ୍ୟ ଆଲୋଚନା କରିବାର ଅବସର ପାଇଲେ ଓ ତାହାର ଅନୁକରଣରେ ବଙ୍ଗ ଭାଷାରେ ବୈଷ୍ଣବୀୟ ଗ୍ରନ୍ଥାଦି ଲେଖିବାକୁ ଆରମ୍ଭ କଲେ । ବୈଷ୍ଣବୀୟ ଯୁଗରେ ରଚିତ ବଙ୍ଗଳା ଗ୍ରନ୍ଥମାନ ଓଡ଼ିଆ ଶବ୍ଦ ଓ ଓଡ଼ିଆ ବିଶିଷ୍ଟାର୍ଥକ (idiomatic) ପ୍ରୟୋଗରେ ପରିପୂର୍ଣ୍ଣ । ତେଣୁ ସ୍ପଷ୍ଟରୂପେ ଅନୁମିତ ହୁଏ ଯେ ଓଡ଼ିଆ ସାହିତ୍ୟ ବଙ୍ଗଳା ସାହିତ୍ୟର ଆଦର୍ଶସ୍ଥାନୀୟ ।

ପଣ୍ଡିତମାନେ କହନ୍ତି, ଯେଉଁ ଜାତି ଯେ ପରିମାଣରେ ଉନ୍ନତ, ତାହାର ସାହିତ୍ୟ ସେହି ପରିମାଣରେ ଉନ୍ନତ ଓ ଶ୍ରୀସମ୍ପନ୍ନ । ଭୁବନେଶ୍ୱରରେ ଯେଉଁ ନାନା ଶିଳ୍ପକଳାପୂର୍ଣ୍ଣ ଶତ ଶତ ମନ୍ଦିର ବର୍ତ୍ତମାନ ଜଗତରେ ସର୍ବଶ୍ରେଷ୍ଠ ଶିଳ୍ପକଳାରୂପେ ସମାଦର ଲାଭ କରିଅଛି, ତାହା ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରୁ ଅଷ୍ଟମ ଶତାବ୍ଦୀ ମଧ୍ୟରେ ନିର୍ମିତ ହୋଇଥିଲା । ଖଣ୍ଡଗିରି ପର୍ବତଗାତ୍ର ଖୋଳାଯାଇ ଯେଉଁ ଦ୍ୱିତଳ ରାଜପ୍ରାସାଦ ନିର୍ମିତ ହୋଇଥିଲା, ତାହା ଆହୁରି ପୂର୍ବକାଳୀନ । ଚତୁର୍ଦ୍ଦଶ ଶତାବ୍ଦୀରେ ନିର୍ମିତ କୋଣାର୍କ ସୂର୍ଯ୍ୟମନ୍ଦିରର ଶିଳ୍ପଚାତୁରୀ ପୃଥିବୀରେ ଅତୁଳନୀୟ । ପ୍ରାଚୀନ କଳିଙ୍ଗବାସୀମାନେ ବାଣିଜ୍ୟ ଉଦ୍ଦେଶ୍ୟରେ ଭାରତର ବିଭିନ୍ନ ଅଞ୍ଚଳ, ଯଥା - ଜାଭା, ବାଲି, ସୁମାତ୍ରା, ସିଂହଳ ଆଦି ଦ୍ୱୀପମାନଙ୍କୁ ବୋଇତରେ ଯାଉଥିଲେ, ଏହାର ଯଥେଷ୍ଟ ପ୍ରମାଣ ରହିଅଛି । ପ୍ରାଚୀନ ଉତ୍କଳୀୟମାନେ ଯେ ଜାହାଜ ନିର୍ମାଣ କରି ସେହି ଜାହାଜରେ ସମୁଦ୍ରରେ ବାଣିଜ୍ୟ କରୁଥିଲେ, ତହିଁରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ବର୍ତ୍ତମାନ ପର୍ଯ୍ୟନ୍ତ ଓଡ଼ିଆ ଗୃହସ୍ଥର କେତେକ ପର୍ବରେ ବାଣିଜ୍ୟାର୍ଥ ବୋଇତ ଅନୁକୂଳ କରି ଯାଉଥିବାର ଓ ଫେରି ଆସିବା ବେଳେ ଗୃହବଧୂମାନେ ବୋଇତକୁ ବନ୍ଦାଇ ଆଣିବାର ବିଧାନ ଉଜ୍ଜୀବିତ ରହିଅଛି । ପ୍ରାଚୀନ କଳିଙ୍ଗବାସୀମାନଙ୍କର ସୁଦୂର ଚୀନ, ବ୍ରହ୍ମଦେଶ, ଚଟ୍ଟଗ୍ରାମ ପ୍ରଭୃତି ଅଞ୍ଚଳରେ ଉପନିବେଶ ସ୍ଥାପନ କରିଥିବା ବିଷୟ ପ୍ରଫେସର ବି. ନାଗ୍ ଗବେଷଣାଦ୍ୱାରା ସ୍ଥିର କରିଅଛନ୍ତି । ବୀରତ୍ୱରେ ଉତ୍କଳମାନଙ୍କର ଖ୍ୟାତି ଭାରତବ୍ୟାପୀ ଥିଲା । ଯେଉଁ ଦେଶ ଏହିପରି ସର୍ବବିଧ ଉନ୍ନତି ଲାଭ କରିଥିଲା, ସେ ଦେଶର ସାହିତ୍ୟ ଯେ ତଦନୁରୂପେ ଉନ୍ନତ ଥିଲା, ଏଥିରେ ସନ୍ଦେହ କରାଯାଇ ନ ପାରେ । ଶିଳ୍ପ, ବାଣିଜ୍ୟ ଓ ବୀରତ୍ୱର ସୂକ୍ଷ୍ମ ତତ୍ତ୍ୱମାନ ଅବଶ୍ୟ ସାହିତ୍ୟ ସାହାଯ୍ୟରେ ଦେଶର ସାଧାରଣ ଲୋକଙ୍କ ମଧ୍ୟରେ ପ୍ରଚାରିତ ହୋଇଥିବ, ମାତ୍ର ସେସବୁ ସାହିତ୍ୟ ଏ ପର୍ଯ୍ୟନ୍ତ ହସ୍ତଗତ ହୋଇ ନାହିଁ । ପରବର୍ତ୍ତୀ କାଳର ଲୋକମାନଙ୍କର ଅଜ୍ଞତା ତଥା ପରାଧୀନତା ସେହି ସକଳ ସାହିତ୍ୟକୁ କାଳର ସର୍ବଗ୍ରାସୀ କବଳରେ ସମର୍ପଣ କରି ଦେଇଅଛି । ଆମ୍ଭେମାନେ ବର୍ତ୍ତମାନ ସେ କାଳର କେତେଖଣ୍ଡି ମାତ୍ର ପୁସ୍ତକ ପାଇଅଛୁଁ, ତାହା କାଳଗ୍ରାସର ଉଚ୍ଛିଷ୍ଟ ମାତ୍ର । ପ୍ରକୃତରେ ଅନେକ ପ୍ରାଚୀନ ଉତ୍କଳ ସାହିତ୍ୟ ନଷ୍ଟ ହୋଇଯାଇଅଛି ।

## ୪. ଓଡ଼ିଆ ଭାଷାର ବିଶେଷତ୍ୱ

ଆମ୍ଭେମାନେ ପୂର୍ବେ କହିଅଛୁଁ ଯେ, କେବଳ ପ୍ରାକୃତ ଭାଷାର ଶବ୍ଦାବଳୀ ପୂର୍ଣ୍ଣ ମନୋଭାବ ପ୍ରକାଶ କରିବା ବିଷୟରେ ସମ୍ପୂର୍ଣ୍ଣରୂପେ ଅକ୍ଷମ, ତେଣୁ ସଂସ୍କୃତ ଭାଷାରୁ ଅନେକ ଶବ୍ଦ ଆମ୍ଭମାନଙ୍କ ପ୍ରାକୃତ ଓଡ଼ିଆରେ ଗୃହୀତ ହୋଇଅଛି । ଏ ହିସାବରେ ସଂସ୍କୃତ ଭାଷାକୁ ଓଡ଼ିଆ ଭାଷାର ଜନନୀରୂପେ ନିର୍ଦ୍ଦେଶ କରାଯାଇପାରେ । ହିନ୍ଦୀ ଓ ବଙ୍ଗଳା ଭାଷାରେ ସଂସ୍କୃତରୁ ଗୃହୀତ ହୋଇଥିବା ଅକାରାନ୍ତ ଶବ୍ଦର ଶେଷ ବର୍ଣ୍ଣ ଯେପରି ବିକୃତ ହୋଇ ହସନ୍ତ ବର୍ଣ୍ଣବତ୍ ଉଚ୍ଚାରିତ ହୁଏ, ଓଡ଼ିଆ ଭାଷାରେ ସେପରି ହୁଏ ନାହିଁ । ଏହାହିଁ ଓଡ଼ିଆ ଭାଷାର ପ୍ରଧାନ ବିଶେଷତ୍ୱ । ମନୁଷ୍ୟ ପ୍ରକୃତି ପ୍ରଭାବରୁ ଯେଉଁସବୁ ଧ୍ୱନି ଉଚ୍ଚାରଣ କରିପାରେ, ସଂସ୍କୃତ ଭାଷାର ମୌଳିକ ବର୍ଣ୍ଣସମୂହ ବୈଜ୍ଞାନିକ ନିୟମରେ ସେହିସବୁ ଧ୍ୱନି ଉପରେ ପ୍ରତିଷ୍ଠିତ । ଅନ୍ୟ କୌଣସି ଭାଷାରେ ମୌଳିକ ଧ୍ୱନିକୁ ଅବଲମ୍ବନ କରି ଏପରି ବର୍ଣ୍ଣ ସୃଷ୍ଟି ହୋଇ ନ ଥିବା କଥା ଆଧୁନିକ ଭାଷାତତ୍ତ୍ୱବିତ୍ ପଣ୍ଡିତମାନେ ସ୍ୱୀକାର କରିଅଛନ୍ତି । ଭାରତର ପ୍ରାଦେଶିକ ଆର୍ଯ୍ୟ ଭାଷାମାନଙ୍କ ମଧ୍ୟରେ ଓଡ଼ିଆ ଭାଷା ହିଁ ଏ ବିଶେଷତ୍ୱକୁ ଅକ୍ଷୁଣ୍ଣ ଭାବରେ ରକ୍ଷା କରିଅଛି ।

ସଂସ୍କୃତ ଭାଷାରେ 'ନ ଓ ଣ', 'ଡ ଓ ଡ଼', 'ଢ ଓ ଢ଼', 'ଷ ଓ ସ', 'ଜ ଓ ଯ' ଏହି ସଦୃଶ ବର୍ଣ୍ଣମାନଙ୍କର ଉଚ୍ଚାରଣରେ ଯେଉଁ ବିଶେଷତ୍ୱ ପରିଲକ୍ଷିତ ହୁଏ, ଓଡ଼ିଆଭାଷୀ ଅଶିକ୍ଷିତ ଲୋକେ ମଧ୍ୟ ସେହି ବିଶେଷତ୍ୱ ରକ୍ଷା କରି ଶବ୍ଦମାନଙ୍କର ଉଚ୍ଚାରଣ କରନ୍ତି ।

ଆଜିକି ପ୍ରାୟ ଏକ ହଜାର ବର୍ଷରୁ ଅଧିକ ହେବ ଓଡ଼ିଆ ଲିଖିତଭାଷା ବା ସାହିତ୍ୟ ରୂପେ ଚଳି ଆସୁଅଛି । ଏହି ସୁଦୀର୍ଘକାଳ ମଧ୍ୟରେ ଓଡ଼ିଆ ଭାଷାରେ ଯେ କେତେ ସହସ୍ର ଗ୍ରନ୍ଥ ରଚିତ ହୋଇଅଛି, ତାହାର ଇୟତ୍ତା ନାହିଁ । ବର୍ତ୍ତମାନ ଓଡ଼ିଆଭାଷୀ ଲୋକଙ୍କ ସଂଖ୍ୟା ଏକ କୋଟିରୁ ଅଧିକ । ପଶ୍ଚିମରେ ମଧ୍ୟପ୍ରଦେଶାନ୍ତର୍ଗତ ବସ୍ତର ରାଜ୍ୟ, ଉତ୍ତରରେ ସିଂହଭୂମ ଓ ମେଦିନୀପୁର ଜିଲ୍ଲାର ଦକ୍ଷିଣାଂଶ, ପୂର୍ବରେ ବଙ୍ଗୋପସାଗରର ଉପକୂଳ, ଦକ୍ଷିଣରେ ବିଶାଖାପତ୍ତନ ଜିଲ୍ଲାର ଉତ୍ତରାଂଶ ଅତି ପ୍ରାଚୀନ କାଳରୁ ଓଡ଼ିଆ ଦେଶ ରୂପେ ପରିଚିତ ହୋଇଆସୁଅଛି । ବର୍ତ୍ତମାନ ରାଜନୀତି କ୍ଷେତ୍ରରେ ଏହି ବିଶାଳ ରାଜ୍ୟ ଏକଶାସନାଧୀନ ନ ଥିଲେ ହେଁ, ଏହି ଭିନ୍ନ ଭିନ୍ନ ପ୍ରଦେଶବାସୀ ଓଡ଼ିଆମାନେ ଏକ ଓଡ଼ିଆ ଭାଷାରେ କଥା କହନ୍ତି ଏବଂ ପରସ୍ପର ବୈବାହିକ ଓ ସାମାଜିକ ବନ୍ଧନରେ ଆବଦ୍ଧ ହୁଅନ୍ତି । ଆଜିକି ପାଞ୍ଚ ଶହ କି ଛଅ ଶହ ବର୍ଷ ତଳେ ସମଗ୍ର ଉତ୍କଳଭାଷୀ ପ୍ରଦେଶ ଏକ ସ୍ୱାଧୀନ ରାଜ୍ୟରୂପେ ସମଗ୍ର ଭାରତରେ ଦୀର୍ଘକାଳବ୍ୟାପୀ ଖ୍ୟାତି ଓ ପ୍ରତିଷ୍ଠା ଲାଭ କରିଥିଲା । ଏହି ବିଶାଳ ସ୍ୱାଧୀନ ରାଜ୍ୟ ମଧ୍ୟରେ କେତେ ବ୍ୟକ୍ତି କେତେ ପ୍ରକାର ଗ୍ରନ୍ଥ ପ୍ରଣୟନ କରିଥିଲେ, ଏପର୍ଯ୍ୟନ୍ତ ତାହାର ଇୟତ୍ତା କରାଯାଇ ନାହିଁ । ଭାବପ୍ରକାଶର ସୁବିଧାପାଇଁ ପ୍ରାଚୀନ ଉତ୍କଳୀୟ କବିମାନେ ସଂସ୍କୃତ ଭାଷାରୁ ଶତ ଶତ ଶବ୍ଦ ଓଡ଼ିଆ ଭାଷାରେ ଗ୍ରହଣ କରିଥିଲେ । ଆହୁରି ମଧ୍ୟ ପଶ୍ଚିମରେ ହିନ୍ଦୀ ଭାଷା, ଉତ୍ତରରେ ବଙ୍ଗ ଭାଷା, ଦକ୍ଷିଣରେ ତେଲଙ୍ଗୀୟ

ଭାଷାର ସଂସର୍ଗରେ ତତ୍ତଦ୍ ପ୍ରଦେଶର କଥିତ ଓଡ଼ିଆ ଭାଷାରେ ଶତ ଶତ ହିନ୍ଦୀ, ବଙ୍ଗଳା ଓ ତେଲିଙ୍ଗୀୟ ଶବ୍ଦ ପ୍ରବେଶ କରିଅଛି । ଏହି ହେତୁରୁ ଓଡ଼ିଆ ଭାଷାର ଶବ୍ଦ ସଂଖ୍ୟା ଅନ୍ୟ ଦେଶୀୟ ଭାଷାର ଶବ୍ଦ ସଂଖ୍ୟାଠାରୁ ଖୁବ୍ ବେଶି । ଗୋଟିଏ ସାଧାରଣ ପ୍ରଚଳିତ ଶବ୍ଦ ବର୍ତ୍ତମାନ ରାଜନୀତିକ ଉତ୍କଳରେ, ବଙ୍ଗ ପ୍ରଦେଶାନ୍ତର୍ଗତ ଉତ୍କଳଭାଷୀ ଅଞ୍ଚଳରେ, ମଧ୍ୟପ୍ରଦେଶାନ୍ତର୍ଗତ ଉତ୍କଳଭାଷୀ ଅଞ୍ଚଳରେ ଓ ମାନ୍ଦ୍ରାଜ ପ୍ରଦେଶସ୍ଥ ଉତ୍କଳଭାଷୀ ଅଞ୍ଚଳରେ କଥିତ ଭାଷାରେ ନିତାନ୍ତ ପକ୍ଷରେ ଚାରିଗୋଟି ରୂପ ଧାରଣ କରିବାର ଦେଖାଯାଏ । ଏହି ପ୍ରତିଶବ୍ଦ-ପ୍ରାଚୁର୍ଯ୍ୟ ଯୋଗୁଁ ସଂସ୍କୃତ, ଇଂରାଜୀ ଓ ଅନ୍ୟାନ୍ୟ ଉନ୍ନତ ଭାଷାମାନ ବିଭବଶାଳୀ ଅଟନ୍ତି ଏବଂ ଏଥିଯୋଗୁଁ ଓଡ଼ିଆଭାଷାର ଶବ୍ଦପ୍ରାଚୁର୍ଯ୍ୟକୁ ମୂଳଭିତ୍ତି କରି ଗୋଟିଏ ଅତି ଉନ୍ନତ ସାହିତ୍ୟ ଗଢ଼ାଯାଇପାରେ । ଓଡ଼ିଆଭାଷା ଭିନ୍ନ ଭିନ୍ନ ଅଞ୍ଚଳରେ କୁହାଯାଉଥିବା ଆକାର ଅନୁସାରେ କେତେଗୁଡ଼ିଏ ସ୍ୱତନ୍ତ୍ର ଭାଷାରେ (Dialect) ପରିବର୍ତ୍ତିତ ନ ହୋଇ ଗୋଟିଏ ମୌଳିକ ଭାଷାରୂପେ ରହିଅଛି । କିନ୍ତୁ ଭାରତୀୟ ଅନ୍ୟାନ୍ୟ ଦେଶୀୟ ଭାଷା (ଯଥା - ବଙ୍ଗଳା, ହିନ୍ଦୀ) ଭିନ୍ନ ଭିନ୍ନ ଅଞ୍ଚଳରେ କୁହାଯାଉଥିବା ଆକାର ଅନୁସାରେ ଭିନ୍ନ ଭିନ୍ନ ଶାଖାରୂପେ ପରବର୍ତ୍ତିତ ହୋଇ ମୌଳିକ ଭାଷାରୁ ସ୍ୱତନ୍ତ୍ର ହୋଇଯାଇଅଛି । ଉଦାହରଣସ୍ୱରୂପ ଦେଖାଯିବ ଯେ, ହିନ୍ଦୀ ଭାଷାରୁ ଆଠଗୋଟି ଶାଖା ଓ ବଙ୍ଗଳା ଭାଷାରୁ ଚାରିଗୋଟି ଶାଖା ବାହାରିଅଛି, କିନ୍ତୁ ଓଡ଼ିଆ ଭାଷାର ଶାଖା ନାହିଁ କହିଲେ ଚଳିବ । ମେଦିନୀପୁର ଅଞ୍ଚଳରେ ଯେଉଁ ଓଡ଼ିଆଭାଷା କଥିତ ହୁଏ, ସୁଦୂର ବିଶାଖାପତ୍ତନ ଅଞ୍ଚଳରେ ମଧ୍ୟ ସେହି ଓଡ଼ିଆ ଭାଷା କଥିତ ହୁଏ । ବଙ୍ଗୋପସାଗର ଉପକୂଳରେ ଯେଉଁ ଓଡ଼ିଆ ଭାଷା ଚଳେ, ମଧ୍ୟପ୍ରଦେଶରେ ଥିବା ଓଡ଼ିଆ ଅଞ୍ଚଳରେ ମଧ୍ୟ ସେହି ଓଡ଼ିଆ ଭାଷା ଚଳେ । ବର୍ତ୍ତମାନର ଓଡ଼ିଶା ଡିଭିଜନ୍‌ରେ କଥିତ ଓଡ଼ିଆ ଭାଷା ଓ ଭିନ୍ନ ଭିନ୍ନ ଅଞ୍ଚଳରେ କଥିତ ଭାଷାମାନଙ୍କର ବ୍ୟାକରଣଗତ ମୂଳଭିତ୍ତି ଏକ । କେବଳ ଏକ ବସ୍ତୁର ଭିନ୍ନ ଭିନ୍ନ ନାମ ତତ୍ତଦ୍ ଅଞ୍ଚଳରେ ବ୍ୟବହୃତ ହୁଏ । ଏହା ଓଡ଼ିଆ ଭାଷାର ଅନ୍ୟ ଗୋଟିଏ ବିଶେଷତ୍ୱ ।

ଭାରତୀୟ-ଭାଷା-ତତ୍ତ୍ୱାନ୍ୱେଷୀ ଆଚାର୍ଯ୍ୟ ଗ୍ରିଅର୍‌ସନ୍ ବସ୍ତର ରାଜ୍ୟର ଏକାଂଶରେ (ପ୍ରାଚୀନ ଦକ୍ଷିଣ କୋଶଳରେ) ପ୍ରାୟ କୋଡ଼ିଏ ହଜାର ଲୋକଙ୍କ କଥିତ ଭତରି ଭାଷାକୁ ଓଡ଼ିଆ ଭାଷାର ଗୋଟିଏ ମାତ୍ର ଶାଖା ବୋଲି ଉଲ୍ଲେଖ କରିଅଛନ୍ତି ଏବଂ ସମ୍ବଲପୁର ଓ ଛତିଶଗଡ଼ ଅଞ୍ଚଳରେ କଥିତ ଲରି ଭାଷାକୁ ଗ୍ରିଅର୍‌ସନ୍ ଓଡ଼ିଆର ଶାଖା ବୋଲି ସ୍ୱୀକାର କରି ନ ଥିଲେହେଁ ତାହା ଓଡ଼ିଆ ଭାଷାଦ୍ୱାରା ବିଶେଷଭାବରେ ପ୍ରଭାବିତ ବୋଲି କୁହାଯାଇପାରେ । ଶାଖାବର୍ଜିତ ଓ ୮୨୦୦୦ ବର୍ଗମାଇଲ ପରିମିତ ଅଞ୍ଚଳରେ ବାସ କରୁଥିବା ଏକ କୋଟି ଲୋକଙ୍କ ମଧ୍ୟରେ ବ୍ୟବହୃତ ଓଡ଼ିଆ ଭାଷାର ଏହି ଶବ୍ଦ ପ୍ରାଚୁର୍ଯ୍ୟକୁ ଇୟତ୍ତା କରିବାପାଇଁ ଅବଧି କୌଣସି ଅଭିଧାନ ଓଡ଼ିଆରେ ସଂକଳିତ ହୋଇ ନାହିଁ । ଏପରି ଗୋଟିଏ ଅଭିଧାନ ସଂକଳନଦ୍ୱାରା ଭିନ୍ନ ଭିନ୍ନ ଅଞ୍ଚଳରେ ବ୍ୟବହୃତ ଓଡ଼ିଆ ଭାଷା କେଉଁ କେଉଁ ପଡ଼ୋଶୀ ଭାଷା (ହିନ୍ଦୀ, ବଙ୍ଗଳା, ତେଲୁଗୁ) ଦ୍ୱାରା କି ପରିମାଣରେ ପ୍ରଭାବିତ ହୋଇଅଛି, ତାହା ଅକ୍ଲେଶରେ ଧରାଯାଇପାରିବ ।

**ଏହି ଅଭିଧାନର ଇତିହାସ ଓ ବିଶେଷତ୍ୱ** - ଓଡ଼ିଆ ଭାଷା ଏତେ ପ୍ରାଚୀନ ଓ ଶବ୍ଦ ସମ୍ପଦରେ ଭାରତର ଅନ୍ୟାନ୍ୟ କଥିତ ଭାଷାର ଆଦର୍ଶସ୍ଥାନୀୟ ହେଲେହେଁ, ଏ ପର୍ଯ୍ୟନ୍ତ ତହିଁରେ ଖଣ୍ଡିଏ ପୂର୍ଣ୍ଣାଙ୍ଗ ଅଭିଧାନ ନାହିଁ । ଗ୍ରିଅର୍‌ସନ୍, ହଣ୍ଟର୍, ବୀମ୍‌ସ, ପାଇକ୍ ପ୍ରଭୃତି ଯେଉଁ ପାଶ୍ଚାତ୍ୟ ପଣ୍ଡିତମାନେ ଓଡ଼ିଆ ଭାଷା ଆଲୋଚନା କରିଅଛନ୍ତି, ସେମାନେ ମଧ୍ୟ ଏହି ଅସୁବିଧା ଭୋଗ କରିଯାଇଅଛନ୍ତି । ଯେତେବେଳେ ଖ୍ରୀଷ୍ଟିୟାନ୍ ପାଦ୍ରିମାନେ ପ୍ରଥମେ ଏ ଦେଶକୁ ଛାପାକଳ ଆଣିଲେ, ସେ ସମୟରେ ପାଦ୍ରି ସଟନ୍ ସାହେବ ୧୮୪୧ ମସିହାରେ ଖଣ୍ଡିଏ ଓଡ଼ିଆ ଡିକ୍ସନାରୀ ପ୍ରକାଶ କରିଥିଲେ । ପାଦ୍ରି ମିଲର୍ ଓ ରଘୁନାଥ ମିଶ୍ର ୧୮୬୧ ମସିହାରେ ଖଣ୍ଡିଏ ଏବଂ ବ୍ରୁକ୍ସ ସାହେବ ୧୮୭୪ ମସିହାରେ ଆହୁରି ଖଣ୍ଡିଏ ଓଡ଼ିଆ-ଇଂରାଜୀ ଅଭିଧାନ ପ୍ରକାଶ କରିଥିଲେ । ଏ ଅଭିଧାନମାନ ବର୍ତ୍ତମାନ ଦୁଷ୍ପ୍ରାପ୍ୟ । ସ୍ୱର୍ଗତ ଜଗନ୍ନାଥ ରାଓ ସରକାରଙ୍କଠାରୁ ଆଂଶିକ ଅର୍ଥ ସାହାଯ୍ୟ ପାଇ ୧୮୯୧ ସାଲରେ ଓଡ଼ିଆରେ ପ୍ରଥମେ ଖଣ୍ଡିଏ ଅଭିଧାନ ପ୍ରକାଶ କରିଥିଲେ, ମାତ୍ର ସେଥିରେ ଖାଣ୍ଟି ଓଡ଼ିଆ ଶବ୍ଦମାନ ନ ଥିଲା କହିଲେ ଚଳେ । କେବଳ କେତେଗୁଡ଼ିଏ ସଂସ୍କୃତ ଶବ୍ଦ ତହିଁରେ ଗୃହୀତ ହୋଇଥିଲା । ତତ୍‌ପ୍ରଣୀତ ପରବର୍ତ୍ତୀ ପକେଟ୍ ଅଭିଧାନ ଖଣ୍ଡି ମଧ୍ୟ ଏହି ଶ୍ରେଣୀୟ । ତପ୍‌ରେ ସ୍ୱର୍ଗତ ମଧୁସୂଦନ ରାଓ 'ସୁଖବୋଧ ଅଭିଧାନ' ନାମରେ ଖଣ୍ଡିଏ କ୍ଷୁଦ୍ରାବୟବ ଅଭିଧାନ ପ୍ରଣୟନ କରିଥିଲେ । ସେଥିରେ ମଧ୍ୟ ପ୍ରକୃତ ଓଡ଼ିଆ ଶବ୍ଦର ଆଲୋଚନା ଅତ୍ୟଳ୍ପ ମାତ୍ରାରେ କରାଯାଇଥିଲା । ପାରଳାର ସ୍ୱର୍ଗୀୟ ପଣ୍ଡିତ ଗୋପୀନାଥ ନନ୍ଦ ୧୯୧୬ ସାଲରେ 'ଓଡ଼ିଆ ଶବ୍ଦତତ୍ତ୍ୱବୋଧ' ନାମରେ ଯେଉଁ ଅଭିଧାନ ଖଣ୍ଡି ପ୍ରକାଶ କରିଥିଲେ, ତହିଁରେ ସେ କେତେକ ପରିମାଣରେ ଓଡ଼ିଆ ଶବ୍ଦର ଆଲୋଚନା କରିଥିଲେ, ମାତ୍ର ତହିଁରେ ଅନ୍ୟ ପ୍ରକାର ଅନେକ ଦୋଷ ରହି ଯାଇଥିବାରୁ ପରବର୍ତ୍ତୀ କାଳରେ ଓଡ଼ିଶାର ସାହିତ୍ୟସେବୀମାନେ ତାହାକୁ ଭିନ୍ନ ଦୃଷ୍ଟିରେ ଦେଖିଲେ । ଏହିସବୁ କାରଣରୁ କେହି ତାହାର ସଂଶୋଧିତ ଦ୍ୱିତୀୟ ସଂସ୍କରଣପାଇଁ ମନୋଯୋଗ ଦେଇ ନାହାନ୍ତି । ସ୍ୱର୍ଗୀୟ ପଣ୍ଡିତ ମୃତ୍ୟୁଞ୍ଜୟ ବାଣୀଭୂଷଣ କାବ୍ୟତୀର୍ଥ ମହାଶୟ ନନ୍ଦଙ୍କ ପରେ ଖଣ୍ଡିଏ କ୍ଷୁଦ୍ରାବୟବ ପକେଟ୍ ଅଭିଧାନ ସଙ୍କଳନ କରିଥିଲେ, ମାତ୍ର ତାହାଙ୍କ ଜୀବଦ୍ଦଶାରେ ତାହା ପୂର୍ଣ୍ଣ ହୋଇପାରି ନ ଥିଲା, ପରେ ଯେନତେନ ପ୍ରକାରେଣ ତାହାର ପୂର୍ଣ୍ଣତା ବିଧାନ କରି କଟକ ଟ୍ରେଡ଼ିଙ୍ଗ୍ କମ୍ପାନୀ ତାହା ପ୍ରକାଶ କରିଥିଲେ, କିନ୍ତୁ ତଦ୍ୱାରା ଅଭିଧାନର ଅଭାବ ଦୂର ହୋଇ ନାହିଁ ।

ଓଡ଼ିଶାରେ ପୂର୍ଣ୍ଣାଙ୍ଗ ଅଭିଧାନ ନ ଥିବାରୁ ଅନେକ ସମୟରେ ଏକ ପ୍ରଦେଶବାସୀ ଓଡ଼ିଆ ଅନ୍ୟ ପ୍ରଦେଶବାସୀ ଓଡ଼ିଆଙ୍କ ମଧ୍ୟରେ ପ୍ରଚଳିତ ଶବ୍ଦମାନ ବୁଝିପାରନ୍ତି ନାହିଁ ଏବଂ ପ୍ରାଚୀନ ଓଡ଼ିଆ ଗ୍ରନ୍ଥମାନଙ୍କରେ ଯେଉଁସବୁ ଶବ୍ଦ ପ୍ରଦତ୍ତ ହୋଇଅଛି ଏବଂ ବର୍ତ୍ତମାନ ସମୟରେ ଯେଉଁ ଶବ୍ଦମାନଙ୍କର ପ୍ରଚଳନ ନାହିଁ, ସେଗୁଡ଼ିକର ପ୍ରକୃତ ଅର୍ଥ ଓଡ଼ିଆ ଭାଷାର ପଣ୍ଡିତମାନେ ସୁଦ୍ଧା ବୁଝିପାରିବା ଭଳି କୌଣସି ସୁଗମ ଅଭିଜ୍ଞାନ ଗ୍ରନ୍ଥ ନାହିଁ ।

ବିଶେଷତଃ କୌଣସି ବିଦେଶୀୟ ଲୋକ ଓଡ଼ିଆ ଭାଷାର ଆଲୋଚନା କରିବାକୁ ଇଚ୍ଛା କଲେ ଓଡ଼ିଶୀ ରୀତି (idiom) ଓ ଓଡ଼ିଆ ଶବ୍ଦ ସମ୍ବଳିତ ଭାଷାକୋଷର ଅଭାବରୁ ବାଧ ହୋଇ ତାହା କରିପାରନ୍ତି ନାହିଁ । ଅନେକ ଦିନରୁ ମୁଁ ଏହି ଅସୁବିଧା ଅନୁଭବ କରୁଥିଲି । ଆମ୍ଭେମାନେ ଘରେ ପ୍ରତ୍ୟହ ଯେଉଁସବୁ ଶବ୍ଦ ବ୍ୟବହାର କରୁଁ, ଏ ପର୍ଯ୍ୟନ୍ତ ସେସବୁ ଶବ୍ଦ ମଧ କୌଣସି ଭାଷାକୋଷରେ ସ୍ଥାନ ପାଇ ନ ଥିବାରୁ ବିଦେଶୀୟଙ୍କ ନିକଟରେ ନିଜ ଭାଷାର ଗୌରବ ପ୍ରଖ୍ୟାପନ କରିବା ଲଜ୍ଜାଜନକ ହୁଏ । ମୁଁ ଚିରଦିନ ସରଳ, ଖାଣ୍ଟି ଓଡ଼ିଆ ଶବ୍ଦ ବ୍ୟବହାରର ପକ୍ଷପାତୀ; ମୋ ଭାଷାରେ ଅବୋଧ ସଂସ୍କୃତ ଶବ୍ଦ ମୁଁ ଯଥାଶକ୍ତି ବର୍ଜ୍ଜନ କରିଥାଏଁ । ଅବଶ୍ୟ ଭାବପ୍ରକାଶରେ ଖାଣ୍ଟି ଓଡ଼ିଆ ଶବ୍ଦର ଅଭାବ ଦେଖିଲେ ମୁଁ ଯଥାସମ୍ଭବ ସରଳ ସଂସ୍କୃତ ଶବ୍ଦ ବ୍ୟବହାର କରେ । ମାତ୍ର ଇଚ୍ଛାକରି ଶବ୍ଦାଡ଼ମ୍ବର କରିବାକୁ ବା ରଚନାର ରୀତିକୁ ବାଗ୍‌ବହୁଳ କରିବାକୁ ସଂସ୍କୃତ ଶବ୍ଦ ପ୍ରୟୋଗ କରେ ନାହିଁ । ମୋ ଲେଖାର ଏହି ରୀତି ବା ଧରଣକୁ ଲକ୍ଷ୍ୟକରି ଓଡ଼ିଆ ଭାଷାର ସାଧକ ପାଶ୍ଚାତ୍ୟ ପଣ୍ଡିତ ସ୍ୱର୍ଗତ ହେଣ୍ଡରସନ୍ ସାହେବ କଟକ କଲେଜିଏଟ୍ ସ୍କୁଲର ହେଡ୍‌ମାଷ୍ଟର ଥିବାବେଳେ ୧୯୧୩ ମସିହାରେ ଓଡ଼ିଆ ଭାଷାରେ ଖଣ୍ଡିଏ ପୂର୍ଣ୍ଣାଙ୍ଗ ଅଭିଧାନ ଲେଖିବାକୁ ମୋତେ ସୂଚନା ଦେଇଥିଲେ । ୧୯୧୩ ରୁ ୧୯୧୮ ଖ୍ରୀଷ୍ଟାବ୍ଦ ମଧରେ ମୁଁ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବହୁ ସହସ୍ର ପ୍ରାଦେଶିକ ଓ ଘରୋଇ ଶବ୍ଦ ସଂଗ୍ରହ କରି ତାହା ଟିପା ଖାତା ଓ କାଗଜମାନଙ୍କରେ ଟିପିଲି ଏବଂ ପ୍ରାଚୀନ ଓ ଆଧୁନିକ ଗ୍ରନ୍ଥମାନ ପଢ଼ି ତହିଁରେ ଥିବା ସହସ୍ର ସହସ୍ର ବିଶିଷ୍ଟ ଶବ୍ଦକୁ ରେଖାଙ୍କିତ କଲି । ସଙ୍ଗେ ସଙ୍ଗେ ଶବ୍ଦର ପ୍ରୟୋଗମାନ ମଧ ଟିପି ରଖିଲି । ୧୯୧୯ ଖ୍ରୀଷ୍ଟାବ୍ଦରେ ଏହିସବୁ ଶବ୍ଦକୁ ସ୍ୱତନ୍ତ୍ର ଖାତାରେ ବର୍ଣ୍ଣାନୁକ୍ରମରେ ଲେଖିବାକୁ ଆରମ୍ଭ କଲି । ପ୍ରଥମେ ଅନୁକୂଳ କଲାବେଳେ ସଂସ୍କୃତ, ତତ୍ସମ, ତଦ୍ଭବ, ପ୍ରାଚୀନ, ଆଧୁନିକ, ଗ୍ରାମ୍ୟ, ଦେଶଜ, ପ୍ରାଦେଶିକ ଓ ବୈଦେଶିକ ଶବ୍ଦମାନଙ୍କର ବ୍ୟାଖ୍ୟା ଓଡ଼ିଆରେ ଲେଖି ଖଣ୍ଡିଏ ଖାଣ୍ଟି ଓଡ଼ିଆ ଅଭିଧାନ ସଂକଳନ କରିବି ବୋଲି କଳ୍ପନା କରିଥିଲି । ମାତ୍ର କାର୍ଯ୍ୟକ୍ଷେତ୍ରର କିଛିଦୂର ଅଗ୍ରସର ହେଲା ପରେ ବୁଝିପାରିଲି ଯେ ଓଡ଼ିଆରେ ବିଶ୍ୱକୋଷ ଶ୍ରେଣୀର ଅଭିଜ୍ଞାନ ଗ୍ରନ୍ଥ ନାହିଁ ଏବଂ ଭାଷାତତ୍ତ୍ୱ ସମ୍ବନ୍ଧରେ ତୁଳନାତ୍ମକ ଗବେଷଣାପାଇଁ ଓଡ଼ିଶାରେ ଏ ପର୍ଯ୍ୟନ୍ତ କୌଣସି ମୂଳଭିତ୍ତି ସ୍ଥାପିତ ହୋଇ ନାହିଁ । ତେଣୁ ଉତ୍କଳ ଭାଷାରେ ପ୍ରଚଳିତ ବ୍ୟାକରଣକୁ ଅନୁସରଣ କରି ମୁଁ ସେହି ସଂଗୃହୀତ ଶବ୍ଦମାନଙ୍କର ବ୍ୟୁତ୍ପତ୍ତି, ଉତ୍ପତ୍ତି ଓ ଅନ୍ୟ ଭାଷା ସଙ୍ଗେ ସମ୍ବନ୍ଧ ନିର୍ଣ୍ଣୟ କରିବାକୁ ଲାଗିଲି । ଏହି ଦୁରୂହ କାର୍ଯ୍ୟ ଯଥାକଥଞ୍ଚିତ୍ ଶେଷ କଲା ପରେ ପୁଣି ମନେ କଲି ଯେ, ଓଡ଼ିଆ ଭାଷାନଭିଜ୍ଞ ବିଚାରପତିମାନଙ୍କୁ ବିଚାରକାର୍ଯ୍ୟରେ ତଥା ବିଦେଶୀୟ ସୁଧୀବୃନ୍ଦଙ୍କୁ ଉତ୍କଳଭାଷା ଶିଖିବାରେ ସାହାଯ୍ୟ କରିବାପାଇଁ ପ୍ରତ୍ୟେକ ଶବ୍ଦର ବ୍ୟାଖ୍ୟା ବା ପ୍ରତିଶବ୍ଦ ଇଂରେଜୀରେ ରହିବା ଆବଶ୍ୟକ । ନବ୍ୟ ଓଡ଼ିଆ ଭାଷାକୁ ବଙ୍ଗଳା ଭାଷା କିପରି ପ୍ରଭାବିତ କରିଅଛି, ଏହା ଜାଣିବା ଏବଂ ଓଡ଼ିଆ ଶବ୍ଦମାନଙ୍କର ବଙ୍ଗଳା ପ୍ରତିଶବ୍ଦ ଜାଣିବା ଭାଷାତତ୍ତ୍ୱ

ଅଧ୍ୟୟନକାରୀ ଛାତ୍ରମାନଙ୍କର ମଧ୍ୟ ଦରକାର ବୋଲି ଉପଲବ୍ଧି କଲି । ଏହିପରି ହିନ୍ଦୀ ପ୍ରତିଶବ୍ଦ ଜାଣିବାଦ୍ୱାରା ଆଧୁନିକ ଓଡ଼ିଆ ଭାଷାରେ ହିନ୍ଦୀର ପ୍ରଭାବ ଉପଲବ୍ଧି କରିବା ସୁଗମ ହେବ ଓ ହିନ୍ଦୀ ଭାଷା ଭାରତର ସର୍ବତ୍ରବୋଧ ଭାଷାରୂପେ ଗଣ୍ୟ ହେଉଥିବାରୁ ଏବଂ ତାହାକୁ ପଣ୍ଡିତମାନେ ବର୍ତ୍ତମାନ ଭାରତର ଜାତୀୟ ଭାଷାରୂପେ ଚଳାଇବାକୁ ଚେଷ୍ଟା କରୁଥିବାରୁ ହିନ୍ଦୀ ଶବ୍ଦମାନଙ୍କ ସଙ୍ଗେ ଓଡ଼ିଆ ଶବ୍ଦମାନଙ୍କର ସମ୍ବନ୍ଧ ସ୍ଥାପନପାଇଁ ହିନ୍ଦୀ ପ୍ରତିଶବ୍ଦ ଦେବାର କଳ୍ପନା ମଧ୍ୟ ପରେ ମୋ ମନରେ ଉଦିତ ହେଲା । କଲିକତା, ପାଟନା ଓ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟମାନଙ୍କର ଉଚ୍ଚତମ ଶ୍ରେଣୀରେ ଯେଉଁ ଛାତ୍ରମାନେ ଓଡ଼ିଆକୁ ମାତୃଭାଷାରୂପେ ପାଠ କରନ୍ତି, ସେମାନଙ୍କୁ ଇଚ୍ଛାଧୀନ ବିଷୟ (Optional Subject) ରୂପେ ହିନ୍ଦୀ ବା ବଙ୍ଗଳା ଭାଷା ପଢ଼ିବାକୁ ପଡ଼େ । ଏହା ମଧ୍ୟ ଓଡ଼ିଆ ଶବ୍ଦମାନଙ୍କର ଯଥାସମ୍ଭବ ହିନ୍ଦୀ ଓ ବଙ୍ଗଳା ପ୍ରତିଶବ୍ଦମାନ ଦେବାର ଅନ୍ୟତମ କାରଣ । ଗଞ୍ଜାମ ଓ ବିଶାଖପଟ୍ଟନ ଅଞ୍ଚଳରେ ପ୍ରଚଳିତ ଓଡ଼ିଆ ଭାଷାର ଅନେକ ଶବ୍ଦ ତେଲୁଗୁ ଭାଷାଦ୍ୱାରା ପ୍ରଭାବିତ; ତେଣୁ ତତ୍ତଦ୍ ଅଞ୍ଚଳର ପ୍ରଚଳିତ ପ୍ରାଦେଶିକ ଶବ୍ଦମାନଙ୍କର ତେଲୁଗୁ ପ୍ରତିଶବ୍ଦ ଦିଆଯାଇଥିଲେ, ଉକ୍ତ ଅଞ୍ଚଳମାନଙ୍କରେ ତେଲୁଗୁ ଭାଷାର ପ୍ରଭାବ ଧରାପଡ଼ିଥାଆନ୍ତା । ତେଲୁଗୁ ଗୋଟିଏ ସ୍ୱତନ୍ତ୍ର ଦ୍ରାବିଡ଼-ଶାଖାର ଭାଷା ଥିବାରୁ ଓ ମୁଁ ଉକ୍ତ ଭାଷାରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିବାରୁ ତାହା କରିବାର ସୁବିଧା ମୋ ଭାଗ୍ୟରେ ଘଟିଲା ନାହିଁ ।

ଓଡ଼ିଆ ଭାଷା ଓ ବର୍ଣ୍ଣମାଳା ଆୟତ୍ତ କରି ନ ଥିବା ଭାଷାନୁସନ୍ଧିତ୍ସୁ ଓ ବିଶେଷତଃ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ପକ୍ଷରେ ଓଡ଼ିଆ ଭାଷା ବୁଝିବା ଦୁଃସାଧ୍ୟ । ଏଥିପାଇଁ ପ୍ରତ୍ୟେକ ମୂଳ ଶବ୍ଦର ଉଚ୍ଚାରଣକୁ ଇଂରାଜୀ ଟ୍ରାନ୍ସ୍‌ଲିଟରେସନ୍ ବା ଅକ୍ଷରାନ୍ତରୀକରଣ କଲେ ଓ ଅଭିଧାନ ଖଣ୍ଡି ଉତ୍କଳର ବାହାରେ ଓ ଇଉରୋପ, ଆମେରିକା ଆଦି ଅଞ୍ଚଳରେ ପଣ୍ଡିତମାନଙ୍କର ଆଦରଣୀୟ ହେବ ବୋଲି କେତେକ ପାଶ୍ଚାତ୍ୟ ପଣ୍ଡିତ ପରାମର୍ଶ ଦେବାରୁ ହଣ୍ଟର୍, ଗ୍ରିଅର୍‌ସନ୍, ବୀମ୍‌ସ, ଉଇଲ୍‌କିନ୍ସ ଆଦି ପଣ୍ଡିତମାନଙ୍କର ଅକ୍ଷରାନ୍ତରୀକରଣ ପ୍ରଥା ତୁଳନା କରି ମୁଁ ମୂଳ ଶବ୍ଦମାନଙ୍କର ଇଂରାଜୀ ଅକ୍ଷରରେ ଉଚ୍ଚାରଣ ସେହି ମୂଳ ଶବ୍ଦମାନଙ୍କ ତଳେ ଯୋଗ କରିଅଛି ।

ଅଭିଧାନଟିକୁ ସର୍ବାଙ୍ଗସୁନ୍ଦର କରିବାପାଇଁ ପ୍ରୟୋଜନାନୁରୂପ ଐତିହାସିକ, ପୌରାଣିକ, ଭୌଗୋଳିକ, ବୈଜ୍ଞାନିକ, ବୈଦ୍ୟକ, ଜ୍ୟୋତିଷିକ ଶବ୍ଦମାନଙ୍କ ସମ୍ବନ୍ଧରେ ଅବଶ୍ୟ ଜ୍ଞାତବ୍ୟ କେତେକ କଥା ଯଥାସ୍ଥାନରେ ଯୋଗ କରିଅଛି । ମୁଁ ପାଣ୍ଡୁଲିପି ଲେଖା ଆରମ୍ଭ କରିବା ସଙ୍ଗେ ସଙ୍ଗେ ମୋ ସହକର୍ମିଣୀ ଶ୍ରୀମତୀ ପୀତାମ୍ବରୀ ଦେବୀ ପାଞ୍ଚ ବର୍ଷକାଳ ଅତ୍ୟନ୍ତ ଅଧ୍ୟବସାୟ ସହକାରେ ଉତ୍କଳର ଗଉଡ଼, ଭଣ୍ଡାରି, କମାର, ବଢ଼େଇ, ଚଷା, କେଉଟ, ତନ୍ତୀ ପ୍ରଭୃତି ବିଶିଷ୍ଟ ଜାତି ମଧ୍ୟରେ ବ୍ୟବହୃତ ଶତ ଶତ ଶବ୍ଦ ଓ ପରିଭାଷା ଏବଂ ଗ୍ରାମ୍ୟ ସ୍ତ୍ରୀମାନଙ୍କ ମଧ୍ୟରେ ପ୍ରଚଳିତ ଢଗଢମାଳି, ଶତ ଶତ ଗ୍ରାମ୍ୟ ଶବ୍ଦ, ଶିଶୁଗୀତ ଓ ପ୍ରବଚନ ସଂଗ୍ରହ କରି ମୋତେ ଉତ୍ସାହିତ କରିଅଛନ୍ତି । ତାଙ୍କ ସଂଗୃହୀତ ଢଗଢମାଳି,

ପ୍ରବଚନ, କାହାଣୀ ଓ ସ୍ତ୍ରୀଗୀତରୁ ମୁଁ 'ଭାଷାକୋଷ'ରେ ଅନ୍ତତଃ ପାଞ୍ଚହଜାର ଶବ୍ଦ ଯୋଗ କରିପାରିଅଛି ।

କଟକ ଟ୍ରେନିଂ ସ୍କୁଲରେ ପଢୁଥିବା ଗାଙ୍ଗପୁରର ଶ୍ରୀମାନ୍ ଚୂଡ଼ାମଣି ନାୟକ ଓ ନଟବର ପାଣ୍ଡେ, ରମ୍ପୈଲାର ଭକ୍ତପ୍ରସାଦ ପତି, ସମ୍ବଲପୁରର ଗୋପୀନାଥ ଶତପଥୀ ଓ ଭିନ୍ନ ଭିନ୍ନ ଗଡ଼ଜାତର କେତେକ ଉତ୍ସାହୀ ଯୁବକ ସେମାନଙ୍କ ଅଞ୍ଚଳରେ ପ୍ରଚଳିତ ବହୁ ସହସ୍ର ପ୍ରାଦେଶିକ ଶବ୍ଦ, ଢଗ ଓ ପ୍ରବଚନ ମୋତେ ଯୋଗାଇଅଛନ୍ତି । କଟକର ବାପ୍ଟିଷ୍ଟ୍ ମିଶନ୍ ପ୍ରେସ୍‌ର କର୍ତ୍ତୃପକ୍ଷମାନେ ପାଦ୍ରି ହାଓ୍ୱେଲ ସାହେବଙ୍କର ଆଠ ବର୍ଷର ପରିଶ୍ରମସମ୍ଭୂତ ଅପ୍ରକାଶିତ ଓଡ଼ିଆ-ଇଂରାଜୀ ଅଭିଧାନର ୧୫୦୦ ପୃଷ୍ଠାବ୍ୟାପୀ ପାଣ୍ଡୁଲିପି ମୋତେ ଅର୍ପଣ କରିବାରୁ ମୁଁ ତତ୍‌ପୂର୍ବେ ଓଡ଼ିଆ ଶବ୍ଦମାନଙ୍କର ଯେଉଁ ଇଂରାଜୀ ପ୍ରତିଶବ୍ଦମାନ ଲେଖିଥିଲି, ତାହାର ଶୁଦ୍ଧତା ତୁଳନା କରିବାର ଓ ଆବଶ୍ୟକସ୍ଥଳରେ ଶୁଦ୍ଧ ଇଂରେଜୀ ପ୍ରତିଶବ୍ଦ ଯୋଗ କରିବାର ସୁବିଧା ପାଇଲି । ମେଦିନୀପୁରର ଶ୍ରୀଯୁକ୍ତ ରାଧାନାଥ ପତି, ସିଂହଭୂମର ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ଜୟପୁରର ଶ୍ରୀଯୁକ୍ତ ବିକ୍ରମଦେବ ବର୍ମା ଓ ଗଞ୍ଜାମର ଜୟକୃଷ୍ଣ ଚ୍ୟାଉପଟ୍ଟନାୟକ, ଡାକ୍ତର ରାଧାଚରଣ ପଣ୍ଡା ଓ ନୟାଗଡ଼ର ପଣ୍ଡିତ ଗୋଦାବରୀଶ ମହାପାତ୍ର ପ୍ରମୁଖ ସାହିତ୍ୟସେବୀଗଣ ପ୍ରଚଳିତ ସହସ୍ରାଧିକ ପ୍ରାଦେଶିକ ଶବ୍ଦ ମଧ୍ୟ ଯୋଗାଇଲେ । ବଢ଼େଇ, କମାର, କୁମ୍ଭାର, ତନ୍ତୀ, ଶଗଡ଼ିଆ, ନାଉରିଆ, ପାନବରଜିଆ ଆଦିଙ୍କ ବ୍ୟବହୃତ ବହୁ ଶତ ଶବ୍ଦ ମଧ୍ୟ ସେହି ସେହି ବ୍ୟବସାୟୀମାନଙ୍କଠାରୁ ସଂଗ୍ରହ କଲି । ରାୟବାହାଦୁର ଅଜୟ ଚନ୍ଦ୍ର ଦାସ ପ୍ରାଚୀନ ଓଡ଼ିଆ ଗ୍ରନ୍ଥମାନ ପଢ଼ିବା ସମୟରେ ନୋଟ୍ କରି ରଖିଥିବା ଶତ ଶତ ପ୍ରାଚୀନ ଓ ପ୍ରାଦେଶିକ ଶବ୍ଦମାନ ମଧ୍ୟ ମୋତେ ଯୋଗାଇଅଛନ୍ତି । ବହୁ ସହସ୍ର ଓଡ଼ିଆ ଶବ୍ଦର ଯେଉଁ ଅର୍ଥମାନ ଦିଆଯାଇଅଛି, ତାହା ସମର୍ଥନ କରିବାପାଇଁ ଶିଷ୍ଟ ପ୍ରୟୋଗମାନ ବହୁ ଶତ ପ୍ରାଚୀନ ଓ ଆଧୁନିକ ଓଡ଼ିଆ ଗ୍ରନ୍ଥ ଓ ସମ୍ବାଦପତ୍ର ଆଦିରୁ ଅଭିଧାନରେ ସଂଯୋଜିତ କରାଯାଇଅଛି । ଏହି ଭାବରେ ଗ୍ରନ୍ଥର କଳେବର ଅପ୍ରତ୍ୟାଶିତ ଭାବରେ ବଢ଼ିଗଲା । ପ୍ରଭୁଙ୍କ ଅପାର କରୁଣାରୁ ୧୯୨୭ ସାଲ ଅଗଷ୍ଟ ମାସରେ ପାଣ୍ଡୁଲିପିର ପ୍ରାଥମିକ ଲେଖା ଏକପ୍ରକାର ସମ୍ପନ୍ନ ହେଲା ।

ଏହି ପ୍ରାଥମିକ ପାଣ୍ଡୁଲିପି ସଂକଳନରେ ମୁଁ ଏତେ ବ୍ୟାପୃତ ହୋଇପଡ଼ିଲି ଯେ, ମୋର ଅର୍ଥାଗମର ପ୍ରଧାନ ଉପାୟ ଓକିଲାତି କାର୍ଯ୍ୟ ପ୍ରାୟ ବନ୍ଦ କରିଦେଲି । ଏହି ସୁପ୍ରକାଣ୍ଡ ପାଣ୍ଡୁଲିପିର ସଂଶୋଧନ ସମ୍ମାର୍ଜନ ଓ ପରିଷ୍କରଣ ଏକାକୀ କରିବସିଲେ ଆହୁରି ଦଶ ବର୍ଷ ଅତିବାହିତ ହେବ ବୋଲି ଭାବି ସେସବୁ କାର୍ଯ୍ୟରେ କେତେକ ସହକର୍ମୀ ଓ ପରିଷ୍କରଣପାଇଁ ଶ୍ରୀମତୀ ପୀତାମ୍ବରୀ ଦେବୀଙ୍କୁ ନିଯୁକ୍ତ କଲି ।

ମୁଁ ଏଥିପୂର୍ବେ କହିଅଛି ଯେ, ବର୍ଣ୍ଣକ୍ରମରେ ଏହି ଅଭିଧାନର ପ୍ରଥମ ସଂକଳନ କାର୍ଯ୍ୟ ମୁଁ ୧୯୧୯ ସାଲରେ ଆରମ୍ଭ କରିଥିଲି । ସେ ସମୟରେ ମୁଁ ଯେଉଁ ସୂଚନା ଲେଖିଥିଲି, ତାହା ପରପୃଷ୍ଠାରେ ଦେଉଅଛି ।

ସୂଚନା - ''ଓଡ଼ିଆ ଭାଷାର କୌଣସି ପୁସ୍ତକ ପଢ଼ିବା ସମୟରେ କିମ୍ବା କୌଣସି ବାକ୍ୟ ଶୁଣିବା ସମୟରେ ତଦ୍‌ଗତ ବାକ୍ୟ ଓ ଶବ୍ଦମାନଙ୍କର ଅର୍ଥ ଜାଣିବା ଆବଶ୍ୟକ ହେଲେ, ଆଜିପର୍ଯ୍ୟନ୍ତ ଯେତେଗୁଡ଼ିଏ ଅଭିଧାନ ସଂକଳିତ ହୋଇଅଛି, ତାହା ଯଥେଷ୍ଟ (Exhaustive) ନୁହେଁ, ଏହା ମୁଁ ଅନୁଭବ କରିଅଛି । ଓଡ଼ିଆ ଭାଷା ଓ ସାହିତ୍ୟରେ ଅନେକ ଶବ୍ଦ ଓ ବିଶିଷ୍ଟ ପ୍ରୟୋଗ (Idiom) ଦେଖାଯାଏ, ଯାହା ପ୍ରକାଶିତ କୌଣସି ଅଭିଧାନରେ ମିଳେ ନାହିଁ । ଅନେକ ଗ୍ରାମ୍ୟ (Colloqual). ଘରୋଇ (homely). ଦେଶାଂଶ ପ୍ରଚଳିତ (Dialectical), ପୁରାତନ (Classical) ଶବ୍ଦ ଓ ବାକ୍ୟାଂଶ (Phrase). ଅନେକ ଜାତି ବା ବ୍ୟବସାୟବିଶେଷ ପ୍ରଚଳିତ ଶବ୍ଦ (Words peculiar to various castes and occupations). ଅନେକ ଦେଶଜ ଓ ବିଦେଶାଗତ ଶବ୍ଦ ଏବଂ ବାକ୍ୟମାନଙ୍କର ଅର୍ଥ ଜଣେ ଓଡ଼ିଆ ଭାଷାନଭିଜ୍ଞ ବ୍ୟକ୍ତିର ଜାଣିବା ନିମନ୍ତେ ଖଣ୍ଡିଏ ଉପଯୁକ୍ତ ଅଭିଧାନ ନାହିଁ କହିଲେ ଚଳେ । ଗଉଡ଼, କେଳା, ଚଷା, କମାର, ଧୋବା, କେଉଟ, ଭଣ୍ଡାରି, ତନ୍ତୀ, ତୁଳାଭିଣା, ବଢ଼େଇ, ଶଗଡ଼ିଆ, ରାଜମିସ୍ତ୍ରି, ଡମ, ପାଣ, ଚମାର, ଶିଅଳ, ଚଢ଼େଇମାରୁ, ଲୁଣିଆ, ତେଲୀ, ଗୁଡ଼ିଆ, ବାଉରୀ, କଣ୍ଡରା ଆଦିଙ୍କଦ୍ୱାରା ବ୍ୟବହୃତ ଅନେକ ଶବ୍ଦ ଆମ୍ଭେମାନେ ବୁଝିପାରୁ ନାହିଁ । ଆହୁରି ମଧ୍ୟ, ଢଗଢମାଳି, କାହାଣୀ, ଖନାବଚନ, ପ୍ରବାଦ, ବ୍ରତ, ଓଷା, ପୁରୁଣା ଗୀତ, ପାଲା, ପୁରାଣ ଆଦିରେ ଏପରି ଅନେକ ଶବ୍ଦ ଓ ବାକ୍ୟ ଆମ୍ଭମାନଙ୍କ ହାବୁଡ଼ରେ ପଡ଼େ, ଯେସବୁର ଅନ୍ଦାଜି ଅର୍ଥ କରି ଆମ୍ଭମାନଙ୍କୁ କାମ ଚଳାଇନେବାକୁ ହୁଏ । ଆହୁରି ମଧ୍ୟ ଦେଖାଯାଏ ଯେ, ମେଦିନୀପୁର, ସିଂହଭୂମ, ବଙ୍ଗଦେଶ, ଗଞ୍ଜାମ, ବିଶାଖପଟ୍ଟନ, ମଧ୍ୟପ୍ରଦେଶ, ସମ୍ବଲପୁର, ଗଡ଼ଜାତ ପ୍ରଭୃତିରେ ପ୍ରଚଳିତ ଓଡ଼ିଆ ଶବ୍ଦମାନଙ୍କରେ ଏତେ ପ୍ରଭେଦ ଓ ବିଶେଷତ୍ୱ (Dialectical peculiarities) ଅଛି ଯେ, ଏକଦେଶବାସୀ ଓଡ଼ିଆମାନେ ଅନ୍ୟ ଦେଶରେ ପ୍ରଚଳିତ ଓଡ଼ିଆ ଭାଷା ବୁଝିପାରନ୍ତି ନାହିଁ । ଏଥିର ଉଦାହରଣ ଦେଇ ଏ ପ୍ରବନ୍ଧର କଳେବର ବୃଦ୍ଧି କରିବା ମୋର ଉଦ୍ଦେଶ୍ୟ ନୁହେଁ । ଆହୁରି ମଧ୍ୟ ଦେଖାଯାଏ ଯେ, ଆମ ଭାଷାରେ Onomatopoetic (ଧ୍ୱନ୍ୟନୁକାରୀ) ଶବ୍ଦ ଅନେକ ଅଛି, କିନ୍ତୁ ଲେଖକ ଓ ଭାଷା ବ୍ୟବହାରକାରୀମାନେ ଅଜ୍ଞତାବଶତଃ ପ୍ରୟୋଜନ ସ୍ଥଳରେ ବ୍ୟବହାର କରିବା ନିମନ୍ତେ ଗୋଟିଏ ସ୍ଥାନାନୁରୂପ ଚଳୁଥିବା ଶବ୍ଦ ନ ବସାଇ, ଅନ୍ୟ ଭାଷାରୁ ଆଣି ଗୋଟିଏ ଶବ୍ଦ ବସାଇ ହାସ୍ୟାସ୍ପଦ ହୁଅନ୍ତି । ବର୍ତ୍ତମାନ ଯୁଗରେ ଓଡ଼ିଆମାନେ ଯେତେ ବେଶି ଅନ୍ୟ ଜାତି ଓ ଅନ୍ୟ ଦେଶମାନଙ୍କ ସଂସ୍ରବରେ ଆସୁଅଛନ୍ତି, ଓଡ଼ିଆ ଭାଷାଦ୍ୱରେ ସେତିକି ବେଶି ବିଦେଶୀୟ ଶବ୍ଦ ଆସି ପଶୁଅଛି ଓ ସେ ଶବ୍ଦଗୁଡ଼ିକ କ୍ରମଶଃ ଓଡ଼ିଆ ଭାଷାର ନିଜସ୍ୱ ହୋଇଯାଉଅଛି । ଅନେକ ନୂତନ ନିର୍ମିତ ଶବ୍ଦ ଭାଷାରେ ପ୍ରବେଶ ଲାଭ କରୁଅଛି । ବିଜ୍ଞାନ, ଆଇନ୍, ବ୍ୟବସାୟ, ବାଣିଜ୍ୟ, ରାଜନୀତି, କଚେରି ଆଦି ସଙ୍ଗେ ଆମ୍ଭମାନଙ୍କର ଯେତିକି ଘନିଷ୍ଠତା ବଢୁଅଛି, ସେତିକି ନୂଆ ନୂଆ ଶବ୍ଦ ଆମ ଭାଷାରେ ପଶୁଅଛି ।

''ଓଡ଼ିଆ ଭାଷାର ଆଦିମ ମାତା ସଂସ୍କୃତ ଭାଷା । ସଂସ୍କୃତ ଓ ସଂସ୍କୃତମୂଳକ ଶବ୍ଦମାନ ଓଡ଼ିଆ ଭାଷାର ମୂଳଭିତ୍ତି । କେହି କେହି କହନ୍ତି ଯେ, ଯେଉଁ ମୂଳ ସଂସ୍କୃତ ଶବ୍ଦମାନ ଓଡ଼ିଆ ଭାଷାରେ ଚଳୁଅଛି, ସେମାନଙ୍କୁ ଓଡ଼ିଆ ଅଭିଧାନରେ ସ୍ଥାନ ଦେବା ପ୍ରୟୋଜନ ନାହିଁ । କେହି କେହି କହନ୍ତି, ଦେଶାଂଶ ପ୍ରଚଳିତ ବା ଇତରଜନ ବ୍ୟବହୃତ ଅଶୁଦ୍ଧ ଶବ୍ଦମାନ ଅଭିଧାନରେ ସ୍ଥାନ ପାଇବା ଉଚିତ ନୁହେଁ । କିନ୍ତୁ ମୋର ମତ ଯେ, ଅଭିଧାନ-ସଂକଳୟିତାଙ୍କର କେବଳ ମାତ୍ର ଶବ୍ଦ ସଂଗ୍ରହ ଓ ଶବ୍ଦାର୍ଥ ଲିପିବଦ୍ଧ କରିବା କର୍ତ୍ତବ୍ୟ ଅଟେ । ଲୋକମୁଖରେ ହେଉ, ବ୍ୟବହାରରେ ହେଉ, ପୁସ୍ତକରେ ହେଉ, ଦେଶବିଶେଷରେ ହେଉ, ଜାତିବିଶେଷରେ ହେଉ, ଯେଉଁଠାରେ ସେ ଗୋଟିଏ ଶବ୍ଦ ଏକାଧିକ ବ୍ୟକ୍ତିଙ୍କଦ୍ୱାରା ବ୍ୟବହୃତ ହେଉଥିବା ଦେଖିବେ, ତାହା ସଂଗ୍ରହ କରି ଆଣି ଅଭିଧାନରେ ସ୍ଥାନ ଦେବେ । କିଏ ଶୁଦ୍ଧ, କିଏ ଅଶୁଦ୍ଧ, କେଉଁ ନିୟମ (Principle) ଅନୁସାରେ ବା କେଉଁ ଆଦର୍ଶ (Standard) ଅନୁସାରେ ଶବ୍ଦର ଶୁଦ୍ଧି ଅଶୁଦ୍ଧି ନିର୍ଣ୍ଣୀତ ହେବ, ତାହା ଅଭିଧାନକାରଙ୍କର ଇଲାକା ନୁହେଁ । ମନେକରନ୍ତୁ, ଜଣେ ବିଦେଶୀଲୋକ ଓଡ଼ିଆ ଭାଷା ଶିକ୍ଷା କରୁଅଛନ୍ତି । ସେ ବାଉରୀ ସାହିରେ ପହଞ୍ଚି ସେଠାରେ ବାଉରାଣୀଙ୍କ ମୁହଁରୁ 'ଚାଉର' ଶବ୍ଦଟି ଶୁଣିଲେ, କିନ୍ତୁ କିଏ ତାଙ୍କୁ ବୁଝାଇଦେବ ଯେ, 'ଚାଉର' ଅଶୁଦ୍ଧ ଓ ପ୍ରକୃତରେ ତାହା 'ଚାଉଳ' ହେବା ଉଚିତ ? ସେ କୌଣସି ଅଭିଧାନରୁ ଯଦି ଏଥିର ଆଭାସ ନ ପାଆନ୍ତି, ତାହାହେଲେ ସେ ଉକ୍ତ ଶବ୍ଦଟି ବୁଝିବାକୁ ଅକ୍ଷମ ହେବେ । ଜାତିବିଶେଷଙ୍କର ବା ସ୍ଥାନବିଶେଷର ଉଚ୍ଚାରଣ ଗୁଣରୁ ଓ ଜଳବାୟୁର ପ୍ରଭାବରୁ ଭାଷା ଓ ଶବ୍ଦମାନ ରୂପାନ୍ତରିତ ହୋଇଥାଏ ଓ ଗୋଟିଏ ଶବ୍ଦ ଭିନ୍ନ ଭିନ୍ନ ଆକାର ଧାରଣ କରିଥାଏ । ମୋର ମତ ଯେ, ଦେଶାଂଶ ପ୍ରଚଳିତ ଓ ଇତରଜନ ବ୍ୟବହୃତ ଶବ୍ଦମାନ, ସାଧାରଣତଃ ଯାହାକୁ ଆମ୍ଭେମାନେ ଉଚ୍ଚାରଣଦୃଷ୍ଟିରେ ବା ଅର୍ଥଦୃଷ୍ଟିରେ ଅଶୁଦ୍ଧ ବୋଲି କହୁଁ [ଯଥା - ଚାଉର (ଳ), ବଉର (ଳ), ନେଉର (ଳ) ମେତେ (ମୋତେ), ସୁନ୍ଦେରୀ (ସୁନ୍ଦରୀ), ଗନି (ଗଲି), ଚେପା (ପେଚା), ଅନୁରାଗ (କ୍ରୋଧ), ଆସନ (ଶୟନ), ଅନ୍ଧକ୍ବାର (ଅନ୍ଧକାର), ବ୍ରତମାନ (ବର୍ତ୍ତମାନ), ଆସ୍ରିପାଦ (ଆଶୀର୍ବାଦ), ଦ୍ରଶନ (ଦର୍ଶନ), ପରଚକ୍ଷୁ (ପ୍ରଚକ୍ଷୁ), ଚକ୍ଷୁ (ଚକ୍ଷୁ), ଯିମି (ଯିବି), ଗୁଡ଼ (ଗୋଡ଼), ବଟାଇବା (ପଠାଇବା)] ସେଗୁଡ଼ିକ ଅଭିଧାନରେ ସ୍ଥାନ ପାଇବା ଉଚିତ । ଅଥଚ ଉକ୍ତ ଶବ୍ଦମାନଙ୍କ ସମ୍ବନ୍ଧରେ ସେହି ଶବ୍ଦ ସଙ୍ଗେ ତହିଁର ଇତିହାସ ନୋଟ୍ ହେବା ଉଚିତ । ବରଞ୍ଚ ଏପରି ପ୍ରୟୋଗ ଅଶୁଦ୍ଧ ବୋଲି ଲେଖା ରହିବାରେ ଆପତ୍ତି ନାହିଁ; କିନ୍ତୁ ଗୋଟିଏ ପ୍ରଚଳିତ ଶବ୍ଦକୁ ଏକାବେଳକେ ଅଶୁଦ୍ଧ ବୋଲି ଅଭିଧାନର ହତାରୁ ବାହାର କରିଦେଲେ, ଉକ୍ତ ଅଭିଧାନଟି ଅସମ୍ପୂର୍ଣ୍ଣ ହେଲା ବୋଲି ମୋର ମତ ଅଟେ ।

''କଥିତ ଶବ୍ଦ ଓ ଲିଖିତ ସାହିତ୍ୟରେ ଯେଉଁ ଶବ୍ଦମାନ ସାଧାରଣତଃ ବ୍ୟବହୃତ ହେବାର ଦେଖାଯାଏ, ସେଗୁଡ଼ିକର ଆକ୍ଷରିକ, ପ୍ରାକୃତିକ ଓ ପ୍ରଚଳିତ ଅର୍ଥ, ବ୍ୟବହାର,

ଇତିହାସ, ପ୍ରକୃତି ଓ ବିଶେଷତ୍ୱ ଆଦି ଲିପିବଦ୍ଧ କରି ରଖିବା ଅଭିଧାନ ଲେଖକଙ୍କର କର୍ତ୍ତବ୍ୟ ବୋଲି ମୁଁ ମନେକରେଁ । ଏ ଶବ୍ଦଟି ଅଶୁଦ୍ଧ, ଅବ୍ୟବହାର୍ଯ୍ୟ, ଅଶ୍ଳୀଳ, ଇତରଜନ ବ୍ୟବହୃତ, ପ୍ରାଚୀନପ୍ରୟୋଗ, ବିଦେଶୀୟ, ଯାବନିକ ବୋଲି ଉକ୍ତ ଶବ୍ଦକୁ ଅଭିଧାନରେ ସ୍ଥାନ ନ ଦେବା ମୋ ମତରେ ପ୍ରକୃତ କର୍ତ୍ତବ୍ୟ ନୁହେଁ । 'ଭାଷାକୋଷ'ରେ ସମସ୍ତ ବ୍ୟବହୃତ ଶବ୍ଦ ସ୍ଥାନ ପାଇବ ଓ ତହିଁ ସଙ୍ଗେ ସଙ୍ଗେ ଉକ୍ତ ଶବ୍ଦ ସମ୍ବନ୍ଧରେ ଅଭିଧାନକାର ତାଙ୍କର ମନ୍ତବ୍ୟସମ୍ବଳିତ ନୋଟ୍ ଲିପିବଦ୍ଧ କରିପାରିବେ ।''

''କିନ୍ତୁ ଏ ପ୍ରଣାଳୀରେ ଶବ୍ଦ ସଂଗ୍ରହ କରିବା କାର୍ଯ୍ୟରେ ମଧ୍ୟ ଗୁରୁତର ବିଚାରଣୀୟ ବିଷୟ ଅଛି । ଅଧାପାଠୁଆ ଓ କଚିରିଆମାନେ ଅନେକ ସମୟରେ ହ୍ରସ୍ୱ ଇ, ଦୀର୍ଘ ଈ; ହ୍ରସ୍ୱ ଉ, ଦୀର୍ଘ ଊ; ଦନ୍ତ୍ୟ ସ, ତାଲବ୍ୟ ଶ, ମୂର୍ଦ୍ଧନ୍ୟ ଷ; ଅନ୍ତଃସ୍ଥ ଯ, ବର୍ଗ୍ୟ ଜ ର ପ୍ରଭେଦ ପ୍ରତି ଆଦୌ ଦୃଷ୍ଟି ରଖନ୍ତି ନାହିଁ । ଏ ବ୍ୟବହାର ସର୍ବଥା ପରିହାର୍ଯ୍ୟ, କାରଣ ଏଗୁଡ଼ିକ ଅଶୁଦ୍ଧ । କେତେକ ସ୍ଥାନରେ କ୍ଲୋଥ (କୋଳଥ), ନୌତନ (ନୂତନ) ପରି ଶବ୍ଦର ବ୍ୟବହାର ମଧ୍ୟ ଦେଖାଯାଏ । ତଥାପି ମୋର ମତ ଯେ, ଅଭିଧାନରେ ଏଥିର ମଧ୍ୟ ଆଭାସ ଓ ନୋଟ୍ ରହିବା ଉଚିତ । କେହି କେହି କହନ୍ତି ଯେ, ସେତେବେଳେ କଥାବାର୍ତ୍ତା ସମୟରେ ଓ ଉଚ୍ଚାରଣରେ ଆମ୍ଭମାନଙ୍କ ଭାଷାରେ ଦନ୍ତ୍ୟ ସ, ତାଲବ୍ୟ ଶ, ମୂର୍ଦ୍ଧନ୍ୟ ଷ, ଇ, ଈ, ଉ, ଊ, ଯ ଓ ଜ ର ପ୍ରଭେଦ ରହୁ ନାହିଁ ମାତ୍ର ଲେଖାରେ ସେ ପ୍ରଭେଦ ରଖିବାର ଆବଶ୍ୟକତା କଅଣ ? ଭାଷାରେ ଗୋଟିଏ 'ଇ', ଗୋଟିଏ 'ଉ' ଗୋଟିଏ 'ସ', ଗୋଟିଏ 'ଜ', ଗୋଟିଏ 'ବ' ରଖିଲେ ଓ ଙ, ଞ, ଋ ୠ ଉଠାଇ ଦେଲେ ବର୍ଣ୍ଣମାଳା କମିଯିବ ଏବଂ ସଂଯୁକ୍ତ ବର୍ଣ୍ଣମାନ ଉଠାଇ ଦେଇ ହଳନ୍ତ ସାହାଯ୍ୟରେ ଯୁକ୍ତାକ୍ଷରମାନ ପ୍ରକାଶ କଲେ ଓଡ଼ିଆ ଭାଷା ସରଳ ହୋଇଯିବ । ଯେ ହେଉ, ଏ ବିଷୟ ଅଭିଧାନ ସଂଗ୍ରାହକଙ୍କର ଇଲାକା ବହିର୍ଭୂତ ଅଟେ । ମୋ ମତରେ ଅଭିଧାନକାରଙ୍କର 'ଗଲି ଅଇଲି, ଯାହା ଦେଖିଥିଲି ତାହା କହିଲି', 'କାନ୍ଧୁଥା, ଯାହା ପାଉଥିବୁ ବାନ୍ଧୁଥା' - ଏହି ମନ୍ତ୍ର ପୁରଶ୍ଚରଣ କରିବା କର୍ତ୍ତବ୍ୟ । ଭାଷାତତ୍ତ୍ୱବିତ୍ ଓ ସାହିତ୍ୟିକମାନେ ଶବ୍ଦମାନଙ୍କର ବିଶୁଦ୍ଧତା ଓ ଅଶୁଦ୍ଧତା ମୀମାଂସା କରନ୍ତୁ । ଅଭିଧାନକାର ପୂର୍ବେ ବା ବର୍ତ୍ତମାନ ଯେଉଁଠାରେ ଯାହା କଥିତ ବା ଲିଖିତ ହେଉଥିବା ଦେଖିବେ, ତାହା ସବୁ ସଂଗ୍ରହ କରି ରଖିଯିବେ ।''

''ଓଡ଼ିଆ ଭାଷାର ଖଣ୍ଡିଏ 'ଶବ୍ଦକୋଷ' ସଂକଳିତ ହେଲେ, ଭାଷାର ଗୋଟିଏ ପ୍ରଧାନ ଅଭାବ ଦୂର ହୁଅନ୍ତା ବୋଲି ମୁଁ ବହୁ ଦିନରୁ ଅନୁଭବ କରୁଥିଲି । ମିଃ ହେଣ୍ଡରସନ୍ ମୋତେ ପହିଲେ ମଧ୍ୟ ଏହି ଉପଦେଶ ଦେଇଥିଲେ । ସ୍ୱର୍ଗତ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ସଂକଳିତ ଅଭିଧାନର ପାଣ୍ଡୁଲିପି ପ୍ରଥମେ ମୋର ହସ୍ତଗତ ହେବା ସମୟରେ ଯେଉଁ ଯେଉଁ ଅକ୍ଷରମାନ ମୋର ହସ୍ତଗତ ହୋଇଥିଲା, ସେଥିରେ ମୁଁ ଅନେକ ଭାଷାପ୍ରଚଳିତ ଶବ୍ଦ ଯୋଗ କରି ଦେଇଥିଲି; କିନ୍ତୁ ନାନା କାରଣରୁ ପଣ୍ଡିତ ମହାଶୟଙ୍କର ଅଭିଧାନକୁ ମୋ

ମନ ଅନୁସାରେ ଶବ୍ଦ-ପ୍ରଚୁର କରିବା ମୋ ଭାଗ୍ୟରେ ଘଟିଲା ନାହିଁ । ଫଳତଃ ମୋର ବାସନା ଅପୂର୍ଣ୍ଣ ରହିଗଲା । ଗୋଟିଏ ଶବ୍ଦ-ପ୍ରଚୁର ନିରପେକ୍ଷ ଓଡ଼ିଆ ଶବ୍ଦକୋଷ ସଂକଳନ କରିବାର ଗୁରୁତର କାର୍ଯ୍ୟଭାର ବହନ କରିବା ମୋ ପକ୍ଷରେ ଅସମ୍ଭବ । ସେଥିଲାଗି ଯେଉଁ ଭାଷାଭିଜ୍ଞତା, ଅନୁସନ୍ଧିତ୍ସା, ଅଧ୍ୟବସାୟ, ଶବ୍ଦପାଣ୍ଡିତ୍ୟ, ଭ୍ରମଣଶୀଳତା, ନାନା ସ୍ଥାନ ଓ ପୁସ୍ତକରୁ ଶବ୍ଦ ସଂଗ୍ରହ କରିବାର ଶକ୍ତି ଓ ସମୟ ଆବଶ୍ୟକ, ତାହା ମୋର ନାହିଁ । କେତେକ ସାହିତ୍ୟିକ ବନ୍ଧୁଙ୍କୁ ଏ ଭାର ଗ୍ରହଣ କରିବା ନିମନ୍ତେ ଅନୁରୋଧ କଲି; କିନ୍ତୁ ଫଳତଃ ଏ କ୍ଷେତ୍ରରେ କାହାରିକୁ ନିଷ୍ଠା ସହିତ ଅଗ୍ରସର ହେବା ଦେଖିଲି ନାହିଁ । ଏପରି ସ୍ଥଳରେ ଅଗତ୍ୟା ଏ ଗୁରୁଦାୟିତ୍ୱରେ ମୁଁ ହସ୍ତକ୍ଷେପ କଲି ଓ ଏ ଶବ୍ଦକୋଷଟି ପ୍ରକାଶିତ ଓ ମୁଦ୍ରିତ ହେବା ପୂର୍ବରୁ ଭିନ୍ନ ଭିନ୍ନ ଉତ୍କଳଭାଷୀ ଅଞ୍ଚଳର ଅଭିଜ୍ଞ ଓ ସାହିତ୍ୟନିଷ୍ଠ ବନ୍ଧୁମାନଙ୍କୁ ଦେଖାଇ ଏ ଶବ୍ଦକୋଷକୁ ଓଡ଼ିଆ ଭାଷାର Comprehensive 'ଶବ୍ଦକୋଷ' ରୂପରେ ସର୍ବସାଧାରଣଙ୍କ ହସ୍ତରେ ସମର୍ପଣ କରିବି ବୋଲି ଇଚ୍ଛା କରି ଶ୍ରୀ ପରାତ୍ପରଙ୍କ ନାମରେ ଏ ଦୁରୂହ କାର୍ଯ୍ୟରେ ହସ୍ତକ୍ଷେପ କରୁଅଛି । ଗତ ଛଅ ବର୍ଷ ହେଲା ଟିପାଟିପି କରି ଶବ୍ଦ ସଂଗ୍ରହ କରିଥିଲି ଓ ୧୯୧୬।୧୭ରେ ତାକୁ ଅକ୍ଷରକ୍ରମରେ ସଜାଇଥିଲି । ଆଜି ଉକ୍ତ ଟିପାମାନଙ୍କରୁ ପ୍ରଥମ ଶବ୍ଦ ପାଣ୍ଡୁଲିପିରେ ଲେଖିବାକୁ ଆରମ୍ଭ କଲି । ଇତି ।

ପ୍ରଭୁଙ୍କ କରୁଣାରୁ ଶବ୍ଦସଂଗ୍ରହର ପ୍ରାଥମିକ କାର୍ଯ୍ୟ ୧୩।୮।୨୭ରେ ଶେଷ ହେଲା । ଇତି ମଧ୍ୟରେ ବିହାର-ଓଡ଼ିଶା ଗଭର୍ଣ୍ଣମେଣ୍ଟ Vernacular Development Committee (ପ୍ରାଦେଶିକ ସାହିତ୍ୟବିବର୍ଦ୍ଧିନୀ ସମିତି) ନାମରେ ଗୋଟିଏ ସମିତି ସାର୍ ଅଲି ଇମାମ୍‌ଙ୍କ ସଭାପତିତ୍ୱରେ ଗଠନ କଲେ ଓ ତହିଁର ୨୬।୨।୨୬ ତାରିଖର ବିଶିଷ୍ଟ ଅଧିବେଶନକୁ ଉତ୍କଳର ବିଭିନ୍ନ ଅଞ୍ଚଳର କେତେକ ଓଡ଼ିଆ ଭାଷା-ପଣ୍ଡିତ ଓ ପ୍ରୋଫେସର୍ ବିଜୟଚନ୍ଦ୍ର ମଜୁମ୍‌ଦାରଙ୍କୁ ନିମନ୍ତ୍ରଣ କରିଥିଲେ । ବିଶାଖାପାଟଣାର ଶ୍ରୀଯୁକ୍ତ ବିକ୍ରମଦେବ ବର୍ମାଙ୍କ (ଯେଉଁ ମହାତ୍ମା ବର୍ତ୍ତମାନ ଜୟପୁର ରାଜଗାଦି ଅଳଂକୃତ କରୁଅଛନ୍ତି) ପ୍ରସ୍ତାବ, ପ୍ରୋଫେସର୍ ମଜୁମ୍‌ଦାରଙ୍କ ଅନୁମୋଦନ ଓ ସର୍ବସମ୍ମତିକ୍ରମେ ଧାର୍ଯ୍ୟ ହେଲା ଯେ ସମଗ୍ର ଉତ୍କଳଭାଷୀ ଅଞ୍ଚଳରେ ସର୍ବଜନବ୍ୟବହୃତ ଶବ୍ଦାବଳିସମ୍ବଳିତ ଓଡ଼ିଆ ଭାଷାର ଗୋଟିଏ ସ୍ୱତନ୍ତ୍ର ଅଭିଧାନ ଓଡ଼ିଆ ଭାଷାର ଶ୍ରୀବୃଦ୍ଧି ସାଧନପାଇଁ ଏକାନ୍ତ ଆବଶ୍ୟକ । ସେତେବେଳକୁ ମୋର ପାଣ୍ଡୁଲିପି ଦନ୍ତ୍ୟ 'ସ' ପର୍ଯ୍ୟନ୍ତ ଅଗ୍ରସର ହୋଇଥାଏ । ଉକ୍ତ ଅଭିଧାନର ପାଣ୍ଡୁଲିପିକୁ ଉପସ୍ଥିତ ଭଦ୍ରବ୍ୟକ୍ତିଗଣଙ୍କୁ ଦେଖାଇବାରେ ସେମାନେ ଏହାକୁ ସ୍ୱାଗତସମ୍ଭାଷଣ କଲେ । ଏହି ନିର୍ଦ୍ଧାରଣ ବିହାର-ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କର ୨୧।୧୦।୨୭ ତାରିଖର ୪୧୩ ନମ୍ବର (ଇ) ରିଜଲିଉସନ୍ ସଙ୍ଗେ ମୁଦ୍ରିତ ହୋଇଥିଲା । ଉକ୍ତ ନିର୍ଦ୍ଧାରଣଦ୍ୱାରା ଉତ୍ସାହିତ ହୋଇ ମୁଁ ଭାଷାକୋଷ ମୁଦ୍ରଣର ଅର୍ଥ ସାହାଯ୍ୟପାଇଁ ବିହାର-ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରରେ ଉପସ୍ଥିତ ହେଲି । ବିହାର-ଓଡ଼ିଶାର ତଦାନୀନ୍ତନ ଶିକ୍ଷାବିଭାଗର ଡାଇରେକ୍ଟର ଲ୍ୟାମ୍ବର୍ଟ୍

ସାହେବଙ୍କ ଅନୁରୋଧକ୍ରମେ କଟକର ବାପ୍ଟିଷ୍ଟ ମିସନାରୀ ଶ୍ରୀଯୁକ୍ତ ପାଇକ୍ (Revd. Mr. H. W. Pike) ବାଇବଲ ନୂତନ ସମାଚାରର ଆଧୁନିକ ଓଡ଼ିଆ ଅନୁବାଦକ ଓ ଜଣେ ଓଡ଼ିଆ ଭାଷା ପଣ୍ଡିତ) ମୋହର ପାଣ୍ଡୁଲିପିଗୁଡ଼ିକ ବହୁସ୍ଥାନରେ ତନ୍ନ ତନ୍ନ କରି ପରୀକ୍ଷାପୂର୍ବକ ଗଭର୍ଣ୍ଣମେଣ୍ଟକୁ ଜଣାଇଲେ ଯେ, ''ବର୍ତ୍ତମାନ ଓଡ଼ିଆ ଭାଷାରେ ଏ ଅଭିଧାନର ପାସଙ୍ଗରେ ପଡ଼ିବା ଭଳି କୌଣସି ଅଭିଧାନ ନାହିଁ; ଏହି ବିରାଟ ମୂଲ୍ୟବାନ୍ ଗ୍ରନ୍ଥ ଛାପା ହେଲେ ଓଡ଼ିଆ ଭାଷାର ଗୋଟିଏ ପ୍ରଧାନ ଅଭାବ ପୂରଣ ହେବ ଓ ଏହା ଉତ୍କଳ ଭାଷା ତଥା ସାହିତ୍ୟ ଚର୍ଚ୍ଚା ପକ୍ଷରେ ପ୍ରତିଦିନ ଲୋଡ଼ା ଗୋଟିଏ ବିଶିଷ୍ଟ ଅଭିଜ୍ଞାନ ଗ୍ରନ୍ଥ ହେବ; ଏହାକୁ 'ଭାଷାକୋଷ' ନ କହି 'ବିଶ୍ୱକୋଷ' ଆଖ୍ୟା ଦିଆଯାଇପାରେ ।''

ଲାମ୍ବର୍ଟ୍ ସାହେବ ମଧ ଶ୍ରୀଯୁକ୍ତ ବିଶ୍ୱନାଥ କର ଓ ପ୍ରୋଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ ଏ ଅଭିଧାନ ବିଷୟ ପଚାରିବାରେ ସେମାନେ ଏଥି ପକ୍ଷରେ ଅନୁକୂଳ ମତ ଦେଲେ । ଉତ୍କଳର ପ୍ରାୟ ସବୁ ବିଶିଷ୍ଟ ସମ୍ବାଦପତ୍ର (ଉତ୍କଳଦୀପିକା, ଦୈନିକ ଆଶା, ପ୍ରଜାତନ୍ତ୍ର, ୟଙ୍ଗ ଉତ୍କଳ, ସମାଜ, ଗଡ଼ଜାତବାସିନୀ, ପଲ୍ଲିବାସୀ, ଶକ୍ତି)ମାନଙ୍କର ସମ୍ପାଦକମାନେ ପାଣ୍ଡୁଲିପିମାନ ପରୀକ୍ଷା କରି ଅନୁକୂଳ ମନ୍ତବ୍ୟଦ୍ୱାରା ମୋତେ ଉତ୍ସାହିତ କଲେ ।

ମହାତ୍ମା ଗାନ୍ଧି ୧୯୨୭ ସାଲରେ କଟକ ଆସିଥିବା ସମୟରେ ତାଙ୍କୁ ଏବଂ ତାଙ୍କ ସହଚର କାକା କାଲେଲ୍‌କାର୍‌ଙ୍କୁ ପାଣ୍ଡୁଲିପିର କେତେକ ଅଂଶ ପଢ଼ି ଶୁଣାଇ ଦିଆଯିବାରେ ସେମାନେ କେତେଗୁଡ଼ିଏ ସୂଚନା ଦେଇ ମୋତେ ଉତ୍ସାହିତ କରିଥିଲେ । ଯେଉଁଦିନ (ଗହ୍ମା ପୂର୍ଣ୍ଣମୀ) ମୋର ପାଣ୍ଡୁଲିପିର ଏକଓଡ଼ିକିଆ ଲେଖା ଶେଷ ହେଲା, ସେଦିନ ସ୍ୱର୍ଗତ ଗୋପବନ୍ଧୁ ଦାସ ମୋ ଗୃହକୁ ଆସି ମୋତେ ସାଦର ସମ୍ଭାଷଣ କଲେ ଓ ତାଙ୍କ 'ସମାଜ'ରେ ଏ ଗ୍ରନ୍ଥର ମୂଲ୍ୟବତ୍ତା ଓ ଉପାଦେୟତା ପ୍ରଚାର କରି ମୋତେ ବିଶେଷ ଉତ୍ସାହିତ କଲେ ।

ଗଭର୍ଣ୍ଣମେଣ୍ଟ ମୋତେ ଲିଖିତ ଭାବରେ ସରକାରୀ ପତ୍ରଦ୍ୱାରା ଜଣାଇଲେ ଯେ ''ଆପଣଙ୍କର ଭାଷାକୋଷ ଓଡ଼ିଆ ଭାଷାର ଅନୁଶୀଳନାର୍ଥ ଗୋଟିଏ ମୂଲ୍ୟବାନ୍ ଉପାଦାନରୂପେ ଗୃହୀତ ହେବ ବୋଲି ଗଭର୍ଣ୍ଣମେଣ୍ଟ ଅବଧାରଣ କରୁଅଛନ୍ତି ।'' ଗଭର୍ଣ୍ଣମେଣ୍ଟଙ୍କର ସେ ସମୟରେ ଅର୍ଥକୃଚ୍ଛ୍ରତା ଯୋଗୁଁ 'ଭାଷାକୋଷ'ର ମୁଦ୍ରଣ ଓ ପରିମାର୍ଜନପାଇଁ ଗଭର୍ଣ୍ଣମେଣ୍ଟଙ୍କଠାରୁ ପ୍ରାର୍ଥିତ ଅର୍ଥ ସାହାଯ୍ୟ ବିଷୟରେ ଅନୁକୂଳ ଆଦେଶ ପାଇବାରେ କିଛିଦିନ ବିଳମ୍ବ ଘଟିଲା । ଏଥି ମଧରେ ପାଣ୍ଡୁଲିପିଗୁଡ଼ିକର ସମ୍ମାର୍ଜନ, ତହିଁରେ ଶିଷ୍ଟ ପ୍ରୟୋଗ ଯୋଜନା ଓ ତାକୁ ଛାପାଖାନାପାଇଁ ଉପଯୋଗୀ କରିବାକୁ ସେଗୁଡ଼ିକର ପରିଷ୍କରଣ କାର୍ଯ୍ୟ କିପରି ସମାହିତ ହେବ, ଏହାହିଁ ମୋର ପ୍ରଧାନ ଚିନ୍ତାର ବିଷୟ ହେଲା । ଏଥି ସକାଶେ ମୋର ସହକର୍ମୀମାନଙ୍କ ପାରିଶ୍ରମିକ ଓ ମୋର ନିଜର ଖୋରାକିପାଇଁ ମାସିକ ତିନି ଶହ ଟଙ୍କା ଲୋଡ଼ା ପଡ଼ିଲା । ମୁଁ ଓକିଲାତି ଛାଡ଼ିଥିବାରୁ ଏ

ଅର୍ଥସଂସ୍ଥାନପାଇଁ ଅନନ୍ୟୋପାୟ ହୋଇ ପଡ଼ିଲି ଓ ସମ୍ବାଦପତ୍ରମାନଙ୍କରେ ସର୍ବସାଧାରଣଙ୍କୁ ଅର୍ଥ ଓ ଆଗତୁରା ଅର୍ଡ଼ର ପ୍ରାର୍ଥନା କଲି । ୧୯୨୮ ଅକ୍ଟୋବର ମାସରେ କଳାହାଣ୍ଡିର ମହାରାଜ ଶ୍ରୀ ବ୍ରଜମୋହନ ଦେବ ମୋର ଅଭାବ ଶ୍ରବଣ କରି ମୋତେ ଏକ ହଜାର ଟଙ୍କା ଏକକାଳୀନ ଦାନ କଲେ । ଏହାହିଁ ସମ୍ପାର୍ଜନ କାର୍ଯ୍ୟରେ ମୋତେ ଅଗ୍ରସର କରାଇଲା । ତତ୍ପରେ ବର୍ଦ୍ଧମାନର ମହାରାଜ ଶ୍ରୀ ବିଜୟ ଚନ୍ଦ୍ର ମହତାପ ବାହାଦୁର (ଯେ କି ଓଡ଼ିଶାର କୁଜଙ୍ଗ ରାଜ୍ୟର ଅଧୀଶ୍ୱର ଅଟନ୍ତି) ଅଢ଼େଇ ଶତ ଟଙ୍କା ଓ ଟିକିଟିର ସାହିତ୍ୟପ୍ରାଣ ବାନପ୍ରସ୍ଥ ରାଜା ଶ୍ରୀ ରାଧାମୋହନ ରାଜେନ୍ଦ୍ର ଦେବ ସମ୍ପାର୍ଜନାଦିର ବ୍ୟୟ ବହନାର୍ଥ ସ୍ୱତଃ ପ୍ରଣୋଦିତ ହୋଇ ଏକହଜାର ଟଙ୍କା ଦେବାକୁ ସ୍ୱୀକାର କଲେ ଏବଂ ସେହି ବାବଦକୁ ମୋତେ ଛଅ ଶହ ଟଙ୍କା ଦାନ କଲେ । କଟକର ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ ଗୋଟିଏ ଓଡ଼ିଆ 'ବିଶ୍ୱକୋଷ' ସଂକଳନ କରିବା ନିମନ୍ତେ ପରିକଳ୍ପନା କରିଥିଲେ, କିନ୍ତୁ ସେ ମୋର ପାଣ୍ଡୁଲିପିମାନ ଦେଖି ଗୋଟିଏ ବିଶେଷ ଅଧିବେଶନ ମୋ ଘରଠାରେ କରି ନିର୍ଦ୍ଧାରଣ କଲେ ଯେ, ସଂଘଦ୍ୱାରା ଗୋଟିଏ ସ୍ୱତନ୍ତ୍ର ବିଶ୍ୱକୋଷ ସଂକଳିତ ହେବ ନାହିଁ ଓ ମୋ ଅଭିଧାନକୁ ପୂର୍ଣ୍ଣାଙ୍ଗ କରିବାପାଇଁ ମୋତେ ସଂଘ ସାହାଯ୍ୟ ଦେବେ । ଏହି ନିର୍ଦ୍ଧାରଣ ଫଳରେ ଜଣେ ସମାର୍ଜକ ପଣ୍ଡିତଙ୍କର ଚାରି ମାସର ଦରମା ଏକ ଶହ କୋଡ଼ିଏ ଟଙ୍କା ଉକ୍ତ ସାହିତ୍ୟ ପ୍ରଚାର ସଂଘର ସମ୍ପାଦକ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ମୋତେ ସାହାଯ୍ୟ କଲେ ।

ଏହି ଅର୍ଥମାନ ହସ୍ତଗତ ହେବା ପରେ ମୁଁ ଭଗବାନ୍‌ଙ୍କ ଅପାର କରୁଣା ଉପରେ ନିର୍ଭର କରି ସମ୍ପାର୍ଜନ କାର୍ଯ୍ୟ ଓ ଶ୍ରୀମତୀ ପୀତାମ୍ବରୀ ଦେବୀଙ୍କଦ୍ୱାରା ପରିଷ୍କରଣ କାର୍ଯ୍ୟ ଆରମ୍ଭ କରିଦେଲି । ଦୁଇଜଣ ଓଡ଼ିଆ ଗ୍ରାଜୁଏଟ୍, ଦୁଇଜଣ ଅଣ୍ଡର୍ ଗ୍ରାଜୁଏଟ୍, ଦୁଇଜଣ ପଣ୍ଡିତ ଓ ଶ୍ରୀମତୀ ପୀତାମ୍ବରୀଙ୍କୁ ନେଇ ମୁଁ ସମ୍ପାର୍ଜନ କାର୍ଯ୍ୟ ୧୯୨୮ ନଭେମ୍ବର ମାସରେ ଆରମ୍ଭ କଲି । ଇତିମଧ୍ୟରେ ମୋ ସହକର୍ମୀମାନଙ୍କର ମଧ୍ୟେ ମଧ୍ୟେ ପରିବର୍ତ୍ତନ ଘଟିଅଛି । କିନ୍ତୁ ମୋ ସହକର୍ମୀ ପୁରୀ ଜିଲ୍ଲାର ନୂଆ ସୋମେଶ୍ୱରପୁର ନିବାସୀ ଶ୍ରୀମାନ୍ ଚନ୍ଦ୍ରଶେଖର ମିଶ୍ର ବି.ଏ. ସମ୍ପାର୍ଜନ କାର୍ଯ୍ୟର ଆରମ୍ଭରୁ ଆଜିପର୍ଯ୍ୟନ୍ତ ମୋତେ ସାହାଯ୍ୟ କରି ଆସିଅଛନ୍ତି । ମୋ ସ୍ୱହସ୍ତ ଲିଖିତ ପାଣ୍ଡୁଲିପିମାନ ଅନ୍ୟୂନ ତିରିଶ ହଜାର ଫୁଲ୍‌ସ୍କେପ୍ ପୃଷ୍ଠାସମ୍ବଳିତ ଶତାଧିକ ଖଣ୍ଡ ଖାତା ଅଧିକାର କରିବାରୁ ସେମାନ ସ୍ଥାନାନ୍ତରକୁ ନେଇ କୌଣସି ବ୍ୟକ୍ତିଙ୍କୁ ଦେଖାଇବା ଅସମ୍ଭବ ହୋଇପଡ଼ିଲା । ସୌଭାଗ୍ୟକ୍ରମେ ବହୁ ଭାରତୀୟ ଓ ପାଶ୍ଚାତ୍ୟ ବିଦ୍ୱାନ୍ ଓ ଭାଷାତତ୍ତ୍ୱଜ୍ଞ ମନୀଷୀ ଏବଂ ସାହିତ୍ୟାନୁରାଗୀ ବ୍ୟକ୍ତି ମୋ ଉଦ୍ୟମ ବିଷୟ ଅବଗତ ହୋଇ ମୋ ଗୃହରେ ପଦାର୍ପଣ କରି ପାଣ୍ଡୁଲିପିମାନଙ୍କର ଅଂଶବିଶେଷ ପରିଦର୍ଶନ ଓ ପରୀକ୍ଷା କରି ମୋତେ ଶତ ମୁଖରେ ପ୍ରଶଂସା କରିବାଦ୍ୱାରା ଏବଂ କେତେଗୁଡ଼ିଏ ସୂଚନା ଓ ସଂକେତ ଦେବାଦ୍ୱାରା ମୋତେ ସମୁତ୍ସାହିତ କରିବାକୁ ଲାଗିଲେ । ଏହି ଉଦାରମନା ମନୀଷୀମାନଙ୍କ ମଧ୍ୟରେ ଉତ୍କଳର ବରପୁତ୍ର କୁଳବୃଦ୍ଧ ମଧୁସୂଦନ, ଭାରତର ବରପୁତ୍ର

ମହାତ୍ମା ଗାନ୍ଧୀ, ବିଶ୍ୱବିଖ୍ୟାତ ଆଣ୍ଡ୍ରୁଜ୍, ବିହାର-ଓଡ଼ିଶା ଫାଇନାନ୍ସ ମେମ୍ବର୍ ମାନ୍ୟବର ରାଜା ରାଜେନ୍ଦ୍ର ନାରାୟଣ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ଶ୍ରୀମାନ୍ ନୀଳକଣ୍ଠ, କଲିକତାର ପାଦ୍ରି ଶ୍ରୀଯୁକ୍ତ ପପ୍ଲି ଓ ଟକ୍କର୍, କଟକ ଟ୍ରେନିଂ କଲେଜର ପ୍ରିନ୍ସିପାଲ୍, ହେଣ୍ଡର୍‌ସନ୍ ଓ ହ୍ୱିଟ୍‌ମୋର୍, ଗୁଜରାଟ ବିଦ୍ୟାପୀଠର ଅଧ୍ୟକ୍ଷ ଆଚାର୍ଯ୍ୟ କାଲେଲ୍‌କାର୍ ପ୍ରଧାନ ଅଟନ୍ତି । ୧୯୨୯ ଜାନୁଆରୀ ମାସରେ ବିହାର-ଓଡ଼ିଶା ଶିକ୍ଷାବିଭାଗର ଡାଇରେକ୍ଟର ଶ୍ରୀଯୁକ୍ତ ଫକସ୍ ସାହେବ ପାଣ୍ଡୁଲିପିମାନ ପରିଦର୍ଶନ ଓ ପରୀକ୍ଷା କରି ଗ୍ରନ୍ଥ ଛାପା ହେଲେ ଏକ ସାର ଗ୍ରନ୍ଥକୁ ୩୫ ଟଙ୍କା ମୂଲ୍ୟରେ ୧୧୪ ସାର ଗ୍ରନ୍ଥ ବିହାର-ଓଡ଼ିଶା ଶିକ୍ଷାବିଭାଗ ପକ୍ଷରୁ କ୍ରୟ କରିବାପାଇଁ ବଚନ ଦେଲେ । ଶ୍ରୀ ବିକ୍ରମଦେବ ବର୍ମାଙ୍କ ପ୍ରେରଣାକ୍ରମେ ମାନ୍ଦ୍ରାଜ ଶିକ୍ଷାବିଭାଗର ଡାଇରେକ୍ଟର ପଚାଶ ଖଣ୍ଡ ଓ ବଙ୍ଗ ଶିକ୍ଷାବିଭାଗର ଡାଇରେକ୍ଟର ଦଶ ଖଣ୍ଡ ଗ୍ରନ୍ଥ କିଣିବାପାଇଁ ମଧ୍ୟ ଆଶା ଦେଲେ । କଟକର ତଦାନୀନ୍ତନ ମାଜିଷ୍ଟ୍ରେଟ ଓ କଲେକ୍ଟର ଶ୍ରୀଯୁକ୍ତ ପେକ୍ ସାହେବ ୧୯୨୯ ମାର୍ଚ୍ଚ ମାସରେ ଏ ପାଣ୍ଡୁଲିପିମାନ ପରିଦର୍ଶନ କଲେ । ସେ କେତେଗୁଡ଼ିଏ ଶବ୍ଦର ଅର୍ଥ, ଟୀକା ଓ ଟିପ୍ପଣୀମାନ ଆଲୋଚନା କରି ଅତ୍ୟନ୍ତ ପ୍ରୀତ ହେଲେ ଏବଂ ତାଙ୍କର ଅନୁରୋଧକ୍ରମେ ଓଡ଼ିଶାର ତତ୍‌କାଳୀନ କମିଶନର ଶ୍ରୀଯୁକ୍ତ ହବାକ୍ ସାହେବ ୧୯୨୯ ଜୁଲାଇ ମାସରେ ଏହା ପରିଦର୍ଶନ କରି ଏଥିରେ ଥିବା ଜ୍ୟୋତିଷିକ ଓ ଉଦ୍ଭିଦବିଦ୍ୟାବିଷୟକ କେତେଗୁଡ଼ିଏ ଶବ୍ଦର ଟୀକା ଦେଖି ପରମ ପରିତୋଷ ଲାଭ କଲେ ଏବଂ ଜ୍ୟୋତିଷିକ ଶବ୍ଦମାନଙ୍କ ସମ୍ବନ୍ଧରେ କେତେଗୁଡ଼ିଏ ମୂଲ୍ୟବାନ୍ ଉପଦେଶ ଦେଇ ମୋତେ ଖଣ୍ଡିଏ ପ୍ରାମାଣିକ ଇଂରାଜୀ ଜ୍ୟୋତିଷିକ ଗ୍ରନ୍ଥ (Astronomy without a telescope) ପାଠ କରିବାପାଇଁ ଦେଲେ । ଶ୍ରୀଯୁକ୍ତ ହବାକ୍ ସାହେବ ପାଣ୍ଡୁଲିପିରୁ ଗଭୀର ଗବେଷଣା ଓ ଅଧ୍ୟବସାୟର ପ୍ରମାଣ ପାଇ ଏପରି ପ୍ରସନ୍ନ ହେଲେ ଯେ, ସେ ଶିକ୍ଷାବିଭାଗର ଡାଇରେକ୍ଟରଙ୍କ ସଙ୍ଗେ ପରାମର୍ଶ କରି ବିହାର-ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କୁ ବେସରକାରୀ ଭାବରେ ସୁପାରିସ କଲେ କି, ଏପରି ଅନନ୍ୟସାଧାରଣ ଗବେଷଣାପୂର୍ଣ୍ଣ ଗ୍ରନ୍ଥର ସମ୍ମାର୍ଜନ ଓ ମୁଦ୍ରଣରେ ଗଭର୍ଣ୍ଣମେଣ୍ଟଙ୍କର ମୁକ୍ତହସ୍ତତା ସହିତ ସାହାଯ୍ୟ କରିବା ବିଧେୟ; କାରଣ ଛାପା ହେଲେ ଏ ଗ୍ରନ୍ଥ କେବଳ ମାତ୍ର ଉତ୍କଳର ବିଦ୍ୱନ୍ମଣ୍ଡଳୀ ଓ ରାଜନ୍ୟମଣ୍ଡଳୀରେ ନୁହେଁ, ଉତ୍କଳ ବାହାରେ ସମଗ୍ର ଭାରତରେ ଓ ଇଉରୋପ ଆଦି ସଭ୍ୟଜଗତର ବିଦ୍ୱଦ୍‌ସମାଜରେ ମଧ୍ୟ ସାଦର ସମ୍ଭାଷଣ ଲାଭ କରିବାକୁ ସମର୍ଥ ହେବ । ବିହାର-ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କ ଅର୍ଥ-ସଦସ୍ୟ ମାନ୍ୟବର କନିକାର ରାଜାସାହେବ ୧୯୨୯ ଅକ୍ଟୋବର ମାସରେ ପାଣ୍ଡୁଲିପିମାନ ପରିଦର୍ଶନ କଲେ ଓ ଗଭର୍ଣ୍ଣମେଣ୍ଟଙ୍କ ଉପଦେଶକ୍ରମେ ଓଡ଼ିଶାର ତଦାନୀନ୍ତନ ଏକ୍ଟିଙ୍ଗ୍ କମିଶନର୍ ପୂର୍ବୋକ୍ତ ପେକ୍ ସାହେବ ୧୯୨୯ ଡିସେମ୍ବରରେ ମୁଦ୍ରଣର ଏଷ୍ଟିମେଟ୍ ଗଭର୍ଣ୍ଣମେଣ୍ଟଙ୍କୁ ପ୍ରେରଣ କଲେ । ଉକ୍ତ ରିପୋର୍ଟ ଶିକ୍ଷାବିଭାଗର ଡାଇରେକ୍ଟର ଶ୍ରୀଯୁକ୍ତ ଫକସ୍ ସାହେବ, ମନ୍ତ୍ରୀ ମାନ୍ୟବର ସାର୍ ଫକରୁଦ୍ଦିନ୍, ସେକ୍ରେଟରି ଶ୍ରୀଯୁକ୍ତ ଗୋଖଲେ, ଅର୍ଥସଦସ୍ୟ ମାନ୍ୟବର ରାଜା ରାଜେନ୍ଦ୍ରନାରାୟଣ, ଏକ୍‌ଜିକ୍ୟୁଟିଭ କମିଟିର ସଭାପତି

ମାନ୍ୟବର ସିମ୍ପ୍‌ସନ୍ ଓ ଲାଟ ସାର୍ ଷ୍ଟିଫେନ୍‌ସନ୍ ମହୋଦୟମାନଙ୍କ ଛାମୁରେ ଉପସ୍ଥାପିତ ହେବାରୁ ବିହାର-ଓଡ଼ିଶା ଗଭର୍ଣ୍ଣମେଣ୍ଟ ୩୦।୧।୩୦ ର ଆଦେଶପତ୍ରଦ୍ୱାରା ଏକହଜାର ଖଣ୍ଡ ଗ୍ରନ୍ଥ ଛାପିବାପାଇଁ ଆଦେଶ ପ୍ରଦାନ କଲେ ଓ ପ୍ରାଥମିକ ଏଷ୍ଟିମେଟ୍ ଅନୁସାରେ ମୁଦ୍ରଣବ୍ୟୟର ଅର୍ଦ୍ଧେକ ଅର୍ଥାତ୍ ଚଉଦ ହଜାର ଦୁଇ ଶହ ଟଙ୍କା, ସମ୍ମାର୍ଜନ ବ୍ୟୟପାଇଁ ଆଂଶିକ ସାହାଯ୍ୟ ପାଞ୍ଚ ହଜାର ଟଙ୍କା ଦାନ କରିବେ ବୋଲି ଆଦେଶ ଦେଲେ । ଗ୍ରନ୍ଥ ଛାପାହେଲେ ଦୁଇ ଶହ ଖଣ୍ଡରୁ ଅନଧିକ ଗ୍ରନ୍ଥ ତଦାନୀନ୍ତନ ପରିକଳ୍ପିତ ମୂଲ୍ୟ ଚାଳିଶ ଟଙ୍କାର ଅର୍ଦ୍ଧେକ ଅର୍ଥାତ୍‌ ଏକ ସାରକୁ କୋଡ଼ିଏ ଟଙ୍କାରେ ମୁଁ ଗଭର୍ଣ୍ଣମେଣ୍ଟଙ୍କୁ ବିକ୍ରି କରିବି ବୋଲି ଗଭର୍ଣ୍ଣମେଣ୍ଟ ମୋଠାରୁ ବଚନ ନେଲେ ।

ବିହାର-ଓଡ଼ିଶା କାଉନ୍ସିଲର ଡେପୁଟି ପ୍ରେସିଡେଣ୍ଟ ମୋର କନିଷ୍ଠପ୍ରତିମ ଶ୍ରୀମାନ୍ ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତି ଆଡ୍‌ଭୋକେଟ୍ 'ଭାଷାକୋଷ' ପାଇଁ ଅର୍ଥସଂସ୍ଥାନର ଚେଷ୍ଟା ଅବିରତ କରିଆସିଅଛନ୍ତି । ବିହାର-ଓଡ଼ିଶାର ଲାଟ୍‌ସାହେବଙ୍କଠାରୁ ଆରମ୍ଭ କରି ପୋଲିଟିକାଲ୍ ଏଜେଣ୍ଟ କମିଶନର୍ ଓ କଲେକ୍ଟରଙ୍କ ପର୍ଯ୍ୟନ୍ତ ଉଚ୍ଚ କର୍ମଚାରୀ ଓ ଧନୀମାନଙ୍କ ନିକଟରେ 'ଭାଷାକୋଷ' ପାଇଁ ଆନୁକୂଲ୍ୟ ଓ ସାହାଯ୍ୟ ଭିକ୍ଷା କରିବାରେ ଏବଂ ଅଳି କଜିବାରେ ସେ ସ୍ୱତଃପ୍ରବୃତ୍ତ ହୋଇ ସର୍ବଦା ଲାଗିଅଛନ୍ତି । ସମ୍ଭବତଃ ଗତ ପାଞ୍ଚ ବର୍ଷ ମଧ୍ୟରେ ଯେକୌଣସି ଉପଲକ୍ଷରେ ଯେକୌଣସି ଉଚ୍ଚ ରାଜକର୍ମଚାରୀ ବା ବିଦ୍ୟୋତ୍ସାହୀ ଧନୀଙ୍କ ସଙ୍ଗେ ତାଙ୍କର ସାକ୍ଷାତ୍ ହୋଇଅଛି, ସେ ସୁଯୋଗ ଖୋଜି, ସେମାନଙ୍କ ନିକଟରେ 'ଭାଷାକୋଷ'ର ମୁଦ୍ରଣ ସାହାଯ୍ୟ-ପ୍ରସଙ୍ଗ ଉତ୍ଥାପନ କରିବାକୁ ଛାଡ଼ି ନାହାନ୍ତି । ଶ୍ରୀମାନ୍ ଲକ୍ଷ୍ମୀଧରଙ୍କର ଏପରି ଜ୍ୱଳନ୍ତ ଉତ୍ସାହ ଓ ଉଦ୍ୟମ ନିୟୋଜିତ ହୋଇ ନ ଥିଲେ 'ଭାଷାକୋଷ'ର ମୁଦ୍ରଣ ଓ ପ୍ରକାଶ ଆଜି ଯେତେଦୂର ସୁଗମ ହୋଇଅଛି, ତାହା ହୋଇ ନ ଥାନ୍ତା ବୋଲି ମୋର ବିଶ୍ୱାସ ।

ଗଭର୍ଣ୍ଣମେଣ୍ଟଙ୍କ ଆଦେଶ ପାଇଲା ପରେ ଗଡ଼ଜାତସମୂହର ତଦାନୀନ୍ତନ ପୋଲିଟିକାଲ୍ ଏଜେଣ୍ଟ ଓ କମିଶନର୍ ଗୁଣଗ୍ରାହୀ ସ୍କଟ୍ ସାହେବ ମହୋଦୟ ଏ ଉଦ୍ୟମର ବିଶିଷ୍ଟତା ଉପଲବ୍ଧି କରି ଆଦେଶ ଦେଲେ ଯେ, ସରକାରଙ୍କ ସାକ୍ଷାତ୍ ଶାସନାଧୀନ ଆଠଗଡ଼, ବାମଣ୍ଡା ଆଦି ସାତଗୋଟି ଷ୍ଟେଟ୍ ପ୍ରତ୍ୟେକେ ଏକ ସାରକୁ ତିରିଶ ଟଙ୍କା ରେଟ୍‌ରେ ଦୁଇ ସାର ଲେଖାଏଁ ଗ୍ରନ୍ଥପାଇଁ ଅଗ୍ରିମ ମୂଲ୍ୟ ଦେଇ ଆଗତୁରା ଅର୍ଡ଼ର ଦିଅନ୍ତୁ । ଉତ୍କଳର ରୁଲିଙ୍ଗଚିଫ୍‌ମାନେ ଏ ବିରାଟ ଉଦ୍ୟମର ନିଶ୍ଚେ ପୃଷ୍ଠପୋଷକ ହେବେ ବୋଲି ସ୍କଟ୍ ସାହେବ ନିଜର ଦୃଢ଼ ବିଶ୍ୱାସ ଥିବାର ମଧ୍ୟ ପ୍ରକାଶ କଲେ ।

୧୯୩୦ ଜୁନ୍ ମାସରେ 'ଭାଷାକୋଷ'ର ଛାପା ନମୁନା ଅଠର ପୃଷ୍ଠା, ଅନୁଷ୍ଠାନପତ୍ର ଓ ଅର୍ଡ଼ର୍‌ଫର୍ମ ସମ୍ବଳିତ ଖଣ୍ଡିଏ ପୁସ୍ତକ ମୁଁ ଉତ୍କଳର, ଭାରତର ଓ ସଭ୍ୟଜଗତର ବିଶିଷ୍ଟ ବ୍ୟକ୍ତି ଓ ସାହିତ୍ୟସଭାମାନଙ୍କ ନିକଟକୁ ପ୍ରେରଣ କଲି । ଇଉରୋପ ଓ ଆମେରିକାର ପ୍ରଧାନ ପ୍ରଧାନ ବିଦ୍ୟୋତ୍ସାହୀ ବ୍ୟକ୍ତିମାନଙ୍କ ନାମ ମୋତେ ଶ୍ରୀଯୁକ୍ତ ଫକସ୍ ସାହେବ ମହୋଦୟ ଦୟା କରି ଯୋଗାଇଲେ ।

ପାଣ୍ଡୁଲିପିର ଯେଉଁ କେତେକ ଅଂଶ ନମୁନାପାଇଁ ଛାପା ହେଲା, ସେଥିରୁ ସେ ସମୟରେ ଅନୁମାନ କରାଯାଇଥିଲା ଯେ, ସମଗ୍ର ଗ୍ରନ୍ଥ ଛାପା ହେଲେ ରୟାଲ୍ ଚଉଠ (Royal Quarto) ଆଡ଼ାର ୩୬୦୦ ପୃଷ୍ଠା ଅଧିକାର କରିବ ଓ ତାହା ଦୁଇ ଭାଗରେ ବନ୍ଧା ହେବ ଏବଂ ଏଥିର ମୁଦ୍ରଣାଦିରେ ଅନ୍ୟୂନ ତିରିଶ ହଜାର ଟଙ୍କା ଲାଗିବ । ସମ୍ମାର୍ଜନ ଓ ମୁଦ୍ରଣାଦି ବ୍ୟୟର ଅଧିକାଂଶ ଗଭର୍ଣ୍ଣମେଣ୍ଟ ଓ କେତେକ ଦାନଶୀଳ ବ୍ୟକ୍ତି ବହନ କରିଥିବାରୁ ସେ ସମୟରେ ସ୍ଥିର ହୋଇଥିଲା ଯେ, ସମଗ୍ର ଛାପା ଗ୍ରନ୍ଥ (ଦୁଇ ଖଣ୍ଡ)ର ମୂଲ୍ୟ ଟ ୪୦ (ଚାଳିଶ ଟଙ୍କା) କରାଯିବ ଓ ଯେଉଁମାନେ ଏକକାଳୀନ ଆଗତୁରା ମୂଲ୍ୟ ଦେବେ, ସେମାନଙ୍କପାଇଁ ତିରିଶ ଟଙ୍କା କରାଯିବ । ଏଥିମଧ୍ୟରେ କଳାହାଣ୍ଡି ମହାରାଜ ପଚିଶଖଣ୍ଡ, କେନ୍ଦୁଝର ରାଜାସାହେବ ଦଶ ଖଣ୍ଡ, ଧରାକୋଟ ରାଜାସାହେବ ଦଶ ଖଣ୍ଡ, ସୋନପୁର ମହାରାଜ ଛଅ ଖଣ୍ଡ, ଖରସୁଆଁ ରାଜାସାହେବ ଦୁଇ ଖଣ୍ଡ, ଚିକିଟିର ରାଜାସାହେବ ତିନି ଖଣ୍ଡ, ପାରିସ୍ ପ୍ରାଚ୍ୟସମିତି, କଲିକତା ଇମ୍ପିରିଆଲ୍ ଲାଇବ୍ରେରି, ଢାକା ବିଶ୍ୱବିଦ୍ୟାଳୟ ଲାଇବ୍ରେରିଆନ୍, ମୁଙ୍ଗେରର ରାଜା ରଘୁନନ୍ଦନ ସିଂହ, ଜର୍ମାନୀ, ନରଓୟେ ଓ ଇଟାଲୀର ପ୍ରାଚ୍ୟ-ସାହିତ୍ୟସଭାମାନ ଏବଂ ଓଡ଼ିଶାର କେତେଗୁଡ଼ିଏ ମାଇନର ସ୍କୁଲର ହେଡ୍ ମାଷ୍ଟର, ବିଶିଷ୍ଟ ଭୂସ୍ୱାମୀ ଓ ବିଦ୍ୟୋତ୍ସାହୀ ଗ୍ରାହକ, ମୁଙ୍ଗେର ଜିଲ୍ଲାର ଜାମୁଇ ହାଇସ୍କୁଲର ହେଡ୍‌ମାଷ୍ଟର ଏବଂ ପୁରୀ, କଟକ ଓ ଗଞ୍ଜାମର ଡିଷ୍ଟ୍ରିକ୍ଟବୋର୍ଡ଼ମାନେ ଏକ ଏକ ସାର ଗ୍ରନ୍ଥପାଇଁ ଆଗତୁରା ଅର୍ଡ଼ର ଦେଇଅଛନ୍ତି । ଏଥିମଧ୍ୟରେ ଗ୍ରନ୍ଥପ୍ରକାଶର ବ୍ୟୟପାଇଁ କେନ୍ଦୁଝରର ରାଜା ଶ୍ରୀ ବଳଭଦ୍ର ନାରାୟଣ ଭଞ୍ଜଦେବ ପାଞ୍ଚ ଶତ ଟଙ୍କା, ଗଞ୍ଜାମ ହରିଡ଼ାଖଣ୍ଡି ମଠର ଟ୍ରଷ୍ଟି ଶ୍ରୀଯୁକ୍ତ ରାଏସାହେବ ଅପ୍ପା ରାଓ ପଚାଶ ଟଙ୍କା ସାହାଯ୍ୟ କରିଅଛନ୍ତି ।

ଗଭର୍ଣ୍ଣମେଣ୍ଟଙ୍କ ଅଙ୍ଗୀକୃତ ସମ୍ମାର୍ଜନବ୍ୟୟସାହାଯ୍ୟ ପାଞ୍ଚହଜାର ଟଙ୍କା ୧୯୩୦ ମାର୍ଚ୍ଚ ମାସରେ ଓ ମୁଦ୍ରଣ ବ୍ୟୟପାଇଁ ଅଙ୍ଗୀକୃତ ଚଉଦ ହଜାର ଦୁଇ ଶହ ଟଙ୍କା ମଧ୍ୟରୁ ଦଶ ହଜାର ଟଙ୍କା ୧୯୩୦ ଜୁଲାଇ ମାସରେ ମିଳିଲା । ପାଣ୍ଡୁଲିପିର ସାଫି ହୋଇଥିବା ଅଂଶମାନ ମୋର ସାହିତ୍ୟଗୁରୁ ଉତ୍କଳସାହିତ୍ୟ ପ୍ରେସ୍‌ର ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ବିଶ୍ୱନାଥ କରଙ୍କ ହସ୍ତରେ ୧୯୩୦ ଅକ୍ଟୋବର ମାସରେ ଅର୍ପଣ କଲି । ତଦବଧି ସହକର୍ମୀମାନେ ସମ୍ମାର୍ଜିତ ପାଣ୍ଡୁଲିପିଗୁଡ଼ିକ ସାଫି କରିବାରେ ଲାଗିଅଛନ୍ତି ଏବଂ ସାଫି ହେଉଥିବା ଅଂଶମାନ ଛାପାଖାନାକୁ ପଠାଯାଇ ତାହା କ୍ରମଶଃ ମୁଦ୍ରିତ ହେଉଅଛି ।

ଚାରି ଭାଷାର ଅକ୍ଷରରେ ଗୋଟିଏ ଗ୍ରନ୍ଥ ମୁଦ୍ରିତ ହେବାପାଇଁ ଓଡ଼ିଶାର ଛାପାଖାନାମାନଙ୍କରେ କେତେଦୂର ସୁବିଧା ଅଛି ତାହା ଭୁକ୍ତଭୋଗୀ ମାତ୍ରକେ ଜାଣନ୍ତି । ଏଥିଯୋଗୁଁ ବଙ୍ଗଳା ଓ ହିନ୍ଦୀ ପ୍ରତିଶବ୍ଦମାନଙ୍କରେ ଅନେକ ସ୍ଥାନରେ ମୁଦ୍ରଣପ୍ରମାଦ ରହିଯାଇଅଛି । ଯେଉଁ ହେଣ୍ଡରସନ୍ ସାହେବ ଓଡ଼ିଆ ଅଭିଧାନ ସଂକଳନପାଇଁ ୧୬ ବର୍ଷ ପୂର୍ବେ ମୋତେ ସଙ୍କେତ ଦେଇଥିଲେ, ସେ ୧୯୨୯ ସାଲରେ ଟ୍ରେନିଙ୍ଗ୍ କଲେଜର ପ୍ରିନ୍ସିପାଲ୍ ସ୍ୱରୂପ କଟକକୁ ପୁନର୍ବାର ଆସି ମୋତେ ବଚନ ଦେଇଥିଲେ ଯେ, ମୁଦ୍ରିତ

ପ୍ରୁଫସିଟ୍‌ମାନ ସେ ସ୍ୱୟଂ ସଂଶୋଧନ କରିବେ; କିନ୍ତୁ ବିଧାତା ତାହା ସହିଲା ନାହିଁ । ତାଙ୍କର ଅକାଳ ବିୟୋଗଦ୍ୱାରା ମୁଁ ତାଙ୍କ ପ୍ରତିଶ୍ରୁତ ସାହାଯ୍ୟରୁ ବଞ୍ଚିତ ହେଲି । ତପୂରେ ଟ୍ରେନିଙ୍ଗ୍ କଲେଜର ପ୍ରିନ୍ସିପାଲ୍ ହୁଇଟ୍‌ମୋର୍ ସାହେବ ଦୟା କରି ମୁଦ୍ରିତ ପ୍ରୁଫସିଟ୍‌ମାନଙ୍କର ଇଂରାଜୀ ଅଂଶମାନ ସଂଶୋଧନ କରୁଥିଲେ; କିନ୍ତୁ ସେ ଗଭର୍ଣ୍ଣମେଣ୍ଟ ଚାକିରିରୁ ଅବସର ଗ୍ରହଣ କରି 'ଅ' ଅକ୍ଷର ଛାପା ଶେଷହେବା ସମୟରୁ ଭାରତ ତ୍ୟାଗ କରିବାରୁ ସେ ସୁଯୋଗରୁ ମଧ୍ୟ ମୁଁ ବଞ୍ଚିତ ହୋଇଅଛି । ଏପରି ଅବସ୍ଥାରେ ଏ ଗ୍ରନ୍ଥର ଇଂରାଜୀ ଅଂଶରେ ମଧ୍ୟ ଅନେକ ମୁଦ୍ରଣପ୍ରମାଦ ରହିଗଲା । ପ୍ରୁଫସିଟ୍‌ମାନ ସଂଶୋଧନ କରିବାପାଇଁ ସାଧାରଣତଃ ଛାପାଖାନାମାନଙ୍କରେ ଯେଉଁ ବ୍ୟବସ୍ଥା ଥାଏ, ଏ କ୍ଷେତ୍ରରେ ତାହାଠାରୁ ଢେର୍ ବେଶି ବ୍ୟବସ୍ଥା କରାଯାଇଅଛି । ଗାଲିପ୍ରୁଫଠାରୁ ଆରମ୍ଭ କରି ଫାଇନାଲ୍ ପ୍ରୁଫ ପର୍ଯ୍ୟନ୍ତ ଉତ୍କଳ ସାହିତ୍ୟ ପ୍ରେସର ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ବିଶ୍ୱନାଥ କର ଓ ସହକର୍ମୀ ଶ୍ରୀମାନ୍ ପଦ୍ମଚରଣ ଦାଶ, ମୋର ସହକର୍ମୀ ଶ୍ରୀମାନ୍ ଚନ୍ଦ୍ରଶେଖର ଓ ମୁଁ ନିଜେ - ଏହିପରି ଚାରିଜଣଯାକ ମିଶି ପ୍ରୁଫର ପ୍ରତି ଅଂଶକୁ ଅନ୍ତତଃ ସାତଥର ସଂଶୋଧନ କରିଅଛୁଁ । ଶ୍ରୀମାନ୍ ପଦ୍ମଚରଣ ବିଶେଷ ଯତ୍ନ ଓ ଅସାଧାରଣ ଅଧ୍ୟବସାୟ ସହକାରେ ପ୍ରୁଫସିଟ୍‌ମାନଙ୍କୁ ତନ୍ନ ତନ୍ନ କରି ସଂଶୋଧନ କରୁଅଛନ୍ତି । ତଥାପି ଚାରିଭାଷାସମ୍ବଳିତ ମୁଦ୍ରିତ ଗ୍ରନ୍ଥରେ ଅନେକ ତ୍ରୁଟି ଓ ପ୍ରମାଦ ରହି ଯାଇଅଛି । ଆଶା କରେ, ଆମ୍ଭେମାନେ ପ୍ରୁଫ ସଂଶୋଧନ କାର୍ଯ୍ୟରେ କ୍ରମଶଃ ଯେତିକି ଅଭ୍ୟସ୍ତ ହେଉଥିବୁଁ, ପରବର୍ତ୍ତୀ ଖଣ୍ଡମାନଙ୍କରେ ମୁଦ୍ରଣପ୍ରମାଦର ଆଶଙ୍କା ସେତିକି କମି ଯାଉଥିବ ।

ଟ୍ରେନିଙ୍ଗ୍ କଲେଜର ଅଧ୍ୟକ୍ଷ ହେଣ୍ଡରସନ୍ ସାହେବଙ୍କ ସମ୍ମତିକ୍ରମେ କଟକ ଟ୍ରେନିଙ୍ଗ୍ ସ୍କୁଲର ସଂସ୍କୃତ ଓ ଓଡ଼ିଆ ସାହିତ୍ୟ ଏବଂ ଭାଷାର ଅଧ୍ୟାପକ ଉତ୍କଳର ସୁପରିଚିତ ସାହିତ୍ୟିକ ପଣ୍ଡିତ ଶ୍ରୀଯୁକ୍ତ କୁଳମଣି ଦାଶ କାବ୍ୟତୀର୍ଥ ମହାଶୟ ପାଣ୍ଡୁଲିପିଗୁଡ଼ିକର ସମ୍ମାର୍ଜ୍ଜନ କରୁଅଛନ୍ତି । ଅନେକ ସ୍ଥଳରେ ଯେଉଁ ଯେଉଁ ଭାଷାଗତ, ଅର୍ଥଗତ, ବ୍ୟାକରଣଗତ ଓ ରଚନାଗତ ଦୋଷମାନ ଥିଲା, ତାହା ସେ ମହାଶୟ ସଂଶୋଧନ କରିଅଛନ୍ତି । ପଣ୍ଡିତ ମହାଶୟଙ୍କର ହାତ ଲାଗି ନ ଥିଲେ ଏ ଗ୍ରନ୍ଥରେ ଅନେକ ଭାଷାଗତ ଅଶୁଦ୍ଧି ରହିଯାଇ ଥାଆନ୍ତା ।

ମୋର କନିଷ୍ଠକଳ୍ପ ଶ୍ରୀମାନ୍ ନୀଳକଣ୍ଠ ଦାଶ ଏମ୍.ଏ. ଥରେ ପାଣ୍ଡୁଲିପିଗୁଡ଼ିକ ଦେଖି ପ୍ରୟୋଜନ ସ୍ଥଳରେ ସମ୍ମାର୍ଜ୍ଜନ କରିବାପାଇଁ ପ୍ରତିଶ୍ରୁତ ହୋଇଥିଲେ ଓ ତଦନୁସାରେ ମୋ ନିକଟରେ ଦୁଇ ତିନି ମାସ ଅବସ୍ଥାନ କରି 'କ' ଅକ୍ଷରର କେତେକ ଅଂଶର ପାଣ୍ଡୁଲିପିରେ ସମ୍ମାର୍ଜ୍ଜନ ମଧ୍ୟ କରିଥିଲେ । ଭାରତବ୍ୟାପୀ ରାଜନୀତିକ ଆନ୍ଦୋଳନ ତାଙ୍କୁ ଥୟ କରି ଦେଲା ନାହିଁ ଏବଂ ସମ୍ମାର୍ଜ୍ଜନ କାର୍ଯ୍ୟରେ ମୁଁ ତାଙ୍କ ମୂଲ୍ୟବାନ୍ ସାହାଯ୍ୟରୁ ବଞ୍ଚିତ ହୋଇଅଛି ।

'ଭାଷାକୋଷର' ସମ୍ମାର୍ଜ୍ଜନ ସମୟରେ ଶବ୍ଦମାନଙ୍କର ବିଭାଗକରଣ, ଅବର୍ଗ୍ୟ ଓ ବର୍ଗ୍ୟ 'ବ'ର ପ୍ରଭେଦ ଜ୍ଞାପକ ଚିହ୍ନ ନିରୂପଣ, ବର୍ଣ୍ଣମାଳାକ୍ରମେ 'କ୍ଷ' ଅକ୍ଷରର ସ୍ଥାନ

ନିର୍ଦ୍ଦେଶ; ଅନୁସ୍ୱାର, ବିସର୍ଗ ଓ ଚନ୍ଦ୍ରବିନ୍ଦୁ ସଂଯୁକ୍ତ ଅକ୍ଷରମାନଙ୍କର ସ୍ଥାନ ନିର୍ଣ୍ଣୟ, ସାଙ୍କେତିକ ଚିହ୍ନମାନଙ୍କର ବ୍ୟବହାର ଇତ୍ୟାଦି କେତେଗୁଡ଼ିଏ ବିଷମ ସମସ୍ୟା ଉପସ୍ଥିତ ହେଲା । ତେଣୁ ୧୯୩୦ ମାର୍ଚ୍ଚ ମାସରେ ଶ୍ରୀଯୁକ୍ତ ବିଶ୍ୱନାଥ କର, ପ୍ରୋଫେସର୍ ଆର୍ତ୍ତବଲ୍ଲଭ, ରାୟବାହାଦୁର ଅଜୟଚନ୍ଦ୍ର, ରାୟସାହେବ ଭିକାରୀଚରଣ, ଶ୍ରୀମାନ୍ ଚିନ୍ତାମଣି ଆଚାର୍ଯ୍ୟ, ଶ୍ରୀ ଆର୍ତ୍ତତ୍ରାଣ ଶତପଥୀ, ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ର, ଶ୍ରୀ କୁଳମଣି ଦାଶ, ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ, ଶ୍ରୀ ଅଗଣି ଦାଶ, ପଣ୍ଡିତ ଶ୍ରୀ ଆକୁଳ ମିଶ୍ର, ପଣ୍ଡିତ ଶ୍ରୀ ରତ୍ନାକର ଗରାବଡୁ ଓ ମୋର ସହକର୍ମୀମାନଙ୍କୁ ଘେନି ଗୋଟିଏ ପରାମର୍ଶସଭା ହୋଇଥିଲା । ତହିଁରେ ଆଲୋଚନାଦ୍ୱାରା ଯାହା ମୀମାଂସିତ ହେଲା, ତାହାହିଁ ଏ ଭାଷାକୋଷରେ ଅନୁସୃତ ହୋଇଅଛି ।

ଦେଖାଯାଏ ଯେ, ସାଧାରଣ ଲେଖାରେ ଓ ବିଶେଷତଃ ଅଶିକ୍ଷିତ ଓ କଚିରିଆ ଲେଖାଳିମାନଙ୍କ ଲେଖାରେ ଦେଶଜ ଓ ବୈଦେଶିକ ଶବ୍ଦମାନଙ୍କ ବନାନ ସମ୍ବନ୍ଧରେ କୌଣସି ଦୃଢ଼ ନିୟମ ପାଳନ କରାଯାଏ ନାହିଁ । ଏକ ଶବ୍ଦକୁ କେହି ହ୍ରସ୍ୱ ଇ, କେହି ଦୀର୍ଘ ଈ ଯୁକ୍ତ କରି ଲେଖନ୍ତି । ଏହିପରି ହ୍ରସ୍ୱ ଉ, ଦୀର୍ଘ ଊ; ଦନ୍ତ୍ୟ ସ, ତାଲବ୍ୟ ଶ ଓ ମୂର୍ଦ୍ଧନ୍ୟ ଷ; ବର୍ଗ୍ୟ ଜ, ଅନ୍ତଃସ୍ଥ ଯ ର ବ୍ୟବହାର ସମ୍ବନ୍ଧରେ ଲେଖାରେ ସ୍ଥିରତା ନ ଥିବାର ଦେଖାଯାଏ (ଯଥା - କେହି ଲେଖେ ମୃତ, କେହି ଲେଖେ ମୃତ; ସୂତା, ସୁତା; ଏହା, ୟେହା; କୂଅ, କୁଅ; ଜାହାଜ, ଯାହାଯ; ଷ୍ଟେସନ୍, ସ୍ଟେଷନ) । ଶବ୍ଦମାନଙ୍କର ସମୋଚ୍ଚାରିତ ଅକ୍ଷରବିଶିଷ୍ଟ ସବୁ ଆକାରମାନ ଭାଷାକୋଷରେ ସ୍ଥାନ ପାଇଲେ ଗ୍ରନ୍ଥର କଳେବର ଅଯଥା ବଢ଼ିଯିବ, ଏହି ଆଶଙ୍କା ଯୋଗୁଁ ଶଂସିତ ପରାମର୍ଶସଭାରେ ବହୁ ତର୍କବିତର୍କ ଓ ଆଲୋଚନା ପରେ ସ୍ଥିର ହେଲା ଯେ - ଏ ଶ୍ରେଣୀର ଶବ୍ଦମାନଙ୍କର ଗୋଟିଏ ମାତ୍ର ବନାନ ଥିବା ଆକାର ଭାଷାକୋଷରେ ସ୍ଥାନ ପାଇବ । ଉକ୍ତ ଶବ୍ଦମାନଙ୍କର ଅନ୍ୟ ସମୋଚ୍ଚାରିତ ଆକାରମାନ ସହଜରେ ଜାଣିବାପାଇଁ ପ୍ରତ୍ୟେକ ପୃଷ୍ଠାର ଶିରୋଭାଗରେ ପ୍ରାୟ ସମୋଚ୍ଚାରିତ ବର୍ଣ୍ଣମାନଙ୍କର ଗୋଟିଏ ଧାଡ଼ିମୂଳିଆ ତାଲିକା ଉପର ତଳ ହୋଇ ଦିଆଗଲେ ଏହି ତାଲିକାରେ ଥିବା କୌଣସି ବର୍ଣ୍ଣଯୁକ୍ତ ଶବ୍ଦର ଗୋଟିଏ ଆକାର ଦେଖିଲେ ଉକ୍ତ ଶବ୍ଦର ଅନ୍ୟ ଆକାରମାନ ଏ ଭାଷାକୋଷରେ ଶବ୍ଦ ଖୋଜିବା ପାଠକ ସହଜରେ ସ୍ଥିର କରିପାରିବେ । ପରାମର୍ଶସଭାର ଏହି ନିର୍ଦ୍ଧାରଣମତେ ପ୍ରତ୍ୟେକ ପୃଷ୍ଠାର ଡାହାଣ ପୁଡ଼ାର ଶିରୋଭାଗରେ ସମୋଚ୍ଚାରିତ ବର୍ଣ୍ଣମାନ ଦିଓଟି ଧାଡ଼ିରେ ଉପର ତଳ ହୋଇ ଦିଆଯାଇଅଛି ଏବଂ ବାଆଁ ପୁଡ଼ାରେ ଉକ୍ତ ବର୍ଣ୍ଣଯୁକ୍ତ ଶବ୍ଦମାନଙ୍କର ଅନ୍ୟ ବନାନ ଥିବା ଆକାର କିପରି ଧରାପଡ଼ିବ ତହିଁର ସୂତ୍ର ବୁଝାଇ ଦିଆଯାଇଅଛି । ଏ ଗ୍ରନ୍ଥର ଯେକୌଣସି ପୃଷ୍ଠା ଫିଟାଇଲା କ୍ଷଣି ପ୍ରତି ପୁଡ଼ାର ଶିରୋଭାଗରେ ରେଖାବଦ୍ଧ ଅଂଶ ପାଠକଙ୍କର ପ୍ରଥମେ ଦୃଷ୍ଟିରେ ପଡ଼ିବ ଏବଂ ତାହା ପଢ଼ି ପାଠକମାନେ ଏ ଶ୍ରେଣୀର ଶବ୍ଦମାନଙ୍କର ଭାଷାକୋଷରେ ଦିଆ

ନ ଯାଇଥିବା ଆକାର ସହଜରେ ସ୍ଥିର କରିପାରିବେ । ଉଦାହରଣସ୍ୱରୂପ, ସଂସ୍କୃତ 'କୂପ' ଶବ୍ଦରୁ ବାହାରିଥିବା ଦେଶଜ ଶବ୍ଦକୁ ଶିକ୍ଷିତମାନେ ମଧ୍ୟ 'କୂଅ' ନ ଲେଖି 'କୁଅ' ଲେଖିବାର ଓ ହ୍ରସ୍ୱ ଉ ଯୁକ୍ତ ଉଚ୍ଚାରଣ କରିବାର ଦେଖାଯାଏ; ଅଥଚ କେହି କେହି ପଣ୍ଡିତ ଏ ଶବ୍ଦକୁ 'କୁଅ' ଲେଖିବାର ଓ ହ୍ରସ୍ୱ ଉ ଯୁକ୍ତ ଉଚ୍ଚାରଣ କରିବାର ଦେଖାଯାଏ; ଅଥଚ କେହି କେହି ପଣ୍ଡିତ ଏ ଶବ୍ଦକୁ 'କୂଅ' ବୋଲି ଲେଖିବା ଅସଙ୍ଗତ ନୁହେଁ । ଏପରି ଅବସ୍ଥାରେ 'କୁଅ' ଶବ୍ଦ ଏ ଭାଷାକୋଷରେ ନ ମିଳିଲେ 'କୂଅ' ଶବ୍ଦ ଦେଖିବାକୁ ହେବ ।

ଶ୍ରୀଯୁକ୍ତ ହଲାକ୍ ସାହେବ ଓ ଶ୍ରୀଯୁକ୍ତ ପେକ୍ ସାହେବଙ୍କ ପରେ ଫିଲିପ୍-ଡଫ୍ କମିଶନର ଅନ୍ୟତମ ସଦସ୍ୟ, ଓଡ଼ିଆ ଜାତିର ହିତାକାଙ୍କ୍ଷୀ ମହାମତି ଶ୍ରୀଯୁକ୍ତ ଫିଲିପ୍ ସାହେବ ଓଡ଼ିଶାକୁ କମିଶନର୍ ହୋଇ ଆସି ଏ ଗ୍ରନ୍ଥ ପ୍ରତି ବିଶେଷ କୃପା ଦେଖାଇଅଛନ୍ତି ଓ ସ୍ୱୟଂ ଏକାଧିକଥର ଛାପାଖାନାକୁ ଯାଇ ମୁଦ୍ରଣ କାର୍ଯ୍ୟ କେତେଦୂର ଅଗ୍ରସର ହେଲା, ତାହା ସ୍ୱଚକ୍ଷୁରେ ପରିଦର୍ଶନ କରିଅଛନ୍ତି । କଟକର ବର୍ତ୍ତମାନ କଲେକ୍ଟର ଶ୍ରୀଯୁକ୍ତ ମାର୍‌ଉଡ୍ ସାହେବ ମଧ୍ୟ ପାଣ୍ଡୁଲିପିଗୁଡ଼ିକୁ ସ୍ୱୟଂ ଓ ତାଙ୍କର ସହଧର୍ମିଣୀଙ୍କ ସହିତ ଏକାଧିକଥର ପରିଦର୍ଶନ କରି ନାନା ଭାବରେ ମୋତେ ଉତ୍ସାହିତ କରିଅଛନ୍ତି ।

ଏହି ପ୍ରଥମ ଖଣ୍ଡର ଇଂରାଜୀ ଅଂଶରେ କେତେକ ସ୍ଥାନରେ ମୁଦ୍ରଣପ୍ରମାଦ ଥିବାର ଦେଖି ଫିଲିପ୍ ଓ ମାର୍‌ଉଡ୍ ସାହେବଦ୍ୱୟ ସ୍ୱତଃପ୍ରବୃତ୍ତ ହୋଇ ଭବିଷ୍ୟଦ୍‌ରେ ପ୍ରୁଫସିଟ୍‌ମାନଙ୍କର ଇଂରାଜୀ ଅଂଶମାନ ସଂଶୋଧନ କରିବାର ଭାର ସ୍ୱୟଂ ଗ୍ରହଣ କରିଅଛନ୍ତି । ଏତାଦୃଶ ମହାନୁଭବତାପାଇଁ ମୁଁ ଏ ଦୁହିଁଙ୍କ ନିକଟରେ ଋଣୀ ।

ଓଡ଼ିଆ ଶବ୍ଦମାନଙ୍କର ବଙ୍ଗଳା ପ୍ରତିଶବ୍ଦ ଯୋଗାଇବା ବିଷୟରେ କଟକର ଆଡ୍‌ଭୋକେଟ୍ ଶ୍ରୀଯୁକ୍ତ ସତୀନ୍ଦ୍ରନାରାୟଣ ରାୟ ମହାଶୟ ଏମ୍.ଏ., ବି.ଏଲ୍. ମୋତେ ନିୟମିତରୂପେ ଅଯାଚିତ ଭାବରେ ସାହାଯ୍ୟ କରିଅଛନ୍ତି ।

ଶ୍ରୀମତୀ ପୀତାମ୍ବରୀ ସମ୍ମାର୍ଜିତ ପାଣ୍ଡୁଲିପିଗୁଡ଼ିକ ସାଫି କରିବା ଉଦ୍ଦେଶ୍ୟରେ ଇଂରାଜୀ ଓ ବଙ୍ଗଳା ଅକ୍ଷର ଶିକ୍ଷା କରି ଏଥିରେ ତାଙ୍କ ଶକ୍ତି ନିୟୋଜିତ କରିଅଛନ୍ତି ।

ଆଠଗଡ଼ର ଅପ୍ରାପ୍ତ ବ୍ୟବହାର ରାଜା ଶ୍ରୀ ରାଧାନାଥ ଦେବବର୍ମା ରାଜକୀୟ ବ୍ୟବହାର ଶିକ୍ଷାର୍ଥ ଗଭର୍ଣ୍ଣମେଣ୍ଟଙ୍କ ଆଦେଶକ୍ରମେ କଟକରେ ଛଅ ମାସ ଅବସ୍ଥାନ କରୁଅଛନ୍ତି । ଅତି ଅଳ୍ପ ବୟସରେ ତାଙ୍କର ଏହି ଭାଷାକୋଷ ପ୍ରତି ଅନୁରାଗ ଦେଖି ମୁଁ ଆନନ୍ଦିତ ହୋଇଅଛି । ସେ ମୋ ଗୃହରେ ଥାଇ ପ୍ରତିଦିନ ଅଭିଧାନର ସମ୍ମାର୍ଜନ ଓ ପରିଷ୍କରଣ ସମ୍ବନ୍ଧରେ ନାନା ତତ୍ତ୍ୱ ନେଉଅଛନ୍ତି ଏବଂ ଏଥି ମଧ୍ୟରେ କେତେକ ଗଡ଼ଜାତ ପ୍ରଚଳିତ ଶବ୍ଦ ଏହି ଭାଷାକୋଷକୁ ଯୋଗାଇ ଅଛନ୍ତି । ଆହୁରି ମଧ୍ୟ କଥାପ୍ରସଙ୍ଗରେ ବିଶିଷ୍ଟ ବ୍ୟକ୍ତିମାନଙ୍କ ନିକଟରେ ମୋ ଉଦ୍ୟମର ପ୍ରସଙ୍ଗ ଉତ୍ଥାପନ କରିବା ତାଙ୍କର ଗୋଟିଏ ବ୍ରତ ହୋଇଅଛି । ତାଙ୍କର ପିତା ସ୍ୱର୍ଗତ ରାଜକବି ସାହିତ୍ୟପ୍ରାଣ ରାଜାବାହାଦୁର

ବିଶ୍ୱନାଥ ଦେବ ବର୍ମା ମୋର ଜଣେ ବିଶିଷ୍ଟ 'ମହାପ୍ରସାଦ' ବନ୍ଧୁ ଥିଲେ । ଏ ଭାଷାକୋଷ ପ୍ରତି ତାଙ୍କ ଆତ୍ମଜଙ୍କର ଏହି ଅମାୟିକ ଅନୁରାଗ ଦେଖି ମୁଁ ଆଶା କରୁଅଛି ଯେ, ସେ ତାଙ୍କ ସ୍ୱର୍ଗୀୟ ପିତୃଦେବଙ୍କ ପଦାଙ୍କ ଅନୁସରଣ କରି ଦିନେ ଉତ୍କଳ ସାହିତ୍ୟ ଓ ଭାଷାର ଜଣେ ପ୍ରଧାନ ପୃଷ୍ଠପୋଷକ ହେବେ ।

ଗ୍ରନ୍ଥ ଛାପାକାର୍ଯ୍ୟ ଆରମ୍ଭ ହେବା ପରେ ଦେଖାଗଲା ଯେ, ପୂର୍ବକଳ୍ପିତ ଛତିଶ ଶହ ପୃଷ୍ଠା ପରିବର୍ତ୍ତରେ ସମଗ୍ର ମୁଦ୍ରିତ ଗ୍ରନ୍ଥଟି ପ୍ରାୟ ଛଅ ହଜାର ପୃଷ୍ଠା ଅଧିକାର କରିବ ଓ ଦୁଇ ଖଣ୍ଡ ବନ୍ଧା ବହି ପରିବର୍ତ୍ତରେ ସମଗ୍ର ଗ୍ରନ୍ଥକୁ ଚାରି କି ପାଞ୍ଚ ଖଣ୍ଡରେ ବାନ୍ଧିବାକୁ ହେବ ଏବଂ ପ୍ରଥମେ ପରିକଳ୍ପିତ ମୁଦ୍ରଣାଦି ବ୍ୟୟ ତିରିଶ ହଜାର ଟଙ୍କା ପରିବର୍ତ୍ତରେ ସମଗ୍ର ଗ୍ରନ୍ଥର ଛାପା ଶେଷ ହେଲା ବେଳକୁ ଅନ୍ୟୂନ ଷାଠିଏ ହଜାର ଟଙ୍କା ବ୍ୟୟିତ ହେବ । ଏ ବ୍ୟୟନିର୍ବାହ ଭଗବାନ୍ କରିବେ, ଏହି ଆଶାରେ ଆଶାନ୍ୱିତ ହୋଇ ମୂଳ ପାଣ୍ଡୁଲିପିରେ ଦିଆଯାଇଥିବା କୌଣସି ଶବ୍ଦ, ଟୀକା ବା ନୋଟ୍, କଟାକଟି ନ କରି କିମ୍ବା ସଂଗୃହୀତ ପ୍ରାଦେଶିକ, ପାରିଭାଷିକ ଓ ବୈଦେଶିକ ଶବ୍ଦମାନଙ୍କର ସଂଖ୍ୟା ନ କମାଇ ମୁଦ୍ରଣ କାର୍ଯ୍ୟ ଚଳାଇ ଅଛି । ସତକୁସତ ଏଥି ମଧ୍ୟରେ ପ୍ରଭୁ ଜଣେ ଜଣେ ବିଶିଷ୍ଟ ଦାତାଙ୍କୁ ଆଣି ଅପ୍ରତ୍ୟାଶିତ ଭାବରେ ଏ ଗ୍ରନ୍ଥର ସହାୟକରୂପେ ଉପସ୍ଥାପିତ କରୁଅଛନ୍ତି ।

ଏଥି ମଧ୍ୟରେ ସମଗ୍ର ଭାରତୀୟ ପ୍ରାଚ୍ୟ ସମ୍ମିଳନ (All India Oriental Conference) ର ନବମ ଅଧିବେଶନରେ ଯୋଗ ଦେବାପାଇଁ ମୁଁ ୧୯୩୦ ଡିସେମ୍ବର ମାସରେ ପାଟନା ଯାଇଥିଲି । ସେଠାରେ ବିହାର-ଓଡ଼ିଶା ଶିକ୍ଷାବିଭାଗର ଡେପୁଟି ଡାଇରେକ୍ଟର ଶ୍ରୀଯୁକ୍ତ ଶ୍ୟାମଚରଣ ତ୍ରିପାଠୀ ଆଇ.ଇ.ଏସ୍. ମହୋଦୟ ଭାଷାକୋଷର ମୁଦ୍ରିତ ଅଂଶମାନ ଦେଖି ଓ ସେପର୍ଯ୍ୟନ୍ତ ବ୍ୟବସ୍ଥା କରାଯାଇଥିବା ଅର୍ଥର ଏବଂ ପରେ ଲୋଡ଼ାହେବା ଅର୍ଥର ପରିମାଣ ଅବଗତ ହୋଇ ମୟୂରଭଞ୍ଜର ମହାରାଜ ଶ୍ରୀ ପ୍ରତାପଚନ୍ଦ୍ର ଭଞ୍ଜଦେବଙ୍କ ଛାମୁରେ ଏ ଗ୍ରନ୍ଥର ଉପାଦେୟତା ଜଣାଇବାରେ ଗୁଣଗ୍ରାହକ ଶ୍ରୀ ମହାରାଜ ପ୍ରସନ୍ନ ଚିତ୍ତରେ ମୁଦ୍ରଣ ବ୍ୟୟପାଇଁ ଆଠହଜାର ଟଙ୍କା ଦୁଇ ବର୍ଷରେ ଦାନ କରିବାକୁ ଅଙ୍ଗୀକାର କଲେ । ଏହି ସାହାଯ୍ୟ ଲାଗି କୃତଜ୍ଞତା ଜ୍ଞାପନାର୍ଥ ଭାଷାକୋଷର ନାମ ମହାରାଜଙ୍କ ଜ୍ୟେଷ୍ଠଭ୍ରାତା ସ୍ୱର୍ଗତ 'ପୂର୍ଣ୍ଣଚନ୍ଦ୍ର'ଙ୍କ ନାମ ସଙ୍ଗେ ସଂଯୁକ୍ତ ହୋଇଅଛି । ଏଥି ମଧ୍ୟରେ ମହାରାଜ ଦୁଇ ହଜାର ଟଙ୍କା ଦେଇଅଛନ୍ତି; ମୁଦ୍ରଣ କାର୍ଯ୍ୟ ଚଳୁଥିବା ଅବସ୍ଥାରେ ବାକି ଟଙ୍କା ମିଳିବ ।

ପୁରୀ ଏମାର ମଠର ମହନ୍ତ ମହାରାଜ ସ୍ୱନାମଧନ୍ୟ ଶ୍ରୀ ଗଦାଧର ରାମାନୁଜ ଦାସ ମୁଦ୍ରଣ ନିମନ୍ତେ ଦୁଇ ହଜାର ଟଙ୍କା ସାହାଯ୍ୟ ଅଙ୍ଗୀକାର କରିଅଛନ୍ତି ଏବଂ ସୁବିଧା ହେଲେ ଅଧିକ ସାହାଯ୍ୟ କରିବେ ବୋଲି ଆଶ୍ୱାସନା ମଧ୍ୟ ଦେଇଅଛନ୍ତି । ମୋ ଜାମାତା ପୁରୀର ଗଭର୍ଣ୍ଣମେଣ୍ଟ-ପ୍ଲିଡର୍ ଓ ଆଡ଼୍‌ଭୋକେଟ୍ ରାୟବାହାଦୁର ଶ୍ରୀମାନ୍ ଲୋକନାଥ ମିଶ୍ର ଏକହଜାର ଟଙ୍କା ସାହାଯ୍ୟ କରିବାପାଇଁ ପ୍ରତିଶ୍ରୁତ ହୋଇ ଆଂଶିକ ଟଙ୍କା

ଶ୍ରୀଯୁକ୍ତ ବିଶ୍ୱନାଥବାବୁଙ୍କ ହସ୍ତରେ ଅର୍ପଣ କରିଅଛନ୍ତି । ଗଡ଼ଜାତର ପୋଲିଟିକାଲ୍ ଏଜେଣ୍ଟ୍ ଶ୍ରୀଯୁକ୍ତ ଟାଲେଣ୍ଟ୍ ସାହେବ ମୋର ଏହି ଉଦ୍ୟମ ପ୍ରତି ବିଶେଷ ସହାନୁଭୂତି ଦେଖାଇ ଉତ୍କଳର କେତେକ ବିଶିଷ୍ଟ ରାଜା ମହାରାଜାଙ୍କ ଦୃଷ୍ଟି ଏ ବ୍ୟୟସାଧ୍ୟ କାର୍ଯ୍ୟ ପ୍ରତି ଆକର୍ଷଣ କରି ମୋତେ କୃତଜ୍ଞତା ପାଶରେ ଆବଦ୍ଧ କରିଅଛନ୍ତି । ମୁଁ ଷଢ଼େଇକଳାର ରାଜକବି ଓ ଉତ୍କଳର ରାଜନ୍ୟ ମଣ୍ଡଳୀରେ ବୃଦ୍ଧତମ, ରାଜର୍ଷିପ୍ରତିମ ମହାରାଜ ଶ୍ରୀ ଉଦିତ ନାରାୟଣ ସିଂହଦେବଙ୍କ ନିକଟରେ ଉପସ୍ଥିତ ହେବାରୁ ମହାରାଜ ଗ୍ରନ୍ଥର କେତେକ ମୁଦ୍ରିତ ଅଂଶ ଦେଖି ପରମ ପ୍ରୀତି ଲାଭ କଲେ ଓ ତଦବଧି ମହାରାଜଙ୍କଠାରୁ ବିଶିଷ୍ଟ ସାହାଯ୍ୟ ମିଳିବାର ଆଶା ମୋ ମନରେ ଜାଗରୂକ ହୋଇଅଛି । ଖରସୁଆଁର ରୁଲିଙ୍ଗ୍ ଚିଫ୍ ରାଜା ଶ୍ରୀ ରାମଚନ୍ଦ୍ର ସିଂହଦେବ ମଧ୍ୟ ଏ ଗ୍ରନ୍ଥପାଇଁ ବିଶେଷ ସହାନୁଭୂତି ପ୍ରକାଶ କରିଅଛନ୍ତି । ପୁରୀ ରାଧାକାନ୍ତ ମଠର ମହନ୍ତ ଶ୍ରୀ ରାଧାକୃଷ୍ଣ ଦାସଗୋସ୍ୱାମୀ ସ୍ୱତଃ ପ୍ରଣୋଦିତ ହୋଇ ଏ ଭାଷାକୋଷର ମୁଦ୍ରଣବ୍ୟୟ ଲାଗି ସାହାଯ୍ୟ ଦେବାପାଇଁ ପାରଳାର ସ୍ୱନାମଧନ୍ୟ, ଦେଶବତ୍ସଳ, ଉତ୍କଳରେ ଲକ୍ଷ୍ମୀ ଓ ସରସ୍ୱତୀଙ୍କ ବରପୁତ୍ର, ରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ସଙ୍ଗେ ଅଳି କରୁଥିବାରୁ ଶ୍ରୀ ଗଜପତିଙ୍କର ଏ ଗ୍ରନ୍ଥପ୍ରତି ସମଧିକ କୃପାଦୃଷ୍ଟି ପଡ଼ିବାର ଆଶା ହେଉଅଛି ।

ଏଥି ମଧ୍ୟରେ ଏ ଗ୍ରନ୍ଥର ସର୍ବପ୍ରଥମ ପୃଷ୍ଠପୋଷକ , ଉତ୍କଳର ବିକ୍ରମାଦିତ୍ୟପ୍ରତିମ, ସାହିତ୍ୟପ୍ରାଣ ଶ୍ରୀ ବିକ୍ରମଦେବ ବର୍ମା ଜୟପୁରର ରାଜସିଂହାସନ ଅଳଂକୃତ କରିଅଛନ୍ତି । ସେ ମହୋଦୟ ପ୍ରଥମେ ଏହି ଦେଶହିତକର ବ୍ୟୟ-ବହୁଳ କାର୍ଯ୍ୟରେ ସାହାଯ୍ୟ କରିବାକୁ ତତ୍କାଳୀନ ଜୟପୁର ଅଧୀଶ୍ୱରଙ୍କ ନିକଟରେ ମୋପାଇଁ ଅଳି କରିଥିଲେ । ପ୍ରଭୁଙ୍କ ଅପାର କରୁଣାରୁ ଆଜି ସେ ସ୍ୱୟଂ ଜୟପୁରର ଅଧୀଶ୍ୱର । ତେଣୁ ମୁଦ୍ରଣ ବ୍ୟୟପାଇଁ ନଅଣ୍ଟ ଥିବା ଅର୍ଥ ସମ୍ବନ୍ଧରେ ମୋର ଦୁଶ୍ଚିନ୍ତା ଦୂର ହୋଇଅଛି ଏବଂ ମୋ କର୍ମ-ପନ୍ଥା ଆଲୋକମୟ ଦେଖାଯାଉଅଛି ।

ପାଣ୍ଡୁଲିପିରୁ ପ୍ରଥମେ ଅନୁମାନ କରାଯାଇଥିଲା ଯେ ସ୍ୱରବର୍ଣ୍ଣାଂଶ ଚାରି ପାଞ୍ଚ ଶତ ପୃଷ୍ଠା ମାତ୍ର ଅଧିକାର କରିବ; କିନ୍ତୁ ବର୍ତ୍ତମାନ ସ୍ୱରବର୍ଣ୍ଣାଂଶର ମୁଦ୍ରଣ ପରେ ଦେଖାଗଲା ଯେ କେବଳ ସେହି ଅଂଶ ବାର ଶତ ପୃଷ୍ଠା ଅଧିକାର କରିଅଛି । ଏପରି ଅପ୍ରତ୍ୟାଶିତ ଭାବରେ ଗ୍ରନ୍ଥର କଳେବର ବୃଦ୍ଧି ହେବାରୁ ମୁଦ୍ରଣବ୍ୟୟ ସଂସ୍ଥାନରେ ଆଶଙ୍କା ଜାତ ହେଉଥିଲେହେଁ, ଦୀର୍ଘ କୋଡ଼ିଏବର୍ଷବ୍ୟାପୀ କଠୋର ପରିଶ୍ରମରେ ଯେଉଁସବୁ ଶବ୍ଦ, ଟୀକା, ଟିପ୍ପଣୀ, ନୋଟ୍ ଆଦି ମୁଁ ସଂଗ୍ରହ କରି ରଖିଅଛି, ସେଗୁଡ଼ିକ ଏ ସଂସ୍କରଣରେ ସନ୍ନିବେଶିତ କରିବାର ଲୋଭ ସମ୍ବରଣ କରିପାରୁ ନାହିଁ । ଭଗବାନ୍‌ଙ୍କ ଅପାର କରୁଣା ଉପରେ ନିର୍ଭର କରି ମୁଁ ମୋର ବହୁପରିଶ୍ରମସମ୍ଭୂତ ପାଣ୍ଡୁଲିପିଲିଖିତ ସମସ୍ତ ବିଷୟ ସଭ୍ୟଜଗତର ଭାଇଭଉଣୀଙ୍କ ହାତରେ ଅର୍ପଣ କରିବି ବୋଲି ଦୃଢ଼ସଂକଳ୍ପ ହୋଇ ବସିଅଛି ।

ଶବ୍ଦମାନଙ୍କ ତଳେ ଶିଷ୍ଟପ୍ରୟୋଗମାନ ଯୋଗ କରିବା ଓ ଟୀକା ଲେଖିବାପାଇଁ ଗତ ପନ୍ଦରବର୍ଷ ହେବ ମୁଁ ସହସ୍ରାଧିକ ପ୍ରକାଶିତ ଓଡ଼ିଆ ଗ୍ରନ୍ଥ ପାଠ କରିଅଛି, ତଥାପି ଅନ୍ୟାନ୍ୟ ଗ୍ରନ୍ଥ କିଣିବାର ସଂଗତି ମୋର ନ ଥିବାରୁ କେତେକ ମହାନୁଭବ ବ୍ୟକ୍ତି ମୋତେ ସେମାନଙ୍କ କୃତ ବା ପ୍ରକାଶିତ ବା ସେମାନଙ୍କ ନିକଟରେ ଥିବା ବହୁ ଗଦ୍ୟ, ପଦ୍ୟ ଓ ଅଭିଧାନ-ଗ୍ରନ୍ଥ ଦେଇଅଛନ୍ତି । ଆଜି ଏଠାରେ ସେହି ମହାନୁଭବମାନଙ୍କ ନିକଟରେ ହୃଦୟର କୃତଜ୍ଞତା ଅର୍ପଣ କରୁଅଛି । ସେହି ଦାତାମାନଙ୍କର ନାମ ନିମ୍ନରେ ଦିଆଗଲା । ପ୍ରୋଫେସର ଆର୍ତ୍ତବଲ୍ଲଭ ମହାନ୍ତି, ଶ୍ରୀ ବିଶ୍ୱନାଥ କର, ଶ୍ରୀ ଶଶିଭୂଷଣ ରାୟ, ପ୍ରୋଫେସର ମୋହିନୀମୋହନ ସେନାପତି, ଶ୍ରୀ ବ୍ରଜସୁନ୍ଦର ଦାସ, ଶ୍ରୀ ନୀଳକଣ୍ଠ ଦାଶ, କବି ଶ୍ରୀ ଚିନ୍ତାମଣି ମହାନ୍ତି, ରାୟବାହାଦୁର ଅଜୟଚନ୍ଦ୍ର ଦାସ, ରାୟବାହାଦୁର ରାମଶଙ୍କର ରାୟ, ରାୟସାହେବ ଭିକାରିଚରଣ ପଟ୍ଟନାୟକ, ପଣ୍ଡିତ ଶ୍ରୀ କୁଳମଣି ଦାଶ, କଟକ ଅରୁଣୋଦୟ ପ୍ରେସର ସ୍ୱତ୍ୱାଧିକାରୀ ଶ୍ରୀ ଅଭିନ୍ନଚନ୍ଦ୍ର ଦାସ, ଶ୍ରୀ ନିତ୍ୟାନନ୍ଦ ସାହୁ, ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, କଟକ ଚନ୍ଦ୍ରୋଦୟ ପ୍ରେସର ସ୍ୱତ୍ୱାଧିକାରୀ ଶ୍ରୀ ହରେକୃଷ୍ଣ ଦାସ, ଶ୍ରୀ ରାଧାକୃଷ୍ଣ ବୋଷ, ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ର, ଶ୍ରୀ ଶରଚ୍ଚନ୍ଦ୍ର ପାଳ, କଟକ ଟ୍ରେଡ଼ିଙ୍ଗ୍ କୋମ୍ପାନୀର ମେନେଜର୍ ପଣ୍ଡିତ ଶ୍ରୀ ଆକୁଳ ମିଶ୍ର କାବ୍ୟତୀର୍ଥ, ଡାକ୍ତର ରାୟବାହାଦୁର ଜୟନ୍ତ ରାଓ, ଶ୍ରୀମାନ୍ ଚିନ୍ତାମଣି ଆଚାର୍ଯ୍ୟ, ସ୍ୱର୍ଗୀୟ ରାୟସାହେବ ନନ୍ଦକିଶୋର ବଳ, ସମ୍ବଲପୁର ସାଧନା ପତ୍ରିକାର ସମ୍ପାଦକ ପଣ୍ଡିତ ଶ୍ରୀ ସ୍ୱପ୍ନେଶ୍ୱର ଦାଶ, ଆଶା ପତ୍ରିକାର ସମ୍ପାଦକ ଶ୍ରୀ ଶଶିଭୂଷଣ ରଥ, ଶ୍ରୀ ମହାରାଜ ସୋନପୁର, ଚିକିଟିର ବାନପ୍ରସ୍ଥ ରାଜା ଶ୍ରୀ ରାଧାମୋହନ ରାଜେନ୍ଦ୍ରଦେବ ଓ ଯୁବରାଜ ଶ୍ରୀ ଗୌରଚନ୍ଦ୍ର ଦେବ, ଶ୍ରୀମତୀ କୁନ୍ତଳାକୁମାରୀ ଦେବୀ, ସୁରଙ୍ଗୀର ସ୍ୱର୍ଗୀୟ ରାଜା ଶ୍ରୀ ଚନ୍ଦ୍ରଚୂଡ଼ାମଣି ଦେବ, ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ, କଟକ ପ୍ରିଣ୍ଟିଙ୍ଗ୍ କୋମ୍ପାନୀର କର୍ତ୍ତୃପକ୍ଷ ଶ୍ରୀ ଶ୍ରୀବତ୍ସ ପଣ୍ଡା, ଢେଙ୍କାନାଳର ପଣ୍ଡିତ ଶ୍ରୀ ଗଣେଶ୍ୱର ମିଶ୍ର, ଆଠଗଡ଼ ନିବାସୀ ପଣ୍ଡିତ ଶ୍ରୀ ଦୀନବନ୍ଧୁ ରଥ, ରାୟବାହାଦୁର ରାଜକିଶୋର ଦାସ, ଶ୍ରୀ ଗୋଦାବରୀଶ ମିଶ୍ର, ସ୍ୱର୍ଗୀୟ ଗୋପବନ୍ଧୁ ଦାଶ; ବ୍ରହ୍ମପୁର ଷ୍ଟୁଡେଣ୍ଟସ୍ ଷ୍ଟୋର୍‌ର କର୍ତ୍ତୃପକ୍ଷ, ମୋର ପ୍ରାଣପ୍ରତିମା ସ୍ୱର୍ଗତା କନ୍ୟା ଶ୍ରୀମତୀ ଲାବଣ୍ୟବତୀ, କାଶୀ ନାଗରୀପ୍ରଚାରିଣୀ ସଭାର କର୍ତ୍ତୃପକ୍ଷ, ପାଟନା ପାଠଶାଳା ପ୍ରେସର ଅଧ୍ୟକ୍ଷ ପଣ୍ଡିତ ରାମଲୋଚନ ଶରଣ ଓ ଶ୍ରୀଯୁକ୍ତ ହଦ୍ଧାକ୍ ସାହେବ ।

ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ଓଡ଼ିଆ ଜାତିର କୋଠସମ୍ପତ୍ତି; ମୁଁ ଉତ୍କଳମାତାଙ୍କର ଜଣେ ନଗଣ୍ୟ ଓ ଅଧମ ପୁତ୍ର । ମୋ ଭଳି ଗୁଣହୀନ, ବିଦ୍ୟାହୀନ, ସାଧନାହୀନ ବ୍ୟକ୍ତିଦ୍ୱାରା ଉତ୍କଳ ଜାତିର ଏ ଯେଉଁ ଭାଷାସୌଧ ନିର୍ମିତ ହେଲା, ତାହା ବହୁଶତ ବିଦ୍ୟୋତ୍ସାହୀ, ଗୁଣଗ୍ରାହୀ, ସାହିତ୍ୟପ୍ରାଣ ବ୍ୟକ୍ତିମାନଙ୍କର ସାହାଯ୍ୟ, ସହାନୁଭୂତି ଓ ଆଶୀର୍ବାଦ ଯୋଗୁଁ ସମ୍ଭବପର ହୋଇଅଛି ।

ଯେଉଁମାନେ ମୋତେ ନାନାଭାବରେ କେହି ଧନଦ୍ୱାରା, କେହି ଉତ୍ସାହଦ୍ୱାରା, କେହି ଲେଖାଦ୍ୱାରା, କେହି ଆଶୀର୍ବାଦଦ୍ୱାରା, କେହି ପୁସ୍ତକ ଯୋଗାଇ, କେହି ଦାତାମାନଙ୍କ ଠାରେ ସୁପାରିସ କରି ଶବ୍ଦ ଯୋଗାଇ ସାହାଯ୍ୟ କରିଅଛନ୍ତି, ମୁଁ ସେମାନଙ୍କଠାରେ ଆମରଣ ଋଣୀ ରହିଲି ।

ବିହାର-ଓଡ଼ିଶାର ବର୍ତ୍ତମାନ ଲାଟସାହେବ ମହାମାନ୍ୟ ମାନ୍ୟବର ସର୍ ହିଉ ଷ୍ଟିଫେନ୍‌ସନ୍ ମହୋଦୟ ଏ ଗ୍ରନ୍ଥର ବିଶିଷ୍ଟ ପୃଷ୍ଠପୋଷକରୂପେ ମୋତେ ନାନାପ୍ରକାରେ ଉତ୍ସାହିତ କରିଥିବାରୁ ମୁଁ ତଥା ଓଡ଼ିଆ ଭାଷା ତାଙ୍କର ମହାନୁଭବତାପାଇଁ ତାଙ୍କଠାରେ ଚିରକୃତଜ୍ଞତା ପାଶରେ ଆବଦ୍ଧ ।

ଯେଉଁମାନଙ୍କ ବିଶିଷ୍ଟ ଉଦ୍ୟମ ଯୋଗୁଁ ଆଜି ଏ ଗ୍ରନ୍ଥ ମୁଦ୍ରିତ ହେବାର ଆଶା ଅଂଶତଃ ଫଳବତୀ ହୋଇଅଛି, ସେମାନଙ୍କ ହାଫ୍‌ଟୋନ୍ ଛବି ଏ ଗ୍ରନ୍ଥରେ ଦେବି ବୋଲି କଳ୍ପନା କରିଅଛି । ଏପର୍ଯ୍ୟନ୍ତ ଯେଉଁମାନଙ୍କ ଫଟୋ ବା ବ୍ଲକ୍ ହସ୍ତଗତ ହୋଇଅଛି ସେମାନଙ୍କ ଛବିମାନ ଏ ଖଣ୍ଡରେ ସଂଯୁକ୍ତ ହେଲା ଏବଂ କ୍ରମଶଃ ଯାହା ହସ୍ତଗତ ହେଉଥିବ, ତାହା ପରବର୍ତ୍ତୀ ଖଣ୍ଡମାନଙ୍କରେ ଯୋଗ କରାଯିବ ।

ଏ ଗ୍ରନ୍ଥରେ ଅନେକ ଅଭାବ ଓ ଦୋଷ ରହିଗଲା । ଏହାକୁ ମୁଁ ଯେଉଁପରି ସର୍ବାଙ୍ଗ ସୁନ୍ଦର କରିବାକୁ କଳ୍ପନା କରିଥିଲି ସମୟ, ଅଭିଜ୍ଞାନ ଗ୍ରନ୍ଥ, ଦେଶାଟନ ଓ ବିଶେଷତଃ ଅର୍ଥାଭାବରୁ ଏବଂ ଯଥେଷ୍ଟ ସହକର୍ମୀ ଅଭାବରୁ ତାହା କରିପାରିଲି ନାହିଁ । କିନ୍ତୁ ମୁଁ ସର୍ବସାଧାରଣଙ୍କୁ ଏତିକି ମାତ୍ର କହିପାରେଁ ଯେ, ମୁଁ ମୋ ଚେଷ୍ଟାରେ ତ୍ରୁଟି କରି ନାହିଁ । ମୋର ଏକମାତ୍ର ଆଶା ଯେ, ମୁଁ ଓଡ଼ିଆ ଅଭିଧାନ ଲେଖିବାର ଯେଉଁ ଦିଗ୍‌ଦର୍ଶନ ସ୍ଥାପନ କରିଗଲି ତାହାର ପନ୍ଥା ଅନୁସରଣ କରି ମୋ ଅପେକ୍ଷା କ୍ଷମତାଶାଳୀ ଅଧିକତର ଗୁଣୀ ଓ ଅଧ୍ୟବସାୟୀ ବ୍ୟକ୍ତି ଭବିଷ୍ୟଦ୍‌ରେ ଦିନେ ଗୋଟିଏ ପୂର୍ଣ୍ଣାଙ୍ଗ ଅଭିଧାନ ସଂକଳନ କରିପାରିବେ । ମୋର ଏହି ସଂଗ୍ରହ ପୂର୍ଣ୍ଣାଙ୍ଗ ଓଡ଼ିଆ ଅଭିଧାନର ଉପକରଣ ମାତ୍ର ।

ସୌଭାଗ୍ୟକ୍ରମେ ମୁଁ ଓକିଲାତି ଆରମ୍ଭ କରିବା ବେଳେ ଉତ୍କଳର ଦେଶହିତୈଷବ୍ରତ, କର୍ମନିଷ୍ଠ, ବୟୋବୃଦ୍ଧ ତଥା ଜ୍ଞାନବୃଦ୍ଧ ମିଷ୍ଟର୍ ଦାସ (ଶ୍ରୀ ମଧୁସୂଦନ ଦାସ ଏମ୍. ଏ., ବି. ଏଲ. ସି. ଆଇ. ଇ.)ଙ୍କୁ ଗୁରୁରୂପେ ପାଇବାର ସୁଯୋଗ ପାଇଥିଲି ଓ ତାଙ୍କ ତତ୍ତ୍ୱାବଧାନରେ ଉତ୍କଳ ସମ୍ମିଳନୀ, ରେଭେନ୍ସା ବାଳିକାବିଦ୍ୟାଳୟ ଆଦି କେତେକ ସାଧାରଣ ଅନୁଷ୍ଠାନରେ ଜଣେ ନଗଣ୍ୟ କର୍ମୀ ରୂପେ କିଛିଦିନ କର୍ମ କରିଥିଲି । ମୋ ଜୀବନର ସେହି ସ୍ମରଣୀୟ ସାତବର୍ଷ ମଧ୍ୟରେ ତାଙ୍କ ଚରଣ ତଳେ ବସି ତାଙ୍କର ଜ୍ୱଳନ୍ତ ଈଶ୍ୱର ବିଶ୍ୱାସ, ଅଧ୍ୟବସାୟ, ଜାତୀୟପ୍ରେମ, ଦେଶସେବା, କର୍ମନିଷ୍ଠା ଓ ଅକ୍ଳାନ୍ତ ପରିଶ୍ରମ ଆଦି ଦେଖିବାଯୋଗୁଁ ମୋ ଜୀବନର ଗତି ଯେଉଁପରି ନିୟନ୍ତ୍ରିତ ହୋଇଅଛି ଓ ତାଙ୍କଠାରୁ ମୁଁ ଯେଉଁ ଅଧ୍ୟବସାୟ, ଧୈର୍ଯ୍ୟ ଓ ଈଶ୍ୱରନିଷ୍ଠାରୂପ ମନ୍ତ୍ର ଗ୍ରହଣ କରିଅଛି, ତାହାରି ଫଳରେ

ଆଜି ଏପରି ଗୋଟିଏ ବହୁ ଆୟାସସାଧ, ବହୁ ଧୈର୍ଯ୍ୟସାଧ, ବହୁ ଜନସାଧ ଓ ବହୁ ସମୟସାଧ କାର୍ଯ୍ୟ ମୋ ପକ୍ଷରେ ସମ୍ଭବପର ହୋଇଅଛି । ମୋର ବିଶ୍ୱାସ ଯେ ମୁଁ ତାଙ୍କ ସଂସ୍ରବରେ ଆସି ନ ଥିଲେ ନାନା ବାଧା-ବିଘ୍ନ, ଅଭାବ-ଅସୁବିଧା, ଘାତ-ପ୍ରତିଘାତ, ଆଶା-ନୈରାଶ୍ୟ ଅତିକ୍ରମ କରି ଧୈର୍ଯ୍ୟ ଓ ଈଶ୍ୱରବିଶ୍ୱାସ ସହକାରେ ଅନ୍ୟୂନ ୨୦ ବର୍ଷ ଲାଗି ଏପରି ଗୋଟିଏ ବିରାଟ ଗ୍ରନ୍ଥର ପାଣ୍ଡୁଲିପି ଶେଷ କରିପାରି ନ ଥାନ୍ତି । ଗ୍ରନ୍ଥର ତିରିଶ ହଜାର ପୃଷ୍ଠାବ୍ୟାପୀ ପାଣ୍ଡୁଲିପିର ଲେଖା ଶେଷ ହେବା ପରେ ସେ ନିଜେ ମୋ ଘରକୁ ଆସି ପାଣ୍ଡୁଲିପିଗୁଡ଼ିକ ଦେଖି ତହିଁ ଉପରେ ହାତ ବୁଲାଇଦେଇ ଆଶୀର୍ବାଦ କରିଗଲେ ଏବଂ ତତ୍ପରେ ଏ ଗ୍ରନ୍ଥ ଛାପା ହେବାପାଇଁ ମୁଁ ଉଦ୍ୟମ ଆରମ୍ଭ କଲି ।

ଏ ଅଭିଧାନର ସଂକଳନ କାର୍ଯ୍ୟରେ ଶ୍ରୀମତୀ ପୀତାମ୍ବରୀ ଦେବୀ ନାନା ଭାବରେ ସାହଚର୍ଯ୍ୟ କରିଅଛନ୍ତି ଏବଂ ତାଙ୍କ ସାହଚର୍ଯ୍ୟ ପାଇ ନ ଥିଲେ ମୋ ଜୀବନରେ ଅଭିଧାନ ପ୍ରଣୟନରୂପ ମହାବ୍ରତ ମୁଁ କାର୍ଯ୍ୟରେ ପରିଣତ କରିପାରି ନ ଥାନ୍ତି । ଏଥିପାଇଁ ମୁଁ ତାଙ୍କଠାରେ କେତେଦୂର ଋଣୀ, ତାହା ଭାଷାରେ ପ୍ରକାଶ କରିପାରିବି ନାହିଁ - ମୁଁ ଏଥିଲାଗି ତାଙ୍କ ନିକଟରେ ଚିର ଜୀବନପାଇଁ ଅପରିଶୋଧ ଋଣରେ ଆବଦ୍ଧ ରହିଲି ।

ଓଡ଼ିଆ ସାହିତ୍ୟ ଅନୁଶୀଳନ କରିବାରେ ମୋର ପ୍ରଥମ ଉତ୍ସାହଦାତା ଓ ପ୍ରରୋଚକ ଶ୍ରୀଯୁକ୍ତ ବିଶ୍ୱନାଥ କର ଏ ଗ୍ରନ୍ଥର ମୁଦ୍ରଣ ଓ ପ୍ରକାଶର ଭାର ବହନ କରି ମୋତେ ପରମାପ୍ୟାୟିତ କରିଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଅର୍ପଣ କରୁଅଛି ।

ଯେଉଁ ପ୍ରଭୁଙ୍କ ଅପାର କରୁଣାରୁ ଏହି କ୍ଷୀଣ ହସ୍ତଦ୍ୱାରା ଏପରି ବିରାଟ ଗ୍ରନ୍ଥର ପାଣ୍ଡୁଲିପିର ଲେଖା ଶେଷ ହୋଇପାରିଲା ଓ ଯାହାଙ୍କ ଆଶୀର୍ବାଦରେ ଆଜି ପ୍ରଥମ ଖଣ୍ଡ ସାଧାରଣଙ୍କ ହସ୍ତରେ ଅର୍ପିତ ହେଲା, ସେହି ପରାତ୍ପରଙ୍କ କରୁଣା ଏ ଗ୍ରନ୍ଥର ଶେଷ ଖଣ୍ଡର ମୁଦ୍ରଣ ପର୍ଯ୍ୟନ୍ତ ମୋର ଏକମାତ୍ର ଅବଲମ୍ବନ ।

ପରିଶେଷରେ ନିବେଦନ ଏହିକି, ଏ ପ୍ରଥମ ଖଣ୍ଡ ପାଠକରି ପାଠକମାନେ ଯେଉଁଠାରେ ଯାହା ଭ୍ରମପ୍ରମାଦ ଦେଖିବେ ବା ପରିବର୍ତ୍ତନାଦିର ଯାହା ଯାହା ସୂଚନା କରିବେ ତାହା ଅନୁଗ୍ରହପୂର୍ବକ ମୋତେ ଜଣାଇଲେ ପରବର୍ତ୍ତୀ ଖଣ୍ଡ ଓ ସଂସ୍କରଣମାନଙ୍କରେ ସେଗୁଡ଼ିକ ପରିହାର ବା ପାଳନ କରିବାକୁ ମୁଁ ଯଥାଶକ୍ତି ଚେଷ୍ଟା କରିବି ।

ଚାନ୍ଦିନୀଚୌକ
କଟକ, ଓଡ଼ିଶା
ସେପ୍ଟେମ୍ବର

ଗୋପାଳ ଚନ୍ଦ୍ର ପ୍ରହରାଜ

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ସଙ୍କଳନରେ ବ୍ୟବହୃତ ଅଭିଜ୍ଞାନ ଗ୍ରନ୍ଥ, ଗ୍ରନ୍ଥକାରମାନଙ୍କର ନାମ ଓ ସାଙ୍କେତିକ ଚିହ୍ନ

M. W. - ମନିଅର୍ ଉଇଲିଆମ୍‌ସଙ୍କ କୃତ ସଂସ୍କୃତ-ଇଂରାଜୀ ଡିକ୍ସିନାରୀ ।

Kirtikar - ଡକ୍ଟର କୀର୍ତ୍ତିକାରଙ୍କର 'Indian Plants' (ଭାରତୀୟ ଉଦ୍ଭିଦ)

Apte - ପ୍ରୋଫେସର୍ ଆପ୍ଟେଙ୍କର Practical Sanskrit - English Dictionary (ସଂସ୍କୃତ-ଇଂରାଜୀ ଅଭିଧାନ)

Beams - Comparative Grammar of four Indo-Aryan languages. (ବୀମ୍ସ ସାହେବଙ୍କ ଚାରି ଭାଷାର ବ୍ୟାକରଣ)

Haines - ହାଏନ୍ସ୍ ସାହେବଙ୍କ Botany of Bihar and Orissa. (ବିହାର-ଓଡ଼ିଶାର ଉଦ୍ଭିଦତତ୍ତ୍ୱ)

Howells - ପାଦ୍ରି ହାଓ୍ୱେଲ୍ସ୍ ସାହେବଙ୍କ ଅପ୍ରକାଶିତ ଓଡ଼ିଆ-ଇଂରାଜୀ ଅଭିଧାନର ପାଣ୍ଡୁଲିପି ।

Fallon - ଡକ୍ଟର ଫାଲନଙ୍କ ହିନ୍ଦୁସ୍ଥାନୀ-ଇଂରାଜୀ ଡିକ୍ସିନାରୀ ।

Sir George Greierson - Linguistic Survey of India. (ଗ୍ରୀୟରସନଙ୍କ ଭାରତର ଭାଷାବିଚାର) ।

Grundy - ପାଦ୍ରି ଗ୍ରଣ୍ଡି ସାହେବଙ୍କର ଓଡ଼ିଆ-ଇଂରାଜୀ ଡିକ୍ସିନାରୀ ।

ଗୋପୀନାଥ ନନ୍ଦ - ଗୋପୀନାଥ ନନ୍ଦଙ୍କ ଓଡ଼ିଆ 'ଶବ୍ଦତତ୍ତ୍ୱବୋଧ ଅଭିଧାନ' ।

ଜ୍ଞାନେନ୍ଦ୍ର - ଜ୍ଞାନେନ୍ଦ୍ର ମୋହନ ଦାସଙ୍କ ବଙ୍ଗଳା ଭାଷାର ଅଭିଧାନ ।

ବିଶ୍ୱକୋଷ - ନଗେନ୍ଦ୍ରନାଥ ବସୁଙ୍କ ପ୍ରଣୀତ 'ବିଶ୍ୱକୋଷ' ।

ଯୋଗେଶଚନ୍ଦ୍ର - ରାୟବାହାଦୁର ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧିଙ୍କ ସଂକଳିତ 'ବଙ୍ଗଳା ଶବ୍ଦକୋଷ' ।

ପ୍ରକୃତିବାଦ - ଶ୍ରୀଯୁକ୍ତ ରାମକମଳ ବିଦ୍ୟାଳଙ୍କାରଙ୍କ ପ୍ରଣୀତ ସଚିତ୍ର ବଙ୍ଗଳା 'ପ୍ରକୃତିବାଦ ଅଭିଧାନ' ।

ହିନ୍ଦୀ ଶବ୍ଦସାଗର - କାଶୀ ନାଗରୀ ପ୍ରଚାରିଣୀ ସଭାଙ୍କ ପ୍ରକାଶିତ 'ହିନ୍ଦୀ ଶବ୍ଦ ସାଗର' ବା ହିନ୍ଦୀ ଭାଷାର ବୃହତ୍ କୋଷ ।

ସୁବଳଚନ୍ଦ୍ର - ସୁବଳଚନ୍ଦ୍ର ମିତ୍ରଙ୍କ ସରଳ ବଙ୍ଗଳା ଅଭିଧାନ ।

ଗାଙ୍ଗୁଲି - The Student's Bengali and English Dictionary (ବି. ଗାଙ୍ଗୁଲିଙ୍କ ବଙ୍ଗଳା-ଇଂରାଜୀ ଅଭିଧାନ)

ଦ୍ରବ୍ୟଗୁଣ - ଶ୍ରୀ ନଗେନ୍ଦ୍ରନାଥ ସେନ୍‌ଗୁପ୍ତଙ୍କ ବଙ୍ଗଳା 'ଦ୍ରବ୍ୟଗୁଣ ଶିକ୍ଷା' ।

ସମର୍ଥକୋଷ - ରାଜା ରାଧାକାନ୍ତ ଦେବଙ୍କଦ୍ୱାରା ପ୍ରକାଶିତ ବଙ୍ଗଳା 'ସମର୍ଥକୋଷ' ଅଭିଧାନ ।

ଶବ୍ଦକଳ୍ପଦ୍ରୁମ - ବଙ୍ଗାକ୍ଷରରେ ମୁଦ୍ରିତ ସଂସ୍କୃତ ଅଭିଧାନ ।

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ଉଦ୍ଧୃତ ଶିଷ୍ଟପ୍ରୟୋଗର ଗ୍ରନ୍ଥକାରମାନଙ୍କର ନାମ ଓ ସାଙ୍କେତିକ ଚିହ୍ନ

(ଦ୍ରଷ୍ଟବ୍ୟ - ଗ୍ରନ୍ଥମାନଙ୍କ ନାମ ଯଥାସ୍ଥାନରେ ଦିଆ ଯାଇଅଛି)

| | | |
|---|---|---|
| ଅଚ୍ୟୁତ; ଅଚ୍ୟୁତାନନ୍ଦ | - | କଟକ ଜିଲ୍ଲାର ନେମ୍ୱାଳଗାଦିର ମହନ୍ତ ସ୍ୱର୍ଗୀୟ ଅଚ୍ୟୁତାନନ୍ଦ ଦାସ । |
| ଅଜୟ ଚନ୍ଦ୍ର | - | ସ୍ୱର୍ଗୀୟ ରାୟବାହାଦୁର ଅଜୟ ଚନ୍ଦ୍ର ଦାସ । |
| ଅଭିମନ୍ୟୁ | - | ପ୍ରାଚୀନ କବି ଅଭିମନ୍ୟୁ ସାମନ୍ତସିଂହାର । |
| ଉତ୍କଳ-ସାହିତ୍ୟ | - | ଶ୍ରୀ ବିଶ୍ୱନାଥ କରଙ୍କ ପ୍ରକାଶିତ ମାସିକ ପତ୍ର । |
| କବିସୂର୍ଯ୍ୟ | - | ପ୍ରାଚୀନ କବି କବିସୂର୍ଯ୍ୟ ବଳଦେବ ରଥ । |
| କୁନ୍ତଳା; କୁନ୍ତଳାକୁମାରୀ | - | ଶ୍ରୀମତୀ କୁନ୍ତଳାକୁମାରୀ ଦେବୀ । |
| କୁଳମଣି | - | ପଣ୍ଡିତ ଶ୍ରୀ କୁଳମଣି ଦାଶ । |
| କୃପାସିନ୍ଧୁ | - | ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ର । |
| କୃଷ୍ଣ ସିଂହ | - | ଧରାକୋଟର ପ୍ରାଚୀନ ରାଜା |
| ଗଙ୍ଗାଧର | - | ସ୍ୱର୍ଗୀୟ କବି ଗଙ୍ଗାଧର ମେହେର । |
| ଗଡ଼ଜାତବାସିନୀ | - | ତାଳଚେରରୁ ପ୍ରକାଶିତ ସାପ୍ତାହିକ ପତ୍ର । |
| ଗୋପାଳକୃଷ୍ଣ | - | ଗଞ୍ଜାମର ପ୍ରାଚୀନ କବି । |
| ଗୋଲୋକ | - | ଅପ୍ରକାଶିତ କାବ୍ୟ ଇନ୍ଦୁରେଖାର ଆଧୁନିକ କବି । |
| ଚିକିଟି | - | ରାଜା-ସାହେବ ଚିକିଟି । |
| ଚିନ୍ତାମଣି | - | ଶ୍ରୀଯୁକ୍ତ ଚିନ୍ତାମଣି ଆଚାର୍ଯ୍ୟ । |
| ଚିନ୍ତାମଣି | - | କବିବର ଚିନ୍ତାମଣି ମହାନ୍ତି । |
| ଜଗନ୍ନାଥ | - | ଭକ୍ତକବି ଜଗନ୍ନାଥ ଦାଶ । |
| ଜଗବନ୍ଧୁ | - | ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ । |
| ତାରିଣୀ | - | ସ୍ୱର୍ଗୀୟ ତାରିଣୀଚରଣ ରଥ । |

| | | |
|---|---|---|
| ତୁଳସୀ-ବିକ୍ରମ | - | ଜୟପୁରର ରାଜା ବିକ୍ରମଦେବଙ୍କ କୃତ ତୁଳସୀ ଦାସଙ୍କ ହିନ୍ଦୀ ରାମାୟଣ ଆଦିକାଣ୍ଡର ପଦ୍ୟାନୁବାଦ । |
| ଦାଶରଥି | - | ପ୍ରାଚୀନ କବି ଦାଶରଥି ଦାସ । |
| ଦୀନକୃଷ୍ଣ | - | ଭକ୍ତକବି ଦୀନକୃଷ୍ଣ ଦାସ । |
| ଦୈନିକ ଆଶା | - | ବ୍ରହ୍ମପୁରରୁ ପ୍ରକାଶିତ ଦୈନିକ ପତ୍ରିକା । |
| ନନ୍ଦକିଶୋର | - | ସ୍ୱର୍ଗୀୟ କବି ନନ୍ଦକିଶୋର ବଳ । |
| ନାରାୟଣ | - | କବି ନାରାୟଣ ଦାସ (ହରିବଂଶ) । |
| ନୀଳକଣ୍ଠ | - | ଶ୍ରୀ ନୀଳକଣ୍ଠ ଦାଶ । |
| ପଞ୍ଚାମୃତ | - | କଟକ ଟ୍ରେଡ଼ିଙ୍ଗ୍ କମ୍ପାନୀଙ୍କ ପ୍ରକାଶିତ ପତ୍ରିକା । |
| ପୀତାମ୍ବର | - | କବି ପୀତାମ୍ବର ଦାସ (ନୃସିଂହ ପୁରାଣ) । |
| ପୀତାମ୍ବରୀ | - | ଶ୍ରୀମତୀ ପୀତାମ୍ବରୀ ଦେବୀ । |
| ପ୍ରତାପ | - | ପ୍ରାଚୀ ସମିତି ପ୍ରକାଶିତ ଶଶିଶେଣା । |
| ପ୍ରାଚୀ | - | କଟକ ପ୍ରାଚୀସମିତି ପ୍ରକାଶିତ ଗ୍ରନ୍ଥମାଳା । |
| ପ୍ୟାରୀମୋହନ | - | ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ । |
| ଫକୀର, ଫକୀରମୋହନ | - | ସ୍ୱର୍ଗୀୟ ଫକୀରମୋହନ ସେନାପତି । |
| ବଳରାମ | - | ପ୍ରାଚୀନ କବି ବଳରାମ ଦାସ (ରାମାୟଣ) । |
| ବି.କେ.ପୁ. | - | ବିଷ୍ଣୁ କେଶରୀ ପୁରାଣ । |
| ବିନାୟକ | - | ପଣ୍ଡିତ ଶ୍ରୀ ବିନାୟକ ମିଶ୍ର । |
| ବିଶ୍ୱନାଥ | - | ପ୍ରାଚୀନ କବି ବିଶ୍ୱନାଥ ଖୁଣ୍ଟିଆ (ବିଚିତ୍ର ରାମାୟଣ) । |
| ବିଷ୍ଣୁକେଶରୀ ପୁରାଣ | - | ପ୍ରାଚୀ-ଗ୍ରନ୍ଥମାଳା । |
| ବ୍ରଜନାଥ | - | ବ୍ରଜନାଥ ବଡ଼ଜେନାଙ୍କ ପ୍ରଣୀତ ସମରତରଙ୍ଗ । |
| ଭକ୍ତଦାସ, ଭକ୍ତଚରଣ | - | ପ୍ରାଚୀନ କବି ଭକ୍ତଚରଣ ଦାସ । |
| ଭଞ୍ଜ | - | କବି ଉପେନ୍ଦ୍ର ଭଞ୍ଜ । |
| ଭୀମା | - | ଭୀମା ଧୀବର (କପଟପାଶା) । |
| ଭିକାରୀଚରଣ | - | ରାୟସାହେବ ଶ୍ରୀ ଭିକାରୀଚରଣ ପଟ୍ଟନାୟକ । |
| ଭୂପତି - ପ୍ରାଚୀ | - | ଗ୍ରନ୍ଥମାଳାର କବି ଭୂପତି ପ୍ରଣୀତ ପ୍ରେମପଞ୍ଚାମୃତ । |

| | | |
|---|---|---|
| ମଦନମୋହନ | - | ଶ୍ରୀଯୁକ୍ତ ମଦନମୋହନ ପଟ୍ଟନାୟକ (ତୀର୍ଥଦର୍ଶନ) । |
| ମହାଦେବ | - | ପ୍ରାଚୀନ କବି ମହାଦେବ ଦାସ (ମାର୍କଣ୍ଡେୟ ପୁରାଣ) |
| ମଧୁସୂଦନ | - | ଭକ୍ତକବି ସ୍ୱର୍ଗୀୟ ମଧୁସୂଦନ ରାଓ । |
| ଯଶୋବନ୍ତ | - | ପ୍ରାଚୀନ କବି ଯଶୋବନ୍ତ ସିଂହ । (ପ୍ରେମଭକ୍ତି ବ୍ରହ୍ମଗୀତା) । |
| ରାଜକିଶୋର | - | ଡାକ୍ତର ଶ୍ରୀ ରାଜକିଶୋର ନନ୍ଦ । |
| ରାଧାନାଥ | - | କବିବର ସ୍ୱର୍ଗୀୟ ରାଧାନାଥ ରାୟ । |
| ରାଧାମୋହନ | - | ଚିକିଟିର ରାଜା ରାଧାମୋହନ ରାଜେନ୍ଦ୍ର ଦେବ । |
| ରାମଦାସ | - | ପ୍ରାଚୀନ କବି ରାମଦାସ (ଦାର୍ଢ୍ୟତାଭକ୍ତି) । |
| ରାମଶଙ୍କର | - | ରାୟବାହାଦୁର ଶ୍ରୀ ରାମଶଙ୍କର ରାୟ । |
| ଶିଶୁଶଙ୍କର | - | ପ୍ରାଚୀନ କବି ଶିଶୁଶଙ୍କର (ଉଷା ଅଭିଳାଷ) । |
| ସତ୍ୟସମାଚାର | - | କଟକରୁ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର । |
| ସମାଜ | - | କଟକରୁ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର । |
| ସହକାର | - | କଟକରୁ ପ୍ରକାଶିତ ମାସିକ ପତ୍ରିକା । |
| ସାରଳା | - | ପ୍ରାଚୀନ କବି ସାରଳା ଦାସ (ମହାଭାରତ) । |
| ସୁଢଳଦେବ | - | ବାମଣ୍ଡାର ରାଜା ସ୍ୱର୍ଗୀୟ ରାଜା ସାର୍ ବାସୁଦେବ ସୁଢଳ ଦେବ । |
| ସୋନପୁର | - | ସୋନପୁର ମହାରାଜ ସାର୍ ବୀରମିତ୍ରୋଦୟ ସିଂହଦେବ । |
| ହରେକୃଷ୍ଣ | - | କବିରାଜ ହରେକୃଷ୍ଣ ମିଶ୍ର । |

# ଓଡ଼ିଆ ଶବ୍ଦମାନଙ୍କ ଉଚ୍ଚାରଣକୁ ଇଂରାଜୀ ଅକ୍ଷରରେ ଅକ୍ଷରାନ୍ତରୀକରଣରେ ବ୍ୟବହୃତ ବର୍ଣ୍ଣମାନଙ୍କର ପରିଚୟ

## Letters & sounds used in English transliteration of the words in the Purnnachandra Bhashakosha

| | Capital | Small | | Capital | Small |
|---|---|---|---|---|---|
| ଅ | A | a | ଟ | Ṭ | ṭ |
| ଆ | Ā | ā | ଠ | Ṭh | ṭh |
| ଇ | I | i | ଡ | Ḍ | ḍ |
| ଈ | Ī | ī | ଡ଼ | - | rd |
| ଉ | U | u | ଢ | Ḍh | ḍh |
| ଊ | Ū | u | ଢ଼ | - | rdh |
| ଋ | Ṛu | ṛu | ଣ | Ṇ | ṇ |
| ୠ | Ṛū | rū | ତ | T | t |
| ଌ | Ḷu | ḷu | ଥ | Th | th |
| ଏ | E | e | ଦ | D | d |
| ଐ | Ai | ai | ଧ | Dh | dh |
| ଓ | O | o | ନ | N | n |
| ଔ | Au | au | ପ | P | p |
| ଂ (ଅନୁସ୍ୱାର) | - | ṁ | ଫ | Ph | ph |
| ଃ (ବିସର୍ଗ) | | ḥ | ବ | B | b |
| ଁ (ଚନ୍ଦ୍ରବିନ୍ଦୁ) | - | ñ | ଭ | Bh | bh |
| କ | K | k | ମ | M | m |
| କ୍ଷ | Ksh | ksh | ଯ | J | j |
| ଖ | Kh | kh | ୟ | Y | y |
| ଗ | G | g | ର | R | r |
| ଘ | Gh | gh | ଳ | L | l |
| ଙ | Ṅ | ṅ | ଲ | L | l |
| ଚ | Ch | ch | ଅବର୍ଗ୍ୟ ବ ବା ୱ | W | w |
| ଛ | Chh | chh | ଶ | Ś | ś |
| ଜ | J | j | ଷ | Sh | sh |
| ଝ | Jh | jh | ସ | S | s |
| ଞ | Ñ | ñ | ହ | H | h |

# ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ବ୍ୟବହୃତ ସାଙ୍କେତିକ ଅକ୍ଷର ଓ ଚିହ୍ନମାନଙ୍କ ପରିଚୟ

## Abbreviations used in this work with their meanings

| | | |
|---|---|---|
| ଅ | = | ଅବ୍ୟୟ ପଦ । |
| ଅଦାଲତ | = | ଅଦାଲତରେ ବ୍ୟବହୃତ ଶବ୍ଦ ବା ଭାଷା । |
| + ଅଧିକରଣ | = | ଅଧିକରଣ ବାଚ୍ୟରେ ପ୍ରତ୍ୟୟ । |
| + ଅପାଦାନ | = | ଅପାଦାନ ବାଚ୍ୟରେ ପ୍ରତ୍ୟୟ । |
| ଅଶୁଦ୍ଧ | = | କଥାବାର୍ତ୍ତାରେ ବା ଲେଖାରେ ବ୍ୟବହୃତ ଅଶୁଦ୍ଧ ଶବ୍ଦ, ବାକ୍ୟ ବା ଉଚ୍ଚାରଣ । |
| ଆ | = | ଆରବୀ ଭାଷା । |
| ଆ | = | ଆଇନ୍ ବା ସ୍ମୃତିଶାସ୍ତ୍ରରେ ବ୍ୟବହୃତ ଶବ୍ଦ । |
| ଆସାମୀ | = | ଆସାମ ଦେଶର ଭାଷା । |
| ଇଂ | = | ଇଂରାଜୀ ଭାଷା । |
| ଇତର | = | ଇତରଜନ ବ୍ୟବହୃତ ଶବ୍ଦ ବା ଭାଷା । |
| ଇତ୍ୟ | = | ଇଟାଲୀୟ ଭାଷା । |
| ଇତ୍ୟାଦି | = | ପୂର୍ବବର୍ତ୍ତୀ ଶବ୍ଦ ଓ ସେହି ଶବ୍ଦଯୁକ୍ତ ଅନ୍ୟ ଶବ୍ଦମାନ । |
| ଉ; ଉର୍ଦ୍ଦୁ | = | ଉର୍ଦ୍ଦୁ ଭାଷା । |
| ଓ | = | ଓଡ଼ିଆ ଭାଷା । |
| କଚିରିଆ | = | କଚିରି ଆଦିରେ ଓ ଅଶିକ୍ଷିତ ଦଲିଲ ଲେଖାଳିଙ୍କ ବ୍ୟବହୃତ'ଶବ୍ଦ ବା ଭାଷା । |
| କନ୍ଧ | = | କନ୍ଧମାନଙ୍କ ବ୍ୟବହୃତ ଭାଷା । |
| + କରଣ | = | କରଣ ବାଚ୍ୟରେ ପ୍ରତ୍ୟୟ । |
| + କର୍ତ୍ତୃ | = | କର୍ତ୍ତୃ ବାଚ୍ୟରେ ପ୍ରତ୍ୟୟ । |
| + କର୍ମ | = | କର୍ମ ବାଚ୍ୟରେ ପ୍ରତ୍ୟୟ । |
| କର୍ମଧା | = | କର୍ମଧାରୟ ସମାସ । |
| କୋହ୍ଲ | = | କୋହ୍ଲ ଭାଷା । |
| କ୍ରି | = | କ୍ରିୟାପଦ । |
| କ୍ରି. ବିଣ | = | କ୍ରିୟା ବିଶେଷଣ । |

| | | |
|---|---|---|
| ଖ୍ରୀ | = | ଖ୍ରୀଷ୍ଟାବ୍ଦ । |
| ଖ୍ରୀ. ପୂ. | = | ଖ୍ରୀଷ୍ଟ ଜନ୍ମର ପୂର୍ବାବ୍ଦ । |
| ଗଣିତ | = | ଗଣିତଶାସ୍ତ୍ରରେ ବ୍ୟବହୃତ ଶବ୍ଦ । |
| ଗାଳି | = | ଇତରଜନଙ୍କ ମଧ୍ୟରେ ଗାଳିରେ ବ୍ୟବହୃତ ଶବ୍ଦ ବା ବାକ୍ୟ । |
| ଗୁ | = | ଗୁଜରାଟୀ ଭାଷା । |
| ଗ୍ରା, ଗ୍ରାମ୍ୟ | = | ଗ୍ରାମ୍ୟ ବ୍ୟବହାର; ମାର୍ଜିତ ସାହିତ୍ୟରେ ପରିହାର୍ଯ୍ୟ ଶବ୍ଦ । |
| ଗ୍ରୀ, ଗ୍ରୀକ୍ | = | ଗ୍ରୀସ୍ ଭାଷା । |
| ଜର୍ମାନ୍ | = | ଜର୍ମାନ୍ ଭାଷା । |
| ଜ୍ୟୋତିଷ | = | ଜ୍ୟୋତିଃଶାସ୍ତ୍ରରେ ବ୍ୟବହୃତ ଶବ୍ଦ । |
| ତତ୍ | = | ତତ୍ପୁରୁଷ ସମାସ । |
| ତା | = | ତାମିଲ ଭାଷା । |
| ତୁର୍କୀ | = | ତୁରସ୍କଦେଶୀୟ ଭାଷା । |
| ତୁଳ | = | ତୁଳନା କର । |
| ତେ | = | ତେଲୁଗୁ ଭାଷା । |
| ଦର୍ଶନ | = | ଦର୍ଶନଶାସ୍ତ୍ରରେ ବ୍ୟବହୃତ ଶବ୍ଦ । |
| ଦେ | = | ଦେଶଜ ଶବ୍ଦ । |
| ଦେଖ | = | ପୂର୍ବବର୍ତ୍ତୀ ଶବ୍ଦକୁ ଏ ଭାଷାକୋଷର ଶବ୍ଦକ୍ରମରେ ଯଥାସ୍ଥାନରେ ଖୋଜ । |
| ଦ୍ର | = | ଦ୍ରଷ୍ଟବ୍ୟ । |
| ଦ୍ରା | = | ଦ୍ରାବିଡ଼ ଭାଷା । |
| ଧା | = | ଧାତୁ = ସଂସ୍କୃତ ଧାତୁ । |
| ଧ୍ୱନ୍ୟନୁକରଣ | = | ଧ୍ୱନି ଅନୁକରଣରେ ଗଠିତ ବା ଉଚ୍ଚାରିତ ବା ଅର୍ଥ ବୁଝାଯିବା ଶବ୍ଦ । |
| ନଞ ତତ୍ | = | ନଞ ତତ୍ପୁରୁଷ ସମାସ । |
| ନପୁଂ | = | ନପୁଂସକ ଲିଙ୍ଗ । |
| ନାଟକ | = | ନାଟକରେ ବ୍ୟବହୃତ ଭାଷା । |
| ନାମ | = | ସ୍ଥାନ ବା ବ୍ୟକ୍ତିବିଶେଷଙ୍କ ନାମ । |
| ନୋଟ୍ | = | ପୂର୍ବବର୍ତ୍ତୀ ଶବ୍ଦ ବିଷୟରେ ଟୀକା । |
| ନ୍ୟାୟ | = | ୧. ନ୍ୟାୟଶାସ୍ତ୍ର; ୨. ଦେଶପ୍ରଚଳିତ ନ୍ୟାୟ ବା ଉଲ୍ଲେଖ ଦେବା ପ୍ରାମାଣିକ ଉକ୍ତି । |
| ପଦ୍ୟ | = | କେବଳ ପଦ୍ୟରେ ବ୍ୟବହୃତ ଆକାର । |
| ପର୍ତ୍ତୁ | = | ପର୍ତ୍ତୁଗିଜ୍ ଭାଷା । |
| ପା | = | ପାଲୀ ଭାଷା । |

| | | |
|---|---|---|
| ପୁଂ | = | ପୁଂଲିଙ୍ଗ । |
| ପ୍ରା | = | ପ୍ରାକୃତ ଭାଷା । |
| ପ୍ରାଚୀନ | = | ପ୍ରାଚୀନ ଗ୍ରନ୍ଥମାନଙ୍କରେ ବ୍ୟବହୃତ । |
| ଫା | = | ଫାରସୀ ବା ପାରସ୍ୟ ଦେଶ ପ୍ରଚଳିତ ଭାଷା । |
| ଫ୍ରେ | = | ଫ୍ରେଞ୍ଚ୍ ବା ଫ୍ରାନ୍ସ ଦେଶ ପ୍ରଚଳିତ ଭାଷା । |
| ବ | = | ବଚନ; (୧ବ = ଏକବଚନ; ୨ବ = ଦୁଇବଚନ; ବହୁ ବ = ବହୁବଚନ ।) |
| ବଂ | = | ବଙ୍ଗଳା ଭାଷା । |
| ବି | = | ବିଶେଷ୍ୟ ପଦ । |
| ବିଜ୍ଞାନପରିଭାଷା | = | ବିଜ୍ଞାନରେ ବ୍ୟବହୃତ ପାରିଭାଷିକ ଶବ୍ଦ । |
| ବିଣ | = | ବିଶେଷଣ ପଦ । |
| ବିଣର ବିଣ | = | ବିଶେଷଣର୍ ବିଶେଷଣ । |
| ବିପରୀତ | = | ପୂର୍ବୋକ୍ତ ଶବ୍ଦର ବିପରୀତାର୍ଥବୋଧକ ଶବ୍ଦ । |
| ବୈଦେ | = | ବୈଦେଶିକ ଭାଷା (ଯଥା - ଇଂରାଜୀ, ଆରବୀ, ଫାରସୀ, ଫ୍ରେଞ୍ଚ୍, ଜର୍ମାନ୍ ଆଦି)ରୁ ଆଗତ ଶବ୍ଦ । |
| ବୈଦ୍ୟକ | = | ବୈଦ୍ୟକ ଗ୍ରନ୍ଥ ବା ଆୟୁର୍ବେଦରେ ବ୍ୟବହୃତ ଶବ୍ଦ । |
| ଭତରି; ଭତ୍ରୀ | = | ବସ୍ତର ରାଜ୍ୟର ଉତ୍ତରପୂର୍ବ କୋଣରେ କୋଡ଼ିଏ ହଜାର କୃଷକଲୋକଙ୍କ କଥିତ ଭାଷା । |
| + ଭାବ | = | ୧. ଭାବାର୍ଥ ପ୍ରତ୍ୟୟ; ୨. ଭାବ ବାଚ୍ୟରେ ପ୍ରତ୍ୟୟ । |
| ମ | = | ମରହଟ୍ଟୀ ଭାଷା । |
| ମ. ପ. ଲୋ. | = | ମଧ୍ୟପଦଲୋପୀ କର୍ମଧାରୟ । |
| ଯଥା | = | ପୂର୍ବୋକ୍ତ ଶବ୍ଦ ବା ଅର୍ଥର ପ୍ରୟୋଗର ଉଦାହରଣ । |
| ଲକ୍ଷଣାର୍ଥ | = | ଶବ୍ଦର ଆରୋପିତ ଅର୍ଥ । |
| ଲରିଆ | = | ସମ୍ବଲପୁର ଓ ଛତିଶିଗଡ଼ ଅଞ୍ଚଳରେ ବ୍ୟବହୃତ ଉପଭାଷା । |
| ସଂ | = | ସଂସ୍କୃତ ଭାଷା । |
| + ସଂଜ୍ଞାର୍ଥ | = | ସଂଜ୍ଞାର୍ଥ ପ୍ରତ୍ୟୟ । |
| + ସମ୍ବନ୍ଧ | = | ସମ୍ବନ୍ଧାର୍ଥ ପ୍ରତ୍ୟୟ । |
| ସର୍ବ | = | ସର୍ବନାମ ପଦ । |
| ସହଚର | = | ଏକତ୍ର ବା ଏକ ପରେ ଅନ୍ୟ ସହଚର ଶବ୍ଦରୂପେ ବ୍ୟବହୃତ ଶବ୍ଦଦ୍ୱୟ । |
| ସାନ୍ତାଳୀ | = | ସାନ୍ତାଳମାନଙ୍କ କଥିତ ଭାଷା । |

| | | |
|---|---|---|
| ସ୍ତ୍ରୀ | = | ସ୍ତ୍ରୀଲିଙ୍ଗ । |
| + ସ୍ୱାର୍ଥେ | = | ଶବ୍ଦର ସେହି ଅର୍ଥରେ ଯୁକ୍ତ ପ୍ରତ୍ୟୟ । |
| ହି | = | ହିନ୍ଦୀ ବା ହିନ୍ଦୁସ୍ଥାନୀ ଭାଷା । |
| ହେବ୍ରୁ* | = | ହେବ୍ରୁ ଭାଷା । |
| ୧ମା | = | ପ୍ରଥମା ବିଭକ୍ତି । |
| ୨ୟା | = | ଦ୍ୱିତୀୟା ବିଭକ୍ତି । |
| ୩ୟା | = | ତୃତୀୟା ବିଭକ୍ତି । |
| ୪ର୍ଥୀ | = | ଚତୁର୍ଥୀ ବିଭକ୍ତି । |
| ୫ମୀ | = | ପଞ୍ଚମୀ ବିଭକ୍ତି । |
| ୬ଷ୍ଠୀ | = | ଷଷ୍ଠୀ ବିଭକ୍ତି । |
| ୭ମୀ | = | ସପ୍ତମୀ ବିଭକ୍ତି । |
| ୧ବ | = | ଏକବଚନ । |
| ୨ବ | = | ଦ୍ୱିବଚନ । |
| ବହୁବ | = | ବହୁବଚନ । |
| + (ଯୁକ୍ତ ଚିହ୍ନ) | = | ପରସ୍ପର ଯୁକ୍ତ ହେବା ଦୁଇ ଶବ୍ଦ ବା ଧାତୁ ଓ ପ୍ରତ୍ୟୟ ମଧ୍ୟରେ ଥିବା ଯୁକ୍ତଚିହ୍ନ । |
| = (ସମାନ) | = | ଧାତୁ ଓ ପ୍ରତ୍ୟୟ ମିଶି ବା ଦୁଇ ପଦ ମିଶି ନିଷ୍ପନ୍ନ ହେବା ଶବ୍ଦ ବା ଅର୍ଥ । |
| ? (ପ୍ରଶ୍ନ) | = | ସନ୍ଦେହ ସ୍ଥଳରେ ପ୍ରଦତ୍ତ ଚିହ୍ନ । |
| - (ଡାସ୍) | = | ପରସ୍ପର ସମ୍ବନ୍ଧ ଦୁଇଟି ଶବ୍ଦ ବା ଶବ୍ଦ ଓ ଅର୍ଥ ବା ଦୁଇଟି ଭାବ ମଧ୍ୟରେ ସମ୍ବନ୍ଧଜ୍ଞାପକ ଚିହ୍ନ । |
| Etc; etc. | = | Please refer to the word preceding and its following words in this Dictionary. |
| See | = | Please refer to the preceding word. |
| Law | = | Legal term. |

Algebra, Arithmetic, Astrology, Astronomy, Botany, Geography, Geometry, Logic, Mathematics, Philosophy } = Words used in the said Sciences

# ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ

## ଅ

ଅ - ସଂସ୍କୃତ ଓ ଓଡ଼ିଆ ବର୍ଣ୍ଣମାଳାର ଏବଂ ସ୍ୱରବର୍ଣ୍ଣର ଆଦ୍ୟ ଅକ୍ଷର ।

A " अ

ଏହି ବର୍ଣ୍ଣର ସ୍ୱତନ୍ତ୍ର ଚିହ୍ନ ବା ମାତ୍ରା ନାହିଁ । ସଂସ୍କୃତ ଏବଂ ଓଡ଼ିଆରେ ଆମ୍ଭେମାନେ ବ୍ୟଞ୍ଜନ ବର୍ଣ୍ଣମାନଙ୍କୁ ଏହି 'ଅ' ସ୍ୱରସଙ୍ଗେ ଯୁକ୍ତକରି ଉଚ୍ଚାରଣ କରୁଁ ଓ ବର୍ଣ୍ଣପରିଚୟ କରୁଁ । ଏହାର ଉଚ୍ଚାରଣ ସ୍ଥାନ କଣ୍ଠ । ସଂସ୍କୃତରେ ଏହାର ହ୍ରସ୍ୱ, ଦୀର୍ଘ, ପ୍ଲୁତ, ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତ ଉଚ୍ଚାରଣମାନ ଅଛି; କିନ୍ତୁ ଓଡ଼ିଆ ଭାଷାରେ ଏଥିର ଆଲୋଚନା ଅନାବଶ୍ୟକ । ପୁରୁଣାକାଳିଆ ଅବଧାନମାନେ ପିଲାଙ୍କୁ ଏହି ଅକ୍ଷର ମଡ଼ାଇବାବେଳେ ଏହାକୁ 'ସ୍ୱରେ ଅ' ବୋଲି ଡାକନ୍ତି । ଏହା ଓଁ ବା ପ୍ରଣବର ଅଙ୍ଗବିଶେଷ ବୋଲି ଶାସ୍ତ୍ରରେ କଥିତ; ଅ + ଉ + ମ୍ ମିଶି ଓଁ ହୋଇଅଛି । ହିନ୍ଦୁ ଶାସ୍ତ୍ର ଅନୁସାରେ 'ଅ' ଅକ୍ଷରର ଅଧିଷ୍ଠାତ୍ରୀ ଦେବତା ପରମାତ୍ମା ।

The first letter of the ordia alphabet. The first vowel corresponding to the English letter, A.

ଅ-ସଂ, ବି. ପୁଂ

A अ

୧. ଅର୍କମଣ୍ଡଳ ବୀଜାତ୍ମକ ଅକ୍ଷର ।

1. The mystic root of the solar circle.

୨. ପରଂବ୍ରହ୍ମସୂଚକ ଏକାକ୍ଷର ।

2. The letter indicating the Divine Soul pervading the Universe.

୩. (ଅବ୍‌ଧାତୁ = ରକ୍ଷା କରିବା + କର୍ତ୍ତୃ- ଅ, ଯେ ସୃଷ୍ଟି ରକ୍ଷା କରନ୍ତି ।) ବିଷ୍ଣୁ ।

3. Bishnu, the Preserver of the Hindu Trinity.

୪. ମହେଶ୍ୱର, ଶିବ ।

4. Siba, the Destroyer.

୫. ପରଂବ୍ରହ୍ମ ।

5. The Divine Soul of Essence pervading the Universe.

୬. ପଣବ ବା ଓଁକାରର ଆଦ୍ୟ ଅଙ୍ଗ (ଅ + ଉ + ମ୍ = ଓଁ) ।

6. The First component of the mystic syllable 'Om'.

[ଦ୍ର - ତନ୍ତ୍ରରେ 'ଅ' ର ସତର ପ୍ରକାର ଅର୍ଥ ଅଛି, କିନ୍ତୁ ସେ ସବୁ ଭାଷାରେ ବ୍ୟବହୃତ ହୁଏ ନାହିଁ ।]

ସଂ.ଅ - ଖେଦ, ଅନୁକମ୍ପା, ସମ୍ବୋଧନ, ସମ୍ମତି, ସାଦୃଶ୍ୟ, ଅଭାବ, ଅଳ୍ପତା, ଅପ୍ରଶସ୍ତତା, ବିରୋଧଭାବ, ଅସମ୍ମତି ଇତ୍ୟାଦି ସ୍ଥଳରେ ବ୍ୟବହୃତ ବର୍ଣ୍ଣ ।

[ଦ୍ର - ଏ ସ୍ଥଳମାନଙ୍କରେ ଏହାର ଉଚ୍ଚାରଣ ଦୀର୍ଘ ।]

Interjection used to indicate grief, pity, address, consent, similarity, want, littleness, narrowness, opposition, disagreement etc.

ସଂ ଉପପଦ - ନଞ ବା 'ନାହିଁ' ବାଚକ ଉପପଦ -

(ଏହା ସ୍ୱତନ୍ତ୍ର ବ୍ୟବହୃତ ନ ହୋଇ ଅନ୍ୟ ବ୍ୟଞ୍ଜନାଦ୍ୟ ଶବ୍ଦ ପୂର୍ବରେ ଲାଗି ନଞ ତତ୍‌ପୁରୁଷ ସମାସ ହୁଏ । ଯଥା - ଅରସିକ, ଅଭଦ୍ର, ଅମନୁଷ୍ୟ)

A negative or privative particle prefixed to words beginning with consonants to form a compound, and used in the following senses.

ଏହି ଉପପଦ ନିମ୍ନୋକ୍ତ ଭିନ୍ନ ଭିନ୍ନ ଅର୍ଥରେ ଲାଗେ -

ସାଦୃଶ୍ୟ - (ଯଥା - ଅବ୍ରାହ୍ମଣ) - Similarity.

ଅଭାବ - (ଯଥା - ଅନିୟମ, ଅକାରଣ) - Want.

ଅନ୍ୟତ୍ୱ - (ଯଥା - ସଂ. ଅଘଟ = ଘଟଭିନ୍ନ ଅନ୍ୟ ପଦାର୍ଥ) - Other than.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା - 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବଂଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଆଗ୍ୟାଁ' ନ ପାଇଲେ 'ଆଜ୍ଞା' ଦେଖିବେ; 'ଅଲବତ୍' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଅଳ୍ପତା - (ଯଥା - ଅଲଣା) - Insufficiency or deficit.

ଅପ୍ରାଶସ୍ତ୍ୟ - (ଯଥା - ଅକାଳ, ଅସମୟ, ଅପଶୁ) - Unsuitability.

ବିରୋଧ - (ଯଥା - ଅସୁର = ସୁରବିରୋଧୀ; ଅଶାସ୍ତ୍ରୀୟ = ଶାସ୍ତ୍ରବିରୁଦ୍ଧ) - Opposition.

ମନ୍ଦତା ବା ହୀନତା - (ଯଥା - ଅମନୁଷ୍ୟ, ଅକଥା, ଅକର୍ମ, ଅଜାତି) - Badness.

ଅନୁକମ୍ପା - (ଏଥିର ଉଦାହରଣ ଭାଷାରେ ବିରଳ) - Sympath.

[ଦ୍ର - ସ୍ୱରାଦ୍ୟ ଶବ୍ଦ ପୂର୍ବେ ନଞାର୍ଥକ 'ଅ' ଲାଗିଲେ ଏହା ସଂସ୍କୃତରେ 'ଅନ୍' (ଯଥା - ଅନଧିକାର) ଓ ଓଡ଼ିଆରେ 'ଅଣ' (ଯଥା - ଅଣଅଧିକାର) ଆକାର ଧାରଣ କରେ । ଓଡ଼ିଆରେ ବ୍ୟଞ୍ଜନାଦ୍ୟ ଶବ୍ଦ ପୂର୍ବେ ଏହି 'ଅ' ମଧ ବିକଳ୍ପରେ 'ଅଣ' ଆକାର ଧାରଣ କରେ (ଯଥା - ଅମଣିଷ, ଅଣମଣିଷ; ଅବାବୁଆ, ଅଣବାବୁଆ) ।

ଦେ. ବି. - (ଧ୍ୱନ୍ୟନୁକରଣ) - (Onomatopoetic)

୧. ଅଇ, ବମନେଚ୍ଛା - 1. Tendency to vomit

୨. ବମନ, ବାନ୍ତି - 2. Vomiting.

[ଦ୍ର - ବାନ୍ତି କଲାବେଳେ ମନୁଷ୍ୟ ଦୀର୍ଘ 'ଅ' ଧ୍ୱନି କରିବାରୁ ଓ ବାନ୍ତିର ଉପକ୍ରମ ହେଲାବେଳେ ଏହି ଧ୍ୱନି ମୁହଁରୁ ବାହାରୁଥିବାରୁ 'ଅ' ର ଏହି ଅର୍ଥ ।]

ଦେ. ଅ. - ବେଖାତିର ବା ଅସମ୍ମତିସୂଚକ ଧ୍ୱନି - An exclamation of disdain or disagreement.

ଦ୍ର - ଏ ସ୍ଥଳରେ ଏଥିର ଉଚ୍ଚାରଣ ଦୀର୍ଘ ଓ ସ୍ଥାୟୀ ।]

ଖଣ୍ଡ ଆକାର ସଂ.ବି. ସନ୍ଧି ନିୟମରେ 'ଏ' କାରାନ୍ତ ବା 'ଓ' କାରାନ୍ତ ଓ ଆକାର ପରବର୍ତ୍ତୀ ବିସର୍ଗାନ୍ତ ପଦର ଯେଉଁ 'ଅ' ଅକ୍ଷର ଲୁପ୍ତ ହୁଏ ତହିଁର ଚିହ୍ନ - ഽ

ଲୁପ୍ତ ଅକାର (ଯଥା - ସୋଽହଂ, ଅନ୍ୟୋଽନ୍ୟ) ।

[ଦ୍ର - ଏଥିର ଉଚ୍ଚାରଣରେ 'ଅ'ର କ୍ଷୀଣ ଆଭାସ ଥାଏ ଏବଂ ପଣ୍ଡିତମାନଙ୍କ ଓଡ଼ିଆ ଲେଖାରେ ମଧ ଏ ଚିହ୍ନର ବ୍ୟବହାର ଦେଖାଯାଏ । ହାତରେ ଚମ୍ପାଫୁଲଟିଏ ଧରି ତାହା ପକାଇଦେବା ପରେ ହାତରେ ଯେଉଁ ବାସନାଟିକକ ରହିଯାଏ, ଏ ଖଣ୍ଡ ଅକାର ସେହିପରି ଅ ଅକ୍ଷର ବାସନା ମାତ୍ର ।]

A sign indicating the disappearing or silent 'a' in a compound word.

ଅଅ - ଦେ. ଅ - A-A (ଧ୍ୱନ୍ୟନୁକରଣ 'ଅ'ର ଦ୍ୱିତ୍ୱ) ।

୧. ବମନ କରିବାର ବା ବମନ ଉପକ୍ରମ ହେବା ବେଳର ଶବ୍ଦ -

1. Sound of a person vomiting or going to vomit.

୨. ଶିଶୁମାନଙ୍କୁ ପ୍ରଥମେ 'ଅ' ଅକ୍ଷର ଲେଖାଇ ମଡ଼ାଇବା ବେଳେ ଶିଶୁ ଘୋଷିବା ଦ୍ୱି - ଉଚ୍ଚାରଣ - 2. Doubled or repeated utterance of the letter 'a' by a child Learning to write.

ଅଅଁଳା - ଦେ. ବି -୧. (ସଂ. ଆମଲକ) ଆମଳକ (ଦେଖ) ବନ୍ୟ ବୃକ୍ଷ ଓ ତହିଁର କୋଳି ।

Aañḷā ବନ୍ୟ ବୃକ୍ଷ ଓ ତହିଁର କୋଳି ।

ସଂ ନାମ - ଆମଳକ, ଆମଳକୀ, ଧାତ୍ରୀ I. A tree and its berry; Embellic myrobalan; Phylanthos emblica.

ତିଷ୍ୟଫଳା, ଅମୃତା, আমলা, আমলাকি, आमला, आँवला

ଫା. ଆମ୍ଲା, ଆ. ଆମ୍ଲଜ୍, ତେ. ଉପରକାୟା

[ଦ୍ର - ଅଁଳା କୋଳି ତ୍ରିଫଳାର (ହରିଡ଼ା, ବାହାଡ଼ା, ଅଁଳା) ଏକତମ ଉପାଦାନ; ଲୋକେ ଅନ୍ୟ କେତେକ ମସଲା ସଙ୍ଗେ ଏହାକୁ ମିଶାଇ ବାଟି କରି ଗାଧୋଇବା ପୂର୍ବରୁ ଦେହରେ ଓ ମୁଣ୍ଡରେ ଲଗାଇ ଗାଧୁଅନ୍ତି ଓ ଏଥିରେ ଦେହ ବାସେ । ଏହା ହରିଡ଼ା ପରି ଗୁଣବିଶିଷ୍ଟ । ଏହା ମିଠା ଓ ଖଟାମିଶା କଷା । ଏହା ବାୟୁ, ପିତ୍ତ, କଫ ଓ ପ୍ରମେହନାଶକ । ଏହା ବୃଷ୍ୟ ଓ ରସାୟନ ।]

୨. (ସଂ. ଅମ୍ଳାତ, ଅମ୍ଳାଟନ)

ସଂ ନାମ - ଅମ୍ଳାଟନ, ଅମ୍ଳାତ, ଅମ୍ଳାତକ, କୁରୁଣ୍ଟକ, କୁରୁବକ, ବର୍ଣ୍ଣପୁଷ୍ପ, ମହାସହା,

ଅଁଅଁଳେଇ ଫୁଲ ଓ ଗୁଳ୍ମ; କୁରୁବକ । ଏଥିର ଫୁଲ ନାଲି ଓ ହଳଦିଆ । ଫୁଲର ଡେମ୍ଫ ଲମ୍ବା । ଏହି ଡେମ୍ଫରେ ସୂତା ଗଳାଇ ଗୁଚ୍ଛ କରି, ମାଳ ଗୁନ୍ଥି ସ୍ତ୍ରୀମାନେ ଜୁଡ଼ାରେ ପିନ୍ଧନ୍ତି । ଏହା ମଧ ଔଷଧରେ ଲାଗେ । ଏହା କଷାୟ ମଧୁର ତିକ୍ତ ରସ, ଉଷ୍ଣବୀର୍ଯ୍ୟ ଓ ସ୍ନିଗ୍ଧ ।

कटसरेया, लाल गुलेमक़्खन् -2. A flowering plant; Barleria cristata.

ତେ. ଉଶିରିକା [ନାଲି ଫୁଲ ଫୁଟିବା ଗୁଳ୍ମ = ସଂ, କୁରୁବକ; ହଳଦିଆ ଫୁଲ ଫୁଟିବା ଗୁଳ୍ମ = ସଂ, କୁରୁଣ୍ଟକ; ନେଳି ଫୁଲ ଫୁଟିବା ଗୁଳ୍ମ = ସଂ. ବାଣା]

୩. (ସଂ. ଆମଳକ, ଏହାର ଆକୃତି ଅଁଳାକୋଳି ପରି ଚିରୁଡ଼ା ଚିରୁଡ଼ା ଓ ଚେପ୍ଟା ଥିବାରୁ)

আমলাকি - ଦେଉଳର ବିମାନ ଉପରେ ସ୍ଥାପିତ ଓ ଦହିଖୁଆ ପରି ଚିରୁଡ଼ା ଚିରୁଡ଼ା ଓ ଚେପ୍ଟା ଚକଡ଼ା । ଏହା ଉପରେ ଦହିନଉତି ଥାଏ । ଅଁଳାକୋଳି ପରି କାମ ହୋଇଥିବା ଦହିନଉତିର ତଳ ବଇଠି । ଅଁଳା ସାଳି ।

3. An orange-shaped structure over the dome and below the top-stone of a temple.

ଅଁଳାଇ - ଦେବ. ବି. - ଅଁଳେଇ (ଦେଖ)

Aañḻāi. Aañḻei (See)

# ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ

## ଦ୍ୱିତୀୟ ଭାଗ

(ବ୍ୟଞ୍ଜନ ବର୍ଣ୍ଣ, କ-ଙ)

ସଂଗ୍ରାହକ

**ଗୋପାଳ ଚନ୍ଦ୍ର ପ୍ରହରାଜ**

ସହକର୍ମୀଗଣ

ଶ୍ରୀମତୀ ପୀତାମ୍ବରୀ ଦେବୀ
ପଣ୍ଡିତ ଶ୍ରୀ କୁଳମଣି ଦାଶ କାବ୍ୟତୀର୍ଥ
ପଣ୍ଡିତ ଶ୍ରୀ ରାମଚନ୍ଦ୍ର ରଥ
ପଣ୍ଡିତ ଶ୍ରୀ ଭୁବନେଶ୍ୱର ମିଶ୍ର
ସାମନ୍ତ ଶ୍ରୀ ନରସିଂହ ମହାପାତ୍ର
ପଣ୍ଡିତ ଶ୍ରୀ ଜଗନ୍ନାଥ ରଥ
ଶ୍ରୀ ଗୋଲକଚନ୍ଦ୍ର ପ୍ରଧାନ

# PŪRṆṆACHANDRA
# OṚḌIĀ BHĀSHĀKOSHA

(A Lexicon of the Oriya Language)

Volume II

(Consonants ka to na)

Compiler
**G. C. Praharaj**
Advocate
Patna High Court, Cuttack
B.N.R., Orissa (India)
with the help of body of Colleagues

Printed and Published by V. Kar

THE UTKAL SAHITYA PRESS
CUTTACK, 1932

**The Second Volume of the**
**PŪRNNACHANDRAORDIĀ**
**BHĀSHĀKOSHA**

(Oria Lexicon)

is dedicated to

N.F. Peck, Esq. B. A. *(Cantab)* I.C.S., C.B.E.
*Sometime District Officer of Cuttack & officiating Commissioner of the Orissa Division*
in grateful recognition of his initiative and sincere solicitude for the publication of the work and the valuable encouragement given by him to the cause of Oriya literature and his genuine sympathy for the Orias which he evinced as District Officer of Cuttack and Commissioner of the Orissa Division.

By his admirer

Cuttack, THE COMPILER
August, 1932. G. C. PRAHARAJ

ଏହି **ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର** ମୁଦ୍ରଣ ଓ ପ୍ରକାଶାର୍ଥ ଯେଉଁ ମହାନୁଭବ ମହୋଦୟ ବିହାର-ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କଠାରୁ ବିଶିଷ୍ଟ ସାହାଯ୍ୟ ମିଳିବାପାଇଁ ପ୍ରାରମ୍ଭିକ ଉଦ୍ୟମର ସୂତ୍ରପାତ ଓ ସୂଚନା କରି ଏ ବହୁବ୍ୟୟସାଧ ଗ୍ରନ୍ଥ ମୁଦ୍ରିତ ଓ ପ୍ରକାଶିତ ହେବାର ପଥ ଉନ୍ମୁକ୍ତ କରିଅଛନ୍ତି ଓ ଯାହାଙ୍କର ଏ ଗ୍ରନ୍ଥ ପ୍ରତି, ଓଡ଼ିଆଭାଷା ପ୍ରତି ଓ ଓଡ଼ିଆ ଜାତି ପ୍ରତି ଆନ୍ତରିକ ସ୍ନେହ ଦେଖି ମୁଁ ଉତ୍ସାହିତ ଓ କୃତାର୍ଥ ହୋଇଅଛି, ଏ କ୍ଷୁଦ୍ର ହୃଦୟରେ ତଜ୍ଜନିତ କୃତଜ୍ଞତାର ନିଦର୍ଶନସ୍ୱରୂପ କଟକର ସେହି ଭୂତପୂର୍ବ ଡିଷ୍ଟ୍ରିକ୍ଟ୍ ମାଜିଷ୍ଟ୍ରେଟ୍ ଓ କଲେକ୍ଟର ଏବଂ ଓଡ଼ିଶାର ଭୂତପୂର୍ବ ଅସ୍ଥାୟୀ କମିଶନର୍ ଏବଂ ବର୍ତ୍ତମାନ - ଓଡ଼ିଶା ପ୍ରଦେଶର ଅବକାରୀ ବିଭାଗର କମିଶନର୍ ଶ୍ରୀଯୁକ୍ତ ଏନ୍.ଏଫ୍. ପେକ୍ ବି.ଏ., ଆଇ.ସି.ଏସ୍. ସି.ବି.ଇ.ଙ୍କ ନାମରେ ଏ **ଭାଷାକୋଷର** ଦ୍ୱିତୀୟ ଖଣ୍ଡ ଉତ୍ସର୍ଗ କଲି ।

ଭାଷାକୋଷ ଆଶ୍ରମ ତଦୀୟ ସ୍ନେହକ୍ରୀତ
କଟକ ସଂଗ୍ରାହକ
ଅଗଷ୍ଟ, ୧୯୩୨ ଗୋପାଳ ଚନ୍ଦ୍ର ପ୍ରହରାଜ

# Introduction

To the Second Volume of
The Pūrṇṇachandra Ordia Bhāshākosha
(Oria lexicon)

Through the grace of the Almighty Father the second volume is now placed in the hands of the public. It comprises the first five consonants. The letter 'Ksha' (କ୍ଷ) is learnt by the beginner at the end of the consonants as a separate letter. It is a diphthong of Ka, being Ka କ + Sha (ଷ). So it has been given in the work a place after the letter Ka.

In the introduction to the first volume the history and progress of this undertaking from the inception of the idea to the publication of the first volume was traced in detail.

That this publication, when completed, will remove a real want, needs no argument. From the following extracts from letters received from the German philologist, Professor Dr. Wilhelm Printz, Librarian of the famous library, Bibliothek Der Doutschen Morgenlandischen Gesselleschaft, Hall (Saale) in Germany, it will be apparent what position the Oria language and literature have hitherto held in the estimation of the civilised nations.

On receipt of the prospectus and specimen pages he wrote - "Since some years I have tried to increase our department of books in modern Indian languages, and we have now a nice stock, e.g. of Bengalee and Hindi books; but so far, I have not had any opportunity to buy Oria books. Oriental book-sellers in Europe as well as in Calcutta do not seem to take interest in Oria literature".

On receipt of some Oria books and The Typical Selections from Oria literature in 3 volumes by Professor B. C. Mazumdar, together with a list of hundreds of Oria books of importance, sent by me, the Professor writes - "I am just writing a small article about Oria language and literature for the greatest German Encyclopaedia

published by Brockharus at Leipzig, and I was glad to take new information from the Introduction to the Typical Selections and to mention in the bibliography your dictionary and the Selections."

Libraries in Germany, Norway, France and England have been subscribing for the dictionary; and European book-sellers have been requesting me to register their names in advance for the dictionary. I am happy to think that the Oria language and literature will one day come to occupy their legitimate position amongst the modern languages and literatures and that I had an humble hand in contributing to the beginning of such an era.

I hope that the worthy and moneyed sons of Mother Orissa will extend their liberality and patronage to this undertaking of national importance, when they will realise the neglected position which our mother-tongue holds amongst the modern nations and will picture in their mind the bright future which is in store for it, in the comity of nations, once its rich portals are laid open to the outside world of letters.

Of my colleagues who were rendering me assistance in revising and faircopying the manuscripts when the first volume was out, Babu Chandra Sekhar Misra, B. A. has, in the mean time, left us. Pandit Kulamani Das, Head Pandit, Ravenshaw Collegiate School, Cuttack, Pandit Ram Chandra Rath, one of the workers of the defunct Satyabadi Institution of Puri district, Samanta Narsing Mahapatra, Assistant teacher of P. M. Academy, Cuttack, Babu Golak Chandra Pradhan, the talented author of an unpublished Oriya lyric of a very high order, Babu Bhubaneswar Misra, an excellent faircopyist and Pandit Jagannath Rath, an Oriya scholar with a musical and critical taste, have been working with me. Sreematee Peetambaree Debee, my valuable colleague and co-adjutrix in the undertaking since 1919, has continued to render me assistance with unabated zeal and interest. I cannot but admire the regularity and sincerity with which Pandit Kulamani has been indefatigably revising every line of the manuscripts and seeing that the meanings of the Sanskrit words given tally with those given in standard books of reference. Srijukta Visvanath Kar, the Proprietor of the Utkal Sahitya Press and the publisher of this work and Babu Padma Charan Das,

one of his assistants have been helping me in the correction of the proof-sheets.

Mr. C.L. Philip, M.A., I.C.S., Commissioner of the Orissa Division, and in his absence, Mr. S. L. Marwood, B.A., I.C.S., late District Magistrate and Collector of Cuttack, went through the English portions of a great number of proof-sheets of this volume; and the author acknowledges with pleasure the assistance rendered by them. It may be mentioned here with gratefulness that Mr. Philip volunteered to go through the English portions of the proof-sheets, and he has very cheerfully managed to devote at least one hour daily to going through eight pages of proof-sheets and make very valuable suggestions and corrections, but for which the second volume would have had many serious blunders. Amidst the multifarious pressing official duties which devolve on him as the Divisional head of Orissa, he has found time to go through the proof-sheets with regularity and precision.

My friend Babu Satindra Narayan Roy, M.A.B.L., Advocate of Cuttack has been helping me, as before, by supplying the Bengalee equivalents of Oriya words; and recently I have enlisted the co-operation of my young friend Babu Sudhamsu Mohan Mukherji, B.L., pleader of Cuttack in the supply of Bengalee equivalents. Pandit Ramlochan Saran, publisher of the Pustak Bhandar, Laheriaserai, Darbhanga, has been helping me in finding out the Hindi equivalents of many Oriya words.

The first volume dealt with 13 vowels; the second volume deals with 5 consonants and the diphthong 'Ksha'. Still, there remain 28 letters to be faircopied and printed in the succeeding three volumes. When the first volume was published in September 1931, it was calculated that the second volume would be out by March 1932; but on account of paucity of financial support from the generous donors and subscribers, by counting on whose liberality this gigantic compilation had been undertaken, the printing of the second volume has been unavoidably delayed by about 4 months. The financial deadlock through which the world has been passing, has affected the Government, and the rich people, more than the poor. Naturally the Maharajas, Rajas and other patrons of literature and learning, the sons of mother Lakshmi (the Goddess of riches), were not able to

respond as generously as some of them had done before. That flowing spring of liberality having dried up, it would have been impossible to bring out the second volume even now, had not some well disposed creditors readily lent the sum of seven thousand rupees on the security of my residential house, and thus enabled me to push on the revision and printing of the second volume. Matters have come to such a pass that many of the generous subscribers who had promised to purchase more than one copy of the work, when published, have been obliged to curtail their orders and purchase less number of copies; and some, even, have not purchased any copy. The Government of Madras, who had promised to purchase 50 copies, and the Government of Bengal, who had promised to purchase 10 copies, have,on account of the present financial stringency, rescinded their orders. At this time of financial distress I have hesitated to approach generous personages, to save them from the mortification of returning me from their doors empty-handed. It is hoped that better days will soon dawn and the undertaking will be pushed on with speed and vigour, with generous help received from the patrons of learning in this land and abroad.

Up to date, besides a sum of Rs. 7000/- received from the Government of Bihar and Orissa, the Maharaja of Kalahandi, the Raja Saheb of Chikiti, the Maharajadhiraj Bahadur of Burdwan and the Oriya Sahitya Sangha, for revision and faircopying of the manuscripts (acknowledged in the first volume), a sum of Rs. 20500/- has been received from the following sources to meet the cost of printing. The Government of Bihar and Orissa (half of the then estimated printing charges) Rs. 14200/-; Maharaja and Ruling Chief of Mayurbhanj State, Orissa, Rs. 4000/-; Mohant Maharaj of Emar Math, Puri, Rs. 1000/-; Raja Saheb and Ruling Chief of Keonjhar State, Orissa, Rs. 500/-; Rai Bahadur Loknath Misra, M.L.C. Advocate and Government pleader of Puri, Rs. 500/-, the junior dowager Maharanee of Mayurbhanj Rs. 200/-; the Raja Saheb and Ruling Chief of Kharsawan State, Orissa, Rs. 100/-. Besides the above, a sum of Rs. 5500/- is expected to be received from some of the donors who have made part payments out of their promised donations.

ପାଟନା ଷ୍ଟେଟ୍‌ର ଶିକ୍ଷାବିଭାଗ ଓ କର୍ମଚାରୀବୃନ୍ଦ ଏହି ପ୍ରାଦେଶିକ ଶବ୍ଦ ସଙ୍କଳନରେ ମୋର ଯେଉଁ ସହାୟତା କରିଅଛନ୍ତି, ତାହା ଏଠାରେ ମୁଁ ହୃଦୟର ଆବେଗପୂର୍ଣ୍ଣ କୃତଜ୍ଞତା ସହକାରେ ପ୍ରକାଶ କରୁଅଛି । ଶ୍ରୀମାନ୍ ମହାରାଜାଙ୍କ ସଙ୍କେତରେ ତାଙ୍କ ଏଡୁକେଶନ୍ ଅଫିସର୍ ବାବୁ ଶ୍ରୀ ଅଦ୍ୱୈତପ୍ରସାଦ ଦାସ, ଏମ୍.ଏ. ପାଟନା ଷ୍ଟେଟ୍‌ର ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କୁ ସେମାନଙ୍କ ନିଜ ନିଜ ଅଞ୍ଚଳର ପ୍ରଚଳିତ ପ୍ରାଦେଶିକ ଶବ୍ଦ ସଂଗ୍ରହ କରି ପଠାଇବାକୁ ଆଦେଶ ଦେଲେ । ଏହି ଭାବରେ ମୁଁ ସେ ଅଞ୍ଚଳର ସହସ୍ର ସହସ୍ର ପ୍ରାଦେଶିକ ଶବ୍ଦ ପାଇଅଛି । ଏଥିପାଇଁ ପୂର୍ବୋକ୍ତ ଏଡୁକେଶନ୍ ଅଫିସରଙ୍କ ଛରିଆରେ ଶବ୍ଦ ସଂଗ୍ରାହକ ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କୁ ମୁଁ ଅନ୍ତରର ଧନ୍ୟବାଦ ଅର୍ପଣ କରିଅଛି ।

ପ୍ରଧାନମନ୍ତ୍ରୀ ଲାଲା ରାଜକୁମାର, ଏମ୍.ଏ., ପି.ସି.ଏସ୍., ରାଜନଅରର ପରିଚାଳକ କୁମାର ରଣେନ୍ଦ୍ରପ୍ରତାପ ସିଂହଦେଓ, ଶ୍ରୀ ଗୋପାଳଚନ୍ଦ୍ର, ବି.ଏ., ଏଲ୍. ଏଲ୍, ବି., ଏମ୍. ଆର୍. ଏ. ଏସ୍. ଜୁଡ଼ିସିଆଲ ମନ୍ତ୍ରୀ ସେସନ୍‌ସ ଜଜ୍, ରାଓ ସାହେବ ଡକ୍ଟର୍ ପି.ସି.ଜନ୍., ଏମ୍.ବି.ବି.ଏସ୍.ର, ମେଡିକାଲ୍ ଅଫିସର, ବାବୁ ସତୀଶଚନ୍ଦ୍ର ବାନାର୍ଜୀ, ବି.ଏ., ସେଟଲମେଣ୍ଟ ଅଫିସର୍, ସର୍ଦ୍ଦାର ବିସନ ସିଂହ, ପୁଲିସସାହେବ, ବାବୁ ବଳଭଦ୍ର ବହିଦାର, ଟିଟିଲାଗଡ଼ର ଏସ୍.ଡି.ଓ., ବାବୁ ଚିନ୍ତାମଣି ମିଶ୍ର, ପାଟନାଗଡ଼ର ଏସ୍.ଡି.ଓ., ଶ୍ରୀ ଦିବ୍ୟସିଂହ ନାୟକ, ଷ୍ଟେନୋଗ୍ରାଫର୍, ଶ୍ରୀ ବାବୁ ବଂଶୀଧର ଚୋପଦାର, ମହାରାଜାଙ୍କ ପେସ୍କାର ପ୍ରମୁଖ ପାଟନା ଷ୍ଟେଟ୍‌ର ଉଚ୍ଚ ନିମ୍ନ ସମସ୍ତ ରାଜକର୍ମଚାରୀ, ଜମିଦାର ଓ ବିଶିଷ୍ଟ ବ୍ୟକ୍ତିମାନଙ୍କଠାରୁ ମୁଁ ସର୍ବଦା ଦୟାପୂର୍ଣ୍ଣ ବ୍ୟବହାର ଲାଭ କରି କୃତାର୍ଥ ହୋଇଅଛି ।

ପାଟନା ରାଜ୍ୟରେ ଭ୍ରମଣ କଲାବେଳେ ତତ୍ରତ୍ୟ ଲାଣ୍ଡ୍‌ରେକର୍ଡ ବିଭାଗର ସୁପରିଣ୍ଟେଣ୍ଡେଣ୍ଟ, ସରଦାର ଅମର ସିଂହ ସ୍ୱତଃପ୍ରବୃତ୍ତ ହୋଇ ଭାଷାକୋଷପାଇଁ ଗ୍ରାହକ, ସାହାଯ୍ୟକାରୀ ଓ ପୃଷ୍ଠପୋଷକ ସଂଗ୍ରହ କରିବାରେ ମୋର ଯେଉଁଭଳି ସହାୟତା କରିଅଛନ୍ତି, ତଦ୍ୱାରା ମୁଁ ହୃଦୟରେ ପରମପ୍ରୀତି ଅନୁଭବ କରିଅଛି । ତାଙ୍କର ଉତ୍ସାହ ଓ ପ୍ରଚୋଦନା ମୁଁ ସର୍ବଦା ସ୍ମରଣ ରଖିବି ।

ଶ୍ରୀମାନ୍ ଅଚ୍ୟୁତାନନ୍ଦ ରଥ, ଦାଶରଥି ମାଝି, ନବକିଶୋର ମହାପାତ୍ର,

ବିଶ୍ୱାମିତ୍ର ପଣ୍ଡା ଓ ଯୋଗେନ୍ଦ୍ର ପ୍ରସାଦ ପଣ୍ଡା,

ସମ୍ବଲପୁର ଜିଲ୍ଲାର ବରଗଡ଼ ହାଇସ୍କୁଲର ଏହି ଛାତ୍ରମାନଙ୍କଠାରୁ ସେ ଅଞ୍ଚଳର ବ୍ୟବହୃତ ଅନେକ ବିଶିଷ୍ଟ ଶବ୍ଦ ପାଇ ମୁଁ ଅତ୍ୟନ୍ତ ପ୍ରୀତ ହୋଇଅଛି ।

ସେମାନେ ସ୍ୱକୀୟ ମାତୃଭାଷାପାଇଁ ଯେଉଁ ଉନ୍ମାଦନାରେ ପ୍ରଣୋଦିତ ହୋଇ ଅଯାଚିତ ଭାବରେ ଏହି କାର୍ଯ୍ୟ କଲେ, ତାହା ମୁଁ ଯଥାର୍ଥରେ ହୃଦୟରେ ଅନୁଭବ କରି ସେମାନଙ୍କୁ ଧନ୍ୟବାଦ ପ୍ରଦାନ କରୁଅଛି ଏବଂ ଆଶୀର୍ବାଦ କରୁଅଛି ଯେ, ସେମାନେ ସରସ୍ୱତୀଙ୍କ ସେବାକରି ମାତୃଭୂମିର ଓ ମାତୃଭାଷାର ମୁଖ ଉଜ୍ଜ୍ୱଳ କରନ୍ତୁ ।

## ଏ ଗ୍ରନ୍ଥର ପୃଷ୍ଠପୋଷକ ଓ ଶୁଭାକାଙ୍କ୍ଷିଗଣ

ବର୍ତ୍ତମାନ ଓଡ଼ିଶାର ଗଭର୍ଣ୍ଣର ସର୍ ଜନ୍ ଅଷ୍ଟେନ୍ ହବାକ୍, କେ.ସି.ଏସ୍.ଆଇ., ଆଇ.ସି.ଏସ୍. ମହୋଦୟ ୧୯୨୯ ସାଲରୁ ମୋତେ ଯେଉଁ ଭାବରେ ସାହାଯ୍ୟ କରି ଆସିଅଛନ୍ତି, ଭାଷାକୋଷର ପୂର୍ବଖଣ୍ଡମାନଙ୍କରେ ବିଶେଷ ଭାବରେ ମୁଁ ସେସବୁ ଉଲ୍ଲେଖ କରିଅଛି । ତାଙ୍କର ଦୟାପୂର୍ଣ୍ଣ ଅନୁମତି ନେଇ ମୁଁ ଭାଷାକୋଷର ପ୍ରଥମ ଖଣ୍ଡ ତାଙ୍କ ନାମରେ ଉତ୍ସର୍ଗ କରିଥିଲି ।

ମାନ୍ୟବର ଲାଟ ମହୋଦୟ ଯେଉଁଦିନ ଓଡ଼ିଶା ପ୍ରଦେଶର ଦାୟିତ୍ୱ ଗ୍ରହଣ କଲେ, ତା'ର ଠିକ୍ ପରଦିନ ପ୍ରୀତିପୂର୍ଣ୍ଣ ହୃଦୟରେ ଭାଷାକୋଷପାଇଁ ମୋଠାକୁ ଦେଢ଼ଶତ ଟଙ୍କାର ଖଣ୍ଡିଏ ଚେକ୍ ସହ ପତ୍ର ଖଣ୍ଡିଏ ଲେଖିଥିଲେ ।

ପାଟଣା ବିଶ୍ୱବିଦ୍ୟାଳୟ ଭାଷାକୋଷର ପରିସମାପ୍ତିପାଇଁ ଦ୍ୱିତୀୟଥର ଏକକାଳୀନ ବିଶିଷ୍ଟ ସାହାଯ୍ୟ ପ୍ରଦାନ କରିଥିବା ଶୁଣି ସେ ଅତ୍ୟନ୍ତ ପ୍ରୀତ ହୋଇଥିବା କଥା ସେହି ପତ୍ରରେ ପ୍ରକାଶ କରିଥିଲେ ।

ଲଣ୍ଡନରେ ପ୍ରାଚ୍ୟବିଦ୍ୟାନୁଶୀଳନ ନିମିତ୍ତ ଯେଉଁ କଲେଜ ଅଛି, ସେଠାରେ କି କି ଓଡ଼ିଆ ବହି ଅଛି ତାହା ଦେଖିବାପାଇଁ ଲାଟସାହେବ ସେଠାକୁ ଯାଇଥିଲେ; ଭାଷାକୋଷ ଛଡ଼ା ସେଠାରେ ସଂଗୃହୀତ ଆଉ ଯେଉଁସବୁ ଓଡ଼ିଆପୁସ୍ତକ ଦେଖିଲେ, ତାହା ଅତି ସାମାନ୍ୟ । ଓଡ଼ିଶାରେ ତାଙ୍କ କାର୍ଯ୍ୟକାଳ ମଧ୍ୟରେ ସେ ସେଠାରେ ଏହି ଅଭାବ ନିରାକରଣ କରିବାପାଇଁ ଆଶାପୋଷଣ କରିଅଛନ୍ତି ବୋଲି ସେ ଲେଖିଥିଲେ ।

ଭାଷାକୋଷ ତଥା ଓଡ଼ିଆଭାଷା, ମାନ୍ୟବର ଲାଟ ମହୋଦୟଙ୍କ ହୃଦୟରେ କିପରି ସମୁଚ୍ଚ ସ୍ଥାନ ଅଧିକାର କରିଅଛି, ଏଥିରୁ ତାହା ସ୍ପଷ୍ଟରୂପେ ସମସ୍ତେ ବୁଝିପାରିବେ । ଓଡ଼ିଶାର ରାଜପ୍ରତିନିଧିରୂପେ ଶାସନଭାର ଗ୍ରହଣ କରିବାଠାରୁ ଲାଟ ଓ ତତ୍‌ପତ୍ନୀ ସସ୍ନେହ ଓ ସାଗ୍ରହ ଚିତ୍ତରେ ଭାଷାକୋଷର ପରିପୂର୍ଣ୍ଣତା ବିଷୟରେ ସର୍ବଦା ଅନୁସନ୍ଧାନ କରିଅଛନ୍ତି । ନୂତନ ଓଡ଼ିଶା ପ୍ରଦେଶର ନବବର୍ଷର ସମ୍ମାନ-ପଦବୀ ତାଲିକାରେ ଭାରତ ସରକାର ଏହି ଭାଷାକୋଷର ସଂଗ୍ରାହକକୁ 'ରାୟବାହାଦୁର' ଉପାଧିରେ ଭୂଷିତ କରିଅଛନ୍ତି । ପରମ ସମ୍ମାନାସ୍ପଦ ଲାଟ ମହୋଦୟଙ୍କର ଅନୁକୂଳତା ହିଁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ କାର୍ଯ୍ୟ କରୁଥିବା ଏହି ଦୀନ ସଂଗ୍ରାହକର ଏଭଳି ରାଜଦତ୍ତ ସମ୍ମାନ ଲାଭର ମୂଳ, ଏଥିରେ ସନ୍ଦେହ ନାହିଁ । ବଡ଼ ଆନନ୍ଦର ବିଷୟ ଯେ ଏହି ସାରସ୍ୱତ ମହାମନ୍ଦିରର ଶୁଭ ଦେଇଥିଲେ, ତାଙ୍କରି ଉପସ୍ଥିତିରେ ହିଁ ଏହି ମନ୍ଦିରର ମୁଣ୍ଡି ମରିବ । ମାନନୀୟ ଲାଟଦମ୍ପତିଙ୍କ ଦୟାପୂର୍ଣ୍ଣ ଅନୁମତି ଗ୍ରହଣ କରି ସଂଗ୍ରାହକ ଏ ଭାଗରେ ସେମାନଙ୍କର ପ୍ରତିକୃତି ସଂଯୋଜିତ କରିଅଛି ।

ପାଟନା ଷ୍ଟେଟର ନରପତି ମହାରାଜ ଶ୍ରୀ ରାଜେନ୍ଦ୍ରନାରାୟଣ ସିଂହଦେବ ଭାଷାକୋଷର ଏହି ଖଣ୍ଡର ପୃଷ୍ଠପୋଷକ ଓ ଆର୍ଥିକ ପରିସ୍ଥିତିର ପ୍ରଧାନ ଅବଲମ୍ବନ । ମୁଁ

ଯେତେବେଳେ ତାଙ୍କ ସଙ୍ଗେ ଦେଖା କରି ଭାଷାକୋଷର ପ୍ରଥମ ପାଞ୍ଚଖଣ୍ଡ ତାଙ୍କ ହସ୍ତରେ ସମର୍ପଣ କଲି, ସେତେବେଳେ ସେ ୬ଷ୍ଠ ଖଣ୍ଡ ପ୍ରକାଶର ଆର୍ଥିକ ପରିସ୍ଥିତି ବିଷୟ ଅନୁସନ୍ଧାନ କରିଥିଲେ ଏବଂ ତହିଁର ପ୍ରକାଶର ବ୍ୟୟଭାର ବହନ କରିବାକୁ ସୂଚନା କରିଥିଲେ ।

ମହାରାଜଙ୍କ ଦେବୋପମ ଗୁଣାବଳି ପ୍ରତି ମୋର ଆନ୍ତରିକ ସମ୍ମାନର ନିଦର୍ଶନରୂପେ ମୁଁ ତାଙ୍କର ଅନୁମତି ଗ୍ରହଣ କରି ଭାଷାକୋଷର ଏହି ଖଣ୍ଡ ତାଙ୍କ ପବିତ୍ର ନାମରେ ଉତ୍ସର୍ଗ କଲି ।

ପାଟନାରେ ଥିବାବେଳେ ଷଢ଼େଇକଳାର ଯୁବରାଜ ଟିକାଏତ ଶ୍ରୀମାନ୍ ନୃପେନ୍ଦ୍ର ନାରାୟଣ ସିଂହଦେବ, ବି.ଏ., ବି.ଏଲ୍.ଙ୍କ ସଙ୍ଗେ ପରିଚିତ ହେବାର ସମ୍ମାନ ଲାଭକରି ମୁଁ କୃତାର୍ଥ ହୋଇଅଛି । ଯୁବରାଜସାହେବ ଜଣେ ଉଦୀୟମାନ ଯୁବକ ଓ ସାହିତ୍ୟପ୍ରେମିକ ଥିବା ଦେଖିଲି । ତାଙ୍କୁ ଦେଖି 'ଆକରେ ପଦ୍ମରାଗାଣାଂ ଜନ୍ମ କାଚମଣେଃ କୁତଃ' ସଂସ୍କୃତ ଶ୍ଳୋକର ଏହି ଚରଣଟି ମୋର ମାନସପଟରେ ଉଦିତ ହେଲା ।

ଜୟପୁର (କୋରାପୁଟ) ଅଧିପତି ସାହିତ୍ୟସମ୍ରାଟ୍ ମହାରାଜ ଶ୍ରୀ ବିକ୍ରମଦେବ ବର୍ମା, ଡି.ଲିଟ୍. ମହୋଦୟଙ୍କ ନାମରେ ଭାଷାକୋଷର ଚତୁର୍ଥ ଖଣ୍ଡ ଉତ୍ସୃଷ୍ଟ ହୋଇଥିଲା । ଏ ପର୍ଯ୍ୟନ୍ତ ଭାଷାକୋଷ କାର୍ଯ୍ୟର ଅଗ୍ରଗତି ପ୍ରତି ତାଙ୍କର ସେହି ପୂର୍ବାନୁରାଗ ଅକ୍ଷୁଣ୍ଣ ରହିଅଛି । ମୋର ଆର୍ଥିକ ଦୁଃସ୍ଥିତି ବିଷୟ ଶୁଣି ସେ ୫ମ ଖଣ୍ଡର ବ୍ୟୟ ନିର୍ବାହପାଇଁ ଯେଉଁ ୧୦ ସହସ୍ର ମୁଦ୍ରା ଦାନ କରିଥିଲେ, ତା ଛଡ଼ା ସ୍ୱତଃପ୍ରବୃତ୍ତ ହୋଇ ଦୁଇହଜାର ଟଙ୍କା ଦାନ କରିଅଛନ୍ତି । ଆନ୍ଧ୍ର ଭାରତୀତୀର୍ଥ ବିଶ୍ୱବିଦ୍ୟାଳୟର ଚାନ୍ସେଲର୍ ରୂପେ ମହାରାଜ ମହୋଦୟ ମୋତେ 'ସାହିତ୍ୟବିଶାରଦ' ଉପାଧି ବିରୁଦପଟ୍ଟ (diploma) ପ୍ରଦାନ କରିଅଛନ୍ତି ।

ମୟୂରଭଞ୍ଜାଧୀଶ୍ୱର ମହାରାଜ ସର୍ ପ୍ରତାପଚନ୍ଦ୍ର ଭଞ୍ଜଦେବ, କେ.ଟି. କେ. ସି.ଆଇ.ଇ.ଙ୍କ ନିର୍ଦ୍ଦେଶମତେ ଏହି ଭାଷାକୋଷ ତାଙ୍କ ଅଗ୍ରଜ ପୂର୍ଣ୍ଣଚନ୍ଦ୍ରଙ୍କ ନାମାନୁସାରେ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ନାମରେ ଅଭିହିତ ହୋଇଅଛି । ଅଧ୍ୟାପକ ପରିଜା ଓ ପ୍ରିନ୍‌ସିପାଲ ତ୍ରିପାଠୀଙ୍କଠାରୁ ମୋର ଆର୍ଥିକ ଶୋଚନୀୟତାର ସମ୍ବାଦ ପାଇ ମହାରାଜ ଏଥିମଧ୍ୟରେ ଆହୁରି ୫ ହଜାର ଟଙ୍କା ଏକକାଳୀନ ଦାନ କରିଅଛନ୍ତି । କହିବା ବାହୁଲ୍ୟ ଯେ ମୟୂରଭଞ୍ଜାଧୀଶ୍ୱରଙ୍କଠାରୁ ପ୍ରଥମେ ୮ ହଜାର ଟଙ୍କାର ଅଙ୍ଗୀକାର ପାଇବା ପରେ ଏହି ଭାଷାକୋଷର ମୁଦ୍ରଣ କାର୍ଯ୍ୟ ଆରମ୍ଭ ହୋଇଥିଲା ।

ନୂତନ ଓଡ଼ିଶା ପ୍ରଦେଶର ଜନ୍ମଦାତା ଓ ଓଡ଼ିଶା ସରକାରଙ୍କ ମାନ୍ୟବର ପ୍ରଧାନ ସଚିବ ପାରଳାଖେମୁଣ୍ଡିର ସ୍ୱନାମଧନ୍ୟ ନରପତି କାପ୍ଟେନ୍ ମହାରାଜ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣଦେବଙ୍କ ନାମରେ ଏହି ଭାଷାକୋଷର ୫ମ ଖଣ୍ଡ ଉତ୍ସୃଷ୍ଟ ହୋଇଥିଲା; ସେ ମହୋଦୟ ମଧ୍ୟ ଜନକୋଚିତ ସସ୍ନେହ ଦୃଷ୍ଟିରେ ଏହି କାର୍ଯ୍ୟର ଅଗ୍ରଗତି ବିଷୟ ଲକ୍ଷ୍ୟ କରୁଅଛନ୍ତି ।

ଆଠମଲ୍ଲିକର ସ୍ୱନାମଧନ୍ୟ ଶାସକ ନରପତି, ରାଜା ଶ୍ରୀ କିଶୋରଚନ୍ଦ୍ର ଦେବଙ୍କର ପରିପୂର୍ଣ୍ଣ ସହାନୁଭୂତି ଓ ବଦାନ୍ୟତା ଲାଭରୁ ମୁଁ ଏପର୍ଯ୍ୟନ୍ତ ବଞ୍ଚିତ ହୋଇ ନାହିଁ । ସେ ଏଥିପୂର୍ବେ ଭାଷାକୋଷପାଇଁ ୨୩୦୦/ ଟଙ୍କା ଦାନ କରିଥିଲେ । ଏହି ଷଷ୍ଠ ଖଣ୍ଡର ମୁଦ୍ରଣ ମଧ୍ୟରେ ଆହୁରି ୫୦୦/ ଟଙ୍କା ମଧ୍ୟ ଦାନ କରିଅଛନ୍ତି । ପ୍ରଥମ ଖଣ୍ଡର ପ୍ରକାଶ ପରେ ଗୁଣଗ୍ରାହୀ ରାଜାସାହେବଙ୍କ ଶ୍ରୀମୁଖରୁ ଯେଉଁ ଉତ୍ସାହପୂର୍ଣ୍ଣ ବାଣୀପରମ୍ପରା ନିଃସୃତ ହୋଇଥିଲା, ଆଜିଯାଏ ତାହା ମୋ କର୍ଣ୍ଣକୁହରରେ ପ୍ରତିଧ୍ୱନିତ ହେଉଅଛି । କହିବା ବାହୁଲ୍ୟ, ଗ୍ରନ୍ଥକାର ରାଜାସାହେବଙ୍କୁ ନିଜର 'ଲେଉଟିଆ କିଆରି' ବୋଲି ଜ୍ଞାନ କରି ଆସିଅଛି ।

ଖଡ଼ିଆଳ (ନୂଆପଡ଼ା)ର ରାଜାସାହେବ ଲାଲ ଆର୍ତ୍ତତ୍ରାଣ ଦେବ ଏଥି ମଧ୍ୟରେ ପ୍ରତିଶ୍ରୁତି ଅନୁରୂପ ଏକ ସହସ୍ର ଟଙ୍କା ମୋଠାକୁ ପଠାଇଅଛନ୍ତି ଏବଂ ତାଙ୍କ ଯୁବରାଜ ସାହେବ ମଧ୍ୟ ଏହି କାର୍ଯ୍ୟର ଅଗ୍ରଗତି ପ୍ରତି ସସ୍ନେହ ଦୃଷ୍ଟି ରଖିଅଛନ୍ତି ।

ତିନି ବର୍ଷ ପୂର୍ବେ ପାଟନା ବିଶ୍ୱବିଦ୍ୟାଳୟ ଏହି କାର୍ଯ୍ୟପାଇଁ ପାଞ୍ଚହଜାର ଟଙ୍କା ଦାନ କରିଥିଲେ; ଆମ୍ଭମାନଙ୍କ ନୂତନ ପ୍ରଦେଶ ଗଠିତ ହେବାର ପ୍ରାକ୍‌କାଳରେ ସେ ଆହୁରି ୧୫୦୦/ ଟଙ୍କା ଦାନକରି ସ୍ୱକୀୟ ବଦାନ୍ୟତା ପ୍ରସାରିତ କରିଅଛନ୍ତି ।

ବଡ଼ମ୍ବା ଷ୍ଟେଟର ଶାସକ ନରପତି ରାଜା ଶ୍ରୀ ନାରାୟଣଚନ୍ଦ୍ର ବୀରବର ମଙ୍ଗରାଜ ମହାପାତ୍ର ଏଥି ମଧ୍ୟରେ ଏକକାଳୀନ ୫୦୦/ ଟଙ୍କା ଦାନ କରିଅଛନ୍ତି ।

ପୁରୀର ସରକାରୀ ଓକିଲ ଆଡ୍‌ଭୋକେଟ୍ ରାୟବାହାଦୁର ଲୋକନାଥ ମିଶ୍ର ତାଙ୍କ ଅଙ୍ଗୀକୃତ ଏକ ସହସ୍ର ଟଙ୍କାରୁ ଅବଶିଷ୍ଟ ଥିବା ୫୦୦/ ଟଙ୍କା ଏଥିମଧ୍ୟରେ ପଠାଇ ଦେଇଅଛନ୍ତି ।

ବୌଦରାଜ୍ୟର ଶାସକ ନରପତି ରାଜା ଶ୍ରୀ ନାରାୟଣପ୍ରସାଦ ଦେବଙ୍କ ମହନୀୟ ନାମରେ ଏହି ଭାଷାକୋଷର ୩ୟ ଖଣ୍ଡ ଉତ୍ସୃଷ୍ଟ ହୋଇଥିଲା । ଏହାର ଅଗ୍ରଗତି ବିଷୟରେ ସେ ମଧ୍ୟ ଯଥୋଚିତ ତତ୍ତ୍ୱ ନେଉଅଛନ୍ତି ।

କଳାହାଣ୍ଡି ଅନ୍ତର୍ଗତ ମହୁଲପାଟଣା – ଜୟପାଟଣାର ରାଜା ଶ୍ରୀ ଉମାପ୍ରସାଦ ସିଂହ ପ୍ରତିଶ୍ରୁତ ସାହାଯ୍ୟ ୫୦୦/ ଟଙ୍କାରୁ ଅବଶିଷ୍ଟ ଥିବା ଏକଶତ ଟଙ୍କା ଏଥିମଧ୍ୟରେ ପଠାଇ ଦେଇଅଛନ୍ତି ।

ପାଟନା ଅନ୍ତର୍ଗତ ଆଟଗାଁର ଜମିଦାର ଶ୍ରୀଯୁକ୍ତ କ୍ଷୀରୋଦଚନ୍ଦ୍ର ମାଝି ମାନ୍ଧାତା ମହୋଦୟ ତାଙ୍କ ପ୍ରତିଶ୍ରୁତ ପାଞ୍ଚଶତ ଟଙ୍କା ସାହାଯ୍ୟ ମଧ୍ୟରୁ ଏକଶତ ଦେଇଅଛନ୍ତି ।

କଲିକତାର ସୁପରିଚିତ ବଣିକ ଓ ଅର୍ଥ ବ୍ୟବସାୟୀ (Banker) ସର୍ ବଦ୍ରିଦାସ ଗୋଏଙ୍କା, କେ.ଟି.ବି.ଏ. ମହୋଦୟ ୫୦/ ଟଙ୍କା ସାହାଯ୍ୟ ପଠାଇଅଛନ୍ତି ।

ସୁଦକ୍ଷ ଉଦ୍ୟାନପାଳ ଯେଉଁପରି ଜଳଦାନାଦିଦ୍ୱାରା ସ୍ୱରୋପିତ ସୁକୋମଳ ଶିଶୁବୃକ୍ଷମାନଙ୍କର ଅଭିବୃଦ୍ଧିକୁ ଅପେକ୍ଷା କରି ରହିଥାଏ, ଆମ୍ଭମାନଙ୍କ ଶିକ୍ଷାବିଭାଗର

ଭୂତପୂର୍ବ ଡିରେକ୍ଟର ଶ୍ରୀଯୁକ୍ତ ଜି.ଇ. ଫକସ୍, ଏମ୍.ଏ., ସି.ଆଇ.ଇ., ଆଇ.ଇ.ଏସ୍. ମହୋଦୟ ଏହି ଗ୍ରନ୍ଥର ଅଭିବୃଦ୍ଧିକୁ ସେହିପରି ଦୃଷ୍ଟିରେ ଦେଖୁଅଛନ୍ତି । ଏହି ଭାଷାକୋଷର ପ୍ରକାଶ କାର୍ଯ୍ୟରେ ତାଙ୍କର ଉପକାର କଥା ପୂର୍ବଖଣ୍ଡମାନଙ୍କରେ ସ୍ପଷ୍ଟରୂପେ ବ୍ୟକ୍ତ କରାଯାଇଅଛି । ବର୍ତ୍ତମାନ ସେ ଡିରେକ୍ଟର ରୂପେ ଆମ୍ଭମାନଙ୍କ ମଧ୍ୟରେ ରହୁ ନ ଥିଲେହେଁ, ପବ୍ଲିକ୍ ସର୍ଭିସ୍ କମିଶନ୍‌ର ସଭାପତିରୂପେ ସେ ଆମ ସମ୍ପର୍କ ତ୍ୟାଗ କରି ନାହାନ୍ତି । ସେ ଏ କାର୍ଯ୍ୟର ଅଗ୍ରଗତିକୁ ଯେ ଅତୀବ ସାଗ୍ରହ ଦୃଷ୍ଟିରେ ଲକ୍ଷ୍ୟ କରିଅଛନ୍ତି, ନାନା ଭାବରେ ମୁଁ ଏହାର ବହୁ ସୂଚନା ପାଇଅଛି ।

ପାଟନା ହାଇକୋର୍ଟର ପ୍ରଧାନ ବିଚାରପତି ସର୍ କଟ୍‌ନି ଟେରେଲ୍‌ଙ୍କର ଜନକୋଚିତ ଅନୁରାଗ, ଭାଷାକୋଷ ଏପର୍ଯ୍ୟନ୍ତ ଲାଭକରି ଆସୁଅଛି ।

ମାନନୀୟ ସି.ଏଲ୍. ଫିଲିପ୍,

ସି.ଆଇ.ଇ.,ଆଇ.ସି.ଏସ୍, ଓଡ଼ିଶା ବିଭାଗର କମିଶନର ଥିବାବେଳେ ଭାଷାକୋଷର ପ୍ରଥମ୍ ୩ ଖଣ୍ଡର ପ୍ରକାଶରେ ଆମ୍ଭମାନଙ୍କ ସହକର୍ମୀରୂପେ ଏହାର କାର୍ଯ୍ୟ କରୁଥିଲେ । ସେ ବର୍ତ୍ତମାନ ଇଂଲଣ୍ଡରେ ଥାଇ ସୁଦ୍ଧା ଏହାର ଅଗ୍ରଗତି ବିଷୟରେ ତୀକ୍ଷ୍ଣଦୃଷ୍ଟି ରଖିଅଛନ୍ତି, ମୁଁ ଏହାର ଯଥେଷ୍ଟ ପ୍ରମାଣ ପାଉଅଛି ।

ପୂର୍ବ ଗଡ଼ଜାତ ବିଭାଗର ଗଭର୍ଣ୍ଣର ଜେନେରାଲଙ୍କ ପୂର୍ବତନ ଏଜେଣ୍ଟ ଶ୍ରୀଯୁକ୍ତ ଇ.ସି.ଗିବ୍‌ସନ୍, ସି.ଆଇ.ଇ., ଆଇ.ସି.ଏସ. ମଧ୍ୟ ଏହି କାର୍ଯ୍ୟର ଅଗ୍ରଗତି ବିଷୟ ଜନକୋଚିତ ଅନୁରାଗସହ ଲକ୍ଷ୍ୟ କରୁଅଛନ୍ତି ।

ବିଶେଷ ଭାବରେ ଏହି ସମସ୍ତଙ୍କଠାରେ ଓ ଅନ୍ୟ ଯେଉଁ ମହାତ୍ମାମାନେ ଏ କାର୍ଯ୍ୟରେ ମୋର ପୃଷ୍ଠପୋଷକତା କରିଥିବାରୁ ଓ ଆର୍ଥିକ ସାହାଯ୍ୟ କରିଥିବାରୁ ମୁଁ ଏତେଦୂର ଅଗ୍ରସର ହୋଇପାରିଅଛି- ସେମାନଙ୍କ ନିକଟରେ ମୋର କୃତଜ୍ଞତା ଜ୍ଞାପନ କରୁଅଛି । ସେମାନଙ୍କ ଉଦାରତା ତଥା ମହତ୍ତ୍ୱଲାଭ କରି ନ ଥିଲେ, ମୋ ଭଳି ସ୍ୱଳ୍ପଶକ୍ତି ଓ ସ୍ୱଳ୍ପଧନ ଲୋକ ପକ୍ଷରେ ଏ ବିରାଟ ବ୍ୟାପାରରେ ଏତେଦୂର ଅଗ୍ରସର ହେବା କେବେହେଁ ସମ୍ଭବପର ହୋଇ ନ ଥାନ୍ତା ।

### ଆଶ୍ରମର ପ୍ରସିଦ୍ଧ ପରିଦର୍ଶକଗଣ

ଗୁଜୁରାଟ ବିଦ୍ୟାପୀଠର ଆଚାର୍ଯ୍ୟ କାକା କାଲେଲ୍‌କାର ଗତ ୧୯୩୫ ଖ୍ରୀଷ୍ଟାବ୍ଦରେ କଟକକୁ ଆସିଥିଲେ । ସେତେବେଳେ ଅତର୍କିତଭାବରେ ତାଙ୍କର ଏହି ଭାଷାକୋଷ ଆଶ୍ରମ ପରିଦର୍ଶନ ବିଷୟ ପୂର୍ବ ଖଣ୍ଡରେ ଉଲ୍ଲେଖ କରିବାକୁ ମୁଁ ବିସ୍ମୃତ ହୋଇଯାଇଥିଲି । ୧୯୨୮ରେ ସେ ଯେତେବେଳେ ମହାତ୍ମା ଗାନ୍ଧିଙ୍କ ସଙ୍ଗେ କଟକ ଆସି ଏଠାରେ ମୋ ସଙ୍ଗରେ ରହିଥିଲେ, ସେତେବେଳେ ସେ ଏହାର ପାଣ୍ଡୁଲିପି ଦେଖିଥିଲେ । ଏହା ମୁଦ୍ରିତ ହୋଇ ପ୍ରକାଶିତ ହୋଇଥିବା ଦେଖି ସେ ପରମପ୍ରୀତିପ୍ରକାଶପୂର୍ବକ ସ୍ପଷ୍ଟଭାବରେ କହିଥିଲେ

ଯେ, ଓଡ଼ିଶାରେ ହିନ୍ଦୀ ଭାଷାକୁ ଲୋକପ୍ରିୟ କରିବାରେ ଭାଷାକୋଷ ସର୍ବାପେକ୍ଷା ଅଧିକ କାର୍ଯ୍ୟ କରିଅଛି ।

ଆମ୍ଭମାନଙ୍କ ଓଡ଼ିଶା ଶିକ୍ଷା ବିଭାଗର ଡାଇରେକ୍ଟର ମି.ଡି.ପି., ଏମ୍.ଏ., ସି.ଆଇ.ଇ., ଆଇ.ଇ.ଏସ. ଏକାଧିକ ଥର ଏହି ଭାଷାକୋଷ ଆଶ୍ରମ ପରିଦର୍ଶନ କରି ମୋ ପରିଶ୍ରମକୁ ସର୍ବାନ୍ତଃକରଣରେ ଅନୁମୋଦନ କରିଯାଇଅଛନ୍ତି ।

ଓଡ଼ିଶାର ଗଭର୍ଣ୍ଣମେଣ୍ଟଙ୍କ ପ୍ରଧାନ ସେକ୍ରେଟାରି ମି.ପି.ଟି. ମାନ୍ସଫିଲ୍ଡ, ସି.ଆଇ.ଇ., ଆଇ.ସି.ଏସ୍. ଏହି ଆଶ୍ରମ ପରିଦର୍ଶନ କରିଥିଲେ ଏବଂ ସ୍ୱତଃପ୍ରବୃତ୍ତ ହୋଇ ପ୍ରୁଫ୍‌ସିଟ୍‌ମାନଙ୍କର ଇଂରେଜୀ ଅଂଶ ସଂଶୋଧନରେ ମୋତେ ସାହାଯ୍ୟ କରିବାକୁ ଅଙ୍ଗୀକାର କରିଥିଲେ । କିନ୍ତୁ ତାଙ୍କ ଉପରେ ସରକାରୀ କାର୍ଯ୍ୟର ଗୁରୁଭାର ଦେଖି ମୁଁ ଭାଷାକୋଷପାଇଁ ତାଙ୍କର ବହୁମୂଲ୍ୟ ସମୟ ଗ୍ରହଣ କରିବାକୁ ସାହସୀ ହୋଇ ନାହିଁ ।

ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କ ଡେଭଲପ୍‌ମେଣ୍ଟ ବିଭାଗର ଭୂତପୂର୍ବ ସେକ୍ରେଟାରୀ ମି.ଏ.ଏଫ୍.ଡବ୍ଲିଉ. ଡିକ୍ସନ ମହୋଦୟ ଏହି ଆଶ୍ରମ ଥରେ ପରିଦର୍ଶନ କରିଥିଲେ ।

ଓଡ଼ିଶା ସାଧାରଣ ସ୍ୱାସ୍ଥ୍ୟବିଭାଗର ଡାଇରେକ୍ଟର କର୍ଣ୍ଣେଲ ଜି.ଭର୍ଗିଜ, ଏମ.ଡି., ସି.ଏଚ.ବି., ଡି.ପି. ଏଇଚ., ଡି.ଟି.ଏମ୍, ଡି.ଟି.ଏଇଚ, ଆଇ.ଏମ୍.ଏସ୍. ମହୋଦୟ କଟକ ମ୍ୟୁନିସିପାଲିଟିର ହେଲ୍‌ଥ ଅଫିସର ଡାକ୍ତର ସତ୍ୟବାଦୀ ମିଶ୍ର, ଏମ.ବି.ଙ୍କ ସଙ୍ଗେ ଭାଷାକୋଷ ଆଶ୍ରମ ପରିଦର୍ଶନ କରି ଏହି କାର୍ଯ୍ୟର ପ୍ରଶଂସା କରିଯାଇଅଛନ୍ତି ।

କଟକ ଜିଲ୍ଲାର ମାଜିଷ୍ଟ୍ରେଟ ଓ କଲେକ୍ଟର ମି.ଆର.ପି. ବାର୍ଡ ଏମ୍.ସି., ଡି.ଏଫ୍.ସି, ଆଇ.ସି.ଏସ୍., ମହୋଦୟ ସପତ୍ନୀକ ଆଶ୍ରମରେ ପଦାର୍ପଣ କରି ଏହାର ପ୍ରକାଶରେ ଯଥାଶକ୍ତି ସାହାଯ୍ୟ କରିବାପାଇଁ ଆଗ୍ରହ ପ୍ରକାଶ କରିଯାଇଅଛନ୍ତି ।

ରାୟବାହାଦୁର ଭୂୟାଁ ଭାସ୍କରଚନ୍ଦ୍ର ମହାପାତ୍ର ସ୍ୱୟଂ ଅନେକଥର ଏହି ଆଶ୍ରମ ଦେଖି ଯାଇଅଛନ୍ତି । ଶେଷଥର ରେଭିନିଉ କମିଶନରଙ୍କ ପର୍ସନାଲ ଆସିଷ୍ଟାଣ୍ଟ ରାୟବାହାଦୁର ଉମାଚରଣ ଦାସଙ୍କ ସଙ୍ଗେ ସେ ଭାଷାକୋଷ ଆଶ୍ରମ ପରିଦର୍ଶନ କରିଥିଲେ ।

କଟକ ଜିଲ୍ଲାବୋର୍ଡର ଚେଆରମ୍ୟାନ କନିକାର ଟିକାଏତ୍ ଶ୍ରୀମାନ୍ ଶୈଳେନ୍ଦ୍ରନାରାୟଣ ଭଞ୍ଜଦେବ ୧୯୩୬ ସାଲ ମେ ମାସରେ ଭାଷାକୋଷ ଅଫିସ ପରିଦର୍ଶନ କରି, ଏ କର୍ମରେ ତାଙ୍କ ପିତାଙ୍କର ଓ ତାଙ୍କ ନିଜର ସହାନୁଭୂତି ଥିବା ବିଷୟ ପ୍ରକାଶ କରିଅଛନ୍ତି ।

କଟକର ଇନ୍‌କମ୍‌ଟାକ୍‌ସ ଅଫିସର ମୌଲବୀ ଏନାମୁର୍ ରହେମାନ୍ ମହୋଦୟ ଇନ୍‌କମ୍‌ଟାକ୍‌ସ ଇନ୍‌ସପେକ୍ଟର ବାବୁ ଗୋପୀନାଥ ମହାପାତ୍ର, ବି.ଏ.ଙ୍କ ସଙ୍ଗେ ବନ୍ଧୁ ଭାବରେ ଏଥିମଧ୍ୟରେ ଥରେ ଭାଷାକୋଷ ଆଶ୍ରମ ପରିଦର୍ଶନ କରିଯାଇଅଛନ୍ତି ।

## ବିଶିଷ୍ଟ ଶୁଭାକାଙ୍କ୍ଷୀ ଓ ସ୍ୱେଚ୍ଛାସେବକବୃନ୍ଦ

ଭାଷାକୋଷର ଶୁଭାକାଙ୍କ୍ଷୀ ନିମ୍ନୋକ୍ତ ସହୃଦୟ ମନୀଷୀମାନେ ସ୍ୱତଃପ୍ରଣୋଦିତ ହୋଇ ଏହାର ପୃଷ୍ଠପୋଷକ, ସହାୟକାରୀ ହୋଇଅଛନ୍ତି ଓ ସାଧାରଣଙ୍କ ନିକଟରେ ଏହାର ପ୍ରଚାରପାଇଁ ଯଥାଶକ୍ତି ଚେଷ୍ଟା କରିଅଛନ୍ତି-

ଭାଷାକୋଷ କାର୍ଯ୍ୟରେ ଯାହାଙ୍କ ଆନ୍ତରିକ ଯତ୍ନର କଥା ଶେଷଖଣ୍ଡରେ ଉଲ୍ଲିଖିତ ହୋଇଅଛି, ଖଡ଼ିଆଳର ସେହି ସ୍ୱନାମଧନ୍ୟ ମନୀଷୀ ଲାଲ ଶିବନାରାୟଣ ଦେବ ଏପର୍ଯ୍ୟନ୍ତ ସାହାଯ୍ୟ କରୁଅଛନ୍ତି ଏବଂ ଏଥିପାଇଁ ଗ୍ରାହକ ମଧ୍ୟ ସଂଗ୍ରହ କରୁଅଛନ୍ତି । ଆଜିପର୍ଯ୍ୟନ୍ତ ସେ ଭାଷାକୋଷପାଇଁ ପ୍ରାୟ ତିନିହଜାର ଟଙ୍କାର ସାହାଯ୍ୟ ଓ ପ୍ରତିଶ୍ରୁତି ସଂଗ୍ରହରେ କୃତକାର୍ଯ୍ୟ ହୋଇଅଛନ୍ତି । ସେ ତାଙ୍କ ଅଞ୍ଚଳରେ ପ୍ରଚଳିତ ବହୁସଂଖ୍ୟକ ପ୍ରାଦେଶିକ ଶବ୍ଦ ଏଥିମଧ୍ୟରେ ଅନେକଥର ମୋତେ ଯୋଗାଇଅଛନ୍ତି । ତାଙ୍କ ସହାୟତା ଲାଭ କରି ନ ଥିଲେ ସେହି ଶବ୍ଦଗୁଡ଼ିକ ମୋ ଦୃଷ୍ଟିର ଅନ୍ତରାଳରେ ରହି ଯାଇଥାଆନ୍ତା । ଭାଷାକୋଷର ଆର୍ଥିକ ପରିସ୍ଥିତିର ସଚଳତା ଉଦ୍ଦେଶ୍ୟରେ ପୃଷ୍ଠପୋଷକ ଓ ଗ୍ରାହକ ସଂଗ୍ରହ କରିବା ନିମନ୍ତେ ସେ ଗତ ବର୍ଷ କେତେକ ଗଡ଼ଜାତ ରାଜ୍ୟରେ ମଧ୍ୟ ଭ୍ରମଣ କରିଥିଲେ ।

କଟକ ରେଭେନ୍‌ସା କଲେଜର ପ୍ରିନ୍‌ସିପାଲ ଶ୍ରୀଯୁକ୍ତ ଶ୍ୟାମଚରଣ ତ୍ରିପାଠୀ, ଆଇ.ଇ.ଏସ୍. ମହୋଦୟଙ୍କ ପରାମର୍ଶ ଅନୁସାରେ ମୟୂରଭଞ୍ଜର ମହାରାଜ ମହୋଦୟ ଏହି ଗ୍ରନ୍ଥର ପ୍ରାଥମିକ ବ୍ୟୟ ନିର୍ବାହପାଇଁ ଆଠହଜାର ଟଙ୍କା ସାହାଯ୍ୟ କରିଥିଲେ । ଏହି ଖଣ୍ଡର ପ୍ରକାଶକାଳ ମଧ୍ୟରେ ମହାରାଜାଙ୍କଠାରୁ ପୁନର୍ବାର ଯେଉଁ ପାଞ୍ଚହଜାର ଟଙ୍କା ସାହାଯ୍ୟ ମିଳିଲା, ତହିଁରେ ଯେ ତ୍ରିପାଠୀ ମହାଶୟଙ୍କ ଯତ୍ନ ନିହିତ ଥିଲା, ଏହା ନିଃସନ୍ଦେହ ।

ରେଭେନ୍‌ସା କଲେଜର ଅନ୍ୟତମ ଆଚାର୍ଯ୍ୟ ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପରିଜା, ଏମ୍.ଏ., ଆଇ.ଇ.ଏସ୍. ମହୋଦୟ ମଧ୍ୟ ମୟୂରଭଞ୍ଜର ମହାରାଜାଙ୍କଠାରୁ ପରବର୍ତ୍ତୀ ସାହାଯ୍ୟ ମିଳିବା ବିଷୟରେ ତ୍ରିପାଠୀ ମହାଶୟଙ୍କ ସଙ୍ଗେ ମିଶି ଆନ୍ତରିକ ସହାୟତା କରିଅଛନ୍ତି ।

ମୟୂରଭଞ୍ଜ ଷ୍ଟେଟର ଦେୱାନ ଓ ପ୍ରଧାନମନ୍ତ୍ରୀ, ଶ୍ରୀଯୁକ୍ତ କେ.ସି. ନିୟୋଗୀ,

ପୁରୀର ଭୂତପୂର୍ବ ଜିଲ୍ଲା କଲେକ୍ଟର, ଶ୍ରୀଯୁକ୍ତ ଡି.ପି.ଶର୍ମା, ଆଇ.ସି.ଏସ୍,

ସମ୍ବଲପୁରର ଡେ. କମିଶନର, ରାୟବାହାଦୁର ରାଧାଚରଣ ଦାସ,

ପୁରୀର ସଦର ସବ୍‌ଡିଭିଜନାଲ୍ ଅଫିସର, ବାବୁ ସତୀଶଚନ୍ଦ୍ର ମିତ୍ର,

କଟକର ଆଡ୍‌ଭୋକେଟ୍, ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତି,

ରେଭିନ୍ୟୁ କମିଶନରଙ୍କ ପର୍ସନାଲ୍ ଆସିଷ୍ଟାଣ୍ଟ, ରାୟବାହାଦୁର ଉମାଚରଣ ଦାସ,

କଟକ ମ୍ୟୁନିସିପାଲିଟିର ଭୂତପୂର୍ବ ଏକ୍‌ଜିକ୍ୟୁଟିଭ୍ ଅଫିସର୍, ରାୟସାହେବ ସୋମନାଥ ମହାପାତ୍ର,

ପାଟନା ଷ୍ଟେଟର ସଦର ଏସ.ଡି.ଓ. ଏବଂ ଆସିଷ୍ଟାଣ୍ଟ୍ ସେସନ୍‌ସ ଜଜ, ବାବୁ ଦୁର୍ଗାଚରଣ ରାୟ ଓ ତାଙ୍କ ସହଧର୍ମିଣୀ ଶ୍ରୀମତୀ ସୁମତି ଦେବୀ,

ଆଠମଲ୍ଲିକ ଷ୍ଟେଟର ଦେଓ୍ୱାନ ଓ ସେସନ୍‌ସ ଜଜ, ବାବୁ ବାମଦେବ ମିଶ୍ର, ବି.ଏ.,

ଖଡ଼ିଆଳର ଆକ୍ଟିଙ୍ଗ୍ ଦେଓ୍ୱାନ, ବାବୁ ବଟକୃଷ୍ଣ ମହାନ୍ତି, ବି.ଏ.,

ବାମଣ୍ଡାର ଷ୍ଟେଟ୍ ଜଜ, ଶ୍ରୀମାନ୍ ଅମରବଲ୍ଲଭ ଦେ, ଏମ୍.ଏ., ବି.ଏଲ.

କେନ୍ଦୁଝର ଷ୍ଟେଟ୍‌ର ଦେବାନ, ରାୟବାହାଦୁର ଯୁଗଳକିଶୋର ତ୍ରିପାଠୀ, ଏମ୍.ଏ.

କେନ୍ଦୁଝର ଷ୍ଟେଟ୍‌ର ଅଫିସ୍ ସୁପରିଣ୍ଟେଣ୍ଡେଣ୍ଟ, ବାବୁ ବଂଶୀଧର ମହାନ୍ତି,

ବଣାଇ ଷ୍ଟେଟ୍ ରାଜାସାହେବଙ୍କ ପର୍ସନାଲ୍ କ୍ଲର୍କ୍ ଉଭୟ ଭାଷାପ୍ରବୀଣ, ପଣ୍ଡିତ ଶ୍ରୀ ବିନାୟକ ଦାସ,

କଟକ ଟ୍ରେନିଙ୍ଗ୍ ସ୍କୁଲର ହେଡ୍‌ମାଷ୍ଟର, ବାବୁ କୃଷ୍ଣଚନ୍ଦ୍ର ସେନଗୁପ୍ତ, ଏମ୍.ଏ., ବି.ଇଡି.,

କଟକର ସରକାରୀ ଓକିଲ, ଆଡ୍‌ଭୋକେଟ୍ ବାବୁ ଚିନ୍ତାମଣି ଆଚାର୍ଯ୍ୟ, ଏମ୍.ଏ., ବି.ଏଲ୍.,

ପୁରୀ ପୁଲିସ୍ ହସ୍‌ପିଟାଲର ମେଡିକାଲ୍ ଅଫିସର୍, ଡାକ୍ତର ଶ୍ରୀ କୈଳାସଚନ୍ଦ୍ର ରାଓ,

ପାଟନା ଷ୍ଟେଟର ସାମ୍ୱାଦିକ, ବାବୁ ତ୍ରିଲୋଚନ ପଟ୍ଟନାୟକ,

ସମ୍ବଲପୁରର ସାମ୍ୱାଦିକ, ବାବୁ ବିଶ୍ୱକ୍‌ସେନ ବହିଦାର,

ବ୍ରହ୍ମପୁର "ଦି ନିଉ ଓଡ଼ିଶା' ପତ୍ରିକାର ସମ୍ପାଦକ, ବାବୁ ଶଶିଭୂଷଣ ରଥ,

ବ୍ରହ୍ମପୁର 'ଓଡ଼ିଆ' ପତ୍ରିକାର ସମ୍ପାଦକ, ବାବୁ ଆନନ୍ଦ ଆଚାର୍ଯ୍ୟ,

ସୁପରିଚିତ ଲେଖକ ଓ ଗ୍ରନ୍ଥକାର, ବାବୁ ଶଶିଭୂଷଣ ରାୟ, କଟକ,

ଶ୍ରୀମାନ୍ ପ୍ରଭାତ କୁମାର ମୁଖୁର୍ଯ୍ୟା, ଏମ୍.ଏ., ଡି.ଏଡ୍. କଟକ,

ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ସମ୍ବଲପୁର,

ଶ୍ରୀମାନ୍ ପୂର୍ଣ୍ଣଚନ୍ଦ୍ର ବୋଷ, କଟକ,

'କଟକ ପବ୍ଲିଶିଙ୍ଗ୍ ହାଉସ୍'ର ସ୍ୱତ୍ୱାଧିକାରୀ ବାବୁ ଉମାଚରଣ ମହାନ୍ତି ।

କଟକର ସୁବିଦ୍ୱାନ୍ ବୈଦ୍ୟରାଜ ପଣ୍ଡିତ ଶ୍ରୀ ବାଲୁକେଶ୍ୱର ଆଚାର୍ଯ୍ୟ ଭିଷକ୍‌ରତ୍ନ ଗତ ୧୫ ବର୍ଷ ହେଲା ସ୍ୱାସ୍ଥ୍ୟରକ୍ଷା କାର୍ଯ୍ୟରେ ପ୍ରୀତିପୂର୍ଣ୍ଣ ହୃଦୟରେ ମୋର ସହାୟତା କରି-ଆସୁଅଛନ୍ତି । ଏଥି ମଧ୍ୟରେ ଡାକ୍ତର କାଶୀନାଥ ମିଶ୍ର, ବି. ଏସ୍‌ସି., ଏମ୍.ବି., ଡି.ଟି. ଏମ୍. ବହୁ ପରିଶ୍ରମ କରି ପ୍ରସନ୍ନଚିତ୍ତରେ ମୋତେ ଦାରୁଣ ରୋଗର ଆକ୍ରମଣରୁ ରକ୍ଷା କରିଅଛନ୍ତି । ଗତ ୩୫ ବର୍ଷ ହେଲା ମୋଠାରୁ ବହୁ ଦୂରରେ ରହିଥିବା ମୋର ବାଲ୍ୟସହଚର ଶ୍ଳୀପଦ ଏଥି ମଧ୍ୟରେ ମୋତେ ପୁନର୍ବାର ବନ୍ଧୁରୂପେ ଆଲିଙ୍ଗନ କରିବାକୁ ବାହୁ ପ୍ରସାରଣ କରିଥିଲା; ଡାକ୍ତର କାଶୀନାଥଙ୍କ ଚେଷ୍ଟାରେ ମୁଁ ତାହାର ଅସ୍ପୃହଣୀୟ ଆକ୍ରମଣରୁ ଏଥିମଧ୍ୟରେ ରକ୍ଷା ପାଇଅଛି ।

ଖଲ୍ଲିକୋଟରେ ଜ୍ୟୋତିଷବିଶାରଦ ପଣ୍ଡିତ ଶ୍ରୀ ବାଇକୋଳି ମହାପାତ୍ର ମୋର ଜନ୍ମକୋଷ୍ଠୀରେ ଅବସ୍ଥିତ ଗ୍ରହ ନକ୍ଷତ୍ରାଦିଙ୍କ ଗତି ବିଷୟ ଉତ୍ତମରୂପେ ନିରୀକ୍ଷଣ କରୁଅଛନ୍ତି ଓ ସେମାନଙ୍କ ସନ୍ତୋଷନିମିତ୍ତ ଶାସ୍ତ୍ରୀୟ ବିଧିରେ ପୂଜାସ୍ୱସ୍ତ୍ୟୟନାଦି କରୁଅଛନ୍ତି ।

ମୁଁ ବୁଝିପାରିଅଛି ଯେ, ଶଂସିତ ମନୀଷୀମାନେ ମୋର ଏହି କାର୍ଯ୍ୟକୁ ପବିତ୍ର ଜାତୀୟ କର୍ତ୍ତବ୍ୟ ବୋଲି ମନେକରି ମୋପ୍ରତି ସ୍ନେହ ପ୍ରବଣତାବଶତଃ ଏଭଳି ଭାବରେ ଶ୍ରମ ସ୍ୱୀକାର କରୁଅଛନ୍ତି ।

## ସ୍ୱର୍ଗବାସୀ ଓ ମର୍ତ୍ତ୍ୟବାସୀ ଆଶୀର୍ବାଦକଗଣ

ମୋର ବିଂଶତିବର୍ଷବ୍ୟାପୀ ଶ୍ରମର ପରିଣାମର ଆସନ୍ନବର୍ତ୍ତିତାବେଳେ ମୋ ସ୍ୱର୍ଗୀୟ ପିତା ନରସିଂହ ପ୍ରହରାଜଙ୍କର ପବିତ୍ର ଆତ୍ମାଙ୍କ ନିକଟରେ ମୁଁ ଶ୍ରଦ୍ଧାପୂର୍ଣ୍ଣ ଅନ୍ତଃକରଣରେ ଭକ୍ତି ସମର୍ପଣ କରୁଅଛି । ମୋର ବିଶ୍ୱାସ, ସେ ସର୍ବଦା ଏହି କାର୍ଯ୍ୟର ଅଗ୍ରଗତି ଲକ୍ଷ୍ୟ କରୁଅଛନ୍ତି ।

ସୋନପୁରର ଭୂତପୂର୍ବ ମହାରାଜ ଧର୍ମନିଧି ଜ୍ଞାନଗୁଣାକର ସର୍ ବୀରମିତ୍ରୋଦୟ ସିଂହଦେବ, କେ.ସି.ଆଇ.ଇ., ଏମ୍.ଆର୍.ଏ.ଏସ୍., ଗତ ୩୨ ବର୍ଷକାଳ ମୋର ପରାମର୍ଶଦାତା, ବନ୍ଧୁ ଏବଂ ପୃଷ୍ଠପୋଷକ ଥିଲେ । ଆମେ ଦୁହେଁ ସମବୟସ୍କ ଥିଲୁ । ସେ ନାନାବିଧ ସାଧାରଣ ଓ ବିଶିଷ୍ଟ ବଦାନ୍ୟତା ତଥା ସାହିତ୍ୟିକ ପ୍ରୀତିଦ୍ୱାରା, ବିଶେଷତଃ କଲିକତା ବିଶ୍ୱବିଦ୍ୟାଳୟ ହସ୍ତରେ ଓଡ଼ିଆ ଭାଷାରେ ଏମ୍.ଏ. ପଢ଼ାହେବାପାଇଁ ସମର୍ପଣ କରିଥିବା ରାଜୋଚିତ ଦାନଦ୍ୱାରା ଯେଉଁ ସୁନାମ ଅର୍ଜନ କରିଯାଇଅଛନ୍ତି, ତାହା କେବେହେଁ ଲୁପ୍ତ ହେବ ନାହିଁ । ଭାଷାକୋଷ, ତାଙ୍କ ଜୀବଦ୍ଦଶାରେ, ତାଙ୍କ ଉଦାର ଦାତୃତ୍ୱପୂର୍ଣ୍ଣ ଦୃଷ୍ଟି ଆକର୍ଷଣ କରିପାରି ନ ଥିଲେହେଁ, ଓଡ଼ିଆ ଜାତିର ପ୍ରଗତିପାଇଁ ସେ ଯେଉଁ କାର୍ଯ୍ୟମାନ କରିଯାଇଅଛନ୍ତି, ତଦ୍ୱାରା ସେ ଓଡ଼ିଶାର ସମ୍ମାନାର୍ହ ସନ୍ତାନମାନଙ୍କ ମଧ୍ୟରେ ସମ୍ମୁଖବର୍ତ୍ତୀ ଆସନର ଅଧିକାରୀ ହୋଇଅଛନ୍ତି । ସେ ସର୍ବଦା ମୋ ସାଧନାର ଭୂୟସୀ ପ୍ରଶଂସା କରୁଥିଲେ ଏବଂ ତାହା ସୁଧୀସମାଜ ସମ୍ମୁଖରେ ବହୁବାର ସ୍ପଷ୍ଟଭାବରେ ପ୍ରକାଶ କରୁଥିଲେ । ପରଲୋକଗତିର କେତେକ ମାସ ପୂର୍ବେ ସେ ତାଙ୍କ ଆଲୋକଚିତ୍ରକୁ ଭାଷାକୋଷରେ ସ୍ଥାନ ଦେବାପାଇଁ ଅନୁମତି ଦେଇ ପଠାଇଥିଲେ; ମାତ୍ର ତାହା ଦେଖିବାକୁ ପ୍ରଭୁ ତାଙ୍କୁ ରଖିଲେ ନାହିଁ । ଏହି ଖଣ୍ଡରେ ତାଙ୍କର ଆଲୋକଚିତ୍ର ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି ।

କଲିକତା ଗୌଡ଼ୀୟମଠର ବୈକୁଣ୍ଠବାସୀ ମହାରାଜ ଶ୍ରୀ ଭକ୍ତିସିଦ୍ଧାନ୍ତ ସରସ୍ୱତୀ ।

ସାହିତ୍ୟକ୍ଷେତ୍ରରେ ମୋର ପଥପ୍ରଦର୍ଶକ ଓ ଗୁରୁ ସ୍ୱର୍ଗୀୟ ବିଶ୍ୱନାଥ କର ।

ଯାହାଙ୍କ ନିକଟରେ ମୁଁ କୃତଜ୍ଞତା ପାଶରେ ଆବଦ୍ଧ ଥିବା ବିଷୟ ପୂର୍ବଖଣ୍ଡରେ ପ୍ରକାଶ କରିଅଛି, ସେହି ସ୍ୱର୍ଗୀୟ ଶ୍ରୀଯୁକ୍ତ ଏମ୍.ଏସ୍.ଦାସ, ସି.ଆଇ.ଇ, (ମଧୁବାବୁ),

ସ୍ୱର୍ଗୀୟ ଅଭୟଚନ୍ଦ୍ର ଦାସ- ଯାହାଙ୍କର ଭାଷାକୋଷପାଇଁ ଶବ୍ଦସଂଗ୍ରହ ବିଷୟ ମୁଁ ପ୍ରଥମ ଖଣ୍ଡରେ ଉଲ୍ଲେଖ କରିଅଛି ।

ପୁରୀ ଭୋଗବର୍ଦ୍ଧନ ଶଙ୍କରାନନ୍ଦ ମଠର ଅଧିପତି ସ୍ୱାମୀ ଶଙ୍କର ସଚ୍ଚିଦାନନ୍ଦ ସରସ୍ୱତୀ, ଯେ ଏହି ଗ୍ରନ୍ଥର ଆଶୁ ସମାପ୍ତି କାମନାରେ ପ୍ରତ୍ୟହ ପରମପୁରୁଷଙ୍କ ଆଶୀର୍ବାଦ ଭିକ୍ଷା କରୁଅଛନ୍ତି ।

ସତ୍ୟ ମହିମା ଧର୍ମର ପ୍ରଚାରକ, ବ୍ରହ୍ମ ଅବଧୂତ ସନ୍ୟାସୀ ବିଶ୍ୱନାଥବାବା ଯେତେବେଳେ କଟକ ଆସନ୍ତି, ସେତେବେଳେ ଭାଷାକୋଷ ଆଶ୍ରମରେ ପଦାର୍ପଣ କରି ତତ୍‌ପ୍ରତି ପରମାତ୍ମାଙ୍କ ଆଶୀର୍ବାଦ ପ୍ରାର୍ଥନା କରିବାକୁ ସ୍ୱକୀୟ କର୍ତ୍ତବ୍ୟ ବୋଲି ମନେକରନ୍ତି ।

ବଙ୍ଗଳା ଓ ହିନ୍ଦୁସ୍ଥାନୀ ବିଶ୍ୱକୋଷଦ୍ୱୟର ପ୍ରଣେତା, ପ୍ରାଚ୍ୟବିଦ୍ୟା-ମହାର୍ଣ୍ଣବ ରାୟସାହେବ ନଗେନ୍ଦ୍ରନାଥ ବସୁ ମହୋଦୟ ସର୍ବଦା ଉତ୍କଣ୍ଠାପୂର୍ଣ୍ଣ ହୃଦୟରେ ଏହି ଭାଷାକୋଷ କର୍ମର ଅଗ୍ରଗତି ବିଷୟରେ ତତ୍ତ୍ୱ ନେଉଅଛନ୍ତି । ତାହାଙ୍କ ସାହଚର୍ଯ୍ୟରେ ପଞ୍ଚମଖଣ୍ଡରେ ଓ ଏହି ଖଣ୍ଡରେ ପ୍ରଦତ୍ତ ଫଟୋଗୁଡ଼ିକର ବ୍ଲକ୍ ପ୍ରସ୍ତୁତ ହୋଇଅଛି ।

ଶଂସିତ ଜୀବିତ ଓ ମୃତ ମନୀଷୀମାନଙ୍କ ନିକଟରେ ତଥା ମୋର ପୃଷ୍ଠପୋଷକ, ସହାୟକ, ସାହାଯ୍ୟକାରୀ, ଶୁଭାକାଂକ୍ଷୀ, ସହକର୍ମୀ, ସହାନୁଭୂତି ପ୍ରଦର୍ଶକ ଓ ପ୍ରଚାରକମାନଙ୍କ ନିକଟରେ ମୁଁ ହୃଦୟର କୃତଜ୍ଞତା ଜ୍ଞାପନ କରୁଅଛି । ଏହି ସୁବିପୁଳ ବ୍ୟାପାରରେ ଏତେଗୁଡ଼ିଏ ସହକର୍ମୀଙ୍କୁ ଓ ସାହାଯ୍ୟକାରୀଙ୍କୁ ପାଇ ନ ଥିଲେ ମୋଭଳି କ୍ଷୀଣଶକ୍ତି ଲୋକପକ୍ଷରେ ଏତେଦୂର ଅଗ୍ରସର ହେବା କେବେହେଁ ସମ୍ଭବପର ହୋଇ ନ ଥାନ୍ତା । ମୁଁ କୃତଜ୍ଞତାପୂର୍ଣ୍ଣ ଅନ୍ତଃକରଣରେ ସେମାନଙ୍କ ସାହାଯ୍ୟ ଗ୍ରହଣ କରି ସେମାନଙ୍କ ଫଟୋ ମଧ୍ୟରୁ ଯେତେ ଖଣ୍ଡ ମୋ ହସ୍ତଗତ ହେଉଅଛି ତାହା ଏହି ଗ୍ରନ୍ଥର ଭିନ୍ନ ଭିନ୍ନ ଖଣ୍ଡରେ ସନ୍ନିବେଶିତ କରୁଅଛି ।

## ସମ୍ମାନ, ପ୍ରଶଂସା ଓ ଗୁଣାନୁବାଦ

ବର୍ତ୍ତମାନ କଟକ ମ୍ୟୁନିସିପାଲିଟିର ପରିଚାଳକ, କଟକ ଜିଲ୍ଲାର ମାଜିଷ୍ଟ୍ରେଟ୍ ଶ୍ରୀଯୁକ୍ତ ଆର.ପି. ବାର୍ଡସାହେବ ଏହି ନଗରବାସୀ କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ଅନୁରୋଧ ଅନୁସାରେ କଟକର ଯେଉଁ ପୁରାତନ ନର୍ମାଲସ୍କୁଲ ଲେନ୍‌ରେ ଭାଷାକୋଷର କାର୍ଯ୍ୟାଳୟ ପ୍ରତିଷ୍ଠିତ ହୋଇଅଛି, ତାହାକୁ 'ଭାଷାକୋଷ ଲେନ୍' ନାମରେ ଅଭିହିତ କରିଅଛନ୍ତି ଏବଂ ଗଳିର ଦୁଇ ପ୍ରାନ୍ତରେ ସାଇନ୍ ବୋର୍ଡ (ପରିଚୟ-ପଟ୍ଟା) ଦ୍ୱାରା ଏହି ନାମ ସୂଚିତ କରିଅଛନ୍ତି; ଆହୁରି ମଧ୍ୟ ଏହି ନାମପରିବର୍ତ୍ତନ ସର୍ବସାଧାରଣରେ ଉଦ୍‌ଘୋଷିତ କରିଅଛନ୍ତି ।

ଭାରତ ସାମ୍ରାଜ୍ୟର ଗଭର୍ଣ୍ଣର ଜେନେରଲ୍ ଓ ଭାଇସ୍‌ରାୟ ଭାଷାକୋଷ ସଂଗ୍ରାହକକୁ ଗତ ନବବର୍ଷ ଉପଲକ୍ଷରେ ନୂତନ ଓଡ଼ିଶା ପ୍ରଦେଶର ଉପାଧି ବିତରଣବେଳେ 'ରାୟବାହାଦୁର' ଉପାଧିରେ ସମ୍ମାନିତ କରିଅଛନ୍ତି ।

ବିଶାଖାପତ୍ତନ ନଗରସ୍ଥିତ ଆନ୍ଧ୍ର ରିସର୍ଚ୍ଚ ବିଶ୍ୱବିଦ୍ୟାଳୟ (ଭାରତୀ ତୀର୍ଥ)ର ଚାନ୍‌ସେଲର୍ ମହୋଦୟ ଭାଷାକୋଷର ସଂଗ୍ରାହକକୁ 'ସାହିତ୍ୟ ବିଶାରଦ' ପଦବୀ ଓ ବିରୁଦପତ୍ର (ସନନ୍ଦ) ପ୍ରଦାନ କରିଅଛନ୍ତି ।

କବିବର ଚିନ୍ତାମଣି ମହାନ୍ତି ଭାଷାକୋଷ ସମ୍ବନ୍ଧରେ ଗୋଟିଏ ପ୍ରଶଂସାପୂର୍ଣ୍ଣ କବିତା ରଚନା କରି ତତ୍‌ପ୍ରଣୀତ ଗ୍ରନ୍ଥାବଳୀରେ ସଂଯୋଜିତ କରିଅଛନ୍ତି । ତାଙ୍କ ଗ୍ରନ୍ଥାବଳୀ ବର୍ତ୍ତମାନ ଯନ୍ତ୍ରସ୍ଥ ।

ଯାଜପୁରର ପଣ୍ଡିତ ଏକାଦଶୀ ବେଦୀ ଓ ସମ୍ବଲପୁରର କଂଗ୍ରେସକର୍ମୀ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ମଧ ଭାଷାକୋଷ ସମ୍ବନ୍ଧରେ ଗୋଟିଏ ଗୋଟିଏ ପ୍ରଶଂସାମୂଳକ କବିତା ପ୍ରକାଶ କରିଅଛନ୍ତି ।

ଦେଶବିଦେଶରେ ସୁପଣ୍ଡିତରୂପେ ପରିଚିତ କଲିକତା ବିଶ୍ୱବିଦ୍ୟାଳୟର ଆଚାର୍ଯ୍ୟ ଡାକ୍ତର ସୁନୀତିକୁମାର ଚାଟାର୍ଜ୍ଜୀ, ଏମ୍.ଏ., ଡି.ଲିଟ୍., ମହୋଦୟ ମହୀଶୂର ରାଜ୍ୟରେ ଅନୁଷ୍ଠିତ ହୋଇଥିବା ଗତ ଅଲ୍‌ଇଣ୍ଡିଆ ଓରିଏଣ୍ଟାଲ୍ କନ୍‌ଫରେନ୍‌ସର ଭାରତୀୟ ଆର୍ଯ୍ୟଭାଷାବିଷୟକ ଶାଖାର ସଭାପତିରୂପେ ତାଙ୍କ ଅଭିଭାଷଣରେ ଭାଷାକୋଷ ବିଷୟ ଉଲ୍ଲେଖ କରିଥିଲେ । ସେ ମୋ ନିକଟକୁ ଏହି ଭାବରେ ଖଣ୍ଡିଏ ପତ୍ର ମଧ ଲେଖିଅଛନ୍ତି- ''ଆପଣଙ୍କର ସୁବୃହତ୍ ଅଭିଧାନକୁ ମୁଁ କଲିକତା ବିଶ୍ୱବିଦ୍ୟାଳୟ ଲାଇବ୍ରେରୀରେ ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇଅଛି ଓ ଆପଣଙ୍କ ବିଦ୍ୱତ୍ତାର ଓ ପ୍ରଗାଢ଼ ଅଧ୍ୟବସାୟର ଭୂୟସୀ ପ୍ରଶଂସା କରୁଅଛି । ଭାରତୀୟ ଆର୍ଯ୍ୟଭାଷା ଅନୁଶୀଳନକାରୀଙ୍କ ପକ୍ଷରେ ଆପଣଙ୍କ ଅଭିଧାନ ଗୋଟିଏ ଅଦ୍ୱିତୀୟ ଗ୍ରନ୍ଥ । ଏହି ବିଶାଳ ଗ୍ରନ୍ଥ ଉତ୍କଳୀୟ ମନୀଷାର ସ୍ମୃତିସ୍ତମ୍ଭରୂପେ ବିରାଜୁଥିବ । ସୁଖର ବିଷୟ ଏହି ଯେ, ଉତ୍କଳ ଜନନୀ ସ୍ୱୀୟ ରାଜ୍ୟରେ ଅଧିଷ୍ଠାତ୍ରୀ ଦେବୀରୂପେ ପ୍ରତିଷ୍ଠିତ ହେବାର ସମକାଳରେ ଏହା ପ୍ରକାଶିତ ହୋଇଅଛି ।

ବଙ୍ଗଳା ଓ ହିନ୍ଦୀ ବିଶ୍ୱକୋଷ ପ୍ରଣେତା ପ୍ରାଚ୍ୟ ବିଦ୍ୟାମହାର୍ଣ୍ଣବ ରାୟସାହେବ ଶ୍ରୀ ନଗେନ୍ଦ୍ରନାଥ ବସୁ ତତ୍‌କୃତ ମହାଗ୍ରନ୍ଥ ବଙ୍ଗଳା ବିଶ୍ୱକୋଷର ୨ୟ ସଂସ୍କରଣରେ ଓଡ଼ିଶା ସମ୍ବନ୍ଧରେ ପ୍ରବନ୍ଧ ଲେଖିବାପାଇଁ ମୋତେ ଅନ୍ୟତମ ଲେଖକରୂପେ ଗ୍ରହଣ କରିଅଛନ୍ତି; ତହିଁର ପ୍ରଥମ ଓ ଦ୍ୱିତୀୟ ଖଣ୍ଡ ମାତ୍ର ପ୍ରକାଶିତ ହୋଇଅଛି ।

ବର୍ତ୍ତମାନ ଇଂଲଣ୍ଡରେ ଅଧ୍ୟୟନ କରୁଥିବା କେନ୍ଦୁଝରର ନରପତିଙ୍କ ଅନୁଜ ଛୋଟରାୟ ଶ୍ରୀମାନ ଲକ୍ଷ୍ମୀନାରାୟଣ ଭଞ୍ଜଦେବ ଓ କେନ୍ଦୁଝର ରାଜାଙ୍କର ବିଦୁଷୀ ପଟ୍ଟମହିଷୀ, ଉଭୟେ ଏକସାର (ସେଟ୍) ଲେଖାଏଁ ଭାଷାକୋଷ ଓ ଅନ୍ୟ କେତେକ ଆଦର୍ଶ ଓଡ଼ିଆ ସାହିତ୍ୟ ପୁସ୍ତକ ଅକ୍ସଫୋର୍ଡ ଓ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଲାଇବ୍ରେରୀମାନଙ୍କୁ ଏବଂ ଗ୍ରେଟବ୍ରିଟେନ ଓ ଇଉରୋପ ମହାଦେଶର ଅନ୍ୟ ସାଧାରଣ ଲାଇବ୍ରେରୀମାନଙ୍କୁ ଉପହାର ଦେବାକୁ କଳ୍ପନା କରୁଅଛନ୍ତି ।

ଆହୁରି ମଧ୍ୟ ପରମ ଆହ୍ଲାଦ ସହକାରେ ଛୋଟରାୟସାହେବଙ୍କଠାରୁ ଅବଗତ ହେଲି ଯେ, ଗଞ୍ଜାମ ଜିଲ୍ଲା ଚିକିଟିର ରାଜକୁମାର– ଶ୍ରୀ ସାହେବ ଦେଓଙ୍କ ଚେଷ୍ଟାରେ ଇଂଲଣ୍ଡରେ ଓଡ଼ିଆ ଭାଷା ଗୋଟିଏ ଭାଷାରୂପେ ଗୃହୀତ ହୋଇଅଛି ଏବଂ ଲଣ୍ଡନ ବିଶ୍ୱବିଦ୍ୟାଳୟର ମାଟ୍ରିକ୍ୟୁଲେସନ (ପ୍ରବେଶିକା) ପରୀକ୍ଷାର ପାଠ ନିର୍ଘଣ୍ଟର ଅନ୍ତର୍ଭୁକ୍ତ ହୋଇଅଛି ।

ବାଣପୁରର ସୁପରିଚିତ ପଣ୍ଡିତ ଶ୍ରୀ ଗୋଦାବରୀଶ ମିଶ୍ର, ଏମ୍.ଏ., ବି.ଟି. ଏମ.ଏଲ.ଏ. ମହୋଦୟ ବାରିପଦା ସାହିତ୍ୟ ସମାଜର ଗତ ବାର୍ଷିକ ଅଧିବେଶନରେ ସଭାପତିରୂପେ ତାଙ୍କ ଅଭିଭାଷଣରେ ମୟୂରଭଞ୍ଜ ମହାରାଜାଙ୍କର ଭାଷାକୋଷପ୍ରତି ବଦାନ୍ୟତାପାଇଁ ମହାରାଜଙ୍କୁ ଓଡ଼ିଆ ଜାତିର ଧନ୍ୟବାଦ ଅର୍ପଣ କରିଥିଲେ ।

ବ୍ରହ୍ମପୁରର ଓଡ଼ିଆ ସାପ୍ତାହିକ ସଂବାଦପତ୍ର 'ଓଡ଼ିଆ'ର ସମ୍ପାଦକ ଶ୍ରୀମାନ୍ ଆନନ୍ଦ ଆଚାର୍ଯ୍ୟ ୧୪/୫/୩୭ ତାରିଖର ସଂଖ୍ୟାରେ ଭାଷାକୋଷର ଗୁଣାନୁବାଦପୂର୍ବକ ଗୋଟିଏ ପ୍ରବନ୍ଧ ପ୍ରକାଶ କରିଥିଲେ ଏବଂ ତହିଁରେ ସଂଗ୍ରାହକର ଗୋଟିଏ ଆଲୋକଚିତ୍ର ମଧ୍ୟ ଦେଇଥିଲେ ।

କଲିକତାର ବିଖ୍ୟାତ ଇଂରାଜୀ ପତ୍ରିକାଦ୍ୱୟ ଷ୍ଟେଟ୍‌ସମାନ୍ ଓ ଅମୃତବଜାର ପତ୍ରିକା ଓ ମାନ୍ଦ୍ରାଜର ହିନ୍ଦୁ ପତ୍ରିକା ୧୩/୬/୩୭ ତାରିଖର ସଂଖ୍ୟାରେ ଭାଷାକୋଷର ଅର୍ଥପରିସ୍ଥିତି ଓ ପରିସମାପ୍ତି ବିଷୟରେ କଟକ ସାଂବାଦିକଙ୍କ ପ୍ରେରିତ ଗୋଟିଏ ଲେଖାଏଁ ସଂକ୍ଷିପ୍ତ ବିବୃତି ପ୍ରକାଶ କରିଅଛନ୍ତି ।

## ବିକ୍ରୀତ ଓ ଉପହାରରୂପେ ପ୍ରଦତ୍ତ ପୁସ୍ତକ

ଆଜିଯାଏ ୩୮୦ ସେଟ୍ ପୁସ୍ତକପାଇଁ ଅଗ୍ରିମ ଗ୍ରାହକ ହୋଇଅଛନ୍ତି । ପଞ୍ଚମ ଖଣ୍ଡର ପ୍ରକାଶ ପରେ ୧୫ ସେଟ୍ ଗ୍ରନ୍ଥପାଇଁ ଯେଉଁ ନୂତନ ଗ୍ରାହକ ହୋଇଅଛନ୍ତି, ସେମାନଙ୍କ ମଧ୍ୟରେ ନିମ୍ନୋକ୍ତ ନାମ ଉଲ୍ଲେଖଯୋଗ୍ୟ–

ରେଙ୍ଗୁନ ବିଶ୍ୱବିଦ୍ୟାଳୟ ଲାଇବ୍ରେରୀ, ବଙ୍ଗଳାର ରୟାଲ୍ ଏସିଆଟିକ୍ ସୋସାଇଟି, କାଶୀ ହିନ୍ଦୁ ବିଶ୍ୱବିଦ୍ୟାଳୟ, ନାଗପୁର ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱରସ୍ଥ ରାମକୃଷ୍ଣମଠ, ସମ୍ବଲପୁର ବରପାଲି ଜମିଦାରୀର ଅପ୍ରାପ୍ତବୟସ୍କା ଅଧିକାରିଣୀ ଶ୍ରୀମତୀ ପ୍ରଭାସ କୁମାରୀ ଦେବୀ (ଏହାଙ୍କପାଇଁ ସମ୍ବଲପୁରର ଡେପୁଟୀ କମିଶନର ସାହେବ ଏକ ସେଟ୍‌ର ତାତ୍କାଳିକ ମୂଲ୍ୟ ୧୧୫ ଟଙ୍କା ପରିବର୍ତ୍ତରେ ୧୫୦ ଟଙ୍କା ପଠାଇଦେଇଅଛନ୍ତି), କଟକ ମିସନ୍ ପ୍ରେସର ସୁପରିଣ୍ଟେଣ୍ଡେଣ୍ଟ, ପ୍ରୋଫେସର ବିପିନ ବିହାରୀ ରାୟ, ଏମ୍.ଏ., ପାଟନା ଷ୍ଟେଟର ସଦର ସବଡିଭିଜନ ଅଫିସର୍ ବାବୁ ଶ୍ରୀ ଦୁର୍ଗାଚରଣ ରାୟ, ପାଟନା ଷ୍ଟେଟର ଏଡୁକେଶନ୍ ଅଫିସର୍, କେନ୍ଦୁଝର ଷ୍ଟେଟ୍‌ର ଦେବାନ (ରାଜାସାହେବଙ୍କଦ୍ୱାରା ପୂର୍ବରୁ ଗୃହୀତ ୧୦ ସେଟ୍‌ରୁ ଅଧିକା), ପାଟନା ଷ୍ଟେଟ ଅନ୍ତର୍ଗତ ଟିଟିଲାଗଡ଼ ଓ ପାଟନାଗଡ଼ ମାଇନର ସ୍କୁଲର ହେଡମାଷ୍ଟରମାନେ, ବଲାଙ୍ଗିରର ଜର୍ଜ୍ କ୍ଲବ୍ ।

ବର୍ତ୍ତମାନ ସୁଦ୍ଧା ୭୦ ସାର ଗ୍ରନ୍ଥ ପୃଷ୍ଠପୋଷକ, ଉତ୍ସାହଦାତା ଓ ସହକର୍ମୀମାନଙ୍କୁ ଉପହାର ଦିଆଯାଇଅଛି । ପଞ୍ଚମ ଖଣ୍ଡର ପ୍ରକାଶ ପରେ ୬ ସାର ବହି ଉପହାର ଦିଆଯାଇଅଛି ।

## ଗ୍ରନ୍ଥର ଆର୍ଥିକ ପରିସ୍ଥିତି

ସପ୍ତମ ବା ଶେଷ ଖଣ୍ଡପାଇଁ ଓଡ଼ିଆ ବର୍ଣ୍ଣମାଳାର ଶେଷ ଅକ୍ଷର ଦୁଇଟି (ସ ଓ ହ) ବାକି ଅଛି । ଗ୍ରନ୍ଥମାନଙ୍କ ବନ୍ଧାଇ ଖରଚ ସହିତ ପ୍ରତ୍ୟେକ ଖଣ୍ଡର ପ୍ରକାଶପାଇଁ ହାରାହାରି ୧୬ ହଜାର ଟଙ୍କା ଲୋଡ଼ା । ସମଗ୍ର ସାତ ଖଣ୍ଡର ପ୍ରକାଶବ୍ୟୟ ପ୍ରାୟ ଏକ ଲକ୍ଷ ପନ୍ଦର ହଜାର ଟଙ୍କା ହେବ । ଏପର୍ଯ୍ୟନ୍ତ ଗ୍ରାହକମାନଙ୍କଠାରୁ ପ୍ରାପ୍ତ ଅଗ୍ରିମ ମୂଲ୍ୟ, ଋଣ, ବିହାର-ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କଠାରୁ; ପାଟଣା ବିଶ୍ୱବିଦ୍ୟାଳୟରୁ; ମୟୂରଭଞ୍ଜ, ଜୟପୁର, ପାଟଣା, ପାରଳାଖେମୁଣ୍ଡି, କଳାହାଣ୍ଡି ମହାରାଜାଙ୍କଠାରୁ; ବୌଦ, ଆଠମଲ୍ଲିକ, ଖଲ୍ଲିକୋଟ, କେନ୍ଦୁଝର, ଚିକିଟି, ଖଡ଼ିଆଳ ରାଜାଙ୍କଠାରୁ; ଏମାରମଠ ମହନ୍ତ ମହାରାଜାଙ୍କଠାରୁ ଏବଂ ଅନ୍ୟାନ୍ୟ ଉଦାର-ହୃଦୟ ଦାତାଙ୍କଠାରୁ ସାହାଯ୍ୟ ପ୍ରାୟ ଏକ ଲକ୍ଷ ଟଙ୍କା ସଂଗୃହୀତ ହୋଇଅଛି । ଏ ଗ୍ରନ୍ଥର ପରିସମାପ୍ତି ନିକଟବର୍ତ୍ତୀ ହୋଇଆସିଲାଣି । ଏପରି ଅବସ୍ଥାରେ ମୁଁ ଆଶା କରୁଅଛି ଯେ, ଶେଷ ଖଣ୍ଡର ପ୍ରକାଶବ୍ୟୟ ଓ ଏ ଗ୍ରନ୍ଥ ସଂପର୍କରେ କରାଯାଇଥିବା ଋଣ ଓ ଅନ୍ୟାନ୍ୟ ବଳକା ବ୍ୟୟ ନିର୍ବାହପାଇଁ ଯାହା ପ୍ରୟୋଜନୀୟ ହେବ, ତାହା ଏଥିମଧ୍ୟରେ ମୋ ହସ୍ତଗତ ହେବ । ଯେଉଁ ଦାତାମାନେ ଅଙ୍ଗୀକୃତ ଧନ ସମ୍ପୂର୍ଣ୍ଣରୂପେ ଦେଇ ନାହାନ୍ତି ଓ ସମଗ୍ର ଗ୍ରନ୍ଥ ପ୍ରକାଶ ନ ହୋଇପାରିବାର ଆଶଙ୍କା କରି ଯେଉଁ ସାହିତ୍ୟପ୍ରେମୀ ପୃଷ୍ଠପୋଷକମାନେ ଏପର୍ଯ୍ୟନ୍ତ ସେମାନଙ୍କର ଦାନାଭ୍ୟସ୍ତ ହସ୍ତକୁ ଏହି ଉଦ୍ଦେଶ୍ୟରେ ସଂପ୍ରସାରିତ କରି ନାହାନ୍ତି, ଆଗାମୀ ବର୍ଷ ଏହାର ପରିସମାପ୍ତି ହେବ, ଏଥିରେ ଆଉ ସନ୍ଦେହ ନ କରି ସେମାନେ ଦାତୃତ୍ୱ କିମ୍ବା ଅଧିକା ସାହାଯ୍ୟ କଲେ ମୁଁ ଏହି କାର୍ଯ୍ୟ ଯଥାକାଳରେ ସାଙ୍ଗ କରିପାରିବି । ନିମ୍ନୋକ୍ତ ଉଦାର-ହୃଦୟ ପୃଷ୍ଠପୋଷକମାନଙ୍କ ବଦାନ୍ୟତାକୁ ସତୃଷ୍ଣ ନୟନରେ ଅନାଇ ମୁଁ ବିଶ୍ୱାସ କରୁଅଛି ଯେ, ସେମାନେ ଏହି ଜାତୀୟ ଜ୍ଞାନମନ୍ଦିରର ମୁଣ୍ଡି ମାରିବାରେ ଓ ଦେଉଳ ଉପରେ ନୀଳଚକ୍ର ବସାଇବାରେ ସମ୍ପୂର୍ଣ୍ଣ ସହାୟତା କରିବେ ।

ଓଡ଼ିଶା ଗଭର୍ଣ୍ଣମେଣ୍ଟ - (ଯହିଁର କର୍ଣ୍ଣଧାର ମହୋଦୟ ଏହି ମନ୍ଦିରର ଶୁଭ ଦେଇଥିଲେ ଏବଂ ବର୍ତ୍ତମାନ ଆମ୍ଭମାନଙ୍କ ମଧ୍ୟରେ ଥାଉଁ ଥାଉଁ ଏ ସାରସ୍ୱତ ମନ୍ଦିରର ମୁଣ୍ଡିମରିବା ଦେଖିବେ ।)

ବାମଣ୍ଡାର ସ୍ୱର୍ଗତ ଦାନଶୌଣ୍ଡ ସାହିତ୍ୟପ୍ରେମିକ, ବିଶ୍ରୁତକୀର୍ତ୍ତି ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ଧର୍ମପ୍ରାଣା ମହିଷୀ ଓ ଅଶେଷ ସଦ୍‌ଗୁଣନିଧାନ ବାମଣ୍ଡାର ବର୍ତ୍ତମାନ ଅଧୀଶ୍ୱର ଶ୍ରୀ ଭାନୁଗଙ୍ଗ ତ୍ରିଭୁବନ ଦେବଙ୍କ ପିତାମହୀ, ସତତ ଦାନପବିତ୍ରହସ୍ତା, ମହନୀୟଚରିତା, ସାହିତ୍ୟାନୁରାଗିଣୀ - ଶ୍ରୀମତୀ ଡମ୍ବରୁଧରପ୍ରିୟା ଦେବୀ - (ଯେ ଆଜି ଉତ୍ତର ବୟସରେ ସୁଦ୍ଧା ରାଜଅନ୍ତଃପୁରରେ ବିଦୁଷୀମଣ୍ଡଳ ଗଠନପୂର୍ବକ ବାମଣ୍ଡା ରାଜବଂଶର ସାହିତ୍ୟସେବାର ପରମ୍ପରା ରକ୍ଷାକରି ପ୍ରତ୍ୟହ ନିୟମିତ ଓଡ଼ିଆ ସାହିତ୍ୟ ଚର୍ଚ୍ଚା କରନ୍ତି ଓ ଜାଗତିକ ସାହିତ୍ୟର ପ୍ରଗତି ବିଷୟରେ ସମ୍ବାଦ ରଖିବା ନିମନ୍ତେ ଇଂରାଜୀ ଓ ଅନ୍ୟ ଭାଷାରେ ପ୍ରକାଶିତ ପତ୍ରପତ୍ରିକାମାନ ପାଠ କରନ୍ତି ଓ ପ୍ରତିଭାଶାଳୀ ଦୁଃସ୍ଥ ସାହିତ୍ୟିକ ଓ ଗ୍ରନ୍ଥକାରମାନଙ୍କ ଦୁଃଖମୋଚନ ଯାହାଙ୍କର ଚିରାଚରିତ ବ୍ରତ ଏବଂ ଉତ୍କଳର ଏହି ଅକ୍ଷୟ ଅକ୍ଷରକୀର୍ତ୍ତି ଭାଷାକୋଷର ପରିପୂର୍ତ୍ତି ନିମନ୍ତେ ଯାହାଙ୍କ ସଦୟଦୃଷ୍ଟି ଆକର୍ଷଣ

କରିବା ଭାର ତାଙ୍କର ଗୁଣଗ୍ରାହୀ ତନୁଜ ପୁରୀର ଗଜପତି ମହାରାଜା ବୀର ଶ୍ରୀ ରାମଚନ୍ଦ୍ର ଦେବ, ତାଙ୍କର ପୌତ୍ର ବାମଣ୍ଡାଧୀଶ୍ୱର ମହୋଦୟ, ତାଙ୍କର ଘନିଷ୍ଠ ବାନ୍ଧବଦ୍ୱୟ ତାଳଚେର ନରେଶ ଓ ବଣାଇ ନରେଶ ସ୍ୱତଃ ଗ୍ରହଣକରି ମୋତେ କୃତାର୍ଥ କରିଅଛନ୍ତି)।

ବାମଣ୍ଡାର .ଶାସକ ନୃପତି ଶ୍ରୀ ଭାନୁଗଙ୍ଗ ତ୍ରିଭୁବନ ଦେବ- (ନବଜାତ ଯୁବରାଜଙ୍କୁ ମିଶାଇ ପାଞ୍ଚପୁରୁଷ ହେଲା ଯାହାଙ୍କ ପରିବାର ସଙ୍ଗେ ଏହି ସଂଗ୍ରାହକ ସଂପୃକ୍ତ ରହିଅଛି ଏବଂ ଯେ ଏହି ତରୁଣ ବୟସରୁ ସ୍ୱବଂଶର ସମୁଚ୍ଚ ସାହିତ୍ୟିକ ଯଶୋରାଶିକୁ ଅକ୍ଷୁଣ୍ଣ ରଖିବାପାଇଁ ସମୁଜ୍ଜ୍ୱଳ ସୂଚନା ପ୍ରଦର୍ଶନ କଲେଣି)।

ସୋନପୁରର ଶାସକ ନରପତି ମହାରାଜ ସୁଧାଂଶୁ ଶେଖର ସିଂହଦେବ (ଯାହାଙ୍କ ନିକଟରେ ସ୍ୱୟଂ ସଂଗ୍ରାହକ ଓ ତାହାର ପରିଶ୍ରମ ବାଲ୍ୟକାଳରୁ ସୁପରିଚିତ ଏବଂ ଯେ ସୋନପୁରର ମହନୀୟ ମହାରାଜପ୍ରାସାଦକୁ ସ୍ୱୀୟକୀର୍ତ୍ତି ପ୍ରଭାରେ ନିଶ୍ଚୟ ଦୀପ୍ତିମୟ କରି ରଖିବେ)।

ଷଡ଼େଇକଳା ରାଜ୍ୟର ଅଧିପତି ରାଜା ଶ୍ରୀ ଆଦିତ୍ୟ ପ୍ରତାପ ସିଂହଦେବ (ଯାହାଙ୍କର ପିତାମହ ସ୍ୱର୍ଗୀୟ ମହାରାଜ ଉଦିତନାରାୟଣ ସିଂହଦେବ ୧୯୩୦ରେ ଏହି କାର୍ଯ୍ୟପାଇଁ ସାହାଯ୍ୟ କରିବାକୁ ପ୍ରତିଶ୍ରୁତ ହୋଇଥିଲେ ଏବଂ ପ୍ରତିଜ୍ଞା ପାଳନ ନ କରୁଣୁ ଯେ ସ୍ୱର୍ଗରାଜ୍ୟକୁ ପ୍ରୟାଣ କଲେ, ପାଟନା ରାଜ୍ୟର ରାଜଲକ୍ଷ୍ମୀ ବର୍ତ୍ତମାନ ଯାହାଙ୍କ ବଂଶଧରଙ୍କ ଆଶ୍ରିତ ଏବଂ ଯାହାଙ୍କ ଯୁବରାଜ ଜଣେ ଉଦିୟମାନ ବିଶ୍ୱବିଦ୍ୟାଳୟର ଉଚ୍ଚ ଉପାଧିଧାରୀ ଯୁବକ ଅଟନ୍ତି)।

କଳାହାଣ୍ଡିର ମହାରାଜ ଶ୍ରୀ ବ୍ରଜମୋହନ ଦେବ, ଓ.ବି.ଇ.- (ଯାହାଙ୍କଠାରୁ ୧୯୨୮ରେ ପ୍ରାରମ୍ଭିକ ସାହାଯ୍ୟ ଏକ ସହସ୍ର ଟଙ୍କା ପାଇ ମୁଁ ମୂଳ ପାଣ୍ଡୁଲିପିର ସମ୍ମାର୍ଜନ କର୍ମ ଆରମ୍ଭ କରିବାକୁ ସମର୍ଥ ହୋଇଥିଲି ଏବଂ ଯେ ସ୍ୱୟଂ ୨୫ ସେଟ୍ ପୁସ୍ତକର ଅଗ୍ରିମ ଗ୍ରାହକ ହୋଇଅଛନ୍ତି)।

କେନ୍ଦୁଝର ରାଜ୍ୟର ଶାସକ ନରପତି ରାଜା ଶ୍ରୀ ବଳଭଦ୍ର ନାରାୟଣ ଭଞ୍ଜଦେବ (ଯେ ଏକକାଳୀନ ଆଠଶତ ଟଙ୍କା ସାହାଯ୍ୟ କରିଥିଲେ ଓ ୧୦ ସାର ଗ୍ରନ୍ଥର ଗ୍ରାହକ ହୋଇଅଛନ୍ତି)।

ବଣାଇ ରାଜ୍ୟର ଶାସକ – ନରପତି ରାଜା ଶ୍ରୀ ଧରଣୀଧର ଇନ୍ଦ୍ରଦେଓ ଦେବ (ଯେ ଏ କାର୍ଯ୍ୟରେ ସାହାଯ୍ୟ କରିବାକୁ ସଂକଳ୍ପବଦ୍ଧ ହୋଇଅଛନ୍ତି ଓ ଏଥିର ଅଗ୍ରଗତି ବିଷୟ ମଧ୍ୟେ ମଧ୍ୟେ ଅନୁସନ୍ଧାନ କରୁଅଛନ୍ତି ଓ ଭାଷାକୋଷ ସମ୍ବନ୍ଧରେ ଯାହାଙ୍କ ଉଚ୍ଚମତ ଗ୍ରନ୍ଥକାର ଅଳ୍ପଦିନପୂର୍ବେ ବଣାଇଗଡ଼କୁ ଯାଇ ତାଙ୍କ ଶ୍ରୀମୁଖରୁ ଶୁଣି ଆସିଅଛି ଓ ଏ ଗ୍ରନ୍ଥର ସପ୍ତମ ଖଣ୍ଡର ପ୍ରକାଶାର୍ଥ ପ୍ରୟୋଜନୀୟ ଅର୍ଥପାଇଁ ଯେ ପୁଣ୍ୟଶ୍ଳୋକା ବାମଣ୍ଡାରାଜା ଜେଜେମାତା ଶ୍ରୀମତୀ ଡମ୍ବରୁଧରପ୍ରିୟା ଦେବୀଙ୍କ ଦୃଷ୍ଟି ଓ ଦାତୃତ୍ୱ ଆକର୍ଷଣ କରିବାକୁ ସ୍ୱତଃ ପ୍ରତିଶ୍ରୁତି ପ୍ରଦାନ କରିଅଛନ୍ତି)।

ଦଶପଲ୍ଲାର ଶାସକ ନରପତି ରାଜା ଶ୍ରୀ କିଶୋରଚନ୍ଦ୍ର ଭଞ୍ଜଦେବ (ଯେ ଏ ଗ୍ରନ୍ଥପାଇଁ ସାହାଯ୍ୟ କରିବାର ବାସନା ସଂଗ୍ରାହକକୁ ଜଣାଇଅଛନ୍ତି)।

ପୁରୀର ଗଜପତି ମହାରାଜା ଓ କୋଟିଏ ଉତ୍କଳୀୟଙ୍କ ଠାକୁରରଜା ଶ୍ରୀ ରାମଚନ୍ଦ୍ର ଦେବ (ଯେ ତାଙ୍କ ଜନନୀ ବ୍ୟମଣ୍ଡା ଜେଜେମାତାଙ୍କ ଦୃଷ୍ଟି ଭାଷାକୋଷପ୍ରତି ଆକର୍ଷଣ କରିବେ ବୋଲି ଅଙ୍ଗୀକାର କରିଅଛନ୍ତି) ।

ଖଲ୍ଲିକୋଟ, ଆଠଗଡ଼ ଓ ବିରୁଳିର ରାଜା ବାହାଦୁର ଶ୍ରୀ ରାମଚନ୍ଦ୍ର ମର୍ଦ୍ଦରାଜଦେବ ଏମ୍.ଏଲ୍. ଏ. (ଯେ ଏଥିପୂର୍ବେ ଏକହଜାର ଟଙ୍କା ସାହାଯ୍ୟ କରିଅଛନ୍ତି ଏବଂ ଓଡ଼ିଶା ପ୍ରଦେଶର ଗଢ଼ାରେ ଯାହାଙ୍କ ସ୍ଥପତିତ୍ୱ ଚିରକାଳ ଇତିହାସରେ ଲିପିବଦ୍ଧ ହୋଇ ରହିବ) ।

ତାଳଚେର ରାଜ୍ୟର ଶାସକ ନରପତି ରାଜା ଶ୍ରୀ କିଶୋରଚନ୍ଦ୍ର ବୀରବର ହରିଚନ୍ଦନ - (ସରସ୍ୱତୀ ସେବା ଯାହାଙ୍କ ବଂଶଧରମାନଙ୍କର ଅସ୍ଥିମଜ୍ଜାଗତ ହୋଇଅଛି ଏବଂ ଯେ ସାହାଯ୍ୟ ଦେବାପାଇଁ ଅଙ୍ଗୀକାର କରିଅଛନ୍ତି) ।

ବାଲେଶ୍ୱର ଜିଲ୍ଲାର ଜମିଦାର ରାୟବାହାଦୁର ଭୂୟାଁ ଭାସ୍କରଚନ୍ଦ୍ର ମହାପାତ୍ର - (ଯାହାଙ୍କ ସଙ୍ଗେ ସ୍ୱୟଂ ସଂଗ୍ରାହକ ଏବଂ ତାହାର ସହକର୍ମିଣୀ ଧର୍ମବନ୍ଧୁତା-ସୂତ୍ରରେ ଆବଦ୍ଧ ଏବଂ ଯେ ପ୍ରାଚୀନ ଓଡ଼ିଆ ସାହିତ୍ୟର ଉନ୍ନତିପାଇଁ ଏବଂ ଅନ୍ୟ ଅନେକ ସଦ୍‌କର୍ମପାଇଁ ପ୍ରଚୁର ଅର୍ଥ ସାହାଯ୍ୟ କରି ଆସିଅଛନ୍ତି) ।

ପୁରୀ ଏମାର ମଠର ମହନ୍ତ ମହାରାଜ ଶ୍ରୀ ଗଦାଧର ରାମାନୁଜ ଦାସ (ଯେ ଏଥିପୂର୍ବେ ଏକ ସହସ୍ର ଟଙ୍କା ଦାନ କରିଅଛନ୍ତି ଓ ଆଉ ଏକ ସହସ୍ର ଟଙ୍କା ଦାନ କରିବାକୁ ଅଙ୍ଗୀକାର କରିଅଛନ୍ତି ଏବଂ ଯାହାଙ୍କ ବଦାନ୍ୟତାର ନିଦର୍ଶନ ଓଡ଼ିଶାର ବହୁ ଜନହିତକର ଅନୁଷ୍ଠାନ ଓ ଜ୍ଞାନାନୁଶୀଳନ ସମ୍ପର୍କୀୟ କର୍ମରେ ମିଳିଅଛି) ।

ଏହି ଗ୍ରନ୍ଥ ଦିନେ ଓଡ଼ିଆ ଭାଷାର ଓ ସାହିତ୍ୟର ଇତିହାସରେ ବିଶିଷ୍ଟ ସ୍ଥାନ ଅଧିକାର କରି ଓଡ଼ିଆଜାତିକୁ ଓ ଭାଷାକୁ ଆନ୍ତର୍ଜାତିକ ସଂସଦରେ ଉଚ୍ଚସ୍ଥାନର ଅଧିକାରୀ କରାଇବ ବୋଲି ଆଶା କରାଯାଏ; ଏହି ଜାତୀୟ ସାରସ୍ୱତ ବଡ଼ଦେଉଳର ନୀଳଚକ୍ର ବସିବା ବା ମୁଣ୍ଡିମରିବା ରୂପ କର୍ମ (ଭାଷାକୋଷ ୭ମ ଖଣ୍ଡର ପ୍ରକାଶ)ର ବ୍ୟୟଭାର ଲକ୍ଷ୍ମୀଙ୍କରଉପର୍ଯ୍ୟୁକ୍ତ ବରପୁତ୍ରମାନଙ୍କ ମଧ୍ୟରୁ କେହି ଜଣେ ଇଚ୍ଛାକଲେ ଅକ୍ଳେଶରେ ଏକା ତୁଲେଇ ପାରିବେ ବୋଲି ମୁଁ ଆଶା କରୁଅଛି ।

## ଗ୍ରନ୍ଥର ମୂଲ୍ୟ

ସମଗ୍ର ଗ୍ରନ୍ଥ ୨ ଖଣ୍ଡରୁ କ୍ରମେ ୭ ଖଣ୍ଡରେ ପୂର୍ଣ୍ଣତା ପ୍ରାପ୍ତ ହେବା ଦେଖାଯିବାରୁ ପ୍ରଥମେ ବିଜ୍ଞାପିତ ଅଗ୍ରିମ ମୂଲ୍ୟ ୩୦ ଟଙ୍କାରୁ ବଢ଼ି ବଢ଼ି ୫ମ ଖଣ୍ଡର ପ୍ରକାଶ ବେଳକୁ ଏକସାର ଗ୍ରନ୍ଥର ମୂଲ୍ୟ ୧୧୫ ଟଙ୍କା ହୋଇଥିଲା । ଯେଉଁମାନେ ତତ୍‌କାଳୀନ ଅଗ୍ରିମ ମୂଲ୍ୟ ଦେଇ ଗ୍ରାହକ ଶ୍ରେଣୀଭୁକ୍ତ ହୋଇଥିଲେ, ସେମାନଙ୍କଠାରୁ ଆଉ ଅତିରିକ୍ତ ମୂଲ୍ୟ ନିଆ ନ ଯାଇ ୭ଖଣ୍ଡଯାକ ସେମାନଙ୍କୁ ଦିଆଯାଉଅଛି । ସେମାନଙ୍କ ପକ୍ଷରେ ଆଉ ଅଧିକ ମୂଲ୍ୟ ଦେବା ଧର୍ମତଃ ଉଚିତ କି ନା, ତାହା ସେମାନେ ସ୍ୱୟଂ ବିଚାର କରିବେ; ସଂଗ୍ରାହକ ପକ୍ଷରେ ଏହା ଦାବି କରିବାର ଅବସର ନାହିଁ ।

ସମଗ୍ର ଗ୍ରନ୍ଥ ପ୍ରକାଶ ପୂର୍ବରୁ କାଳକ୍ରମେ ଯେଉଁ ଗ୍ରାହକମାନେ ଗ୍ରାହକଶ୍ରେଣୀଭୁକ୍ତ ହୋଇ କ୍ରମଶଃ ବିଜ୍ଞାପିତ ଅଗ୍ରିମ ମୂଲ୍ୟ ପ୍ରଦାନ କରିଥିଲେ, ମୋ କଥା ଉପରେ ହିଁ ସେମାନେ ବିଶ୍ୱାସ ସ୍ଥାପନ କରି ମୂଲ୍ୟ ଦେଇଥିଲେ, ଏଥିପାଇଁ ସେମାନେ ସମଗ୍ର ଗ୍ରନ୍ଥ ଶସ୍ତାରେ ପାଇଲେ । ବର୍ତ୍ତମାନ ୬ଷ୍ଠ ଖଣ୍ଡ ପ୍ରକାଶିତ ହେଲା ଓ ଶେଷ ଖଣ୍ଡର ପ୍ରକାଶ ସମ୍ଭାବନା ଏବେ ଆଖି ସମ୍ମୁଖରେ ଦେଖାଦେଲାଣି । ବର୍ତ୍ତମାନ ସମଗ୍ର ୭ଖଣ୍ଡର ମୂଲ୍ୟ ଟ୧୫୦/ (ଦେଢ଼ଶତ ଟଙ୍କା) ନିର୍ଦ୍ଧାରିତ ହେଲା । ଯେବେ କୌଣସି ଗ୍ରାହକ ୭ମ ଖଣ୍ଡର ପ୍ରକାଶପୂର୍ବେ ଗ୍ରାହକ ହୋଇ ଅଗ୍ରିମ ମୂଲ୍ୟ ପ୍ରଦାନ କରିବେ, ତେବେ ତାଙ୍କୁ ସମଗ୍ର ଗ୍ରନ୍ଥ (୭ଖଣ୍ଡ) ଟ ୧୩୨/ (ଏକଶତ ବତ୍ରିଶ) ଟଙ୍କାରେ ଦିଆଯିବ । ଯେଉଁ ଗ୍ରାହକମାନେ କୌଣସି ଏକଖଣ୍ଡ ମାତ୍ର କ୍ରୟ କରିବାକୁ ଇଚ୍ଛା କରିବେ, ତାଙ୍କୁ ୨୫/ (ପଚିଶ) ଟଙ୍କା ମୂଲ୍ୟ ଦେବାକୁ ପଡ଼ିବ । ଯେଉଁ ଗ୍ରାହକମାନଙ୍କର ଆୟ ଅଳ୍ପ, ସେମାନଙ୍କ ସଙ୍ଗେ କିସ୍ତି ଧାର୍ଯ୍ୟ କରାଯାଇପାରିବ ।

## କାର୍ଯ୍ୟ ପରିସମାପ୍ତିର ସମ୍ଭାବନା

ସମାର୍ଜ୍ଜନ ଓ ପରିଷ୍କରଣ ପରେ ସପ୍ତମ ଖଣ୍ଡର ପାଣ୍ଡୁଲିପିମାନ ପ୍ରେସ୍‌କୁ ଯିବାପାଇଁ ପ୍ରସ୍ତୁତ ହୋଇ ରଖାହେଲାଣି । 'ସ' ଓ 'ହ' ଅକ୍ଷରାଦ୍ୟ ଶବ୍ଦଗୁଡ଼ିକ ଏହି ଖଣ୍ଡରେ ପ୍ରଦତ୍ତ ହେବ । 'କ୍ଷ' ଅକ୍ଷରାଦ୍ୟ ଶବ୍ଦଗୁଡ଼ିକ ବର୍ଣ୍ଣମାଳା କ୍ରମରେ, 'କ' ଅକ୍ଷର ପରେ ପ୍ରଦତ୍ତ ହୋଇଅଛି । ପୂର୍ବବର୍ତ୍ତୀ ଖଣ୍ଡମାନଙ୍କ ପ୍ରକାଶ ପରେ ଯେଉଁସବୁ ନୂତନ ଶବ୍ଦ, ନୂତନ ତତ୍ତ୍ୱ, ପରିତ୍ୟକ୍ତ ଶବ୍ଦ ଓ ଭ୍ରମପ୍ରମାଦମାନ ମୋ ଦୃଷ୍ଟିକୁ ଆସିଅଛି, ସେଗୁଡ଼ିକ ବର୍ଣ୍ଣମାଳା କ୍ରମରେ ସଜ୍ଜିତ ହୋଇ ପରିଶିଷ୍ଟ ଖଣ୍ଡପାଇଁ ପ୍ରସ୍ତୁତ ହେଉଅଛି । ଆଶା କରାଯାଏ, ଶେଷ ବା ୭ମ ଖଣ୍ଡର ଶେଷରେ ଏହି ପରିଶିଷ୍ଟ ଯୋଗ କରାଯାଇପାରିବ ଓ ଏହା ୧୯୩୮ ସାଲର ଏହିମାସ ସୁଦ୍ଧା ପ୍ରକାଶିତ ହେବ ।

## ଧନ୍ୟବାଦାର୍ପଣ

ମୋର ସମସ୍ତ ସହକର୍ମୀ, ସହାୟତାକାରୀ, ହିତାକାଙ୍କ୍ଷୀ, ସହାନୁଭୂତି ପ୍ରଦର୍ଶକ ଓ ପୃଷ୍ଠପୋଷକମାନଙ୍କୁ ମୁଁ ଧନ୍ୟବାଦ ଅର୍ପଣ କରୁଅଛି । ମହାନୁଭବ ସମ୍ରାଟ୍ ଷଷ୍ଠଜର୍ଜ୍ ଓ ମହାରାଣୀ ଏଲିଜାବେଥ୍‌ଙ୍କ ଛାମୁରେ ଓ ତାଙ୍କ ଭାରତ ପ୍ରତିନିଧି ଭାଇସ୍‌ରୟଙ୍କଠାରେ ମୁଁ ସସମ୍ମାନ ରାଜଭକ୍ତି ସମର୍ପଣ କରୁଅଛି । ଆମ୍ଭମାନଙ୍କ ନୂତନ ପ୍ରଦେଶରେ ସମ୍ରାଟ୍‌ଙ୍କ ପ୍ରତିନିଧିରୂପେ ବିରାଜିତ, ମହାମତି ସର୍ ଜନ୍ ଅଷ୍ଟିନ୍ ହବାକ୍ ଏ ଗ୍ରନ୍ଥର ପାଳକପିତାରୂପେ ବିରାଜିତ ହୋଇ ଏ ଗ୍ରନ୍ଥର ପରିସମାପ୍ତିର ଆଶାପଥ ସମୁଜ୍ଜ୍ୱଳ କରୁଅଛନ୍ତି; ତାଙ୍କୁ ମୁଁ କୃତଜ୍ଞତା ଅର୍ପଣ କରୁଅଛି ।

ଯାହାଙ୍କ ଅପାର କରୁଣାରୁ ମୁଁ ଏତେଦୂର ଅଗ୍ରସର ହୋଇପାରିଅଛି ଏବଂ ମୋ ଜୀବନକାଳର ୨୨ ବର୍ଷର ପରିଶ୍ରମର ପରିପୂର୍ଣ୍ଣତା ଯାହାଙ୍କ କୃପାରେ ମୋ ଦୃଷ୍ଟିଗୋଚର ହେଲାଣି, ସେହି ପରମପୁରୁଷଙ୍କ ଶ୍ରୀଚରଣରେ ମୁଁ ଭକ୍ତି ଓ ଶ୍ରଦ୍ଧା ଅର୍ପଣ କରୁଅଛି ।

## ଉପସଂହାର

ସର୍ବଶକ୍ତିମାନ୍ ପରମପୁରୁଷ, ଓଡ଼ିଶା ଭାଷାକୋଷର କ୍ରମିକ ଖଣ୍ଡମାନ ପ୍ରକାଶ କରାଇବା ସଙ୍ଗେ ସଙ୍ଗେ ନୂତନ ଓଡ଼ିଶା ପ୍ରଦେଶର ଗଠନ କରାଇଅଛନ୍ତି, ତାଙ୍କ ଦୟାରୁ ନିର୍ବାଧରେ ଏହି ଗ୍ରନ୍ଥର ପରିସମାପ୍ତି ସଙ୍ଗରେ ନୂତନ ଓଡ଼ିଶା ପ୍ରଦେଶର ସର୍ବାଙ୍ଗୀଣ ଉନ୍ନତି ସଂସାଧିତ ହେବ ଏବଂ ଓଡ଼ିଆ ଭାଷା ତଥା ଓଡ଼ିଆ ଜାତି ସଭ୍ୟଜଗତ ଦୃଷ୍ଟିରେ ଅଦୂର ଭବିଷ୍ୟଦ୍‌ରେ ଉପଯୁକ୍ତ ସମ୍ମାନର ଅଧିକାରୀ ହେବ ।

ଭାଷାକୋଷ ଆଶ୍ରମ
ଭାଷାକୋଷ ଲେନ୍
କଟକ, ଓଡ଼ିଶା
ଜୁନ ୧ ତାରିଖ, ୧୯୩୭ ମସିହା

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ
ସଂଗ୍ରାହକ

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ସଂକଳନରେ ବ୍ୟବହୃତ ଅଭିଜ୍ଞାନ ଗ୍ରନ୍ଥ, ଗ୍ରନ୍ଥକାରମାନଙ୍କର ନାମ ଓ ସାଙ୍କେତିକ ଚିହ୍ନ

(ନୂତନ ସଂଯୋଜନ)

Haines : ହାଏନ୍‌ସ ସାହେବଙ୍କ Botany of Bihar and Orissa (ବିହାର-ଓଡ଼ିଶାର ଉଦ୍ଭିଦ ତତ୍ତ୍ୱ) ।

ସ୍କୁଲପାଠ୍ୟଇତିହାସ : ପ୍ରୋଥେରୋ ସାହେବଙ୍କ ସଂକଳିତ ଇଂରାଜୀ ଭାରତ-ଇତିହାସ ।

ଶଙ୍କର ଦିଗ୍‌ବିଜୟ : ଶ୍ରୀଶଙ୍କର ସଚ୍ଚିଦାନନ୍ଦ ସରସ୍ୱତୀ ସ୍ୱାମୀଙ୍କ ସଂସ୍କୃତ ମୂଳଗ୍ରନ୍ଥର ଓଡ଼ିଆ ପଦ୍ୟାନୁବାଦ ।

ବର୍ତ୍ତମାନ ସମାଜର ଇତିବୃତ୍ତ : ବାବୁ ଭାଗବତ ଚନ୍ଦ୍ର ଦାସ, ମେଦିନୀପୁରଙ୍କ ସଂକଳିତ ବଙ୍ଗଳା ଗ୍ରନ୍ଥ ।

ବିରାଟନଗର ଓ ସୁବର୍ଣ୍ଣରେଖା : ସ୍ୱର୍ଗୀୟ ପଣ୍ଡିତ ରୁଦ୍ରନାରାୟଣ ଷଡ଼ଙ୍ଗୀ, ବାଲେଶ୍ୱରଙ୍କ ରଚିତ ଗ୍ରନ୍ଥ ।

ସମାଜ ସଂସ୍କାର : ଶ୍ରୀ ପ୍ରାଣକୃଷ୍ଣ ଦାସ, ଓକିଲ ବାଲେଶ୍ୱରଙ୍କ ସଂକଳିତ ଗ୍ରନ୍ଥ ।

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ଉଦ୍ଧୃତ ଶିଷ୍ଟ ପ୍ରୟୋଗର ଗ୍ରନ୍ଥକାରମାନଙ୍କର ନାମ ଓ ସାଙ୍କେତିକ ଚିହ୍ନ

(ନୂତନ ସଂଯୋଜନ)

ଅରୁଣୋଦୟ - ପ୍ରେସଙ୍କ ସଂକଳିତ ଓଡ଼ିଆ ପଞ୍ଜିକା ।

ଓଡ଼ିଆ : ଶ୍ରୀ ଆନନ୍ଦ ଆଚାର୍ଯ୍ୟଙ୍କ ସମ୍ପାଦିତ ସାପ୍ତାହିକ ପତ୍ରିକା ।

ଗୋପବନ୍ଧୁ : ସ୍ୱର୍ଗୀୟ ଗୋପବନ୍ଧୁ ଦାସଙ୍କ ରଚିତ ଧର୍ମପଦ କବିତା ।

ନବୀନ : ଶ୍ରୀ କୃପାସିନ୍ଧୁ ପଟ୍ଟଦେବଙ୍କ ସମ୍ପାଦିତ ସାପ୍ତାହିକ ପତ୍ରିକା ।

ବିକ୍ରମଦେବ : ସାହିତ୍ୟ ସମ୍ରାଟ୍ ମହାରାଜ ବିକ୍ରମଦେବ, ଜୟପୁର ।

# ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ

ସମ୍ପୂର୍ଣ୍ଣ

ସପ୍ତମଭାଗ (ଭାନୁଗଙ୍ଗ) ଖଣ୍ଡ

(ବ୍ୟଞ୍ଜନ ବର୍ଣ୍ଣ, ସ-ହ)

ସଂଗ୍ରାହକ

**ରାୟବାହାଦୁର ଗୋପାଳ ଚନ୍ଦ୍ର ପ୍ରହରାଜ, ବି. ଏଲ୍.**

ସାହିତ୍ୟଭୂଷଣ କୈସର-ଇ-ହିନ୍ଦ୍, ଆଡ଼ଭୋକେଟ୍, କଟକ

ଆମୂଳ ସହକର୍ମିଣୀ ଓ ପ୍ରକାଶିକା

ଶ୍ରୀମତୀ ପୀତାମ୍ବରୀ ଦେବୀ

ଭାଷାକୋଷ ଲେନ୍, କଟକ

PŪRṆṆACHANDRA OṞḌIĀ BHĀSHĀKOSHA

(A Lexicon of the Oriya Language)

Volume VII

(The last two letters sa to ha)

Compiler

**Raibahadur G. C. Praharaj B.L.**

Sahitya Bhushana (A. R. U.) Kaiser - i - Hind

Advocate Patna High Court, Cuttack

B.N.Roy, Orissa (India)

Principal Colleague and Publisher

Srimati Pitambari Devi

Printed and Published by P. Kar

THE UTKAL SAHITYA PRESS

CUTTACK, 1940

**To His Excellency, The Right Honourable**
**THE MARQUIS OF LINLITHGOW, P.C., K.T., G.M.S.I., G.M.I.E**
**VICEROY & GOVERNOR GENERAL OF INDIA,**

Whose keen personal solicitude for the welfare and progress of His Majesty's Indian subjects, expressed in multifarious ways, even before His Excellency assumed the reins of Viceroyalty, supplemented by the most unselfish labour of love of HER EXCELLENCY, THE MARCHIONESS OF LINLITHGOW in redressing and retarding the progress of tuberculosis in India, has made. Their Excellencies dear to the Princes and the people of India and has marked His Excellency's rule as one of the very few golden periods in the history of Modern India, and Whose sincere and spontaneous appreciation of the mother-tongue of 15 millions of His Majesty's most loyal and law abiding Oriya subjects has prompted His Excellency to make liberal personal contribution towards the completion of this national monument, and but for whose generosity and personal interest it would not have been possible for the stranded poor compiler to bring the labours of 27 years of his humble life to successful termination and put the coping stone on this National Temple of Learning.

The Seventh (and the Last) Volume of
PŪRṆṆACHANDRA OṚḌIĀ BHĀSHĀKOSHA
(Quadrilingual dictionary of the Oriya language) is,
with His Excellency's most gracious permission,
DEDICATED
as an humble mark of affectionate regard, by one who is proud to count
His Excellency and Her Excellency as the pre-eminent
Patrons of the Oriya Lexicon, and who subscribes
himself to be His Majesty's most humble and loyal
subject and Their Excellencies' humble admirer.

Bhashakoshasrama,
Bhashakosha Lane,
CUTTACK, (ORISSA)
September, 1940.

G.C. Praharaj
Compiler

ଶ୍ରୀ ଶ୍ରୀ ଶ୍ରୀ ସମ୍ରାଟ୍-ପ୍ରତିନିଧିଙ୍କ ଶ୍ରୀଛାମୁରେ

## ସମର୍ପଣପତ୍ର

ଭାରତସାମ୍ରାଜ୍ୟର ଶାସନଦଣ୍ଡ ଗ୍ରହଣ କରିବା ପୂର୍ବରୁ ଓ ପରେ ସମ୍ରାଟ୍‌ଙ୍କ ଭାରତୀୟ ପ୍ରଜାପୁଞ୍ଜଙ୍କ ଅହରହ ମଙ୍ଗଳ ଓ ଉନ୍ନତି ବିଧାନାର୍ଥ ଯାହାଙ୍କ ବ୍ୟକ୍ତିଗତ ଉଦ୍ୟମ ବହୁକ୍ଷେତ୍ରରେ ପ୍ରକଟିତ ଓ ପ୍ରମାଣିତ ହୋଇଅଛି, ରାଜଯକ୍ଷ୍ମାରୂପୀ ରାକ୍ଷସର କରାଳକବଳରୁ ଭାରତବାସୀଙ୍କୁ ଘଣ୍ଟ ଘୋଡ଼ାଇ ରଖିବାପାଇଁ ଯାହାଙ୍କ ମହିଷୀ ମହାମାନନୀୟା ମାର୍ସିଅନେସ୍ ଅଫ୍(ଲେଡୀ) ଲିନ୍‌ଲିଥ୍‌ଗୋଙ୍କ ନିଃସ୍ୱାର୍ଥ ସେବାବ୍ରତ ଭାରତର ଆବାଳବୃଦ୍ଧବନିତାଙ୍କୁ ଚିରକାଳ କୃତଜ୍ଞତା ପାଶରେ ଆବଦ୍ଧକରି ରଖିବ, ଭାରତର ରାଜନ୍ୟମଣ୍ଡଳିଙ୍କ ଓ କୋଟି କୋଟି ପ୍ରଜାଙ୍କ ପରମକଲ୍ୟାଣକାମୀ ରୂପେ ଯାହାଙ୍କ ଶାସନକାଳ ଆଧୁନିକ ଭାରତର ଇତିହାସରେ ବିଶିଷ୍ଟ ସ୍ୱର୍ଣ୍ଣଯୁଗ ମଧ୍ୟରେ ପରିଗଣିତ ହେବ, ଆବହମାନକାଳରୁ ରାଜଭକ୍ତ ଓ ଶାନ୍ତିପ୍ରିୟ ଦେଢ଼କୋଟି ଓଡ଼ିଆଙ୍କ ମାତୃଭାଷା ଉପରେ ଯାହାଙ୍କର ସ୍ୱତଃ ପ୍ରଣୋଦିତ ଅନୁରାଗ-ବାରି ବର୍ଷି ନ ଥିଲେ ଓ ଯାହାଙ୍କ ବ୍ୟକ୍ତିଗତ ହିତୈଷିଣୀ ଓ ଉତ୍ସାହପ୍ରାପ୍ତ ହୋଇ ନ ଥିଲେ, ପ୍ରାଚୀନ ଓଡ଼ିଆ ଭାଷାର ଏହି ସାରସ୍ୱତ ମନ୍ଦିର ଶିଖରରେ ନୀଳଚକ୍ର ବସି ନେତ ଉଡ଼ିପାରି ନ ଥାନ୍ତା ଓ ଏ ନଗଣ୍ୟ ଜୀବନର ସତେଇଶ ବର୍ଷବ୍ୟାପୀ ବ୍ରତର ସଫଳ ଉଦ୍‌ଯାପନ ହୋଇପାରି ନ ଥାନ୍ତା ଓ ଯାହାଙ୍କୁ ଓ ଯାହାଙ୍କ ସହଧର୍ମିଣୀଙ୍କୁ ମାତୃଭାଷାର ଶୀର୍ଷସ୍ଥାନୀୟ ପୃଷ୍ଠପୋଷକଯୁଗଳରୂପେ ଲାଭକରି ଆଜି ମୁଁ କୃତାର୍ଥ ହୋଇଅଛି, ସେହି

ଶ୍ରୀ ଶ୍ରୀ ଶ୍ରୀ ଭାରତ ସମ୍ରାଟ୍‌ଙ୍କ ପ୍ରତିନିଧି, ଭାଇସ୍‌ରାୟ ଓ ଭାରତର ଗଭର୍ଣ୍ଣର୍ ଜେନେରଲ୍, ଉଦାରହୃଦୟ ମହାମାନ୍ୟବର ମାର୍କୁଇସ୍ ଅଫ୍ ଲିନ୍‌ଲିଥ୍‌ଗୋ, ପି.ସି., କେ.ଟି., ଜି.ଏମ୍.ଏସ୍.ଆଇ., ଜି. ଏମ୍. ଆଇ.ଇ.ଙ୍କ ସାନୁଗ୍ରହ ଅନୁମତିକ୍ରମେ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ଅନ୍ତିମ (ସପ୍ତମ) ଖଣ୍ଡ ତାଙ୍କ ଶ୍ରୀକରକମଳରେ ଗଭୀର ରାଜଭକ୍ତି ଓ ପ୍ରେମସହକାରେ ଉତ୍ସୃଷ୍ଟ ଓ ସମର୍ପିତ ହେଲା ।

ଭାଷାକୋଷାଶ୍ରମ, ଭାଷାକୋଷ ଲେନ୍,

କଟକ, ଓଡ଼ିଶା

ସନ ୧୯୪୦ ସାଲ, ସେପ୍ଟେମ୍ବର ମାସ

ନିବେଦକ

ଜଣେ ନଗଣ୍ୟ ବିନୀତ ରାଜଭକ୍ତ ଓ

ଭାଇସ୍‌ରୟ୍ ଦମ୍ପତିଙ୍କ କରୁଣାମୁଗ୍ଧ

ଗୋପାଳଚନ୍ଦ୍ର ପ୍ରହରାଜ

"ଓଁ ଅସତୋ ମା ସଦ୍‌ଗମୟ
ଓଁ ତମସୋ ମା ଜ୍ୟୋତିର୍ଗମୟ
ଓଁ ମୃତ୍ୟୋ ମାମମୃତଂ ଗମୟ ।"

ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ସପ୍ତମ (ଭାନୁଗଙ୍ଗ) ଖଣ୍ଡର

# ଅବତରଣିକା

## 'କ୍ଳେଶଃ ଫଳେନ ହି ପୁନର୍ନବତାଂ ବିଧତ୍ତେ' କାଳିଦାସ

### ଶ୍ରମ ସମାପ୍ତି

ପରମ କାରୁଣିକ ପରମେଶ୍ୱରଙ୍କର ଅପାର କରୁଣାରୁ ଓ ଗୁରୁଦେବଙ୍କ ଆଶୀର୍ବାଦରୁ ୨୭ ବର୍ଷ ପୂର୍ବେ (୧୯୧୩ ସାଲରେ) ମୁଁ ଯହିଁର କଳ୍ପନା କରି ଆଜିକି ୨୧ ବର୍ଷ ପୂର୍ବେ (୧୯୧୯ ସାଲରେ) ଯହିଁର ପାଣ୍ଡୁଲିପିର ସଙ୍କଳନ ଆରମ୍ଭ କରିଥିଲି, ଓଡ଼ିଆ ଭାଷାର ସେହି ଚାତୁର୍ଭାଷିକ ଅଭିଧାନ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ଆଜି ପୂର୍ଣ୍ଣ ହେଲା ।

୧୯୨୭ ସାଲରେ ପାଣ୍ଡୁଲିପିମାନଙ୍କ ଚିଠା ଲେଖା ସରିବା ପରେ ବିଶେଷଜ୍ଞମାନଙ୍କଦ୍ୱାରା ଅଟକଳ କରାଯାଇଥିଲା ଯେ, ମୁଦ୍ରିତ ଗ୍ରନ୍ଥ ୩୬୦୦ ପୃଷ୍ଠା ଅଧିକାର କରିବ ଓ ଦୁଇଖଣ୍ଡରେ ସମାପ୍ତ ହେବ ଏବଂ ଏଥିର ସମ୍ମାର୍ଜନ ଓ ମୁଦ୍ରଣାଦିର ବ୍ୟୟ ପ୍ରାୟ ଚାଳିଶ ହଜାର ଟଙ୍କା ଲାଗିବ । ଓଡ଼ିଶା ବିଭାଗର ତଦାନୀନ୍ତନ କମିଶନର୍, ବର୍ତ୍ତମାନ ନବପ୍ରତିଷ୍ଠିତ ଓଡ଼ିଶା ପ୍ରଦେଶର ଗଭର୍ଣ୍ଣର୍ ମାନ୍ୟବର ସର୍ ଜନ୍ ହବ୍‌ବାକ୍‌ଙ୍କ ସୁପାରିସ ଅନୁସାରେ ବିହାର-ଓଡ଼ିଶା ଗଭର୍ଣ୍ଣମେଣ୍ଟ ଉକ୍ତ ବ୍ୟୟର ଅର୍ଦ୍ଧେକ ବହନ କରିବାକୁ ପ୍ରତିଶ୍ରୁତ ହେଲେ । ବିହାର-ଓଡ଼ିଶା ଶିକ୍ଷାବିଭାଗର ତଦାନୀନ୍ତନ ଡେପୁଟି ଡାଇରେକ୍ଟର୍ ଓ ବର୍ତ୍ତମାନ ଓଡ଼ିଶା ପ୍ରଦେଶର ଶିକ୍ଷା ବିଭାଗର ଡାଇରେକ୍‌ଟର୍, ମୋ ସୋଦରକଳ୍ପ ଶ୍ରୀଯୁକ୍ତ ଶ୍ୟାମଚରଣ ତ୍ରିପାଠୀ ଆଇ.ଇ.ଏସ୍.ଙ୍କ ପ୍ରସ୍ତାବକ୍ରମେ ମୟୂରଭଞ୍ଜାଧୀଶ୍ୱର ମହାରାଜ ସର୍ ପ୍ରତାପଚନ୍ଦ୍ର ଭଞ୍ଜଦେଓ କେ.ସି.ଆଇ.ଇ. ମୁଦ୍ରଣାଦିପାଇଁ ଆଠହଜାର ଟଙ୍କା ସାହାଯ୍ୟ କରିବାକୁ ପ୍ରତିଶ୍ରୁତ ହୋଇ ଏ ଗ୍ରନ୍ଥର ମୁଦ୍ରଣାରମ୍ଭର ପଥ ସୁଗମ କଲେ । ମହାରାଜଙ୍କ ସୂଚନାକ୍ରମେ ତାଙ୍କ ସ୍ୱର୍ଗତ ଜ୍ୟେଷ୍ଠ ଭ୍ରାତା ପୁଣ୍ୟଶ୍ଳୋକ ମହାରାଜ ପୂର୍ଣ୍ଣଚନ୍ଦ୍ରଙ୍କ ନାମ ଏ ଗ୍ରନ୍ଥର ନାମରେ ସଂଯୋଜିତ ହେଲା ।

ଏ ଗ୍ରନ୍ଥର ମୁଦ୍ରଣ କର୍ମରେ ଅଗ୍ରସର ହେଉଥିବା ଅବସ୍ଥାରେ ଦେଖାଗଲା ଯେ, ଏ ଗ୍ରନ୍ଥର କଳେବର ପ୍ରଥମ କଳ୍ପିତ କଳେବର ଅପେକ୍ଷା ବେଶି ହେବ । ପରିଶେଷରେ ସମଗ୍ର ଗ୍ରନ୍ଥ ୯୫୦୦ ପୃଷ୍ଠା ଅଧିକାର କରି ୭ ଖଣ୍ଡରେ ସମାପ୍ତ ହେଲା ଓ ଏଥିର ସମ୍ମାର୍ଜନ ଓ ମୁଦ୍ରଣାଦି ବ୍ୟୟପାଇଁ ସପାଦ ଲକ୍ଷେ ଟଙ୍କା ଲାଗିଲା । ବ୍ୟୟ ବୃଦ୍ଧି ହେବା ବିଷୟ ମହାରାଜ ପ୍ରତାପଚନ୍ଦ୍ରଙ୍କ କର୍ଣ୍ଣଗୋଚର ହେବାରୁ ସେ ୧୯୩୬ ସାଲରେ ଆଉ

ପାଞ୍ଚହଜାର ଟଙ୍କା ସାହାଯ୍ୟ କଲେ । ବର୍ତ୍ତମାନ ମଧ ମହାରାଜଙ୍କଠାରୁ ଆଉ କିଛି ସାହାଯ୍ୟ ମିଳିବାର ଆଶା ଅଛି । ବିହାର-ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କର ଓ ମହାରାଜ ପ୍ରତାପଚନ୍ଦ୍ରଙ୍କ ସାହାଯ୍ୟ ଛଡ଼ା ପାଟଣା ବିଶ୍ୱବିଦ୍ୟାଳୟ, ଉତ୍କଳର ମହାରାଜା, ରାଜା ଆଦି ଭାଷାନୁରାଗୀ ଅନ୍ୟ ଯେଉଁ ଦାତାମାନଙ୍କ ଅର୍ଥ ସାହାଯ୍ୟରେ ପୂର୍ବବର୍ତ୍ତୀଖଣ୍ଡମାନ ପ୍ରକାଶିତ ହୋଇଅଛି, ସେମାନଙ୍କ ବିଷୟ ତତ୍ତଦ୍‌ଖଣ୍ଡର ଅବତରଣିକାରେ କୃତଜ୍ଞତା ସହକାରେ ଜ୍ଞାପିତ ହୋଇଅଛି ।

ଯେଉଁମାନେ ଏ ସପ୍ତମଖଣ୍ଡର ପ୍ରକାଶବ୍ୟୟ ନିର୍ବାହାର୍ଥ ଅର୍ଥ ସାହାଯ୍ୟ କରିଅଛନ୍ତି ସେମାନଙ୍କର ନାମ ଯଥାସ୍ଥାନରେ ବିବୃତ ହେବ ।

## ଗ୍ରନ୍ଥର ଭିନ୍ନ ଭିନ୍ନ ଖଣ୍ଡମାନଙ୍କର ଉତ୍‌ସର୍ଗ ପତ୍ର ଗ୍ରହୀତା ଓ ଅଭିଭାବକଗଣ

୧୩ ବର୍ଷ ତଳେ ଓଡ଼ିଶା ବିଭାଗର କମିଶନର୍ ଥିବାବେଳେ ମାନ୍ୟବର ସାର୍ ଜନ୍ ହବ୍‌ବାକ୍, ଏମ.ଏ., କେ.ସି.ଏସ୍. ଆଇ., ଆଇ.ସି.ଏସ୍, ଏହି ଜାତୀୟ ସ୍ମୃତିମନ୍ଦିରର ଶୁଭ ଦେଇଥିଲେ । ତତ୍ପରେ ତାଙ୍କ ପଦବୃଦ୍ଧି ସଙ୍ଗେ ସଙ୍ଗେ ଏଥିର ମୂଳଦୁଆ ପଡ଼ିବା, ଦୁଆକୁ ଦୁଆ କାନ୍ଥ ଉଠିବା, ଲହଡ଼ି ମୁଦ ହେବା, ଛାତ ପଡ଼ିବା ଓ ଦଧିନଉତି ବସିବା ବିଷୟରେ ତାଙ୍କ ସ୍ଥାପତ୍ୟ ନିଯୋଜିତ ହେଲା ଓ ଶେଷରେ ନବପ୍ରତିଷ୍ଠିତ ଓଡ଼ିଶା ପ୍ରଦେଶର ପ୍ରଥମ ଗଭର୍ଣ୍ଣର୍ ରୂପେ ତାଙ୍କର ଉଦ୍ୟମ ଫଳରେ ଏ ମନ୍ଦିରରେ ନୀଳଚକ୍ର ବସିଲା । ବର୍ତ୍ତମାନ ସପ୍ତମଖଣ୍ଡର ପ୍ରକାଶ ରୂପ ମନ୍ଦିର ପ୍ରତିଷ୍ଠାରେ ସେ ଓ ତାଙ୍କ ସହଧର୍ମିଣୀ ପରମ ପରିତୋଷ ଲଭୁଅଛନ୍ତି । ତାଙ୍କ ପରି ଅମୃତହସ୍ତା ସ୍ଥପତି ମିଳି ନ ଥିଲେ ଏ ସାରସ୍ୱତ ମନ୍ଦିର 'ଲଣ୍ଡା ଦେଉଳ' ହୋଇ ଓଡ଼ିଶାରେ ପ୍ରବଚନର ବିଷୟ ହୋଇ ରହିଥାଆନ୍ତା । ତାଙ୍କ ନାମରେ ପ୍ରଥମ ଖଣ୍ଡ ଉତ୍ସୃଷ୍ଟ ହୋଇଅଛି ।

**ପ୍ରଥମଖଣ୍ଡ** - (ସନ ୧୯୩୧ ସାଲରେ ପ୍ରକାଶିତ)

ଉତ୍ସର୍ଗପତ୍ର ଗ୍ରହୀତା ମାନ୍ୟବର ସାର୍ ଜନ୍ ହବ୍‌ବାକ୍ ।

ଅଭିଭାବକ, ବିହାର-ଓଡ଼ିଶାର ତଦାନୀନ୍ତନ ଗଭର୍ଣ୍ଣର, ମାନ୍ୟବର ଏଚ୍.ଏଲ୍. ଷ୍ଟେଫେନ୍‌ସନ୍, କେ.ସି.ଏସ୍.ଆଇ., ଆଇ.ସି.ଏସ୍. ।

**ଦ୍ୱିତୀୟଖଣ୍ଡ** - (ସନ ୧୯୩୨ ସାଲରେ ପ୍ରକାଶିତ)

ଉତ୍ସର୍ଗପତ୍ରଗ୍ରହୀତା କଟକର ଭୂତପୂର୍ବ ମାଜିଷ୍ଟ୍ରେଟ୍ ଓ କଲେକ୍ଟର୍ ଓ ପରେ ବିହାର ପ୍ରଦେଶର ଉଚ୍ଚ ରାଜକର୍ମଚାରୀ ଶ୍ରୀଯୁକ୍ତ ଏନ୍.ଏଫ୍.ପେକ୍, ସି. ଆଇ.ଇ., ଆଇ.ସି.ଏସ୍. ।

ଅଭିଭାବକ, ବିହାର-ଓଡ଼ିଶାର ତଦାନୀନ୍ତନ ଗଭର୍ଣ୍ଣର୍ ମାନ୍ୟବର ସାର୍ ଜେମ୍‌ସ ଡାଭି ସିଫଟନ୍, କେ.ସି.ଏସ୍.ଆଇ., କେ.ସି. ଆଇ.ଇ., ଆଇ.ସି.ଏସ୍. ।

**ତୃତୀୟ ଖଣ୍ଡ** – (ସନ ୧୯୩୩ ସାଲରେ ପ୍ରକାଶିତ)

ଉତ୍ସର୍ଗ ପତ୍ରଗ୍ରହୀତା ବୌଦ ରାଜ୍ୟାଧୀଶ୍ୱର ରାଜା ଶ୍ରୀ ନାରାୟଣ ପ୍ରସାଦ ଦେବ

ଅଭିଭାବକ, ରାଜାସାହେବ ସ୍ୱୟଂ

**ଚତୁର୍ଥଖଣ୍ଡ** – (ସନ ୧୯୩୪ ସାଲରେ ପ୍ରକାଶିତ)

ଉତ୍ସର୍ଗପତ୍ରଗ୍ରହୀତା ଜୟପୁର ରାଜ୍ୟର ଅଧୀଶ୍ୱର ସାହିତ୍ୟସମ୍ରାଟ୍ ମହାରାଜ ଶ୍ରୀ ବିକ୍ରମଦେବ ବର୍ମା, ଡି.ଲିଟ୍. ।

ଅଭିଭାବକ, ଭାରତର ପୂର୍ବ ଗଡ଼ଜାତପୁଞ୍ଜ (Eastern States Agency)ର ଗଭର୍ଣ୍ଣର୍ ଜେନେରଲ୍‌ଙ୍କର ତଦାନୀନ୍ତନ ଏଜେଣ୍ଟ୍ (Agent to the Governor General) ଶ୍ରୀଯୁକ୍ତ ଇ.ସି. ଗିବ୍‌ସନ୍, ସି.ଆଇ. ଇ, ଆଇ.ସି.ଏସ୍. ।

**ପଞ୍ଚମଖଣ୍ଡ** – (ସନ ୧୯୩୬ ସାଲରେ ପ୍ରକାଶିତ)

ଉତ୍ସର୍ଗପତ୍ରଗ୍ରହୀତା ପାରଳାଖେମିଡ଼ି ରାଜ୍ୟର ଅଧୀଶ୍ୱର ମହାରାଜ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ।

ଅଭିଭାବକ, ଜୟପୁରାଧୀଶ୍ୱର ସାହିତ୍ୟସମ୍ରାଟ୍ ମହାରାଜ ଶ୍ରୀ ବିକ୍ରମଦେବ ବର୍ମା, ଡି.ଲିଟ୍. ।

**ଷଷ୍ଠ ଖଣ୍ଡ** – (ସନ ୧୯୩୭ ସାଲରେ ପ୍ରକାଶିତ)

ଉତ୍ସର୍ଗପତ୍ରଗ୍ରହୀତା ପାଟଣା ରାଜ୍ୟାଧୀଶ୍ୱର ମହାରାଜ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ।

ଅଭିଭାବକ – ସ୍ୱୟଂ ମହାରାଜ ।

**ସପ୍ତମଖଣ୍ଡ** – (ସନ ୧୯୪୦ ସାଲରେ ପ୍ରକାଶିତ)

ଉତ୍ସର୍ଗପତ୍ରଗ୍ରହୀତା ପ୍ରବଳପ୍ରତାପୀ ଶ୍ରୀ ଶ୍ରୀ ଶ୍ରୀ ଭାରତ ସମ୍ରାଟ୍‌ଙ୍କ ଭାଇସ୍‌ରୟ ଓ ଭାରତର ଗଭର୍ଣ୍ଣର୍ ଜେନେରାଲ୍ ମହାମାନ୍ୟବର ମାର୍କ୍ୱିସ୍ ଅଫ୍ ଲିନ୍‌ଲିଥ୍ ଗୋ ।

ଅଭିଭାବିକା, ଭାଇସ୍‌ରୟ-ମହିଷୀ ଉଦାରଚରିତା, ଭାରତ ସେବାବ୍ରତା ମହାମାନନୀୟା ମାର୍ସିଅନେସ୍ (ଲେଡ଼ୀ) ଲିନ୍‌ଲିଥ୍ ଗୋ ।

କ୍ରମିକ ଖଣ୍ଡମାନଙ୍କ ବିଷୟ ।

ପ୍ରଥମ ଖଣ୍ଡରେ ସମଗ୍ର ସ୍ୱରବର୍ଣ୍ଣାଦ୍ୟ ଶବ୍ଦମାନ ।

ଦ୍ୱିତୀୟ ଖଣ୍ଡରେ କ ଠାରୁ ଙ ବ୍ୟଞ୍ଜନବର୍ଣ୍ଣାଦ୍ୟ ଶବ୍ଦମାନ ।

ତୃତୀୟ ଖଣ୍ଡରେ ଚ ଠାରୁ ଥ ବର୍ଣ୍ଣାଦ୍ୟ ଶବ୍ଦମାନ ।

ଚତୁର୍ଥ ଖଣ୍ଡରେ ଦ ଠାରୁ ପ ବର୍ଣ୍ଣାଦ୍ୟ ଶବ୍ଦମାନ ।

ପଞ୍ଚମ ଖଣ୍ଡରେ ଫ ଠାରୁ ମ ବର୍ଣ୍ଣାଦ୍ୟ ଶବ୍ଦମାନ ।

ଷଷ୍ଠ ଖଣ୍ଡରେ ଯ ଠାରୁ ଷ ବର୍ଣ୍ଣାଦ୍ୟ ଶବ୍ଦମାନ ଓ

ସପ୍ତମ ଖଣ୍ଡରେ ବର୍ଣ୍ଣମାଳାର ଶେଷରେ ଥିବା ସ ଓ ହ ବର୍ଣ୍ଣାଦ୍ୟ ଶବ୍ଦମାନ ।

ସାଧାରଣତଃ ବାଳଶିକ୍ଷାର୍ଥୀମାନେ 'ହ' ଅକ୍ଷର ପରେ, ଅକ୍ଷର 'କ୍ଷ' ସଙ୍ଗେ ପରିଚିତ ହୁଅନ୍ତି । କିନ୍ତୁ 'କ୍ଷ' ଅକ୍ଷର 'କ' ବର୍ଣ୍ଣସଂପୃକ୍ତ ଗୋଟିଏ ଯୁକ୍ତାକ୍ଷର (କ + ଷ) ଥିବାରୁ ଧ୍ୱନିବିଜ୍ଞାନ ଦୃଷ୍ଟିରେ ଏ ଅକ୍ଷରର ସ୍ଥାନ 'କ' ବର୍ଣ୍ଣ ପରେ ହେବା ଉଚିତ । ଏହି ଦୃଷ୍ଟିରେ କେତେକ ବଙ୍ଗଳା ଓ ସଂସ୍କୃତ ଅଭିଧାନ କ୍ଷ ଅକ୍ଷରାଦ୍ୟ ଶବ୍ଦମାନଙ୍କୁ 'ହ' ପରେ ନ ଦେଇ 'କ' ଅକ୍ଷର ପରେ ସ୍ଥାନ ଦେଇଅଛନ୍ତି । ଏହି ଭାଷାକୋଷରେ ମଧ୍ୟ 'କ୍ଷ' ବର୍ଣ୍ଣାଦ୍ୟ ଶବ୍ଦମାନ 'କ' ଅକ୍ଷରାଦ୍ୟ ଶବ୍ଦମାନଙ୍କ ପରେ ସ୍ୱତନ୍ତ୍ର ଭାବରେ ଦ୍ୱିତୀୟ ଖଣ୍ଡରେ ୧୮୪୩ ପୃଷ୍ଠାଠାରୁ ୧୮୮୦ ପୃଷ୍ଠା ପର୍ଯ୍ୟନ୍ତ ସନ୍ନିବେଶିତ ହୋଇଅଛି ।

## ସମଗ୍ର ଭାଷାକୋଷରେ ସନ୍ନିବେଶିତ ଶବ୍ଦ ଓ ବାକ୍ୟମାନଙ୍କ ସଂଖ୍ୟା

ପୂର୍ବତନ ୬ ଖଣ୍ଡ ଗ୍ରନ୍ଥରେ ସନ୍ନିବେଶିତ ଶବ୍ଦ ଓ ବାକ୍ୟାଂଶମାନଙ୍କ ସଂଖ୍ୟା ପ୍ରାୟ ଏକଲକ୍ଷ ଷାଠିଏ ହଜାର । ସପ୍ତମ ଖଣ୍ଡରେ ସନ୍ନିବେଶିତ ଶତାବ୍ଦୀର ସଂଖ୍ୟା ପ୍ରାୟ ପଚିଶ ହଜାର । ଅତଏବ ସମଗ୍ର ଭାଷାକୋଷରେ ଏକ ଲକ୍ଷ ପଞ୍ଚାଅଶୀ ହଜାର (୧,୮୫,୦୦୦) ଶବ୍ଦ ସ୍ଥାନ ପାଇଅଛି ।

ମୋ ସଂଗୃହୀତ ଶବ୍ଦମାନଙ୍କର ଅକ୍ଷରକ୍ରମରେ ମୁଦ୍ରଣ ପରେ କାଳକ୍ରମେ ତଉଦ୍ ଅକ୍ଷରାଦ୍ୟ ପ୍ରାୟ ୫ ହଜାର ଦେଶାଂଶ ପ୍ରଚଳିତ, ବ୍ୟାବସାୟିକ, ଗ୍ରାମ୍ୟ ଓ ବୈଜ୍ଞାନିକ ଶବ୍ଦ ମୋ ହସ୍ତଗତ ହୋଇଅଛି ଓ ସେହି ସେହି ଅକ୍ଷରାଦ୍ୟ ଶବ୍ଦମାନଙ୍କ ମୁଦ୍ରଣ ସମାପ୍ତ ହୋଇଥିବାରୁ ସେମାନ ଭାଷାକୋଷରେ ସ୍ଥାନ ପାଇପାରି ନାହିଁ । ସେ ଶବ୍ଦମାନଙ୍କୁ ମୁଁ ଅକ୍ଷରକ୍ରମରେ ସଜ୍ଜିତ କରି ଲେଖାଇ ରଖିଅଛି । ମୋ ସହକର୍ମିଗଣ ଇତିମଧ୍ୟରେ ଉତ୍କଳର ଜୀବିତ ଓ ମୃତ ୪୦/୫୦ ଜଣ ବିଶିଷ୍ଟ ବ୍ୟକ୍ତିଙ୍କ ସଂକ୍ଷିପ୍ତ ଜୀବନଚରିତ ମଧ୍ୟ ସଂଗ୍ରହ କରିଅଛନ୍ତି । ବିଜ୍ଞାନଚର୍ଚ୍ଚାର କ୍ରମାଧିକ୍ୟ ଫଳରେ ସବୁ ଭାଷାରେ ନିରନ୍ତର ଗୁଡ଼ିଏ ନୂଆ ଶବ୍ଦ ପ୍ରବେଶ କରୁଅଛି । ମୁଁ ଦୃଢ଼ତା ସହକାରେ କହିପାରେ ଯେ, ଯେବେ ବଙ୍ଗ, ବିହାର, ମାନ୍ଦ୍ରାଜ, ମଧ୍ୟପ୍ରଦେଶ ଓ ଓଡ଼ିଆ ଗଡ଼ଜାତମାନଙ୍କରେ ଥିବା ଉତ୍କଳଭାଷୀ ଅଞ୍ଚଳର କନ୍ଦି ବିକନ୍ଦି ଖୋଜାଯିବ, ତେବେ ଅନ୍ତତଃ ଆଉ ଦଶ ହଜାର ପ୍ରାଦେଶିକ, ଦେଶାଂଶ ପ୍ରଚଳିତ ଗ୍ରାମ୍ୟ, ପ୍ରାଚୀନ, ବୈଜ୍ଞାନିକ ଓ ବ୍ୟାବହାରିକ ଶବ୍ଦ ସଂଗୃହୀତ ହୋଇପାରିବ ।

ଉଦାହରଣସ୍ୱରୂପ ଦେଖାଯାଉ ଯେ, ମୁଁ ୨/୩ ମାସ ପୂର୍ବେ ଭାଷାକୋଷପାଇଁ ଅର୍ଥ ସଂଗ୍ରହାର୍ଥ କଟକ ଜିଲ୍ଲାର ଆଳି ରାଜ୍ୟକୁ ଯାଇଥିଲି । ପୂର୍ବେ ସେ ରାଜ୍ୟ ଜାହାଜ-ନିର୍ମାଣ, ପୋତ-ଚାଳନ ଓ ସାମୁଦ୍ରିକ-ବାଣିଜ୍ୟର ଗୋଟିଏ କେନ୍ଦ୍ର ଥିଲା । ସେ ସମୟରେ ବ୍ୟବହୃତ ବହୁ ଶତ ଶବ୍ଦ ବର୍ତ୍ତମାନ ଲୁପ୍ତପ୍ରାୟ । ଭାଷାନୁରାଗୀ ଆଳି ରାଜ୍ୟାଧୀଶ୍ୱର ମୋତେ ଜାହାଜ ଓ ନୌଚାଳନ ସମ୍ପର୍କୀୟ ୫୦ଟି ଶବ୍ଦ ଦେଲେ ସେ ଶବ୍ଦମାନ ଭାଷାକୋଷରେ ନାହିଁ । ସେ କହିଲେ ଯେ, ଜାହାଜ-ନିର୍ମାଣ, ଜାହାଜ-ଚାଳନ, ନୌକା-ଚାଳନ, ଜାଲ ଓ ମାଛଧରା ସମ୍ପର୍କରେ ଓ ପ୍ରାଚୀନ କାଳରେ ଉତ୍କଳ ପାଇକ ସେନାନୀଙ୍କ ବ୍ୟବହୃତ ଓ ଯୁଦ୍ଧ

ସମ୍ପର୍କୀୟ ସହସ୍ରାଧିକ ଶବ୍ଦ ଅର୍ଥ ସହିତ ସେ ଦେଇପାରିବେ । ଏ ଶବ୍ଦଗୁଡ଼ିକ ଲିପିବଦ୍ଧ ହୋଇ ନ ରହିଲେ ଆମ ଭାଷାରୁ ଏଗୁଡ଼ିକର ଅସ୍ତିତ୍ୱ ଲୁପ୍ତ ହେବ । ମୁଁ ଅନୁମାନ କରୁଛି ଯେ, ପରିଶ୍ରମ, ଅନ୍ୱେଷଣ, ନିଷ୍ଠା ଓ ଅଧ୍ୟବସାୟ ସହକାରେ ଗୁଡ଼ିଏ କର୍ମଠ ଓ କନୀୟାନ୍ କର୍ମୀ ଲାଗିଗଲେ, ସେମାନେ ଯେତେ ଶବ୍ଦ ସଂଗ୍ରହ କରିବେ ଓ ମୋଦ୍ୱାରା ସଂଗୃହୀତ ଯେଉଁ ନୂତନ ଶବ୍ଦମାନ ଭାଷାକୋଷରେ ସ୍ଥାନ ପାଇ ନାହିଁ, ସେମାନଙ୍କ ସଂଖ୍ୟା ଅନ୍ୟୂନ ୧୫ ହଜାର ହେବ । ଭାଷାକୋଷରେ ନିହିତ ୧ ଲକ୍ଷ ୮୫ ହଜାର ଶବ୍ଦ ସଙ୍ଗେ ସେ ଶବ୍ଦମାନ ମିଶିଲେ ଓଡ଼ିଆ ଭାଷାରେ ଶବ୍ଦ ସଂଖ୍ୟା ଦୁଇଲକ୍ଷ ହେବ ଓ ଆମ ମାତୃଭାଷା, କେବଳ ଭାରତର କାହିଁକି, ପୃଥିବୀର ଅନ୍ୟ ଉନ୍ନତ ଭାଷାମାନଙ୍କ ସଙ୍ଗେ ଶବ୍ଦବିଭବରେ ପଟ ପକାଇପାରିବ । ପ୍ରଭୁ ଯେବେ ଏ ସୁଦିନ ମୋତେ ବା ମୋ ଅପେକ୍ଷା କର୍ମଠ ଓ ବଳୀୟାନ୍ କର୍ମିଗଣଙ୍କୁ ଦେବେ ଓ ତହିଁର ପ୍ରକାଶାର୍ଥ ଅର୍ଥ ପୋଷକତା ମିଳିବ, ତେବେ ଏ ଭାଷାକୋଷର ପରିଶିଷ୍ଟ ଖଣ୍ଡରେ ଏ ଶବ୍ଦମାନ ସ୍ଥାନ ପାଇବ ।

**ଭାଷାକୋଷର କ୍ରମିକ ଖଣ୍ଡମାନଙ୍କ ତୁଳନାରେ ସପ୍ତମ ଖଣ୍ଡର ପ୍ରକାଶରେ ଅତ୍ୟଧିକ ବିଳମ୍ବ**

ଏ ଗ୍ରନ୍ଥର ପୂର୍ବବର୍ତ୍ତୀ ଖଣ୍ଡମାନ ନିମ୍ନୋକ୍ତ ସମୟକ୍ରମେ ମୁଦ୍ରିତ ଓ ପ୍ରକାଶିତ ହୋଇଅଛି –

ପ୍ରଥମ ଖଣ୍ଡ – ସନ ୧୯୩୧ ସାଲ ସେପ୍‌ଟେମ୍ବର୍ ମାସ,
ଦ୍ୱିତୀୟ ଖଣ୍ଡ – ୧୯୩୨ ଅଗଷ୍ଟ୍ ମାସ,
ତୃତୀୟ ଖଣ୍ଡ – ୧୯୩୩ ମଇ,
ଚତୁର୍ଥ ଖଣ୍ଡ – ୧୯୩୪ ଜୁନ୍,
ପଞ୍ଚମ ଖଣ୍ଡ – ୧୯୩୬ ମାର୍ଚ୍ଚ,
ଷଷ୍ଠ ଖଣ୍ଡ – ୧୯୩୭ ଜୁନ୍ ।

ଏଥିରୁ ଦେଖାଯିବ ଯେ, କେବଳ ପଞ୍ଚମ ଖଣ୍ଡ ଛଡ଼ା ଆଉ ସବୁ ଖଣ୍ଡ ବର୍ଷେ ଲେଖାଏଁ ବ୍ୟବଧାନରେ ପ୍ରକାଶିତ ହେଉଥିଲା । କିନ୍ତୁ ଏହି ଅନ୍ତିମ ଖଣ୍ଡର ପ୍ରକାଶପାଇଁ (୧୯୪୦ ସାଲ ସେପ୍‌ଟେମ୍ବର ମାସ) ତିନି ବର୍ଷରୁ ଅଧିକକାଳ ବିତିଗଲା ।

ଷଷ୍ଠ ଖଣ୍ଡର ପ୍ରକାଶ ପରେ ଉତ୍କଳ ପ୍ରବଳ ନଦୀବନ୍ୟାକ୍ରାନ୍ତ ହେଲା । ସେହି ବନ୍ୟା ଯୋଗୁଁ ମୋର ମଧ୍ୟ ବିସ୍ତର କ୍ଷତି ଘଟିଲା । ସେ ଛାନିଆରୁ ଉଦ୍ଧାର ପାଇବା ବେଳକୁ ୨୦ ବର୍ଷ ହେଲା ଏ ଗ୍ରନ୍ଥ ସଂକଳନରେ ଓ ପ୍ରକାଶରେ ମୋ ସହକର୍ମିଣୀ ଓ ମୁଁ ପୀଡ଼ିତ ହେଲୁଁ । ତହିଁରୁ ମୁକ୍ତି ଲଭିବାକୁ ୨/୩ ମାସ ଅତିବାହିତ ହେଲା । ତତ୍ପରେ ଶାସନତନ୍ତ୍ରର ପରିବର୍ତ୍ତନ ଫଳରେ ଓ କଂଗ୍ରେସ ସରକାରଙ୍କଦ୍ୱାରା ପ୍ରଜାସ୍ୱତ୍ୱ, ମହାଜନି, ଦେବୋତ୍ତର ଆଦି ଆଇନ୍‌ର ପ୍ରଣୀତ, ପ୍ରଚାରିତ ଓ ପ୍ରବର୍ତ୍ତିତ ହେବା ଫଳରେ ଓ ଗଡ଼ଜାତ ଓ କିଲାଜାତ ରାଜ୍ୟମାନଙ୍କରେ

'ପ୍ରଜା-ମଣ୍ଡଳ' ଓ, 'ରୟତ ସଂଘ' ଆନ୍ଦୋଳନ ଫଳରେ ଭାଷାକୋଷର ଭାବୀ ପୋଷଣହାରୀମାନଙ୍କ ଦାତୃତ୍ୱ ସମଧିକ ଭାବରେ ପ୍ରତିହତ ହେଲା । ଏଥି ପୂର୍ବରେ ଉତ୍କଳର ଧନିକମଣ୍ଡଳର ଦାନ ସ୍ରୋତ ଯେଉଁ ବେଗରେ ଗତି କରୁଥିଲା, ସେ ବେଗ ମନ୍ଥର ହୋଇଗଲା । ତତ୍ପରେ ଚାହୁଁ ଚାହୁଁ ପୃଥିବୀବ୍ୟାପୀ ମହାଯୁଦ୍ଧର ଘନଘଟା ହେତୁ ଭାରତର ରାଜନୀତିକ, ବୈଷୟିକ ଓ ବ୍ୟାବସାୟିକ ବାୟୁମଣ୍ଡଳ କୁହେଳିକାମୟ ଓ ଧୂଳି ସମାଚ୍ଛନ୍ନ ହୋଇଗଲା । ଶେଷକୁ କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲେ ।

ଉତ୍କଳର ମୋଗଲବନ୍ଦିର ଓ ଗଡ଼ଜାତର ଏହି ଉତ୍ତାଳ ତରଙ୍ଗାକୁଳ, ଅଥଚ ସମୁଦ୍ରରେ ମୋ ଭଳିଆ ଅସ୍ଥିରପାଦ (ଅଥରପା) ବୁଢ଼ା, ନାହୁରି ସପ୍ତମଖଣ୍ଡରୂପ ଦଦରା-ଡଙ୍ଗାରେ ଉବେଇ ଟୁବେଇ ହେଲା । ଦଦରା-ଡଙ୍ଗା କୂଳରେ ଆସି ଲାଗିବା ପୂର୍ବରୁ ଗଣ୍ଡ-ଦରିଆରେ ଟୁବ୍‌କିନି ବୁଡ଼ି ଯାଇଥାଆନ୍ତା ।

ଏହି ସମୟରେ ଶ୍ରୀକୃଷ୍ଣଙ୍କ କର୍ଣ୍ଣଧାରତ୍ୱରେ ଦଦରା-ଡଙ୍ଗାରେ ଯମୁନା ପାରିହେବାକୁ ବସିଥିବା ଗୋପୀମାନଙ୍କ ଉଚ୍ଚାରିତ ଶ୍ଳୋକ ମୋ ମନରେ ପଡୁଥାଏ

ଜୀର୍ଣ୍ଣା ତରୀ ସରିଦତୀବ ଗଭୀରନୀରା
ବାଳାବୟଂ ସକଳମିତ୍ଥମନର୍ଥା
ବିଶ୍ୱାସ ବୀଜମିଦ ମସ୍ତିକୃଶୋଦରାଣାଂ
ଯନ୍ନାଧବ ! ତ୍ୱମସି ସଂପ୍ରତି କର୍ଣ୍ଣଧାରଃ ।

(ଅର୍ଥାତ୍ ଆମେ ଗୋପୀମାନେ ବସିଛୁଁ ଦଦରା-ଡଙ୍ଗାରେ, ଯମୁନା ନଈ ଅତି ଗଭୀର, ଡଙ୍ଗାରେ ଚଢ଼ିଛୁଁ ସବୁ ଅନର୍ଥର ଓ ଅସ୍ଥିରତାର ମୂର୍ତ୍ତି ଆମେ ଗଉଡୁଣୀଯାକ । ଏସବୁ ହୋଇ ସୁଦ୍ଧା ଆମ ମନରେ 'ବିଶ୍ୱାସ' ବୀଜ ବୁଣା ହୋଇଛି । କାରଣ, ଆପଣ ସ୍ୱୟଂ ଶ୍ରୀକୃଷ୍ଣ ପରା ଆମର ମଙ୍ଗୁଆଳ । ଅତଏବ ଆମ ଦଦରା-ଡଙ୍ଗା ବୁଡ଼ିଯିବ ନାହିଁ ।)

ଯାହାଙ୍କ କର୍ଣ୍ଣଧାରତ୍ୱରେ ଦଦରା-ଡଙ୍ଗା ୬ ସମୁଦ୍ର ପାରିହୋଇ ସପ୍ତମ ସମୁଦ୍ରରେ ଆସି ପଡ଼ିଲା, ସେହି ମାନ୍ୟବର ସାର୍ ଜନ୍ ହବ୍‌ବାକ୍‌ଙ୍କଭଳି ଦୃଢ଼ମୁଷ୍ଟି କର୍ଣ୍ଣଧାର (ମଙ୍ଗୁଆଳ) ଏ ଡଙ୍ଗାର ସୁକାନି ଧରିଥାଆନ୍ତି, ବୁଢ଼ା ପାହାଡ଼ମୟ ଓ ବାଡ଼ବାନଳସେବିତ ସପ୍ତମ ସମୁଦ୍ରରେ ଆସି ଡଙ୍ଗା ପଡ଼ିଲାବେଳକୁ ଭାରତ ଶାସନପୋତର ଅଧକ୍ଷ, ନୀତିବିଶାରଦ, ସାହିତ୍ୟାନୁରାଗୀ, ଗୁଣଚିହ୍ନରା ବଡ଼ଲାଟ ମହାମାନ୍ୟବର ମାର୍କ୍ୱିସ୍ ଅଫ୍ ଲିନ୍‌ଲିଥ୍‌ଗୋ କଣ୍ଢୁଆଳ ମିଳିଗଲେ; ଗଙ୍ଗବଂଶର ଅଭିଭାବିକା ବାମଣ୍ଡା ରାଜପିତାମହୀ ରାଜ୍ଞୀ ଶ୍ରୀମତୀ ଡମରୁଧରପ୍ରିୟା ଦେବୀ ଓ ବାମଣ୍ଡାଧୀଶ୍ୱର ରାଜା ଭାନୁଗଙ୍ଗ ତ୍ରିଭୁବନ ଦେବ ଡଙ୍ଗାର ଅଝାଳ (ପାଲ) ଧଇଲେ ଓ ଡଙ୍ଗା ଆସି 'ବିଷମ' ବନ୍ଦର କୂଳରେ ଲାଗିବା ପୂର୍ବରୁ ନୟାଗଡ଼ର ଅଧୀଶ୍ୱର ରାଜା ଶ୍ରୀ କୃଷ୍ଣଚନ୍ଦ୍ରସିଂହ ମାନଧାତା କାତ ଧରି ଡଙ୍ଗା ଉପରେ ଠିଆ ହେଲେ । ଏମାନଙ୍କ ଲଘୁହସ୍ତତା, କ୍ଷିପ୍ରହସ୍ତତା, ଦୀର୍ଘହସ୍ତତା,

ସିଦ୍ଧହସ୍ତତା, ଅମୃତହସ୍ତତା ଓ ପରିଶେଷରେ ମୁକ୍ତହସ୍ତତା ତଙ୍ଗାକୁ ଆଣି ମଢ଼ଲିମୁଣ୍ଡ ଘାଟରେ ଲଗାଇଦେଲା । ନାନା କାରଣରୁ ଯେଉଁ ଦାନ ସ୍ରୋତର ଗତି ଶିଥିଳ ହୋଇଥିଲା ତାହା ପୁଣି ଦାତାମାନଙ୍କ କୃପାରୁ ପୂର୍ବର ବେଗ ଧାରଣ କଲା ।

**ସପ୍ତମଖଣ୍ଡର ଉତ୍ସର୍ଗପତ୍ର ଗ୍ରହୀତା (Dedicatee) ଓ ଅଭିଭାବିକା (Patroness)ଙ୍କ କରୁଣା ଲାଭ**

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ପ୍ରତିଷ୍ଠାର ସ୍ମାରକ ଓ ଓଡ଼ିଆ ଜାତିର ରାଜଭକ୍ତିର ନିଦର୍ଶନରୂପେ ମହାମହିମ ଭାରତ ସମ୍ରାଟ୍‌ଙ୍କ ମହନୀୟ ନାମରେ ଏ ଗ୍ରନ୍ଥର ଅନ୍ତିମ ଖଣ୍ଡ ଉତ୍ସର୍ଗ କରିବି ବୋଲି ମୁଁ ୧୯୩୩ ସାଲରେ କଳ୍ପନା କରିଥିଲି (ତୃତୀୟ ଖଣ୍ଡର ଅବତରଣିକାରେ ମୋର ଏ ମଧୁରସ୍ୱପ୍ନ କଥା ଉଲ୍ଲେଖ ହୋଇଅଛି) । ଏ ଗ୍ରନ୍ଥର ଜଣେ ବିଶିଷ୍ଟ ଶୁଭକାମୀ, ପାଟଣା ହାଇକୋର୍ଟର ଚିଫ୍-ଜଷ୍ଟିସ୍ ସ୍ୱର୍ଗତ ସାର୍ କୋର୍ଟନୀ ଟେରେଲ୍ ବିଲାତ ଯାଇ ଭାରତ ସମ୍ରାଟ୍‌ଙ୍କ ରାଜଦରବାରରୁ ଏ ବିଷୟର ତତ୍ତ୍ୱ ଅନୁସନ୍ଧାନ କରି ମୋତେ ଜଣାଇଲେ ଯେ, ପୂର୍ବବର୍ତ୍ତୀ ଖଣ୍ଡମାନ ସମ୍ରାଟ୍‌ଙ୍କ ଅପେକ୍ଷା ନ୍ୟୂନ ପଦାଧିଷ୍ଠିତ ବ୍ୟକ୍ତିମାନଙ୍କ ନାମରେ ଉତ୍ସୃଷ୍ଟ ହୋଇଥିବାରୁ, ଅନ୍ତିମଖଣ୍ଡ ସମ୍ରାଟ୍‌ଙ୍କ ନାମରେ ଉତ୍ସୃଷ୍ଟ ହେବା ପ୍ରସ୍ତାବ ଗୃହୀତ ହେବାର ଆଶା ସୁଦୂରପରାହତ । ଏହା ଅବଗତ ହୋଇ ବାମନର ଚନ୍ଦ୍ରକୁ ଧରିବା ଆଶା ପରି ମୁଁ ଏ ଆଶାରେ ଅଗତ୍ୟା ଜଳାଞ୍ଜଳି ଦେଲି । (ଚତୁର୍ଥ ଖଣ୍ଡର ଅବତରଣିକାରେ ଏ ବିଷୟର ଉଲ୍ଲେଖ ଅଛି ।)

ଷଷ୍ଠ ଖଣ୍ଡ ପାଟଣାରାଜ୍ୟାଧୀଶ୍ୱର ମହାରାଜ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେବଙ୍କୁ ଉତ୍ସୃଷ୍ଟ ହୋଇଥିଲା । ଉକ୍ତ ଖଣ୍ଡର ମୁଦ୍ରଣ ୧୯୩୭ ଜୁନ୍ ମାସରେ ସମାପ୍ତ ହେଲା ଓ ଜୁଲାଇ ମାସ ସୁଦ୍ଧା ସେହି ଖଣ୍ଡର ବନ୍ଧାଇ ଆଦି ସମାପ୍ତ ହେଲା । ଉତ୍ସର୍ଗପତ୍ରଗ୍ରହୀତାଙ୍କ ହସ୍ତରେ ଅର୍ପିତ ନ ହେଲେ, ଉତ୍ସୃଷ୍ଟ ପୁସ୍ତକର ସାଧାରଣରେ ପ୍ରଚାର ରୀତିବହିର୍ଗତ ଅଟେ । ଅତଏବ ମୁଁ ପାଟଣା ରାଜ୍ୟକୁ ଯାଇ ମହାରାଜଙ୍କ ହସ୍ତରେ ପୁସ୍ତକ ଅର୍ପଣ କରିବା ସ୍ଥିର କଲି । କିନ୍ତୁ ବୁଝିଲି ଯେ, ମହାରାଜ ସିମଲା ଶୈଳାବାସରେ ଗ୍ରୀଷ୍ମଋତୁ ଯାପନ କରୁଅଛନ୍ତି ଓ ତାଙ୍କର ରାଜଧାନୀକୁ ଫେରିଆସିବାକୁ ଅନ୍ତତଃ ୨ ମାସ ବିଳମ୍ବ ହେବ । ଅଗତ୍ୟା ମୁଁ ସିମଳା ଯିବା ସ୍ଥିର କଲି । ଏହି ସମୟରେ ମହାମାନ୍ୟ ଭାଇସ୍‌ରାୟ (ବଡ଼ଲାଟ)ଙ୍କୁ ଏକସାର ଭାଷାକୋଷ ସିମଳାଠାରେ ଭେଟି ଦେବାର କଳ୍ପନା ମୋ ମନରେ ଉଦିତ ହେଲା । ମୁଁ ଯାଇ ମୋ କଳ୍ପନାକୁ ଭାଷାକୋଷର ଆଜନ୍ମ ଆଶ୍ରୟଦାତା ସାର୍ ଜନ୍ ହବ୍‌ବାକ୍‌ଙ୍କ ଛାମୁରେ ଉପସ୍ଥାପିତ କଲି । ସେତେବେଳକୁ ମୋର ସିମଳା ଯିବାକୁ ଦୁଇଦିନ ମାତ୍ର ଥାଏ ଓ ସେ ସମୟରେ ଭାଇସ୍‌ରାୟ ସିମଳାରେ ନ ଥାନ୍ତି । ସାର୍ ଜନ୍‌ଙ୍କ ପରାମର୍ଶକ୍ରମେ ମୁଁ ବଡ଼ଲାଟଙ୍କ ଦର୍ଶନ ପ୍ରାର୍ଥନାକରି ତାଙ୍କ ସାମରିକ ସେକ୍ରେଟେରୀଙ୍କଠାକୁ ପତ୍ର ଦେଲି । ସୌଭାଗ୍ୟର ବିଷୟ ଯେ, ମୁଁ ଯାଇ ସିମଳାରେ

ପହଞ୍ଚିବା ବେଳକୁ ଭାଇସ୍‌ରାୟ ସିମଳାକୁ ବାହୁଡ଼ି ଆସିଲେ ଓ ୧୦.୮.୧୯୩୭ ତାରିଖ ଦିନ ନିର୍ଦ୍ଧାରିତ ସମୟରେ ବଡ଼ଲାଟଙ୍କ ତତ୍ରତ୍ୟପ୍ରାସାଦରେ ମୋ ସଙ୍ଗେ ତାଙ୍କର ଭେଟହେବାପାଇଁ ଆଦେଶ ଦେଲେ । ନିର୍ଦ୍ଧାରିତ ସମୟରେ ଭାଷାକୋଷର ପ୍ରକାଶିତ ଛଅଖଣ୍ଡି ପୁସ୍ତକ ନେଇ ବଡ଼ଲାଟଙ୍କ ଭବନରେ ପହଞ୍ଚି ତାଙ୍କ ଶ୍ରୀହସ୍ତରେ ସେମାନ ଅର୍ପଣ କଲି । ସେ ସେମାନ ଅତି ଆଗ୍ରହ, ଅନୁଗ୍ରହ ଓ ସ୍ନେହ ସହକାରେ ଗ୍ରହଣ କଲେ ଓ ମୋତେ ତାଙ୍କ ସନ୍ନିଧିରେ ବସାଇ ମୋଠାରୁ ଓଡ଼ିଆ ଭାଷା, ଓଡ଼ିଆ ସାହିତ୍ୟ, ଓଡ଼ିଶାର ଇତିହାସ, ଭାଷାକୋଷ ସଂକଳନର ବିସ୍ତୃତ ବିବରଣ, ଅର୍ଥ ଓ କର୍ମ ସାହାଯ୍ୟ ଓ ବିଶିଷ୍ଟ ସାହାଯ୍ୟକାରୀମାନଙ୍କ ବିବରଣ ମନୋଯୋଗ ସହକାରେ ଶ୍ରବଣ କଲେ । ପ୍ରସଙ୍ଗକ୍ରମେ ଓଡ଼ିଆ ଭାଷାର ଶବ୍ଦବିଭବ, ଅର୍ଥବିଭବ, ଛନ୍ଦୋବିଭବ, ପ୍ରାଚୀନତା ଏବଂ ଭାଷାକୋଷରେ ସନ୍ନିବେଶିତ ଗୋଟିକେତେ ଶବ୍ଦର ଓ କ୍ରିୟାର ଅର୍ଥ ଓ ଟୀକା ମୁଁ ତାଙ୍କୁ ଶୁଣାଇଲି । ସେ ସ୍ୱୟଂ ପୁସ୍ତକର ଖଣ୍ଡମାନଙ୍କ ପୃଷ୍ଠାମାନ ଲେଉଟାଇ ତହିଁରେ ଯେଉଁମାନଙ୍କ ପ୍ରତିକୃତିମାନ ମୁଦ୍ରିତ ହୋଇଅଛି, ସେମାନଙ୍କ ସାହାଯ୍ୟର ପରିମାଣ ଓ ପ୍ରକୃତି ମୋଠାରୁ ଶୁଣିଲେ । ଏ ସମସ୍ତ ଅବଗତ ହୋଇ ସେ ପରମ ପରିତୋଷ ଜ୍ଞାପନ କଲେ । ସେ ମହୋଦୟଙ୍କ ପ୍ରଶ୍ନର ଉତ୍ତରରେ ମୁଁ ନିବେଦନ କଲି ''ଅନ୍ତିମ ଖଣ୍ଡ ଆପଣଙ୍କ ନାମରେ ଉତ୍ସର୍ଗ କରିବାକୁ ଆପଣଙ୍କ ଅନୁମତି ପ୍ରାର୍ଥନା (ବାମନର ଚନ୍ଦ୍ରକୁ ଧରିବା କାମନା ନ୍ୟାୟ) ଗୃହୀତ ହେବ ନାହିଁ ବୋଲି ମୋର ଆଶଙ୍କା ହେବାରୁ ସେଥିପାଇଁ ଆପଣଙ୍କ ସାନୁଗ୍ରହ ଅନୁମତି ପ୍ରାର୍ଥନା କରିବାକୁ ମୁଁ ଭରସିପାରୁ ନାହିଁ।'' ଏହା ଶୁଣିବାମାତ୍ରେ ସେ କହିଲେ ''ପକ୍ଷାନ୍ତରରେ ଏପରି ବିଶିଷ୍ଟ ଗ୍ରନ୍ଥ ସଙ୍ଗେ ମୋ ନାମ ସଂଶ୍ଳିଷ୍ଟ ହେଲେ ମୁଁ ପରମାନନ୍ଦିତ ହେବି । ମୋ ନାମରେ ଏ ବିସ୍ମୟୋତ୍ପାଦକ ଗ୍ରନ୍ଥର ଅନ୍ତିମ ଖଣ୍ଡ ଉତ୍‌ସୃଷ୍ଟ ହେବା ନିମନ୍ତେ ମୁଁ ପ୍ରସନ୍ନ ହୃଦୟରେ ଅନୁମତି ପ୍ରଦାନ କରୁଅଛି ।''

ମୋର ଚିର ପୋଷିତ ଓ ଏକଦା ବିଫଳୀ-ଭୂତ ଆଶାର ଏବଂ ଭୂତ ଅଚିନ୍ତିତପୂର୍ବ ସଫଳତା ଦେଖି ମୁଁ ଏପରି ଦିଗ୍‌ବିଦିଗଜ୍ଞାନଶୂନ୍ୟ ହୋଇଗଲି ଯେ, ଭାଇସ୍‌ରୟଙ୍କ ଶ୍ରୀମୁଖରୁ ଏହା ଶୁଣିବାମାତ୍ରେ ମୁଁ ଆସନ ପରିତ୍ୟାଗ କରି ତାଙ୍କ ସମ୍ମୁଖରେ ଆନନ୍ଦରେ ହସ୍ତୋତ୍ତୋଳନପୂର୍ବକ ନୃତ୍ୟ କଲି ଓ ତାଙ୍କ ସନ୍ନିଧିକୁ ଅଗ୍ରସର ହୋଇ ତାଙ୍କ ଶ୍ରୀ ଅଙ୍ଗରେ କର ସ୍ପର୍ଶ କରି କହିଲି : ''ମହାମହିମ ଭାରତ ସମ୍ରାଟ୍‌ଙ୍କ ମହନୀୟ ପ୍ରତିନିଧିଙ୍କଦ୍ୱାରା ଦେଢ଼ କୋଟି ରାଜଭକ୍ତ ଓ ଶାନ୍ତିପ୍ରିୟ ଓଡ଼ିଆ ପ୍ରଜାଙ୍କ ଜାତୀୟ ସାରସ୍ୱତ ମନ୍ଦିରର ଅଭିଭାବକତ୍ୱ ସ୍ୱୀକାର ଓଡ଼ିଶାର ଇତିହାସରେ ଚିରକାଳ ଜାଜ୍ୱଲ୍ୟମାନ ହୋଇ ବିରାଜିବ । ଭଗବାନ୍ ସମ୍ରାଟ୍‌ଙ୍କର ତଥା ତାଙ୍କ ଭାଇସ୍‌ରୟଙ୍କ ମଙ୍ଗଳ ସାଧନ କରନ୍ତୁ । ମୋ ରାଜଭକ୍ତି ସମ୍ରାଟ୍ ପ୍ରତିନିଧିଙ୍କ ଜରିଆରେ ସମ୍ରାଟ୍‌ଙ୍କୁ ଜ୍ଞାପନ କରୁଅଛି'' । ଏହା ଶୁଣି ଭାଇସ୍‌ରୟ ସସ୍ମିତବଦନରେ ପରମପରିତୋଷ ପ୍ରକାଶ କଲେ ।

ଦୁଶ୍ଚିନ୍ତାଗ୍ରସ୍ତ ଥିଲେ । ମୁଁ ଓ ବିଶ୍ୱକ୍‌ସେନ୍ ପହଞ୍ଚିଲାବେଳେ, କୈଳାସବାବୁ ଡାକ୍ତରଖାନାରୁ ଡିଉଟି ସାରି[୧] ଫେରି ତାଙ୍କ ସ୍ନାନାଗାରକୁ ଯାଇଥିଲେ । ତାଙ୍କ ବସାରେ ଉପସ୍ଥିତ ଭୃତ୍ୟ ଓ ପୂଜାହାରୀ କହିଲେ ଯେ, ବାବୁ ସ୍ନାନାଦି ସାରି ଶେଷ କରି ବାହାରକୁ ଆସିବାକୁ ପ୍ରାୟ ଅଧଘଣ୍ଟାଏ ଲାଗିବ । ଶୁଣିଲୁଁ ଯେ, ପୁତ୍ରର ଉପନୟନପାଇଁ ତାଙ୍କ ପରିବାର କଟକ ଯାଇଅଛନ୍ତି । ଆମ୍ଭେମାନେ କୈଳାସବାବୁଙ୍କ ଅନୁପସ୍ଥିତିରେ ଟାଙ୍ଗିରୁ ଉତୁରି[୨], ତଳକୁ ଆସିବା ତାଙ୍କ ଦାଣ୍ଡଘରେ ଆମ ପେଡ଼ି, ପେଟେରା, ବୋକଚା, ଗଣ୍ଠିଲି ଆଣି ଜମା କଲୁଁ ଓ ପୂଜାହାରୀଠାରୁ ବୁଝିଲୁଁ ଯେ କୈଳାସବାବୁଙ୍କର ସେ ଓଳିର ପାକକର୍ମ ସରିଅଛି । ସଙ୍ଗେ ସଙ୍ଗେ ପୂଜାହାରୀକୁ ଆଦେଶ ଦେଲୁଁ 'ଖଡ଼େଦମ୍ ୪ ଜଣଙ୍କ ଭାତ ଓ ଡାଲିପାଇଁ ଚୁଲିରେ ହାଣ୍ଡି ବସାଅ' । ପ୍ରଥମେ ଆମ୍ଭମାନଙ୍କ ବଳେପଶାପଣ ଓ ରାନ୍ଧିବାକୁ ହୁକୁମଦେବା କଥା ଦେଖି ପାଚକଠାକୁରେ ଥାଥା ମାମା ଅଙ୍ଗ ଓ ମୁଖଭଙ୍ଗୀ ଟିକିଏ କରୁଥିଲେ । କିନ୍ତୁ ଆମର ଦି'ପହରିଆ ଭୋକବିକଳିଆ ଉଗ୍ରରୂପ ଦେଖି ଓ ଗର୍ଜନ ଶୁଣି ଗୋସେଇଁ ଅଗତ୍ୟା ରୁଷେଇ ଘରକୁ ଗଲେ । ଏହି ସମୟରେ ଦାଣ୍ଡଘରେ ଗହଳ ଚହଳ ଶୁଣିବାରୁ କୈଳାସ କଟିବସ୍ତ୍ରଧାରୀ ହୋଇ ବାଥ୍‌ରୁମ୍‌ରୁ ବାହାରିପଡ଼ି ଦେଖନ୍ତି ତ, ତାଙ୍କ ଖଟ ଉପରେ ଜଣେ ବୁଢ଼ା ଶାୟିତ ଓ ପାଖରେ ସୁପରିଚିତ ବିଶ୍ୱକ୍‌ସେନ୍ ଉପବିଷ୍ଟ । କୈଳାସବାବୁ ଆମ୍ଭମାନଙ୍କୁ ଦେଖି ଏକଦମ୍ କିଂକର୍ତ୍ତବ୍ୟବିମୂଢ଼ ହୋଇ କହିଲେ, 'ମୁଁ କଅଣ ସପନ ଦେଖୁଛି ? ନା ବାସ୍ତବ ଜଗତରେ ଅଛି ?' ସଙ୍ଗେ ସଙ୍ଗେ ପୂଜାହାରୀକୁ ଆମ୍ଭେମାନେ ପୂର୍ବରୁ ଦେଇଥିବା ଭାତ ରାନ୍ଧିବା ଆଦେଶକୁ କାଏମ୍ (confirm) କଲେ । ଖରାଦିନେ, ପ୍ରତିଦିନ କୈଳାସବାବୁଙ୍କର ସକାଳଓଳି ଡାକ୍ତରଖାନା ଫେରନ୍ତି ଭୋଜନ ମୁଠିଏ ଦହିପଖାଳ ଓ ତହିଁ ସାଙ୍ଗକୁ ଭଜା ଓ ଶାକାଦିର ବ୍ୟବସ୍ଥା ହୁଏ । ଆମ୍ଭମାନଙ୍କୁ ସେଥିରେ ଭାଗୀଦାର ହେବାପାଇଁ ସେ ଆଗ୍ରହ ପ୍ରକାଶ କଲେ, କିନ୍ତୁ ଆମ୍ଭେମାନେ ପକ୍ୱତପ୍ତାନ୍ନ ପ୍ରୟାସୀ ବୋଲି କହିବାରୁ ଓ ଆମପାଇଁ ପକ୍ୱାନ୍ନ ପ୍ରସ୍ତୁତ ହେବା ପର୍ଯ୍ୟନ୍ତ ଅପେକ୍ଷା ନ କରି ତାଙ୍କର ଦୈନନ୍ଦିନ ପଖାଳର ସଦ୍‌ବ୍ୟବହାର କରିବାକୁ କୈଳାସବାବୁଙ୍କୁ ମୁଁ ନାତକ୍ ହୁକୁମ (peremptory order) ଦେବାରୁ, ସେ ଖାଇବସିଲେ । ସେ ଖାଇସାରି ଉଠିଲାବେଳକୁ ପ୍ରାୟ ଅଧଘଣ୍ଟାକ ମଧରେ ତାଙ୍କ ପାଚକ ଭାତ, ଡାଲି, ସନ୍ତୁଳା, ଆମ୍ବିଳ, ଶାଗ ଓ ଭଜା ତିଆରି କରିଦେଲେ । ଆମ୍ଭେମାନେ ପ୍ରାୟ ଦିନ ଗୋଟାଏ ବେଳକୁ ଭୋଜନ ସାରିଲୁଁ । ତଦୁପରେ ମୋର ବୋଡ଼ାସମ୍ବର ଆସିବା ଉଦ୍ଦେଶ୍ୟ (ଭାଷାକୋଷ ପାଇଁ ରାଜାସାହେବଙ୍କ ସାହାଯ୍ୟ ପ୍ରାର୍ଥନା) ମୁଁ ତାଙ୍କୁ କହିଲି । ତା'ପରେ ଆମ୍ଭେମାନେ ଖଟରେ ଗଡ଼ପଡ଼[୩] ହୋଇ କଟକର ହାଲଚାଲ, ସମ୍ବଲପୁରର ହାଲଚାଲ, କବି ରାଧାନାଥ, କବି ମଧୁସୂଦନ, କବି ଗଙ୍ଗାଧର, ଦୀପିକା, ସମାଜ, ସାହିତ୍ୟ, ସହକାର, ନିଉ ଓଡ଼ିଶା, ଆଶା, ରସଚକ୍ର, ବୈତରଣୀ ଆଦି ପତ୍ରପତ୍ରିକା, ନୂଆ ଓଡ଼ିଶା ପ୍ରଦେଶର ତଟକା[୪] ଖବର ଆଦି

---

୧. ଶେଷକରି, ୨. ତଳକୁ ଆସିବା, ବାହାରକୁ ଆସିବା ୩. ନିଦରେ ଶୋଇ ବିଶ୍ରାମ, ୪. ତାଜା, ସଦ୍ୟ ।

ବିଷୟପ୍ରସଙ୍ଗର ଓ ନିଜ ନିଜର ଦୁଃଖସୁଖର ଚର୍ଚ୍ଚା କରୁ କରୁ ଅପରାହ୍ଣ ୪ଟା ବାଜିଲା । କ୍ରମଶଃ ପୂର୍ବୋକ୍ତ ରାଜକୁମାରଦ୍ୱୟ ହେଡ୍‌ମାଷ୍ଟର, କମ୍ପାଉଣ୍ଡର୍, ଦେବାନ୍, ହେଡ୍‌ପଣ୍ଡିତ ଜଣ ଜଣ ହୋଇ କୈଳାସବାବୁଙ୍କ ବସାରେ ରୁଣ୍ଡ ହେଲେ । ରାଜାସାହେବଙ୍କ ସଙ୍ଗେ ମୋର ଦେଖା ହେବା ଅବସର ଜାଣିବାପାଇ, ରାଜାସାହେବଙ୍କଠାକୁ ସମ୍ବାଦ ଗଲା । ରାଜା ସାହେବ ଏଠାରେ ଅବୈତନିକ ମାଜିଷ୍ଟ୍ରେଟ୍ ଅଟନ୍ତି । ଖବର ପାଇଲୁଁ ଯେ, ରାଜା ସାହେବ କେତେକ ମକଦ୍ଦମାର ଜମାନବନ୍ଦି, କଲମବନ୍ଦ୍ କରୁଅଛନ୍ତି । ସନ୍ଧ୍ୟା ୬ଟା ବେଳକୁ ତାଙ୍କର କଚେରି ଭାଙ୍ଗିଲା ଏବଂ ତାଙ୍କ ସଙ୍ଗେ ଦେଖା କରିବାକୁ ଯିବାପାଇଁ ମୋଠାକୁ ଛାମୁରୁ ସମ୍ବାଦ ଆସିଲା । ଆମ ଦଳରେ ନେତା ହେଲେ କୈଳାସଚନ୍ଦ୍ର । ଦଳରେ ଯୋଗ ଦେଲେ ଦେବାନ୍ ସାହେବ୍, ହେଡ୍ ପଣ୍ଡିତ, ପୁଲିସ୍ ଇନ୍ସପେକ୍ଟର୍, କମ୍ପାଉଣ୍ଡର ଓ ବିଶ୍ୱକ୍‌ସେନ୍ । ରାଜାସାହେବ ତାଙ୍କ କଚେରିର ବାହାର ପ୍ରାଙ୍ଗଣରେ ଉପବିଷ୍ଟ ଥିଲେ । ମୁଁ ତାଙ୍କୁ ଏକସାର ଭାଷାକୋଷ (ପ୍ରଥମ ପାଞ୍ଚଖଣ୍ଡ) ଉପହାର ଦେଇ ଓ ଭାଷାକୋଷପାଇଁ ବିଶିଷ୍ଟ ସାହାଯ୍ୟ ଓ ତାଙ୍କ ଫଟୋ ଯାବ୍‌ଞ୍ଚା[1] କଲି । ସେ ଭାଷାକୋଷର ଇତିହାସ, ଆର୍ଥିକ ପରିସ୍ଥିତି, ଆଜିପର୍ଯ୍ୟନ୍ତ ସରକାରୀ ବେସରକାରୀ ସବୁ ଦାତା ଓ ଗ୍ରାହକଙ୍କଠାରୁ ଓ ଉତ୍ତମର୍ଣ୍ଣଙ୍କଠାରୁ[2] ପ୍ରାପ୍ତ ଓ ପ୍ରତିଶ୍ରୁତ ଅର୍ଥର ପରିମାଣ, ବ୍ୟୟିତ ହୋଇଥିବା ଅର୍ଥର ପରିମାଣ, ଗ୍ରନ୍ଥର ଭବିଷ୍ୟତ୍ ଖଣ୍ଡମାନଙ୍କ ଆକାର ଓ ବ୍ୟୟର ଅଟକଳ, ସବୁ ବିଷୟ ଅବଗତ ହୋଇ, ପ୍ରାୟ ୧ ଘଣ୍ଟା କାଳ ଶୁଣିଲେ ଏବଂ ମୋ ପ୍ରାର୍ଥନା ବିଷୟ ବିଚାର କରିବେ ବୋଲି କହି ମୋତେ ବିଦାୟ ଦେଲେ । ଯେଉଁ ଗ୍ରନ୍ଥର ପୂର୍ବବର୍ତ୍ତୀ ଖଣ୍ଡମାନଙ୍କ ସଙ୍ଗେ ବିହାର ଓଡ଼ିଶାର ଲାଟଦ୍ୱୟ, ଉତ୍କଳର ରାଜା ମହାରାଜାଗଣ ଓ ଓଡ଼ିଶାର ପ୍ରଥମ ଲାଟଙ୍କ ନାମ ସଂପୃକ୍ତ ଓ ଯହିଁର ଉତ୍ସାହଦାତା ଗ୍ରାହକ, କର୍ମୀ ଓ ସହାୟକରୂପେ ଉତ୍କଳର ଅଧିକାଂଶ ସାହିତ୍ୟିକ ଓ ଦେଶସେବକ ଏବଂ ପ୍ରାଚ୍ୟ ପାଶ୍ଚାତ୍ୟ ଭୂଖଣ୍ଡର କତିପୟ ପ୍ରସିଦ୍ଧ ବିଦ୍ୱଜ୍ଜନ ବିରାଜିତ, ତହିଁର ୬ଷ୍ଠ ଖଣ୍ଡ ସଙ୍ଗେ ବୋଡ଼ାସମ୍ବର ରାଜାଙ୍କ ନାମ ସଂପୃକ୍ତ ହେବା ସୌଭାଗ୍ୟର ବିଷୟ ହେବ ବୋଲି କୈଳାସବାବୁ ରାଜାସାହେବଙ୍କୁ କହିଲେ । ରାଜାସାହେବ ବୋଡ଼ାସମ୍ବରରେ ପ୍ରତିଷ୍ଠିତ ପ୍ରାଚୀନ ନୃସିଂହନାଥ ଦେବଙ୍କର ଓ ଏହି ରାଜ୍ୟ ତଥା ପୌରାଣିକ ଐତିହାସିକ ତଥ୍ୟପୂର୍ଣ୍ଣ ତାଙ୍କ ସଙ୍କଳିତ ଶ୍ରୀ ନୃସିଂହ ମାହାତ୍ମ୍ୟ ଗ୍ରନ୍ଥ ମୋତେ ଉପହାର ଦେଲେ । ବିଂଝାଲ ଜାତି ବିନ୍ଧ୍ୟାଚଳରୁ ଏ ଅଞ୍ଚଳକୁ ପୂର୍ବେ ଆସିଥିବାରୁ ଏ ଜାତିର ନାମ 'ବିଂଝାର ହୋଇଥିବା ବିଷୟ ରାଜାସାହେବ କହିଲେ । ରାଜାସାହେବଙ୍କଠାରୁ ବିଦାୟ ହୋଇ ସଦଳବଳେ ୧୦ ପାହୁଣ୍ଡ ଆସିଛି, ଏହି ସମୟରେ ରାଜାସାହେବ କୈଳାସବାବୁଙ୍କୁ ପଛରୁ ଡାକିଲେ ଏବଂ କହିଲେ ''ପ୍ରହରାଜେ ଏଠାକୁ ଆସି ଆପଣଙ୍କ ହେଲେ, କିନ୍ତୁ ମୋ ସାଙ୍ଗରେ କାଲି ଗଣ୍ଡାଏ ଝାଗଭାତ ଗ୍ରହଣ ନ କଲେ ମୁଁ କ୍ଷୁଣ୍ଣ ହେବି ।'' ରାଜାସାହେବଙ୍କର ପ୍ରେରିତ ଏ ସାନୁନୟ ନିମନ୍ତ୍ରଣରେ ଦେବାନ୍

୧. ଅନୁରୋଧ; ୨. ବିଶିଷ୍ଟ ।

ସାହେବ ମୋ ନିକଟରେ ବାଟରେ ଉପସ୍ଥିତ ହେଲେ ଓ ମୁଁ ଅଗତ୍ୟା ହଁ ଭରିଲି । ବୋଡ଼ାସମ୍ବର ଅଞ୍ଚଳ ଖରାଦିନେ ନିର୍ଜଳ[1] ପ୍ରଦେଶ ପାଲଟିଯାଏ । ରାଜପ୍ରାସାଦର ସମ୍ମୁଖରେ ଖଣ୍ଡେ ଦୂରରେ ଗୋଟିଏ ବଡ଼ ଜଳାଶୟ ମଧ୍ୟ ଶୁଖିଗଲାଣି, କିନ୍ତୁ ତହିଁର କେତେକ ଅଂଶରେ ବେଶି ଜଳ ଅଛି ଓ ଗଭୀର ଜଳରେ ଗାଧୋଇବା ଡୁଠ ରାଜାସାହେବ କରାଇ ଅଛନ୍ତି । ଜଳାଭାବରୁ ଖରାଦିନେ ବାଡ଼ିରେ ପନିପରିବା ଶାକସବ୍‌ଜି ଲୋକେ ଉତାରି ପାରନ୍ତି ନାହିଁ । ରାଜଦ୍ୱାରରୁ ଫେରି ରାତିରେ ଡାକ୍ତରଖାନା ସାମନାରେ ଆମ୍ଭେମାନେ ବସିଛୁଁ, ଦେଖିଲୁ ଯେ ରାଜଦାଣ୍ଡରେ ହନୁମାନ୍ ପ୍ରତିମୂର୍ତ୍ତି ଟଣା ହୋଇ ଗୀତ, ବାଦ୍ୟ ଓ ସଂକୀର୍ତ୍ତନ ସହ ଗୋଟିଏ ଶୋଭାଯାତ୍ରା ବାହାରିଅଛି । ବୁଝିଲୁଁ ଯେ ପଣାସଂକ୍ରାନ୍ତି ହନୁମାନ୍‌ଙ୍କ ଜନ୍ମଦିନ ଥିବାରୁ, ଏ ଅଞ୍ଚଳରେ ଓ ସମ୍ବଲପୁରରେ ହନୁମାନ୍‌ଙ୍କ ମୂର୍ତ୍ତିକୁ ଲୋକେ ଦେଉଳରୁ ରଥରେ ଅନ୍ୟଆଡ଼କୁ ନିଅନ୍ତି ଓ ରାତ୍ରିରେ ଯାତ୍ରା ହୁଏ ଓ ପରଦିନ ହନୁମାନ୍‌ଙ୍କୁ ଶୋଭାଯାତ୍ରା କରି ସ୍ୱମନ୍ଦିରକୁ ଫେରାଇ ଆଣନ୍ତି । ଉତ୍କଳର ଅନ୍ୟ କେତେକ ଅଞ୍ଚଳରେ ପଣାସଂକ୍ରାନ୍ତି ଦିନ ହନୁମାନ୍‌ଙ୍କ ପୂଜା ଆଦି ଉତ୍ସବ ହୁଏ ।

ଏ ଅଞ୍ଚଳରେ ଖରାଦିନେ, ଦିନରେ ଭାରି ତାତି ଓ ରାତିରେ ଅପେକ୍ଷାକୃତ ଥଣ୍ଡା ଜଣାଯାଏ । ରାତିରେ ଘର ଭିତରେ ଗରମ ଲାଗେ, ଏଥିପାଇଁ ଅଧିକାଂଶ ଲୋକେ ଦାଣ୍ଡରେ ବା ଅଗଣାରେ ମୁକ୍ତାକାଶ ତଳେ ଶୁଅନ୍ତି । ଆମ୍ଭେମାନେ କୈଳାସବାବୁଙ୍କ ଭିତର ଅଗଣାରେ ଖଟ ପକାଇ ଶୋଇଲୁଁ । ଅର୍ଦ୍ଧରାତ୍ର ପରେ ଶୀତ କଲା ଓ ଦେହରେ ଚାଦର ପକାଇବାକୁ ପଡ଼ିଲା । ସମ୍ବଲପୁରରେ ମଧ୍ୟ ଏହିତା[2] ଦେଖିଲି । ଶୁଣିଲି, ସେଦିନ ଦିପହରେ ଏଠାରେ ତାପର ମାତ୍ରା ହୋଇଥିଲା ୧୧୨ ଡିଗ୍ରି । ଗ୍ରୀଷ୍ମଦିନେ ସାଧାରଣତଃ ଏଠାରେ ତାପ ୧୨୦ ଡିଗ୍ରୀ ହେବା ଅନୁଭୂତ ଘଟନା ।

ଇତିମଧ୍ୟରେ ସମ୍ବଲପୁରଠାରେ ଓ ବୋଡ଼ାସମ୍ବରଠାରେ ତତ୍ତଦ୍ ଅଞ୍ଚଳ ପ୍ରଚଳିତ ଗୁଡ଼ିଏ ଓଡ଼ିଆ ଶବ୍ଦ ମୁଁ ସଂଗ୍ରହ କରୁଥାଏ । କୈଳାସବାବୁ ଗୁଡ଼ିଏ ପ୍ରାଦେଶିକ ଶବ୍ଦ ମୋତେ ଦେଲେ ଓ ଭାଷାକୋଷ ସମ୍ବନ୍ଧରେ ଅନେକ ମୂଲ୍ୟବାନ୍ ଉପଦେଶ ଓ ସୂଚନା ତାଙ୍କଠାରୁ ପାଇଲି । କୈଳାସବାବୁ ଦୂରଦେଶରେ ଜଣେ କଟକିଆଭାଇକୁ ପାଇ ଏପରି ବିଭୋର୍ ହୋଇଗଲେ ଯେ, ମୁଁ ଯେଉଁ ୩୦ ଘଣ୍ଟା ସେଠାରେ ଥିଲି, ସେସମୟରେ ସେ ଅନ୍ୟ ସବୁ କଥା ଭୁଲିଯାଇ କେବଳ ମୋ ସଙ୍ଗେ ସାହିତ୍ୟାଲୋଚନାରେ ଲାଗିଥାଆନ୍ତି । ସାହିତ୍ୟରେ ଯେତେବେଳେ ଯାହା ସାଇତିବା ବସ୍ତୁ ତାଙ୍କ ହାବୁଡ଼େ ପଡ଼େ, ସେ ସେମାନ କାଟି ସାଇତି କରି ରଖନ୍ତି । ମୋ ଆଗରେ ୨୦.୨୫ ବର୍ଷ ତଳଠାରୁ ଆଜିପର୍ଯ୍ୟନ୍ତ ତାଙ୍କ ସଂଗୃହୀତ୍ ଗୁଡ଼ିଏ ଛସମୟ ଓ ସାହିତ୍ୟିକ ସନ୍ଦର୍ଭ ସେ ମୋତେ ଦେଖାଇଲେ । ରାତି ଅନିଦ୍ରା ଯୋଗୁଁ ତାଙ୍କର (ଓ ଗୌଣତଃ ମୋର) ସ୍ୱାସ୍ଥ୍ୟହାନି ଘଟିବା ଆଶଙ୍କା ମୁଁ ତାଙ୍କୁ ଚେତାଇବାରୁ ସେ ଉତ୍ତର ଦେଲେ, ''ଏଁ ସୁଯୋଗ ତ ଜୀବନରେ ଆଉ ଦିନେ ପାଇବି

---

୧. ଜଳଶୂନ୍ୟ, ୨. ଏହିପ୍ରକାର ।

ନାହିଁ । ସ୍ୱାସ୍ଥ୍ୟ ହାନି ହେଲେ କିଛିଦିନେ ତାହା ସୁଧୁରିଯିବ, କିନ୍ତୁ ଆଜି ଆପଣଙ୍କ ସଙ୍ଗେ ଆଳାପ କରିବା ସୁଯୋଗ ହରାଇଲେ ଏ ଜୀବନରେ ତ ଆଉ ଏହା ସୁଧାରି ହେବ ନାହିଁ ।'' ଏ ଯୁକ୍ତି ଶୁଣି ମୁଁ ଆଉ ଯୁକ୍ତି କଲି ନାହିଁ ଓ ଦୁହେଁ ରାତି ଅନିଦ୍ରା ହୋଇ ନାନା ପ୍ରସଙ୍ଗ ଆଲୋଚନା କଲୁଁ ।

ତହିଁ ପରଦିନ ପ୍ରତ୍ୟୁଷରୁ ଶଯ୍ୟାତ୍ୟାଗନ୍ତେ ପ୍ରାତଃକୃତ୍ୟ ସମାପନ କରି ମୁଁ ମାଇନର୍ ସ୍କୁଲ୍, ଡାକ୍ତରଖାନା, ପୁଲିସ୍ ଥାନା ଆଦି ବୁଲିବାକୁ ଗଲି । ଏହି ସମୟରେ ପୂର୍ବୋକ୍ତ ରାଜକୁମାରଦ୍ୱୟ ରାଜାସାହେବଙ୍କ ମଟର୍ ଘେନି ଉପସ୍ଥିତ ହେଲେ । ଆମ୍ଭମାନଙ୍କୁ ୨୫.୨୬ ମାଇଲ ଦୂରବର୍ତ୍ତୀ ଗନ୍ଧମାଦନ ପର୍ବତ, ତତ୍‌ସ୍ଥିତ ନୃସିଂହନାଥ ମନ୍ଦିର ଓ ନିର୍ଝରିଣୀ ଦେଖାଇବାପାଇଁ ରାଜାସାହେବ କୁମାରଦ୍ୱୟଙ୍କୁ ପଠାଇଥିବା କଥା କହି କୁମାରଦ୍ୱୟ ମୋତେ ମଟର୍‌ରେ ବସାଇଲେ । ବାବୁ ବିଶ୍ୱକ୍‌ସେନ୍, ହେଡ୍‌ପଣ୍ଡିତ କୃଷ୍ଣମୋହନବାବୁ, ରାଜକୁମାରଦ୍ୱୟ ମଟର୍‌ରେ ସହଯାତ୍ରୀ ହେଲୁଁ । ମଟର୍‌ରେ ଗଲାବେଳେ ବାଟରେ କେତେକ ବସ୍ତୁ ଆମ ହାବୁଡ଼େ ପଡ଼ିବାରୁ ସେହି ସେହି ବସ୍ତୁଚୟର ବୋଡ଼ାସମ୍ବର-କଥିତ ପ୍ରାଦେଶିକ ନାମସବୁ କୁମାରଦ୍ୱୟ ମୋତେ କହୁଥାଆନ୍ତି ଓ ମୁଁ ସେମାନ ଟିପି ନେଉଥାଏଁ । ଆମ୍ଭେମାନେ ଯାଇ ଗନ୍ଧମାଦନ ପର୍ବତର ପାଦଦେଶରେ ପହଞ୍ଚିଲୁ । ସେଠାରେ ମଟର ରଖି ଆମ୍ଭେମାନେ ନୃସିଂହନାଥଙ୍କ ମନ୍ଦିରକୁ ଯାଇ ସେଠାରେ ବହୁଥିବା ଗିରିନିର୍ଝରିଣୀର ଅତଡ଼ିରେ[୧] ପର୍ବତର କେତେ ଦୂର ଉଚ୍ଚତା ପର୍ଯ୍ୟନ୍ତ ଉଠିଲୁଁ । ଆଉ ତେଣିକି ପାର୍ବତ୍ୟ ସଂକୀର୍ଣ୍ଣ ଉଚ୍ଚାବଚ ମାର୍ଗରେ ଉଠିବାକୁ ମୋ ଯୋଡ଼ି ଘୋଡ଼ା (ଦୁଇ ଗୋଡ଼) ନିତାନ୍ତ ନାମଙ୍ଗ[୨] ହେଲେ ।

ପର୍ବତର ପାଦଦେଶରେ ନାରଙ୍ଗ, ପଣସ, କେନ୍ଦୁ, ଚାରକୋଳି, ନାଗେଶ୍ୱର, ସଲ(ତ) ପ, କଦଳୀ ଆଦି ଫଳଫୁଲର ବୃହତ୍ ବଗିଚା ଅଛି । ସେହି ବାଟେ ପାହାଡ଼ରୁ ଗଡ଼ି ଆସୁଥିବା ଗିରିନଦୀ ବହୁଥିବାରୁ ତହିଁର ଜଳଦ୍ୱାରା ଏ ଗଛସବୁ ବଞ୍ଚିଅଛି । ନୃସିଂହନାଥଙ୍କ ମନ୍ଦିରର କଡ଼[୩] ଦେଇ ଆମ୍ଭେମାନେ ୫୦ ଫୁଟ ଉପରକୁ ଉଠି ଚାଳଧାର ନାମକ ପ୍ରପାତ ନିକଟକୁ ଗଲୁ । ଏ ପ୍ରପାତରେ ନିର୍ଝରିଣୀର ଜଳ ପ୍ରାୟ ୨୫ ଫୁଟ ଉଚ୍ଚରୁ ଗୋଟିଏ ଖୁବ୍ ସଂକୀର୍ଣ୍ଣ ନାଳି ଦେଇ ତଳକୁ ପଡୁଛି ଓ ତଳେ ଗୋଟିଏ ଗଭୀର କୁଣ୍ଡରେ ଜମା ହୋଇ ସେଠାରୁ ନୃସିଂହନାଥଙ୍କ ମନ୍ଦିର ବାଟେ ତଳଆଡ଼କୁ ବହିଯାଉଛି । ଏହି ଜଳପ୍ରପାତ ଓ କୁଣ୍ଡର ମଧ୍ୟବର୍ତ୍ତୀ ସ୍ଥାନରେ ଚାଳଘରର ଚାଳପରି ବୁଣା ହୋଇଥିବା ବାଉଁଶର ଗୋଟିଏ ମଞ୍ଚା (ଚାଳ) ସ୍ଥାପିତ ହୋଇଅଛି । ସେହି ଚାଳ ଉପରେ ବସିଲେ ବା ଠିଆ ହେଲେ ୧୦/୧୫ ଫୁଟ ଉଚ୍ଚରୁ ପଡୁଥିବା ପାଣିଦ୍ୱାରା Shower bath (ପାଣି ଅସରାରେ ସ୍ନାନ) ହୁଏ ଓ ଲୋକେ ସେଠାରେ ସ୍ନାନ କରନ୍ତି । ଚାଳଦ୍ୱାରା ଏ ମଞ୍ଚାଟି ତିଆରି ହୋଇଥିବାରୁ ଝରଣାର ଏହି ଅଂଶର ନାମ 'ଚାଲ୍‌ଧାର୍ ।'

---

୧. ଖାଇଜାଗାକୁ ଲାଗିରହିଥିବା ଉପରିଭାଗ, ୨. ଅରାଜି, ୩. ପାଖକୁ ଲାଗି ।

ଚାଲ୍‌ଧାରର କଡ଼େ କଡ଼େ ଆଉ କିଛି ଦୂର ଉପରକୁ ଉଠିଲେ ସେଠାରେ ଏ ଗିରିନଦୀର 'ଭୀମଧାର' ନାମକ ଅଂଶ ହାବୁଡ଼େ ପଡ଼େ । ପ୍ରବାଦ ଅଛି ଯେ, ଏଠାରେ ଭୀମ ସ୍ନାନ କରିଥିଲେ । ତା'ର ଖଣ୍ଡ ଦୂର ଉଚ୍ଚରେ ସୀତାକୁଣ୍ଡ ନାମକ ଆଉ ଗୋଟିଏ କୁଣ୍ଡ ଅଛି । ପ୍ରବାଦ ଅଛି ଯେ, ସେଥିରେ ରାମମହିଷୀ ସୀତା ବନବାସ ସମୟରେ ଗାଧୋଉଥିଲେ । ଏହି କୁଣ୍ଡମାନଙ୍କ ଅତଟ (ଅତଡ଼ା) କାନ୍ଥିରେ ପର୍ବତଗାତ୍ରରେ ବ୍ରହ୍ମା, ବିଷ୍ଣୁ, ଶିବ, ଗଣେଶ, ପଞ୍ଚପାଣ୍ଡବ ଆଦିଙ୍କ ମୂର୍ତ୍ତି ଖୋଦିତ ହୋଇଅଛି । ତା'ର କିଛି ଦୂର ଉପରେ ଗୁପ୍ତଧାର । ସେଠାରେ ପର୍ବତର ଖୋଲ ମଧ୍ୟରେ କିଛି ଦୂର ପର୍ଯ୍ୟନ୍ତ ଏ ନିର୍ଝର ଅଦୃଶ୍ୟ ହୋଇଅଛି । ତହିଁ ଉପରେ ପଞ୍ଚପାଣ୍ଡବ କୁଣ୍ଡ । ମୁଁ ଏହି ପର୍ଯ୍ୟନ୍ତ ଉଠିଲି । କୁମାରମାନେ କହିଲେ ଏହିପରି ପାର୍ବତ୍ୟ ରାସ୍ତାରେ ଆଉ ୭/୮ ମାଇଲ ଗଲେ 'କପିଳଧାର' ନାମକ ପ୍ରପାତ (ପ୍ରାୟ ୧୦୦ ଫୁଟ ଉଚ୍ଚତାରୁ ପାଣି ଗଡୁଥିବା ସ୍ରୋତ) ଓ ଏ ନିର୍ଝରିଣୀ ବାହାରୁଥିବା ସ୍ଥାନର ତଟଦେଶରେ ଥିବା 'ସତ୍ୟଆମ୍ବ' ଗଛ ଦେଖାଯିବ ଓ ବାଟରେ ଗୋଟିଏ ପାହାଡ଼ଭିତର ଛିଦ୍ର ବାଟେ ବାହାରିଥିବା ଧାରକୁ ଭୀମମାଣ୍ଡୁଆ ବୋଲାଯାଏ, ତାହା ମଧ୍ୟ ଦେଖାଯିବ । ତା'ର କିଛି ଦୂର ତଳକୁ 'ସପତଧାର' ଠାରେ ଏ ଗିରି କଲ୍ଲୋଳିନୀ ୭ଟି ଧାର ହୋଇ ପୁଣି କିଛି ଦୂରରେ 'କପିଳ ଧାର' ନାମକ ୧୦୦ ଫୁଟରୁ ପାଣି ପଡୁଥିବା ଜଳପ୍ରପାତ ସୃଷ୍ଟି କରିଅଛି । ସେ ସ୍ଥାନକୁ ମଟର୍ ଆଦି ଯିବା କଥା ଦୂରେ ଥାଉ, ହାତୀ ବା ପାଲିଙ୍କି ଆଦିରେ ସୁଦ୍ଧା ଯାଇ ହେବ ନାହିଁ । କେବଳ ୭ ମାଇଲ ପାର୍ବତ୍ୟ ଉଚ୍ଚବାଟ ଭୟଙ୍କର ଢାଲୁଅ ଅତଡ଼ା ବାଟେ ଚାଲି ଯିବା ଛଡ଼ା ଉପାୟାନ୍ତର ନାହିଁ । ପଦ୍ମପୁରଠାରୁ ନୃସିଂହନାଥଠାକୁ ଆସିବା ବାଟରେ, ନୃସିଂହନାଥ ମନ୍ଦିରଠାରୁ ପ୍ରାୟ ୧୦ ମାଇଲ ଦୂରରୁ ଆମ୍ଭେମାନେ ଏହି କପିଳଧାର ପ୍ରପାତକୁ ପର୍ବତର ଶ୍ୟାମଳ ଘନବନାନୀ ମଧ୍ୟରେ ରଜତରେଖା ପରି ଦେଖିଲୁଁ ।

ନୃସିଂହନାଥ ମନ୍ଦିର ଓ ତା ଚତୁର୍ଦ୍ଦିଗରେ ଗ୍ରୀଷ୍ମଦିନେ ଖୁବ୍ ଶୀତଳ ବୋଧ ହେଲା । ସେଠାକୁ ଖଡ଼ିଆଳ (୫୫ ମାଇଲ), ରାୟପୁର (୧୦୦ ମାଇଲ), ବଲାଙ୍ଗିର ଓ ଗଡ଼ଜାତରୁ ସହସ୍ର ସହସ୍ର ଯାତ୍ରୀ ଦର୍ଶନ କରିବାକୁ ଆସନ୍ତି । ଆମେମାନେ ଯେଉଁଦିନ ଯାଇଥିଲୁଁ (୧୪.୪.୩୫) ସେଦିନ କିଛି ଯାତ୍ରା ନ ଥିଲା, ତଥାପି ସେଠାରେ ରାୟପୁର ଓ ଖଡ଼ିଆଳ ଅଞ୍ଚଳର ବହୁ ସପରିବାର ଯାତ୍ରୀଙ୍କୁ ଦେଖିଲୁଁ । ଗନ୍ଧମାଦନ ପର୍ବତର ଉତ୍ତର ଢାଲୁରେ ନୃସିଂହନାଥ ଓ କପିଳଧାର ଅବସ୍ଥିତ । ପର୍ବତର ଉତ୍ତର ଢାଲରେ ବୋଡ଼ାସମ୍ବର ଜମିଦାରିଭୁକ୍ତ ଓ ଦକ୍ଷିଣ ଢାଲୁରେ ପାଟଣା ଷ୍ଟେଟ୍ ଅନ୍ତର୍ଗତ ଅଟେ ଓ ପର୍ବତର ଶିଖରଦେଶ ଓ ଦୁଇ ରାଜ୍ୟର ସୀମା ଅଟେ । ଦକ୍ଷିଣ ଢାଲୁରେ ହରିଶଙ୍କର ଦେବଙ୍କ ମନ୍ଦିର । ଉତ୍ତର ଢାଲୁରେ ନୃସିଂହନାଥଙ୍କ ମନ୍ଦିର । ଏ ମନ୍ଦିରଟି ପାଟଣାର ଜନୈକ ରାଜା ବସରାଜ ଦେବଙ୍କ ପୁତ୍ର ବୈଜଳ ଦେବ ନିର୍ମାଣ କରାଇଥିବା ବିଷୟ ଉକ୍ତ ମନ୍ଦିରର ଜଗମୋହନର ବାହ୍ୟଭିତ୍ତିଗାତ୍ରରେ ସଂଯୁକ୍ତ ଖଣ୍ଡିଏ ମୁଗୁନି ପଥରରେ ଚାରିଧାଡ଼ି ଶିଳାଲିପିରୁ ଜଣାଯାଏ ।

ବୈଜଳ ଦେବ ନାମରେ ପାଟଣା ରାଜବଂଶର ଦୁଇ ଜଣ ରାଜାଙ୍କ ନାମ ସ୍ୱର୍ଗୀୟ ରାମଚନ୍ଦ୍ର ମଲ୍ଲିକଙ୍କ 'ସଂକ୍ଷିପ୍ତ କୋଶଳ ଇତିହାସ'ରୁ ମିଳେ । ଉକ୍ତ ଇତିହାସରୁ ଜଣାଯାଏ ଯେ, ବସରାଜ ଦେବ (ଖ୍ରୀ ୧୨୧୭-୧୨୪୬)ଙ୍କ ପୁତ୍ର ପ୍ରଥମ ବୈଜଳ ଦେବ (ଖ୍ରୀ ୧୨୪୬ ଠାରୁ ୧୩୧୧ ପର୍ଯ୍ୟନ୍ତ) ରାଜତ୍ୱ କରୁଥିଲେ ଓ ଏହି ପ୍ରଥମ ବୈଜଳ ଦେବ ନୃସିଂହନାଥଙ୍କ ମନ୍ଦିର ତିଆରି କରାଇ ସେଥିରେ ଗନ୍ଧମାଦନ ପର୍ବତର ଦୁର୍ଗଖୋଲ ଝରଣ ନିକଟରୁ ଭୂଗର୍ଭରୁ ମିଳିଥିବା ନୃସିଂହନାଥଙ୍କ ମୂର୍ତ୍ତିକୁ ପ୍ରତିଷ୍ଠିତ କରାଇଥିଲେ । ନୃସିଂହନାଥଙ୍କ ସେବାପୂଜାପାଇଁ ବୈଜଳ ଦେବ ମହାରାଜ ଲୁହାସିଂହା ଗ୍ରାମ ମାଫି[୧] ଦେଲେ ।

ଆମ୍ଭେମାନେ ସେ ଶିଳାଲିପିଟି ଦେଖିଲୁଁ । ଏହା ପ୍ରାଚୀନ ଓଡ଼ିଆ ଲିପିରେ ଲେଖା । ଅକ୍ଷରମାନଙ୍କ ମୁଣ୍ଡ ଗୋଲ ନ ହୋଇ ସିଧା ଗାର ପଡ଼ିଲା ଭଳି ହୋଇଅଛି ।

ଏମାନ ଆଜିକାଲିର ଗୋଲମୁଣ୍ଡିଆ ଓଡ଼ିଆ ଅକ୍ଷର ନୁହେଁ ଓ ଅଧିକାଂଶ ଅକ୍ଷର ସ୍ପଷ୍ଟରୂପେ ଠଉରାଇ[୨] ହେଉ ନାହିଁ । ଏ ପଥରରେ ସାଢ଼େ ତିନିଧାଡ଼ି ଲେଖା ହୋଇଅଛି । ଆମ୍ଭେମାନେ ଠାସକୁ ମାରି[୩] ଉକ୍ତ ଧାଡ଼ିମାନ ଖଣ୍ଡେ କାଗଜରେ ଉତାରି ଆଣିଲୁଁ -

୧ମ ଧାଡ଼ି – ଓଁ ନମଃ ଶ୍ରୀନୃସିଂହାୟ । ସ୍ୱସ୍ତି ସ୍ୱସ୍ତି ଶ୍ରୀ ବିକାରିନାମ ସଂବସ୍ତରେ ଚୈତ୍ର ପୌର୍ଣ୍ଣମୀ ଶୁକ୍ରବାରେ ହସ୍ତାନକ୍ଷତ୍ରେ ପାଟଣା ନଗରସ୍ଥିତ ବଚ୍ଛରାଜଙ୍କ ସୁପୁତ୍ର ଶ୍ରୀ ବୈଜଳ ।

୨ୟ ଧାଡ଼ି – ଦେବ ସତିହ ୫୦ : ଜରେ ଗନ୍ଧମାଦନ ପର୍ବତେ ବାବାଜି ଶ୍ରୀ ନରସିଂହନାଥ ସ୍ୱାମୀଙ୍କର ଦେଉଳ ତୋଳାଇଲା ନୀତିପ୍ରଭୂଷଣ ରତ୍ନମାଳା ଗାଇ ଶତେକ ଲୋହସିଂହା ।

୩ୟ ଧାଡ଼ି – ଗ୍ରାମଦତ୍ତା : ଦେବତା ସକଳଲୋକ ଦେଖି ଶୁଣି ଦୂଗୀ ଖୋଲ ଝରଣରୁ ଅହଶ୍ଚରାତ୍ରିଶ୍ଚ ଉଭେ ଚ ସଂଧେ ଧର୍ମୋହିଜାନାତି ନରସ୍ୟ ବୃତ୍ତଂ ପାଲିସାନ : : ଲୋମବେଚିଲା‌ଃ ।

୪ର୍ଥ ଧାଡ଼ି – ଦେଉଳ ଦେବ ପ୍ରଶସ୍ତି ବାରୟାମାସ ମାର୍ଜାର ନରସିଂହସ୍ୟ ପ୍ରୀତୟେ ମାତା ।

ସମ୍ବଲପୁରର ବନ୍ଧୁ ଶ୍ରୀମାନ୍ ବିଶ୍ୱକ୍‌ସେନ୍ ଏହି ଲେଖର ପୂର୍ବେ ଗୋଟିଏ ଆକାର (ଯାହା କୌଣସି ପତ୍ରିକାରେ ମୁଦ୍ରିତ ହୋଇଥିଲା ତାହା) ମୋ ନିକଟ ପଠାଇଅଛନ୍ତି । ତହିଁ ସଙ୍ଗେ ମୋ ପାଠରେ ନିମ୍ନୋକ୍ତ ସ୍ଥାନରେ ଅମେଳ ହେଉଅଛି –

୧ମ ଧାଡ଼ି ଠିକ୍ ଅଛି

୨ୟ ଧାଡ଼ି ଠିକ୍ ଅଛି

୩ୟ ଧାଡ଼ି ଓ ୪ର୍ଥ ଧାଡ଼ିର ମୋ ସଂଗୃହୀତ ଲେଖା ସ୍ଥଳରେ ''ଗ୍ରାମଦତ୍ତା ଆଦିତ୍ୟଚନ୍ଦ୍ରା ବନିଳାନଳୌ ଚ ଦ୍ୟୌର୍ଭୂମିରାପୋହୃଦୟଂ ଯମସ୍ୟ ଅହଶ୍ଚରାତ୍ରିଶ୍ଚ ଉଭେ ଚ ସଂଧେ

---

୧. ମାଗଣା, ବିନାଦେୟ, ୨. ଚିହ୍ନିହେବା, ବାରିହେବା, ୩. ଅନୁମାନରେ ।

ଧର୍ମୋହି ଜାନାତି ନରସ୍ୟ ବୃଉଂ-ଶାଳଗ୍ରାମ ପୁରାଣ : : : : : ଦେବ ପ୍ରଶସ୍ତି କାରୟାମାସ ନରସିଂହସ୍ୟ ପ୍ରୀତୟେ'' ମୁଦ୍ରିତ ହୋଇଅଛି । ଆଉ ଥରେ ସେଠାକୁ ଯାଇ ଏହି ଦୁଇ ଲେଖକୁ ମିଳାଇଲେ ଅବା କିଛି ସ୍ଥିର କରାଯାଇପାରିବ ।

ଏ ଶିଳାଲେଖମାନଙ୍କୁ ପ୍ରତ୍ନତତ୍ତ୍ୱବିଦ୍‌ମାନେ ଘାଣ୍ଟନ୍ତୁ[୧] । ଆମେ ମୋଟାମୋଟି ଏହିତା ଦେଖୁଥାଉଁ ଯେ, ଏ ଶିଳାଲିପି ଯୁଗରେ ଚଳୁଥିବା ଓଡ଼ିଆ ଭାଷା ଓ ଆଜିର ଓଡ଼ିଆ ଭାଷା ମଧ୍ୟରେ ପ୍ରଭେଦ ନାହିଁ ବୋଇଲେ ଚଳେ । ସେତେବେଳକୁ ଓଡ଼ିଆ ଭାଷା ଗୋଟିଏ ପୂର୍ଣ୍ଣାଙ୍ଗ ଭାଷା (Fully developed vernacular) ହୋଇଥିଲା । ଅତଏବ ତହିଁର ବହୁ ପୂର୍ବରୁ ଭରତମୁନିଙ୍କ ନାଟ୍ୟଶାସ୍ତ୍ର ଲିଖିତ ଓଡ୍ର ବିଭାଷା ଖ୍ରୀଷ୍ଟାବ୍ଦ ତୃତୀୟ ଶତାବ୍ଦୀରେ କଥ୍ୟଭାଷାରୂପେ ବିଦ୍ୟମାନ ଥିଲା, ଏହା ଅନୁମାନ କରିବା ଅସ୍ୱାଭାବିକ ହେବ ନାହିଁ ।

ଏ ମନ୍ଦିରର ଜଗମୋହନର ଖୁଣ୍ଟଗୁଡ଼ିକ ଏକପ୍ରକାର ରଙ୍ଗଡାଳିମ୍ବା ପଥରର ଓ ତହିଁରେ ଗୁଡ଼ିଏ ଉତ୍କୃଷ୍ଟ ଖୋଦନ କର୍ମ ହୋଇଅଛି । ଓ-ମାଲୀ ସାହେବ ସମ୍ବଲପୁର ଡିଷ୍ଟ୍ରିକ୍ଟ ଗେଜେଟିଅର୍ (ଖ୍ରୀ. ୧୯୦୯)ରେ ଏ ମନ୍ଦିର ସମ୍ବନ୍ଧରେ କେତେକ ଜ୍ଞାତବ୍ୟ ବିଷୟ ଲେଖିଅଛନ୍ତି ଓ ସେ କହିଅଛନ୍ତି ଯେ ଶିଳାଲିପି ୧୩୫୯-୧୩୬୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଉତ୍କୀର୍ଣ୍ଣ ହୋଇଥିଲା । ଶ୍ରୀଯୁକ୍ତ ଡି.ଆର. ଭଣ୍ଡାର୍‌କର୍ ତାଙ୍କ ସଙ୍କଳିତ ୧୯୦୪/୫ ସାଲର 'ଭାରତର ପ୍ରତ୍ନତତ୍ତ୍ୱ ଗବେଷଣା' ରିପୋର୍ଟ 'Archaeological Survey of India'ରେ ମଧ ଏହା ଲେଖିଅଛନ୍ତି । କିନ୍ତୁ ଶିଳାଲିପି ସଙ୍ଗେ ଓ ସ୍ୱର୍ଗୀୟ ରାମଚନ୍ଦ୍ର ମଲ୍ଲିକଙ୍କ କୋଶଳ (ପାଟଣା) ଇତିହାସକୁ ମିଳାଇଲେ ଦେଖାଯାଏ ଯେ, ପାଟଣାରେ ବୈଜଳଦେବ ନାମଧାରୀ ୨ ଜଣ ମହାରାଜ ରାଜତ୍ୱ କରିଥିଲେ । ପ୍ରଥମ ବୈଜଳଦେବ ବସରାଜଦେବଙ୍କ ପୁତ୍ର ଥିବା ଶିଳାଲିପିରେ ଲେଖାଅଛି । ସେ ୧୨୪୬ ଠାରୁ ୧୩୧୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ଓ ନୃସିଂହନାଥ ମନ୍ଦିର ତୋଳାଇଥିଲେ । ଏ ମନ୍ଦିର କୋଣାର୍କ ମନ୍ଦିରର ସାମସମୟିକ ବୋଲି ଓ-ମାଲୀ ଓ ଭଣ୍ଡାର୍‌କର୍ କହିଅଛନ୍ତି । କୋଣାର୍କ ମନ୍ଦିର ୧୨୨୫-୧୨୪୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ତୋଳାଯାଇଥିବା ବିଷୟ ଓଡ଼ିଶା ଇତିହାସରୁ ଜଣାଯାଏ । ସେହି ସମୟ ସଙ୍ଗେ ବୈଜଳଦେବଙ୍କ ରାଜତ୍ୱ (୧୨୪୬-୧୩୧୧)ର ଅଳ୍ପ କେତେ ବର୍ଷ ତଫାତ୍ ହେଉଅଛି । ଅତଏବ ଏ ଦେଉଳ ଓ ଶିଳାଲିପି ଖ୍ରୀଷ୍ଟାବ୍ଦ ଚତୁର୍ଦ୍ଦଶ ଶତାବ୍ଦୀର ନ ହୋଇ, ତ୍ରୟୋଦଶ ଶତାବ୍ଦୀରେ ହୋଇଥିବା କଥାରେ ସନ୍ଦେହ ନାହିଁ । ଦେଉଳ ପଥରରେ ତିଆରି, କିନ୍ତୁ ତହିଁ ଉପରେ ବାରମ୍ବାର ଚୂନ ପଲସ୍ତରା[୨] ହୋଇଥିବାରୁ ଅସଲ ମନ୍ଦିର ଗାତ୍ରର କାରୁକାର୍ଯ୍ୟ କଥା ଧରାପଡୁ[୩] ନାହିଁ, କିନ୍ତୁ ଜଗମୋହନରେ ବିଦ୍ୟମାନ ମୂର୍ତ୍ତିମାନ (ଗଜଲକ୍ଷ୍ମୀ, ଶିବ, ମକରବାହନ ଗଙ୍ଗାଦେବୀ ଓ କୂର୍ମବାହନା ଯମୁନା, ଦ୍ୱାରପାଳ, ନବଗ୍ରହ, ଜୟବିଜୟ) ଓ ମନ୍ଦିରର ବହିର୍ଗାତ୍ରରେ ଚତୁଷ୍କର ତ୍ରିବିକ୍ରମ,

---

୧. ତର୍ଜମା କରିବା, ବ୍ୟାଖ୍ୟା କରିବା, ୨. ପ୍ରଲେପ, ଲେପ, ଉପରେ ମାରିବା, ୩. ଜଣାଯିବା, ବୋଧହେବା ।

ନରସିଂହ ଓ ବରାହଙ୍କ ମୂର୍ତ୍ତିମାନଙ୍କରୁ ଜଣାଯାଏ ଯେ, ଏ ମନ୍ଦିର ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀରେ ଉତ୍କଳର ଅନ୍ୟତ୍ର ପ୍ରଚଳିତ ଶିଳ୍ପକଳା ଅନୁସାରେ ନିର୍ମିତ ହୋଇଥିଲା ।

ନୃସିଂହନାଥ ମନ୍ଦିରରୁ ବିଦାୟ ନେଇ ଆମ୍ଭେମାନେ ରାଜଧାନୀ ପଦ୍ମପୁରରେ ସନ୍ଧ୍ୟାବେଳେ ପହଞ୍ଚିଲୁ । ଦେଖିଲୁ ଯେ, ରାଜାସାହେବ ଆମ୍ଭମାନଙ୍କ ଅପେକ୍ଷାରେ ଭୋଜନ ନ କରି ଅପେକ୍ଷା କରିଅଛନ୍ତି, ଆମ୍ଭେମାନେ ରାଜବାଟୀରେ କିଛି ସମୟ ବିଶ୍ରାମ କରି ରାଜାସାହେବଙ୍କ ଆହ୍ୱାନକ୍ରମେ ରାଜବାଟୀ ପ୍ରାଙ୍ଗଣମଧ୍ୟସ୍ଥ ଗୋଟିଏ ମେଲା ଦଲାଣକୁ ଗଲୁ ଓ ସେ ଗୃହରେ ରାଜାସାହେବ, ରାଜକୁମାର ରାଜନପ୍ତ ଓ ସ୍ଥାନୀୟ ଭଦ୍ରଲୋକମାନଙ୍କ ସହିତ ଆମ୍ଭେମାନେ ପକ୍ୱାନ୍ନ ଦେବପ୍ରସାଦ ସେବା କରି, ଭୋଜନାନ୍ତେ ରାଜାସାହେବଙ୍କଠାରୁ ବିଦାୟ ନେଇ ଡାକ୍ତର କୈଳାସବାବୁଙ୍କ ବସାରେ ବିଶ୍ରାମ କଲୁଁ । ସେଠାରୁ ସେଦିନ ଅପରାହ୍ନରେ ବାହାରି ବରଗଡ଼ରେ ରାତି ୮ଟା ବେଳେ ପହଞ୍ଚି ସେଠାରେ ମୋତେ ଅପେକ୍ଷା କରୁଥିବା ତା'ର ସଂବାଦ ପାଇଲୁଁ ଯେ, ପାଟଣାର ମହାରାଜ ସାହେବ ଶୀଘ୍ର ଫେରିବେ । ଦୁର୍ଭାଗ୍ୟକୁ ସେ ଗଡ଼ରେ ମୋ ବନ୍ଧୁ ଶ୍ରୀ ବାଲୁକେଶ୍ୱର ମିଶ୍ର ଓକିଲଙ୍କ ସଙ୍ଗେ ସାକ୍ଷାତ୍ ହେଲା ନାହିଁ । ସେଠାରେ ଡାକ୍ତରବାବୁ ବାଞ୍ଛାନିଧି ମହାପାତ୍ର (ରାଏସାହେବ୍ ବିଶ୍ୱ ମିଶ୍ରଙ୍କ ସମ୍ବନ୍ଧୀ)ଙ୍କ ନିକଟରେ ଅଯାଚିତୋପମ ଅତିଥି ହୋଇ ତାଙ୍କ ବସାରେ ରାତ୍ରି ଯାପନ କରି ଭୋର୍ ୪ଟା ବେଳେ ଟାକ୍ସିରେ ପାଟଣା ଯାତ୍ରା କଲୁଁ ।

॥ ୩ ॥

୧୬.୪.୩୬ ଭୋର୍ ୬ଟା ବେଳେ ଆମ୍ଭେମାନେ ବଲାଙ୍ଗିରରେ ପହଞ୍ଚିଲୁଁ । ସେଠାରେ ମୋର ବାଲ୍ୟବନ୍ଧୁ, ସହପାଠୀ ଶ୍ରୀବାବୁ ଶଶିଭୂଷଣ ରାୟଙ୍କ ଜାମାତା, ବଲାଙ୍ଗିରର ସବ୍‌ଡିଭିଜନ ଅଫିସର୍ ବାବୁ ଦୁର୍ଗାଚରଣ ରାୟଙ୍କ କୋଠିରେ ଯାଇ ଟାକ୍‌ସୀ ପହଞ୍ଚିଲା । ଆମ୍ଭେମାନେ ଦାଣ୍ଡ ପିଣ୍ଡାରେ ବୋକଚା, ବୋଝ,ଗଣ୍ଠି କରି ପିଠିରେ କୁହାଯାଉଥିବା ପଦାର୍ଥ ବିଛଣା ଆଦି ଟାକ୍‌ସୀରୁ ଉତାରି ରଖିଅଛୁଁ, ଏହି ସମୟରେ ଦୁର୍ଗାଚରଣବାବୁ ଭିତରୁ ବାହାରି ଆସି ମୋତେ ଦେଖି ଭାରି ଖୁସି ହେଲେ ଓ ମୋ ରହିବାପାଇଁ ପୂର୍ବରୁ ସଜ୍ଜିତ କୋଠରିରେ ନେଇ ମୋ ଲୁଗାପଟା ରଖିବାକୁ ତାଙ୍କ ଚାକରକୁ ଆଦେଶ ଦେଲେ । ସେ ସେତେବେଳକୁ ସକାଳୁଆ କଚିରିକୁ ଯିବାପାଇଁ ପୋଷାକ ପିନ୍ଧି ବାହାରିଥାଆନ୍ତି । ମୁଁ ତାଙ୍କଠାରୁ ଟେଲିଗ୍ରାମ୍ ପାଇବାରୁ ବରଗଡ଼ରୁ ସମ୍ବଲପୁରକୁ ଫେରି ନ ଯାଇ ଏଠାକୁ ଆସିଲି ବୋଲି ତାଙ୍କୁ କହିଲି । ସେ କହିଲେ ଯେ, ମହାରାଜ ଷଢ଼େଇକଲା ଯାଇଅଛନ୍ତି, କାଲି ବା ପଅରି ଦିନ (୧୮ ତାରିଖ ଦିନ) ଫେରି ଆସିବେ । ସେ କଚିରିକୁ ଗଲେ ଓ ଗଲାବେଳେ କହିଲେ 'ମୁଁ କଚିରିରୁ ଫେରିଲାବେଳକୁ ଦିନ ଗଡ଼ିଥିବ, ଆପଣ ମୋପାଇଁ ଅପେକ୍ଷା କରିବେ ନାହିଁ । ଖାଇବା ସମୟ ହେଲେ ଆପଣ ଖାଇବେ' । ମୁଁ ଓ ବାବୁ ବିଶ୍ୱକ୍‌ସେନ୍ ଆମପାଇଁ ସଜ୍ଜିତ କୋଠରିରେ ଯାଇ ରହିଲୁଁ । ଦୁର୍ଗାଚରଣଙ୍କ ସହଧର୍ମିଣୀ ଶଶୀବାବୁଙ୍କ ମଝିଆଁ ଝିଅ (ସୁମତି) ମୋର କନ୍ୟାସ୍ଥାନୀୟା । ସେ ପିଲା ଥିଲାବେଳେ

ତାଙ୍କଠାରୁ ରାଧାନାଥଙ୍କର ଗୁଡ଼ିଏ ଛତ୍ରର ଆବୃତ୍ତି ମୁଁ ଶଶୀବାବୁଙ୍କ ଘରେ ଏବଂ ରାଧାନାଥଙ୍କ ପ୍ରତିମୂର୍ତ୍ତି ଉଦ୍‌ଘାଟନବେଳେ ଏକାଧିକ ଥର ଶୁଣିଥିଲି । କିନ୍ତୁ ସେ ବିବାହ କରିବା ପରେ ମୁଁ ଆଉ ତାଙ୍କୁ ଦେଖି ନ ଥିଲି । ବାବୁ ଦୁର୍ଗାଚରଣ କଚିରିକୁ ଯିବା ପରେ ତାଙ୍କ ସାନଝିଅ ଟୁନ (ବୟସ ୭ ବର୍ଷ) ଓ ପୁଅ ଭାନୁ (ବୟସ ୫ ବର୍ଷ) ଦାଣ୍ଡଘରକୁ ଆସି ମୋ ଆଗରେ ଦୁଇଟି ରେକାବୀରେ[୧] ଗୁଡ଼ିଏ ପାନଖିଲ ଆଣି ଥୋଇଦେଲେ ଓ ମୋ ଗୋଡ଼ ତଳେ ପଡ଼ିଲେ । ତାଙ୍କର ଉକ୍ତ ଝିଅକୁ ଓ ପୁଅକୁ ମୁଁ ଗତ ଥର (୧୯୩୬ ଜାନୁଆରି ମାସରେ) ବଲାଙ୍ଗିରକୁ ଆସିଲା ସମୟରେ ଦେଖିଥିଲି । ସେମାନେ ମୋ ଗୋଡ଼ତଳେ ପଡ଼ିସାରିବା ପରେ ପୁଅଟି ଗମ୍ଭୀର ଅଥଚ ସ୍ପଷ୍ଟଭାବରେ କହିଲା, 'ଅଜା' ! ମାଆ ଆପଣଙ୍କୁ ଦଣ୍ଡବତ ହେଉଅଛନ୍ତି ।'' ମୁଁ ଶୁଣି କହିଲି ''ମାଙ୍କୁ କହିଦିଅ ଯେ ଆମେ ଆଶୀର୍ବାଦ କରୁଛୁ ଯେ, ସେ ଅଇସୁଲକ୍ଷଣୀ ହୋଇ ଝିଅପୁଅ, ଜୋଇଁବୋହୂ, ନାତିନାତୁଣୀ ଓ ନାତୁଣୀବୋହୂ ଘେନି ଧନ ଜନ ଗୋପ ଲକ୍ଷ୍ମୀ ସହିତ ଚିରଞ୍ଜୀବୀ ହୋଇ ବସିଥାଆନ୍ତୁ ।'' ପାଞ୍ଚ ବର୍ଷର ପିଲା ପକ୍ଷରେ ଏତେଗୁଡ଼ିଏ ବାକ୍ୟ ମନେ ରଖି ମାଆଙ୍କ ଆଗେ ରିପୋଟ୍ କରିବା ତାହାର ସାଧ୍ୟାତୀତ ବୋଲି ଭାନୁ ଜାଣି ମୋ ମୁହଁକୁ ଚାହିଁ ରହିଲା । କିନ୍ତୁ ତତ୍‌କ୍ଷଣାତ୍ ଟୁନୁ ତା ଆଗ ବଢ଼ି, ତାକୁ ସମ୍ବୋଧ କରି କହିଲା 'ଭାନୁ ! ମୁଁ ମାଆଙ୍କୁ ଅଜାଙ୍କ କଥାଯାକ କହିଦେବି ଯେ ।' ଆରଥର (ଗତ ଜାନୁଆରୀ ମାସରେ) ଯେତେବେଳେ ମୁଁ ବଲାଙ୍ଗିର ଆସିଥିଲି, ଦୁର୍ଗାଚରଣବାବୁ ଟିଟିଲାଗଡ଼ର ସବ୍‌ଡିଭିଜନ୍ ଅଫିସର୍ କାର୍ଯ୍ୟରୁ ବଦଳି ହୋଇ ବଲାଙ୍ଗିର ସଦରକୁ ଆସିଲେଣି ବୋଲି ମୋତେ ଜଣା ନ ଥିଲା । ସେଥର ଜଣେ ଅମଲା ବନ୍ଧୁଙ୍କ କୁଟୀରରେ ରାତ୍ରି ଯାପନ କରିଥିଲି । ଭୋର୍ ୩ଟା ବେଳେ ଉଠି ମୋତେ ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ ପ୍ରାତଃକୃତ୍ୟ ଶେଷ କରି, ଭୋର ୫ଟାବେଳେ ଅମଲାବନ୍ଧୁଙ୍କ ମେଷକୁଟୀରସ୍ଥ ଖଟିଆରେ ବସି ଡାଇରି ଲେଖୁଛି, ବଲାଙ୍ଗିର ପୃଥ୍ୱୀରାଜ ହାଇସ୍କୁଲର ହେଡ୍‌ମାଷ୍ଟର ବାବୁ ଅଦ୍ୱୈତପ୍ରସାଦ ଦାସ ଆସି ସେହି କୁଡ଼ିଆରେ ପଶି ମୋ ଗଣ୍ଡିରା ଆଦି ସ୍ଥାନାନ୍ତର କରିବାକୁ ଉଦ୍ୟତ ହେଲେ । ଏହା ଦେଖି ତାଙ୍କ ଖାନତଲାସି ଓ ମାଲଚାଲାଣୀକୁ ଅବନତ ମସ୍ତକରେ ସ୍ୱୀକାର କଲି ଓ ମୋତେ ହେଡ୍‌ମାଷ୍ଟର୍ ମହାଶୟ ସଙ୍ଗରେ ନେଇ ହୋଟେଲ୍ (ଛାତ୍ରାବାସ)ର ଗୋଟିଏ ନିଭୃତ, ହେଡ୍ ପଣ୍ଡିତ-ଅଧ୍ୟୁଷିତ ଏକଣା କୋଠରିରେ[୨] ମୋ ଜିନିଷପତ୍ର ରଖାଇଲେ । ସେଠାରେ ଲୁଗାପଟା ଓ ବିଛଣା ଆଦି ସହିତ କଲାବେଳକୁ ସଦର ସବ୍‌ଡିଭିଜନ୍ ଅଫିସରଙ୍କଠାରୁ ଆସିଲା ଉଠିଆ ତଲବ୍ । ଦୁର୍ଗାଚରଣବାବୁ ବଲାଙ୍ଗିରର ଏସ.ଡି.ଓ. ତାଙ୍କ କୋଠିକୁ ମୋ ଲୁଗାପଟା ନେବାକୁ ବୋଝିଆ ପଠାଇଛନ୍ତି । ଆସିଥିବା ଭାରବାହକମାନଙ୍କୁ ଲୁଗାପଟା ବୁହାବୋହିର ବ୍ୟବସ୍ଥା ଆପାତତଃ ସ୍ଥଗିତ ରଖିବାକୁ କହି ମୁଁ ନିଜେ ଦୁର୍ଗାଚରଣବାବୁଙ୍କ କୋଠିକୁ ଗଲି ଓ ତାଙ୍କୁ କହିଲି ଯେ, ଏଣିକି ଏଠାକୁ ଆସିଲେ ତାଙ୍କ ବସାରେ ରହିବି । ବର୍ତ୍ତମାନ ହୋଷ୍ଟେଲ୍‌ରେ

---

୧. ଧାତୁତିଆରି ଚଉଡ଼ାମୁହାଁ ପାତ୍ର, ୧. ଖଞ୍ଜାର ଗୋଟିଏ ପାଖରେ ଥିବା କୋଠରି ।

ଲୁଗାପଟା ରହିଲାଣି, ପୁଣି ସ୍ଥାନାନ୍ତର ବ୍ୟବସ୍ଥା ହେଲେ ହଇରାଣ ପଡ଼ିବ । ଦୁର୍ଗାଚରଣବାବୁ ଗୋଟିଏ ସର୍ତ୍ତରେ ରାଜି ହେଲେ । ମୁଁ ହଷ୍ଟେଲ୍‌ରେ ରହିବି, କିନ୍ତୁ ତାଙ୍କ ସଙ୍ଗେ ତାଙ୍କ ଘରେ ମୋ ଭୋଜନକର୍ମ ସମାଧାନର ବ୍ୟବସ୍ଥା ହେବ । ସେହି ସମୟରେ ବାବୁଙ୍କ ସାନପୁଅ (ଭାନୁ) ସାନଝିଅ (ଟୁନୁ)ଙ୍କ ସଙ୍ଗେ ମୋର ଚାକ୍ଷୁଷ ପରିଚୟ ହୋଇଥିଲା । ଶଶୀବାବୁଙ୍କ ସଙ୍ଗେ ମୋର ଆଜିକୁ ୫୦ ବର୍ଷ ହେଲା ବନ୍ଧୁତା । ତାଙ୍କ ଝିଅଜୋଇଁ ମୋ ସଙ୍ଗେ ଶଶୀବାବୁଙ୍କ ଯୋଗୁଁ ସମ୍ପୃକ୍ତ । ଏହି ହେମ୍ମତ୍‌ରେ[1] ଦୁର୍ଗାଚରଣଙ୍କ ଭିତର ଖଞ୍ଜାକୁ ପଶିଗଲି । ତାଙ୍କ ସ୍ତ୍ରୀ ଭିତର ବରଣ୍ଡାରେ ଥିଲେ, ମୋତେ ଦେଖି ଲୁଚିଲେ ଓ ଦୁଆରବନ୍ଧର ଅନ୍ତରାଳରେ ରହି ମୋ ଉଦ୍ଦେଶ୍ୟରେ ଚଉକାଠ ଉପରେ ଗୋଟିଏ ମୁଣ୍ଡିଆ ମାରିବା ମୁଁ ଦେଖିଥିଲି ଓ ତଦବସ୍ଥ ତାଙ୍କୁ ଆଶୀର୍ବାଦ କରିଥିଲି । ଗତ ଥରର ଏ ଅଭିଜ୍ଞତା ଥିବାରୁ ଏଥର ମୁଁ ଭିତର ଖଞ୍ଜାକୁ ନ ପଶି ପୂଜାହାରୀ, ଭୃତ୍ୟ ଓ ପିଲାଙ୍କଦ୍ୱାରା 'ମା ଠାକୁରାଣୀ'ଙ୍କୁ ମୋ ଆଶୀର୍ବାଦ ଜଣାଇ ଦେଇ ବାହାର ପାଖେ ଚଳାଚଳ ହେଲି । ଦୁର୍ଗାଚରଣବାବୁ କଚିରିକୁ ଗଲେ । ଏ ଓଳି ମଧ୍ୟାହ୍ନଭୋଜନ ପୂର୍ବରୁ ମୁଁ କିଛି ଜଳଖିଆ କରେ ନାହିଁ ଓ ଗିଲାସେ ସରବତ୍ (ମିଶ୍ରିପଣା) ହେଲେ ମୋର ଚଳିବ ବୋଲି 'ମା ଠାକୁରାଣୀ'ଙ୍କ ଠାକୁ ସମ୍ବାଦ ଦେଲି । ତତ୍‌କ୍ଷଣାତ୍ ଗିଲାସେ ମିଶ୍ରି ପଣା ଓ ଗିଲାସେ ଘୋଳ ଦହି ସରବତ୍ ମୋ ସାମନାରେ ଆସି ପହଞ୍ଚିଲା । ମୁଁ ସେତକର ସଦ୍‌ବ୍ୟବହାର କରି ମୋପାଇଁ ସଜ୍ଜିତ କୋଠରିରେ ବିଶ୍ରାମ କଲି । ମୋ ସହଯାତ୍ରୀ ବିଶ୍ୱକ୍‌ସେନ୍‌ବାବୁଙ୍କପାଇଁ ଅନ୍ଦର ମହଲରୁ ଚାହା ଓ ଜଳଖିଆ ଓ ମୋ ପାଚକପାଇଁ ଜଳଖିଆ ଆସି ପହଞ୍ଚିଗଲା । ଦିନ ୧୦.୩୦ ବେଳକୁ ପାଚକ ଆସି ଠାଆକୁ[2] ଯିବାକୁ ଡାକିବାରୁ ଆମେ ଭିତର ଖଞ୍ଜାକୁ ଯାଇ ସେଠାରେ ପଡ଼ିଥିବା ଆସନରେ ବସିଲୁଁ । ଷ୍ଟେଟକୁ ନୂଆ ହୋଇ ଆସିଥିବା ଯୁବକ ଜିଓଲଜିଷ୍ଟ (ଭୂତତ୍ତ୍ୱବିତ୍) ମିଷ୍ଟର ନନ୍ଦୀଙ୍କପାଇଁ ସ୍ୱତନ୍ତ୍ର ବାସଗୃହ (କ୍ୱାର୍ଟର୍)ର ବ୍ୟବସ୍ଥା ଷ୍ଟେଟ୍ ତରଫରୁ କରାଯାଉଥିଲା । କ୍ୱାର୍ଟର୍ ନିର୍ମାଣ କର୍ମର ସମାପ୍ତି ନ ହେବା ପର୍ଯ୍ୟନ୍ତ ଜିଓଲଜିଷ୍ଟ ଦୁର୍ଗାଚରଣଙ୍କ କୋଠିରେ ମଧ ଥାଆନ୍ତି । ତାଙ୍କର, ବିଶ୍ୱକ୍‌ସେନ୍‌ବାବୁଙ୍କର ଓ ମୋର ଏକ ସ୍ଥାନରେ ଠାଆ ହେଲା ଓ ଚାହୁଁ ଚାହୁଁ ପକ୍ୱଦ୍ରବ୍ୟପୂର୍ଣ୍ଣ ଭିନ୍ନ ଭିନ୍ନ ଥାଳି, ଗିନା, ଥାଳିଆ, ରେକାବି, କଂସା ଆସି ଆମ ଆଗରେ ପୂଜାହାରୀ ଥୋଇଲେ । ଦୁର୍ଗାଚରଣ କଚେରିରୁ ଫେରୁ ଫେରୁ ୧.୩୦/ ୨ଟା ବାଜିବ, ଏହି ସମ୍ବାଦ ଶୁଣି ଅଗତ୍ୟା ଆମ୍ଭେମାନେ ଜଠରସ୍ଥ ଜୀବାତ୍ମାଙ୍କ ସେବାରେ ଲାଗିଲୁଁ । ଭୋଜନ ସାରି ଗତ ରାତ୍ରିର ଅନିଦ୍ରା ମେଣ୍ଟାଇବାପାଇଁ ମୁଁ ବିଛଣା ଧଇଲି – ଦିବା ଓ ନିଦ୍ରାରୁ ଦିନ ୩ଟା ବେଳେ ମୁକ୍ତ ହେଲି । ସେତେବେଳକୁ ଦୁର୍ଗାଚରଣବାବୁ କଚିରିରୁ ଆସି ଭୋଜନ ଓ ବିଶ୍ରାମ କରି ତାଙ୍କ କୋଠିର ଅଫିସ୍ ରୁମ୍‌ରେ ବସି ତାଙ୍କର ଦୈନନ୍ଦିନ ନଥି ଦେଖା ଓ ଅର୍ଡ଼ର

---

୧. ସାହସ, ୨. ଖାଇବା

ଆଦି ଲେଖା କର୍ମରେ ଲାଗିଲେଣି । ସେ ସରକାରୀ କାମରେ ଗୁଡ଼ିଏ ତାଡ଼ା (bundle)ର କାମ ଶେଷ କରି ସନ୍ଧ୍ୟା ୫ଟା ବେଳେ ତାଙ୍କ କୋଠିର ସମ୍ମୁଖରେ ସଂଲଗ୍ନ ଗୋଟିଏ ପକ୍କା ଚାନ୍ଦିନୀରେ ଜମିଥିବା ଆମ୍ଭମାନଙ୍କ ବୈଠକରେ ଯୋଗ ଦେଲେ ।

ଦେବାନ୍ ସାହେବଙ୍କ ଷ୍ଟେନୋଗ୍ରାଫର୍ (ବାବୁ ଦିବ୍ୟସିଂହ ନାୟକ), କେତେକ ସମ୍ବାଦପତ୍ରର ବଲାଙ୍ଗିରସ୍ଥ ସମ୍ବାଦଦାତା (ବାବୁ ତ୍ରିଲୋଚନ ପଟ୍ଟନାୟକ), ବଲାଙ୍ଗିର ଟ୍ରେନିଙ୍ଗ୍ ସ୍କୁଲର ପଣ୍ଡିତ (ବାବୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ) ଆଦି କେତେ ସାହିତ୍ୟିକ ବନ୍ଧୁ ମୋର ବଲାଙ୍ଗିରରେ ଉପସ୍ଥିତି କଥା ଅବଗତ ହୋଇ ମୋତେ ସଙ୍ଖୋଳିବାକୁ ଆସିଲେ । ବାବୁ ନାରାୟଣ ନନ୍ଦ, (ଡେପୁଟି ମାଜିଷ୍ଟ୍ରେଟ୍, ଅନୁଗୁଳ) ଏହି ରାଜ୍ୟର ଜଣେ ପ୍ରଜା ଅଟନ୍ତି । ତାଙ୍କ ପୁତ୍ର ଷ୍ଟେଟ୍‌ରେ ଜଣେ ଉଚ୍ଚ କର୍ମଚାରୀ ହୋଇଅଛନ୍ତି ଓ ଷ୍ଟେଟ୍ ସର୍ଭିସ୍‌ରେ ତାଙ୍କର ଅଳ୍ପଦିନ ତଳେ ପାହ୍ୟା ବଢ଼ିଅଛି । ବାବୁ ନାରାୟଣ ନନ୍ଦ ପୂର୍ବରୁ କରିଥିବା ମାନସିକକୁ କର୍ମରେ ପରିଣତ କରିବାପାଇଁ ଏ ରାଜଧାନୀସ୍ଥ ନୃସିଂହନାଥଙ୍କ ମନ୍ଦିରରେ ତିନିଦିନ ହେଲା ଅହୋରାତ୍ର 'ନାମଯଜ୍ଞ' କରାଉ ଥାଆନ୍ତି । ୧୬.୪.୩୫ ତାରିଖ ସନ୍ଧ୍ୟାବେଳେ ନାମଯଜ୍ଞର ଉଦ୍ୟାପନା[୧] ସମ୍ପର୍କରେ ଖୁବ୍ ଆଡ଼ମ୍ବର ସହ ନଗରକୀର୍ତ୍ତନ ଓ ଶୋଭାଯାତ୍ରା ହେଲା । ନାରାୟଣବାବୁ ଶୋଭାଯାତ୍ରାର ବିମାନ ଓ ପାଲିଙ୍କିବିହାରୀ ଦେବ ବିଗ୍ରହମାନଙ୍କ ଆଗରେ ସହସ୍ରସଂଖ୍ୟକ ଘୃତାକ୍ତ ବର୍ତ୍ତିକାମୟ ଆଲୋକକୁ ଲଗାଇ ସ୍ୱୟଂ ଆରତି କଲେ । ସେହି ସମୟରେ ସମବେତ ବହୁସହସ୍ର ଜନତାଙ୍କ କଣ୍ଠୋତ୍ଥିତ 'ହରେକୃଷ୍ଣ ହରେରାମ, ନିତାଇ ଗୌର ରାଧେଶ୍ୟାମ,' ହରିବୋଲ, ହୁଳୁହୁଳୀରେ ଓ ସଂକୀର୍ତ୍ତନସ୍ଥ ଖୋଳ କରତାଳର ଧ୍ୱନିରେ ନଗର ଉଚ୍ଛୁଳି ଉଠୁଥାଏ । ସେହି ଗହଳିରେ ମୋ ସୁପରିଚିତ ବନ୍ଧୁ ଡେପୁଟି କଲେକ୍ଟର ବାବୁ ସତୀଶଚନ୍ଦ୍ର ବାନାର୍ଜୀଙ୍କ ସଙ୍ଗେ ଦେଖାହେଲା । ଏହାଙ୍କ ସ୍ୱର୍ଗୀୟ ପିତୃଦେବ ଭଦ୍ରକ ହାଇସ୍କୁଲରେ ଆଜୀବନ ହେଡ୍‌ମାଷ୍ଟରି କର୍ମ କରିଥିଲେ । ତାଙ୍କର ସଂସ୍କୃତରେ ଅଗାଧ ପାଣ୍ଡିତ୍ୟ, ଆଶୁକବିତା ରଚନଶକ୍ତି ଓ ଅଳଙ୍କାରଶାସ୍ତ୍ର ଜ୍ଞାନଯୋଗୁଁ ସେ ଉତ୍କଳଖଣ୍ଡର ପଣ୍ଡିତମଣ୍ଡଳୀରେ ସୁପରିଚିତ ଥିଲେ । ଉତ୍କଳରେ ତାଙ୍କର ସହସ୍ରାଧିକ ଛାତ୍ର, ଶିଷ୍ୟ ଓ ଭକ୍ତ ଅଛନ୍ତି । ମୁଁ ତାଙ୍କ ଅଧମ ଭକ୍ତମାନଙ୍କ ମଧ୍ୟରୁ ଜଣେ । ସ୍ୱର୍ଗୀୟ ସମ୍ରାଟ୍ ପଞ୍ଚମଜର୍ଜ୍ଜଙ୍କ ସିଂହାସନାରୋହଣ ଉପଲକ୍ଷରେ ସେ ସଂସ୍କୃତରେ ଗୋଟିଏ ଶତକ ରଚନା କରିଥିଲେ । ତହିଁର ପ୍ରତ୍ୟେକ ଶ୍ଳୋକରେ ଶେଷ ଚରଣ ଥିଲା, 'ସମ୍ରାଡ୍‌ବରୀବର୍ତ୍ତୁ ଜର୍ଜ୍ଜଏଷଃ' । ସେ ଶ୍ଳୋକମାନ ତାଙ୍କଠାରୁ ଶୁଣି ମୁଁ ଏଡ଼େ ବିମୁଗ୍ଧ ହୋଇଥିଲି ଯେ, ଶେଷ ଚରଣ ଗତ ୨୫ ବର୍ଷରେ ମୋର ପାସୋର ହୋଇ ନାହିଁ । ସ୍ୱର୍ଗୀୟ ହେଡ୍‌ମାଷ୍ଟରଙ୍କ ଯୋଗ୍ୟପୁତ୍ର ଡେପୁଟି କଲେକ୍ଟର୍ ସତୀଶବାବୁଙ୍କୁ ପାଟଣାର ମହାରାଜ ସରକାରଙ୍କଠାରୁ ଧାର ଆଣି ତାଙ୍କୁ ରାଜ୍ୟର ସେଟେଲ୍‌ମେଣ୍ଟ୍ ଅଫିସର୍ କରିଅଛନ୍ତି । ରାଜ୍ୟର ବନ୍ଦୋବସ୍ତ ଓ ଜମା ଧାର୍ଯ୍ୟ ହୋଇଥିବା ଜୋତମାନଙ୍କ[୨] ଉପରେ ରାଜସ୍ୱ ନିର୍ଦ୍ଧାରଣାଦି କର୍ମ ସତୀଶବାବୁ

୧. ସମାପ୍ତି, ଉଦ୍‌ଯାପନ, ୨. ରୟତ ଚାଷ କରୁଥିବା ଜମିଦାରଙ୍କ ଜମି ।

ବହୁ ଯତ୍ନପୂର୍ବକ କରୁଅଛନ୍ତି । ସେଟଲ୍‌ମେଣ୍ଟ୍ ହେବା ପୂର୍ବରୁ ସେଟଲ୍‌ମେଣ୍ଟ୍‌ପାଇଁ ଅଟକଳ ଓ ମଞ୍ଜୁର ହୋଇଥିବା ଖରଚ ଅପେକ୍ଷା ସତୀଶବାବୁ ତନଖିରେ[୧] ହେଉଥିବା ପ୍ରକୃତ ଖରଚ ଢେର୍ କମି ହେବ ବୋଲି ଦେଖାଗଲାଣି ଅଥଚ ଅଟକଳ କରାଯାଇଥିବା ସମୟର ମିଆଦ ମଧ୍ୟରେ ସେଟଲ୍‌ମେଣ୍ଟ୍ କର୍ମ ସମାପ୍ତ ହେବ ଓ ଆଗାମୀ ବର୍ଷଠାରୁ ନୂଆ ବନ୍ଦୋବସ୍ତରେ ସ୍ଥିରୀକୃତ ଖଜଣା ପ୍ରଜାମାନଙ୍କଠାରୁ ଆଦାୟ କରାଯିବ ବୋଲି କଳ୍ପିତ ହେଉଅଛି । ସତୀଶବାବୁ ତାଙ୍କ ପିତୃପଦାଙ୍କ ଅନୁସରଣ କରି ମୋତେ ଭାରି ସ୍ନେହ କରନ୍ତି । ଗତଥର ବଲାଙ୍ଗିର ଆସିଥିଲା ବେଳେ ସତୀଶବାବୁଙ୍କ ସଙ୍ଗେ ଭାଷାକୋଷ ସମ୍ବନ୍ଧେ ଢେର୍ ଦୁଃଖସୁଖ ପଡ଼ିଥିଲା । ଦେଖିଲି ଯେ, ଭାଷାକୋଷର ଇତିହାସ, ଆର୍ଥିକ ପରିସ୍ଥିତି, ଭାଷାକୋଷର ସମ୍ମାର୍ଜନ, ମୁଦ୍ରଣ ଆଦି ବିଷୟରେ ଅନେକ ଗୁରୁତର ସଂବାଦମାନ ତାଙ୍କୁ ପୂର୍ବରୁ ଜଣା ଓ ସେହି ସମୟରେ ଭାଷାକୋଷର ଦୁଇଜଣ ଗୋଡ଼ା ଭକ୍ତ[୨] (ବାବୁ ଦୁର୍ଗାଚରଣ ଓ ଶ୍ରୀ ସତୀଶବାବୁ)ଙ୍କୁ ବଲାଙ୍ଗିରରେ ପାଇ ମୁଁ ସୁଖୀ ହୋଇଥିଲି । ବହୁକାଳ ହେଲା ମୁଁ ରାତ୍ରଭୋଜନ ଛାଡ଼ିଛି । ଅତଏବ ନନ୍ଦ ମହାଶୟଙ୍କ ଶୋଭାଯାତ୍ରା ପରେ ନୃସିଂହନାଥଙ୍କ ମନ୍ଦିରରେ ପ୍ରସାଦ ସେବାପାଇଁ ନିମନ୍ତ୍ରଣ ପାଇଥିଲେହେଁ, ମୁଁ ତହିଁରେ ଯୋଗ ଦେଲି ନାହିଁ । କିନ୍ତୁ ନିମନ୍ତ୍ରଣ ରକ୍ଷା କରିବାପାଇଁ ନୃସିଂହନାଥଙ୍କ ମନ୍ଦିରକୁ ଯାଇ ପ୍ରସାଦସେବା ପୂର୍ବରୁ ହାଜିରା ଦେଇ ଆସିଲି । ଏଠାରେ କହିବା ଉଚିତ ଯେ, ନୃସିଂହନାଥ ମନ୍ଦିରର ସାଜସଜ୍ଜା ଦେଖି ମୁଁ ମୁଗ୍ଧ ହେଲି । ମନ୍ଦିରରେ ଦେବବିଗ୍ରହ ବହୁମୂଲ୍ୟ ସାଜସଜ୍ଜାରେ ସଜ୍ଜିତ । ମନ୍ଦିରର ଓ ଜଗମୋହନର ଭିତ୍ତି ଓ ପତନ ପ୍ରାକୃତ ଓ କୃତ୍ରିମ ମର୍ମର ପ୍ରସ୍ତରଜଡ଼ିତ ଓ ମନ୍ଦିରମାନଙ୍କ ଛାତରୁ ଅନେକ କାଚର ଆଲୋକ ପାତ୍ର ଝୁଲୁଅଛି । ଅବଗତ ହେଲି ଯେ, ମହାରାଜ ଦେବଙ୍କ ସେବାପୂଜା ବିଷୟରେ ତୀକ୍ଷ୍ଣ ଦୃଷ୍ଟି ରଖନ୍ତି । ଏଠାରେ ଅତିଥି ଅଭ୍ୟାଗତଙ୍କ ଚର୍ଚ୍ଚାର ବ୍ୟବସ୍ଥା ଅଛି ଓ ଆଗନ୍ତୁକ ଭଦ୍ରବ୍ୟକ୍ତିମାନଙ୍କପାଇଁ ଦ୍ୱିତଳ ପ୍ରାସାଦ ଅଛି । ମହାରାଜଙ୍କ ଆନୁକୂଲ୍ୟରେ ସାଧାରଣଙ୍କଠାରୁ ଚାନ୍ଦା ଅସୁଲ ହୋଇ ମନ୍ଦିରର ଓ ଜଗମୋହନର ସଜ୍ଜା କରାଯାଇଅଛି । ଏଥିରେ ଷ୍ଟେଟର କଚ୍ଛୀ[୩] କଣ୍ଟ୍ରାକ୍ଟର ମହାଶୟ ବିଶିଷ୍ଟ ଅର୍ଥ ସାହାଯ୍ୟ କରିଅଛନ୍ତି । ତହିଁ ଆରଦିନ ସକାଳେ ନାରାୟଣବାବୁ ଗୋଟିଏ ବଡ଼ ଥାଳିରେ ଗୁଡ଼ିଏ ମିଷ୍ଟାନ୍ନ ଭୋଗ ମୋ ଡେରାକୁ ପଠାଇ ଦେଲେ ।

୧୭.୪.୩୬ ଅପରାହ୍ଣରେ ବାବୁ ଦୁର୍ଗାଚରଣଙ୍କ ସଙ୍ଗେ ସତୀଶବାବୁଙ୍କୁ ଦେଖା କରିବାକୁ ଗଲି । ତାଙ୍କ ସଙ୍ଗେ କ୍ଲବରେ ଟେନିସ୍ ପଡ଼ିଆରେ ଦେଖାହେଲା । ମୁଁ ଗତ ଜାନୁଆରୀ ମାସରେ ଏଠାରେ ମହାରାଜଙ୍କୁ ଭେଟି କଟକ ଫେରିଯିବା ପରେ ଇତିମଧ୍ୟରେ କଥାପ୍ରସଙ୍ଗରେ ମହାରାଜଙ୍କ ଶ୍ରୀମୁଖରୁ ଭାଷାକୋଷ ପ୍ରତି ଶ୍ରୀଛାମୁଙ୍କର ଗଭୀର ସହାନୁଭୂତିସୂଚକ ବଚନ ଶୁଣାଯାଇଅଛି ବୋଲି ସ୍ଥାନୀୟ ସରକାରୀ ଓ ବେସରକାରୀ କତିପୟ ବିଶିଷ୍ଟ ବ୍ୟକ୍ତିଙ୍କଠାରୁ ଶୁଣି ମୁଁ ପ୍ରୀତ ଓ ଆଶ୍ୱସ୍ତ ହେଲି ।

---

୧. ପ୍ରତ୍ୟକ୍ଷ ତତ୍ତ୍ୱାବଧାନ, ତଦାରଖ, ୨. ଖାସ୍, ବିଶ୍ୱସ୍ତ, ୩. ଗୁଜୁରାଟର କଚ୍ଛ ଅଞ୍ଚଳରୁ ଆସିଥିବା ।

'କବିବର ରାଧାନାଥଙ୍କ ଜୀବନୀ' ନାମକ ବହିକୁ ବାବୁ ଦୁର୍ଗାଚରଣ ସଙ୍କଳନ କରିଅଛନ୍ତି । ସେହି ପାଣ୍ଡୁଲିପି ଆଠମଲ୍ଲିକର ସାହିତ୍ୟାନୁରାଗୀ ରାଧାନାଥପ୍ରେମିକ, ରୁଲିଙ୍ଗ୍ ଚିଫ୍ ରାଜା ଶ୍ରୀ କିଶୋରଚନ୍ଦ୍ର ଦେବଙ୍କ ଅର୍ଥାନୁକୂଲ୍ୟରେ କଟକର ଉତ୍କଳ ସାହିତ୍ୟ ପ୍ରେସରେ ମୁଦ୍ରିତ ହେବାର ସମ୍ଭାବନା ଥିବାରୁ, ଉକ୍ତ ପୁସ୍ତକର ପ୍ରୁଫ୍ ସଂଶୋଧନର ଭାର ବାବୁ ଦୁର୍ଗାଚରଣ ମୋ ଉପରେ ଲଦି ଦେଲେ । ଭାଷାକୋଷର ଭାବୀ ସହାୟକ ଓ ପୃଷ୍ଠପୋଷକମାନଙ୍କ ଆଗରେ ଚୁଗୁଲି କରି ସେମାନଙ୍କୁ ସେମାନଙ୍କ କଳ୍ପିତ ସାହାଯ୍ୟ କରିବା ସଙ୍କଳ୍ପରୁ ନିବର୍ତ୍ତାଇବାପାଇଁ କେତେ ଜଣ ସାହିତ୍ୟସେବୀ ମାର୍କାମରା କଟକିଆ ବନ୍ଧୁ କମରକଷି ସ୍ୱନାମୀ ଓ ବେନାମୀ ଉପାୟମାନ ଅବଲମ୍ବନ କରିଥିବା ଓ କରୁଥିବା କଥା ମୁଁ ଇତିପୂର୍ବରୁ ଖୋଦ୍ କେତେକ ସହାୟକ ଓ ପୃଷ୍ଠପୋଷକଙ୍କ ପ୍ରମୁଖାତ୍ ଶୁଣିଥିଲି । ବାବୁ ଦୁର୍ଗାଚରଣଙ୍କ ଘରେ ସ୍ଥାନୀୟ କେତେକ ସାହିତ୍ୟାନୁରାଗୀ ବ୍ୟକ୍ତିଙ୍କ ସହିତ ମୋର ସାନ୍ଧ୍ୟ ବୈଠକରେ ଏ ଉପକାରୀ ବନ୍ଧୁମାନଙ୍କ କଥାପ୍ରସଙ୍ଗ ଉଠିଲା । ପାଟଣା ମହାରାଜଙ୍କ ଦରବାରରୁ ଏହି ଶ୍ରେଣୀର ଚୁଗୁଲିଆ ବନ୍ଧୁଙ୍କ ଆଗମନ ଅସମ୍ଭବ ନୁହେଁ ବୋଲି ସମବେତ ବନ୍ଧୁମାନେ କହିଲେ । କିନ୍ତୁ ବନ୍ଧୁମାନେ ସମସ୍ତେ ଏକମୁଖରେ କହିଲେ ଯେ, ମହାରାଜ ରାଜେନ୍ଦ୍ରନାରାୟଣ ଚୁଗୁଲିଦ୍ୱାରା ବିଚଳିତ ହୋଇ ତାଙ୍କର କୌଣସି ସାଧୁସଙ୍କଳ୍ପରୁ ବିଚଳିତ ହୋଇଥିବା କଥା କେବେ ହେଲେ ଶୁଣା ନାହିଁ କି ଜଣା ନାହିଁ । ସେମାନେ କହିଲେ ଯେ, ମହାରାଜଙ୍କ ଛାମୁରେ ଉତ୍କଳଖଣ୍ଡର ତଥା ଦେଶ ବିଦେଶର ହରେକ୍[1] କିସମର[2] ମନୁଷ୍ୟ ଓ ମନୁଷ୍ୟ ରୂପ ଭେକଧାରୀ ଜୀବ ନିଜ ନିଜର ଅଭାବପୂରଣାର୍ଥ ଝୁଲିମୁଣି ଧରି ଅବଶ୍ୟ ଆସୁଅଛନ୍ତି । ଏପରି ଅବସ୍ଥାରେ ଇତିମଧ୍ୟରେ ଭାଷାକୋଷର ଉକ୍ତରୂପ ହିତକାମୀ କେହି ଯେ ଛାମୁକୁ ଆସିଥିବା ବିଚିତ୍ର ନୁହେଁ । କିନ୍ତୁ ସେଥିପାଇଁ ମହାରାଜଙ୍କଠାରୁ ଭାଷାକୋଷପାଇଁ ସାହାଯ୍ୟ ମିଳିବା ବିଷୟରେ ଦୁଶ୍ଚିନ୍ତା ବା ଦୁରାଶଙ୍କା କରିବାର ଅବସର ନାସ୍ତି । ମୁଁ ମଧ ମନେ ମନେ ବିଚାରିଲି ଯେ, ଜଗନ୍ନିୟନ୍ତାଙ୍କ ଦୟାର ପ୍ରଭାବରୁ ପତପତ୍ରିକାରେ ପ୍ରକାଶିତ ସ୍ୱନାମୀ ଓ ବେନାମୀ ପତ୍ରରେ ଓ ପ୍ରବନ୍ଧରେ ଓ ମୁହଁଚୁଗୁଲିରେ ଭାଷାକୋଷର ତଥା ମୋହର ବ୍ୟକ୍ତିଗତ କୁତ୍ସା ଶୁଣିବା ଫଳରେ କେତେ ଜଣ ସ୍ୱନାମଧନ୍ୟ ସହାୟକ ଓଲଟି ପୂର୍ବାପେକ୍ଷା ଭାଷାକୋଷ ପ୍ରତି ଓ ମୋ ପ୍ରତି ବେଶି ଆକୃଷ୍ଟ ହୋଇଅଛନ୍ତି ଓ ବେଶି ସାହାଯ୍ୟଧାରା ବରଷିଅଛନ୍ତି – ଏକଥା ମୁଁ ତତ୍‌ସହାୟକ ଓ ପୃଷ୍ଠପୋଷକଙ୍କଠାରୁ ଜାଣିଛି ଓ ଅନୁଭବରେ ଆଣିଛି । ଏପରି ଅବସ୍ଥାରେ ପାଟଣା ମହାରାଜଙ୍କଠାରେ ମୋ ଅନୁଭବ ଅନ୍ୟ ପ୍ରକାର ହେବ କାହିଁକି ? ଏହି ହେମତ୍ ଧରି ମହାରାଜ ଗଡ଼କୁ ବାହୁଡ଼ା ବିଜେ କରିବା ପ୍ରତୀକ୍ଷାରେ ରହିଲି ।

କଟକ ଛାଡ଼ି ସ୍ଥାନାନ୍ତରକୁ ଗଲେ ମୋର ଭାଷାକୋଷ କାମ ବନ୍ଦ ନ ଥାଏ । ମୋ ସହକର୍ମିଗଣ ମୋର ମୌଳିକ ଲେଖା ପାଣ୍ଡୁଲିପିମାନ ସାଫି (faircopy) କରି ଯେଉଁ

---

୧. ସମସ୍ତ, ୨. ପ୍ରକାର ।

ପୃଷ୍ଠାମାନ ଲେଖିଥାଆନ୍ତି, ଛାପାଖାନାରେ ଦିଆଯିବା ପୂର୍ବରୁ ମୁଁ ସେମାନ ଥରେ ନିରିଖି[୧] କରି ଦେଖେଁ ଓ ମାଠେଁ । କଟକ ଛାଡ଼ି କେଉଁଆଡ଼େ ଗଲେ ମୋ ସଙ୍ଗରେ ସହକର୍ମୀମାନଙ୍କର ଗୁଡ଼ିଏ ସାଫିଲେଖା ପୃଷ୍ଠା ମୁଁ ସଙ୍ଗରେ ବାନ୍ଧିଥାଏଁ । ଯେତେବେଳେ ଯେଉଁଠାରେ ସମୟ, ସୁବିଧା ଓ ଅବସର ପାଏଁ, ସେତେବେଳେ ସେମାନ ସମ୍ମାର୍ଜନ କରି ଛାପାଖାନାପାଇଁ 'କପି' ପ୍ରସ୍ତୁତ କରି ରଖୁଥାଏଁ । ଏହାଛଡ଼ା ମୁଁ ଯେଉଁ ଯେଉଁଠାକୁ ଯାଏଁ, ସେଠା ବନ୍ଧୁମାନଙ୍କଠାରୁ ତତ୍ତଦଞ୍ଚଳ ପ୍ରଚଳିତ ଓଡ଼ିଆ ପ୍ରାଦେଶିକ ଶବ୍ଦମାନ ଟିପି ଆଣେ । କଥାରେ ଅଛି ''କୁମ୍ଭାରଘର ବୋହୂ, ଝାଟିକି ନ ଗଲେ ମାଟିକି ଯାଉ ।'' ବଡ଼ ବଡ଼ ସରକାରୀ ହାକିମଙ୍କ ଅର୍ଦ୍ଦଳିମାନେ ସରକାରଙ୍କ ଦାନା ଖାଇ ହାକିମଙ୍କ ଘରଧନ୍ଦା ଓ ବଂଶରକ୍ଷା (ଓଁ ରାମ୍ ! ପରିବାର ରକ୍ଷା) କାମ ତୁଲାଇବା ପରି ମୁଁ ସବୁଠାରେ ସବୁବେଳେ 'On His Majesty's Service' ଅର୍ଥାତ୍ 'ଭାଷାକୋଷର ସେବା'ରେ ଲାଗି ମୋ ସୁଖରେ ମୁଁ କାଳ ବିତାଏଁ । ପାଟଣାକୁ ଯାଇ ପାଟଣାମହାରାଜଙ୍କ ବାହୁଛାୟାରେ ସୁଖାସୀନ କର୍ମଚାରୀମାନଙ୍କର ଚାରିପାଖରେ ମୁଁ ସାହିତ୍ୟିକ ଜଳବାୟୁର ପ୍ରଭାବ ଲକ୍ଷ୍ୟ କଲି । ଅତଏବ ଭାଷାକୋଷପ୍ରେମିକ ବନ୍ଧୁମାନଙ୍କୁ ସ୍ୱେଚ୍ଛାସେବକରୂପେ ପାଇ, ସେମାନଙ୍କଠାରୁ ତଦଞ୍ଚଳ ପ୍ରଚଳିତ ବହୁ ଶତ ଶବ୍ଦ ସଂଗ୍ରହ କଲି । ଏ ସଂଗ୍ରହର ବାଇ[୨] ସେଠାରେ ଏପରି ବ୍ୟାପିଗଲା ଯେ, ବାବୁ ଦୁର୍ଗାଚରଣ, ମାଆ ସୁମତି, ଟୁନୁ, ଭାନୁ, ତାଙ୍କର ଟିଟିଲାଗଡ଼ବାସୀ ଭୃତ୍ୟ, ଦେବାନ୍, ସାହେବଙ୍କ ଷ୍ଟେନୋଗ୍ରାଫର୍ ଶ୍ରୀମାନ୍ ଦିବ୍ୟସିଂହ ନାୟକ, ଟ୍ରେନିଙ୍ଗ୍ସ୍କୁଲର ଶିକ୍ଷକ ଶ୍ରୀବାବୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ନିଉ ଓଡ଼ିଶା, ଇଣ୍ଡିୟାନ୍ ଷ୍ଟେଟ୍ ଗେଜେଟ୍ ଆଦି ପତ୍ରିକାର ସ୍ଥାନୀୟ ସାଂବାଦିକ ଶ୍ରୀମାନ୍ ତ୍ରିଲୋଚନ ପଟ୍ଟନାୟକ, ସମସ୍ତେ ମୋତେ ବଲାଙ୍ଗିର ଓ ଟିଟଲାଗଡ଼ ପ୍ରଚଳିତ ବହୁଶତ ଓଡ଼ିଆଶବ୍ଦ ଯୋଗାଇବାରେ ଲାଗିଗଲେ । ଗୋଟିଏ ଭିକମାଗନ୍ତା ଭିକ ମାଗିବାକୁ ଆସିଲା । ବିଶ୍ୱକ୍ସେନ୍‌ବାବୁ ଭାଷାକୋଷପାଇଁ ତା'ଠାରୁ ଗୁଡ଼ିଏ ଗାଉଁଲି ଗୀତ ମଧ ଲେଖିନେଲେ । ଏପରି ଅଯାଚିତ ସାହାଯ୍ୟ ଲାଭ କରି କଟକର ଶିକ୍ଷିତ ଗଣ୍ୟମାନ୍ୟ ତଥାକଥିତ ବନ୍ଧୁମାନଙ୍କ ଛିଙ୍ଗାସା ମୁଁ ପାସୋରି ପକାଇଲି । ପାଟଣା ଗଡ଼ରେ ସବ୍‌ଡିଭିଜନ ଅଫିସର୍ ବାବୁ ନଟବର ଗଡ଼ତିଆ, ବି.ଏଲ୍. କାର୍ଯ୍ୟପ୍ରସଙ୍ଗରେ ସେହି ସମୟରେ ବଲାଙ୍ଗିର ଆସିଥିଲେ । ତାଙ୍କ ସଙ୍ଗେ ଦୁର୍ଗାଚରଣବାବୁଙ୍କ ଘରେ ଭେଟ[୩] ହେଲା । ସେ ମଧ ଗୁଡ଼ିଏ ପ୍ରାଦେଶିକ ଶବ୍ଦ ଯୋଗାଇଲେ ।

୧୮.୪.୩୬ ତାରିଖ ସକାଳ ୭ଟା ବେଳେ ସଲାମୀ ତୋପଧ୍ୱନି ମହାରାଜଙ୍କର ବଲାଙ୍ଗିରରେ ପଦାର୍ପଣ ଘୋଷଣା କଲା ।

ମହାରାଜ ଅନ୍ତତଃ ସେ ଦିନୁଟା ବିଶ୍ରାମ କରି ଅଧ୍ୱଶ୍ରମ ଓ ଗତରାତ୍ରିର ଅନିଦ୍ରାଜନିତ କଷ୍ଟ ଅପନୋଦନ କରିବେ, ଏଥିପାଇଁ ମହାରାଜଙ୍କ ଦର୍ଶନପ୍ରାର୍ଥନା କରିବାକୁ ମୁଁ ସାହସୀ ହେଲି ନାହିଁ । ଥରେ ଯାଇ ରାୟବାହାଦୁର ଶିବନାରାୟଣ, ଦେବାନ୍ ସାହେବଙ୍କ ସଙ୍ଗେ

୧. ଟିକିନିଖି, ଭଲଭାବରେ ଦେଖିବା, ୨. ବାୟୁ, ପବନ ୩. ଦେଖା, ସାକ୍ଷାତ୍ ।

ଦେଖା କଲି ଏବଂ ୧୯ ତାରିଖ ଦିନ ମହାରାଜାଙ୍କଠାକୁ ଦର୍ଶନ (interview) ପାଇଁ ପତ୍ର ଦେଲି ଓ ସେହିଦିନ ଉତ୍ତର ପାଇଲି ଯେ ୨୦.୪.୩୬ ତାରିଖ ପୂର୍ବାହ୍ନ ୧୦.୩୦ ବେଳେ ରାଜପ୍ରାସାଦରେ ଦେଖାହେବ । ବଲାଙ୍ଗିର କେନ୍ଦ୍ରରେ Reverend Biggs (ପାଦ୍ରି ବିଗ୍ସ ସାହେବ) ନାମକ ଜଣେ ସାହେବ ପାଟନାରେ ପ୍ରତିଷ୍ଠିତ ବାପ୍ଟିଷ୍ଟ ମିଶ୍ନାରୀ ବିଭାଗର ଅଧ୍ୟକ୍ଷ ଅଟନ୍ତି । ଭାଷାକୋଷର ଗ୍ରାହକଙ୍କ ନାମ ରେଭରେଣ୍ଡ ବିଗ୍ସ । ଏ ମହାତ୍ମା ସେହି ବିଗ୍ସ ସାହେବ କି ନୁହନ୍ତି, ଏହା ବୁଝିବାପାଇଁ ସାହେବଙ୍କଠାକୁ ଚିଠି ଦେଲି ଓ ଉତ୍ତର ପାଇଲି, ସେ ସେହି ବିଗ୍ସ ସାହେବ । ୨୦ ତାରିଖ ସକାଳେ ତାଙ୍କ କୋଠିକୁ ଯାଇ ତାଙ୍କୁ ଭେଟିଲି । ପାଦ୍ରି ସାହେବ ଓ ମେମ୍ ବହୁକାଳର ପରିଚିତି ବନ୍ଧୁପରି ମୋ ସଙ୍ଗେ ବ୍ୟବହାର କଲେ । ବିଗ୍ସ ସାହେବ ଦିନାକେତେ କଟକରେ ଥିଲେ । କିନ୍ତୁ ସେହି ସମୟରେ ତାଙ୍କ ସଙ୍ଗେ ମୋର ସାକ୍ଷାତ୍କାର ଏବଂ ପରିଚୟର ଯୋଗ ଘଟି ନ ଥିଲା । ସାହେବଙ୍କୁ ତାଙ୍କ ୫ମ ଖଣ୍ଡ ଭାଷାକୋଷ ଦେଲି । ପାଟଣା ଷ୍ଟେଟ୍ ସରକାରଙ୍କଦ୍ୱାରା ପରିଚାଳିତ ହେଲାବେଳେ ପୋଲିଟିକାଲ୍ ଏଜେଣ୍ଟଙ୍କ ଉପଦେଶକ୍ରମେ ପାଟଣା ଷ୍ଟେଟ୍ର ସୁପରିଣ୍ଟେଣ୍ଡେଣ୍ଟ୍ ଷ୍ଟେଟ୍ପାଇଁ ଦୁଇସାର ଭାଷାକୋଷର ଅଗ୍ରିମ ଗ୍ରାହକ ହୋଇଥିଲେ । ଷ୍ଟେଟ୍ର ଉକ୍ତ ଦୁଇ ସାର ଗ୍ରନ୍ଥର ୫ମ ଖଣ୍ଡଦ୍ୱୟ ଦେବାନ୍ସାହେବଙ୍କ ଅଫିସ୍କୁ ମୁଁ ପଠାଇଦେଲି । ୨୦.୪.୩୬ ସକାଳ ୧୦.୩୦ ବେଳେ ସହରରୁ ୧୨ ମାଇଲ୍ ଦୂରବର୍ତ୍ତୀ ମହାରାଜ ପ୍ରାସାଦରେ ଯାଇ ଉପସ୍ଥିତ ହେଲି । ମହାରାଜ ସେତେବେଳକୁ ସ୍ନାନବନ୍ଦନାଦି କର୍ମ ବଢ଼ାଇ, ଦେବାର୍ଚ୍ଚନା କର୍ମ ସାରି, ତାଙ୍କ ବୈଠକଖାନାକୁ ବିଜେ କଲେ ଓ ମୁଁ ଉପହାରାର୍ଥ ଅଭିପ୍ରେତ ଏକ ଖଣ୍ଡ ମହାରାଜଙ୍କ ଶ୍ରୀହସ୍ତରେ ଅର୍ପଣ କଲି । ଗତଥର (୧୯୩୬ ଜାନୁଆରୀ ମାସରେ) ମୁଁ ପାଟଣା ଆସିବାବେଳେ ମହାରାଜଙ୍କୁ ପ୍ରଥମ ଚାରିଖଣ୍ଡ ଭାଷାକୋଷ ଉପହାର ଦେଇଥିଲି । ଏ ଏକସାର ଉପହୃତ ଗ୍ରନ୍ଥ ମହାରାଜଙ୍କ ଅଫିସ୍ ଟେବଲ୍ ଉପରେ ରଖା ହୋଇଥିଲେ ତଦ୍‌ପ୍ରତି ସବୁବେଳେ ମହାରାଜଙ୍କ କୃପାଦୃଷ୍ଟି ପଡୁଥିବ ବୋଲି ଆଶା କରି ମୋ ଉପହୃତ ଏକସାର ଗ୍ରନ୍ଥ ଟେବ୍ଲର ଏକ କୋଣରେ ରଖାଯାଉ ବୋଲି ମହାରାଜଙ୍କଠାରେ ଅଳି କରି ଆସିଥିଲି । ଏଇ ଦେଖିଲି ଯେ, ସାରେ ଗ୍ରନ୍ଥ ମହାରାଜଙ୍କ ଟେବ୍ଲ ଉପରେ ଥୁଆ ହୋଇଅଛି । ମୁଁ ଉପହୃତ କେତେଖଣ୍ଡ ମହାରାଜଙ୍କ ହସ୍ତରେ ଅର୍ପଣ କଲାବେଳେ ମହାରାଜ ମୃଦୁହାସ୍ୟ କରି ମୋତେ କହିଲେ, ଆପଣଙ୍କ ଉପହୃତ ୫ମ ଖଣ୍ଡ ମୋର ହସ୍ତଗତ ହେବା ପୂର୍ବରୁ ଷ୍ଟେଟ୍ ଗ୍ରାହକରୂପେ ପାଇଥିବା ୫ମ ଖଣ୍ଡ ପୁସ୍ତକଦ୍ୱୟ ମୁଁ ପାଇଅଛି । ସେହି ପୁସ୍ତକଦ୍ୱୟ ମହରାଜଙ୍କ ସମ୍ମୁଖରେ ଥିବା ଦେଖିଲି । ୧୦.୩୦ ଠାରୁ ୧୧.୩୦ ପର୍ଯ୍ୟନ୍ତ ମୁଁ ମହାରାଜଙ୍କ ପାଖରେ ଥିଲି ଓ ତାଙ୍କ ମଧୁର ବଚନ, ସ୍ମେର ମୁଖ, ଧୀର ବାକ୍ୟ, ନମ୍ରତା ଓ ସରଳତା ଦେଖି ମୁଁ ଭାବିଲି, ପ୍ରଭୁ ଏହାଙ୍କୁ ଦୀର୍ଘଜୀବୀ କରି ରଖିଲେ, ପୁଣ୍ୟଶ୍ଳୋକ ମହାରାଜ ରାମଚନ୍ଦ୍ର, ସାର୍ ସୁଜଳ, ଭାଗୀରଥି ମହେନ୍ଦ୍ର ବାହାଦୁରଙ୍କ କାଟର[୧] ମହାରାଜ

୧. ପ୍ରକାର, ସରି, ପରି ।

ପାଟଣା ଭାଗ୍ୟରେ ମିଳିବେ । ଶେଷରେ ମହାରାଜ ଆଦେଶ କଲେ ''ପ୍ରହରାଜେ ! ଭାଷାକୋଷର ୬ଷ୍ଠଖଣ୍ଡର ମୁଦ୍ରଣକର୍ମ ଆରମ୍ଭ କରନ୍ତୁ । ଷ୍ଟେଟର ଆର୍ଥିକ ସୁବିଧା ଦେଖି ଷଷ୍ଠ ଖଣ୍ଡର ପ୍ରକାଶାର୍ଥ ସାହାଯ୍ୟ କରାଯିବ ।'' ଗୋଟିଏ ଓଡ଼ିଆ ଷ୍ଟେଟର ନାମ ଧରି 'ଅମୁକ ଷ୍ଟେଟ୍‌ର ରୁଲିଙ୍ଗ୍ ଚିଫ୍ ଭାଷାକୋଷପାଇଁ କଅଣ ସାହାଯ୍ୟ କରିଛନ୍ତି ?' ବୋଲି ମହାରାଜ ପ୍ରଶ୍ନ କରିବାରୁ, ମୁଁ ସହାୟକମାନଙ୍କ ପ୍ରଦତ୍ତ ଚାନ୍ଦାର ତାଲିକା ପୁସ୍ତକ ମହାରାଜଙ୍କୁ ଦେଖାଇଲି ଓ ତାଙ୍କ ଜିଜ୍ଞାସାର ବିଷୟୀଭୂତ ରୁଲିଙ୍ଗ୍ ଚିଫ୍‌ଙ୍କ ନାମ ତଳେ ଲେଖାଥିବା ମନ୍ତବ୍ୟ ମହାରାଜଙ୍କୁ ଦେଖାଇଲି (ଯଥା 'ମୁଁ ଏହାଙ୍କ ଛାମୁରେ ଏକାଧିକଥର ଅନୁସରଣ କରିଅଛି, କିନ୍ତୁ ଏ ଗ୍ରନ୍ଥର ନାମ ସଙ୍ଗେ ମୟୂରଭଞ୍ଜର ସ୍ୱର୍ଗୀୟ ମହାରାଜ ପୂର୍ଣ୍ଣଚନ୍ଦ୍ରଙ୍କ ନାମ ଯୁକ୍ତ ହୋଇଥିବା କାରଣରୁ, ଏ ପୂର୍ଣ୍ଣଚନ୍ଦ୍ର ନାମଧାରୀ ଗ୍ରନ୍ଥର ପ୍ରକାଶାର୍ଥ ସେ କିଛି ସାହାଯ୍ୟ କରିବେ ନାହିଁ ବୋଲି ମୁଁ ତାଙ୍କ ଆଶୟ ବୁଝିଲି') । ମହାରାଜ କହିଲେ, ''ମୁଁ ତାହାଙ୍କ କଥା ଜାଣିବାକୁ କୌତୂହଳୀ ହୋଇ ଆପଣଙ୍କୁ ଏ ପ୍ରଶ୍ନ ପଚାରିଲି । ଉକ୍ତ ରୁଲିଙ୍ଗ୍ ଚିଫ୍ ମହାଶୟ ମୟୂରଭଞ୍ଜ ନାମ ସଂପୃକ୍ତ ଭାଷାକୋଷପାଇଁ କିଛି ସାହାଯ୍ୟ ଦିଅ ନାହିଁ ବୋଲି ମୋତେ ନିବର୍ତ୍ତାଇ ଥିଲେ । କିନ୍ତୁ ମୁଁ ତାଙ୍କୁ ଉତ୍ତର ଦେଲି, 'ମହାରାଜ ପୂର୍ଣ୍ଣଚନ୍ଦ୍ର ତ ଆମରି ଭିତରୁ ଜଣେ । ତାଙ୍କ ନାମ ଭାଷାକୋଷରେ ସଂପୃକ୍ତ ହେବାରୁ ଉତ୍କଳର ସବୁ ରୁଲିଙ୍ଗ୍ ଚିଫ୍‌ମାନ ଏଥିପାଇଁ ଅବଶ୍ୟ ଗୌରବ ଅନୁଭବ କରିବା, ଆହୁରି ମଧ ଭାଷାକୋଷ ଆମ ଜାତିର କୋଠ ସମ୍ପତ୍ତି ଓ ଏହା ଆମ୍ଭମାନଙ୍କଠାରୁ ସାହାଯ୍ୟ ପାଇବାପାଇଁ ଉପଯୁକ୍ତ ଅଟେ । ଅତଏବ ମୁଁ ଭାଷାକୋଷକୁ ଅବଶ୍ୟ ସାହାଯ୍ୟ କରିବି ।'' ଆମ ମଧବିତ୍ତ ଓ ପଢୁଆ କାଠମାଳିଆ, ଚିତାପଇତାବାଲା, ଦ୍ୱାରକା ଛାପାଧାରୀ, ଚିଲମ ଛାପାବାଲାଙ୍କ ସମାଜରେ ଚୁଗୁଲିଆ ଅଛନ୍ତି, କିନ୍ତୁ ରୁଲିଙ୍ଗ୍ ଚିଫ୍‌ଙ୍କ ଦଳରୁ କେହି କେହି ଚୁଗୁଲିଆ ପେସା କଲେଣି, ଏହା ଜାଣି ମୋ ଆଖିରୁ ଗୋଟାଏ ପରଦା ଫିଟିଗଲା । ମହାରାଜଙ୍କଠାରୁ ୬ଷ୍ଠ ଖଣ୍ଡର ମୁଦ୍ରଣାର୍ଥ ଅଭୟବଚନ ପାଇ ମୁଁ ବିଦାୟ ନେଲି ।

ସେଦିନ ଉପରଓଳି ପାଟଣାର ଚିଫ୍ ମେଡ଼ିକାଲ୍ ଅଫିସର୍ (ବଡ଼ ଡାକ୍ତର ସାହେବ) ରାଓସାହେବ ଡାକ୍ତର ଜନ୍‌ଙ୍କ ସଙ୍ଗେ ଷ୍ଟେଟ୍‌ର ଜେଲ୍‌ଖାନା, ଜେଲ୍‌ବଗିଚା ଓ ଡାକ୍ତରଖାନା ଦେଖିଲି । ବଲାଙ୍ଗିରର ଜେଲ୍‌ଖାନା ଓ ଡାକ୍ତରଖାନା ବଡ଼ ବଡ଼ ସହରର ସରକାରୀ ଜେଲ୍‌ଖାନା ଓ ଡାକ୍ତରଖାନା ଅପେକ୍ଷା ନ୍ୟୂନ ନୁହେଁ । ଏ ଡାକ୍ତରଖାନାରେ କୁକୁରକାମୁଡ଼ାର ଆଧୁନିକ ଚିକିତ୍ସା (Anti rabic treatment)ର ବ୍ୟବସ୍ଥା ଅଛି । ପାଟଣାର ମହାରାଣୀ କୈଳାସକୁମାରୀଙ୍କ ପୃଷ୍ଠପୋଷକତାରେ ଏ ଡାକ୍ତରଖାନା ସଙ୍ଗେ 'ମାତୃସଦନ' ଖୋଲା ଯାଇଅଛି ଓ ସେଥିପାଇଁ ସ୍ୱତନ୍ତ୍ର ଡାକ୍ତର ଓ ଡାକ୍ତରାଣୀ ନିଯୁକ୍ତ ହୋଇଅଛନ୍ତି । ଏ ଡାକ୍ତରଖାନାର ପ୍ରତିଷ୍ଠାପାଇଁ ମହାରାଣୀ ସାହେବା ନିଜ ଧନରୁ କୋଡ଼ିଏ ହଜାର ଟଙ୍କା ଦେଇଅଛନ୍ତି । ମାତୃସଦନକୁ କେହି ଆସନ୍ନପ୍ରସବା ଆସିଲେ ମହାରାଣୀ ସ୍ୱୟଂ ଆସି ତାଙ୍କ ଖବର ବୁଝନ୍ତି ଓ ପ୍ରସୂତିମାନଙ୍କ ଶିଶୁଙ୍କପାଇଁ ଗଦି, ତକିଆ, ଶେଯ ଆଦି ନିଜ ହାତରେ ତିଆରି କରି ଡାକ୍ତରଖାନାକୁ ପଠାନ୍ତି । ଏମନ୍ତ କି, ପ୍ରସୂତିଙ୍କ ପଥ୍ୟ ମଧ ନିଜେ ପ୍ରସ୍ତୁତ କରି ଉଆସରୁ ପଠାନ୍ତି ।

ଏ ଡାକ୍ତରଖାନା ସଙ୍ଗେ ସ୍ୱର୍ଗୀୟ ସମ୍ରାଟ୍‌ଙ୍କ ରୌପ୍ୟ ଜୁବିଲୀର ସ୍ମାରକରୂପେ ଗୋଟିଏ ରଞ୍ଜନ ରଶ୍ମି (ରେଡ଼ିଅମ୍) ଚିକିତ୍ସାବିଭାଗ ଖୋଲା ଯାଉଅଛି । ଏଥିପାଇଁ ସ୍ୱତନ୍ତ୍ର ଚିକିତ୍ସାମନ୍ଦିର ତିଆରି ହେଉଅଛି ଓ ଏଥିପାଇଁ ବିଶେଷଜ୍ଞ ଡାକ୍ତର ଆସି କାମରେ ଯୋଗ ଦେଲେଣି । କି ଆୟତନରେ, କି ଉପକାରିତାରେ, କି ଇନ୍ ଡୋର୍ ଓ ଆଉଟ୍ ଡୋର୍ ରୋଗୀସଂଖ୍ୟାରେ, କି ଅପରେସନ୍‌ରେ ଏ ଡାକ୍ତରଖାନା କଟକର ଡାକ୍ତରଖାନା ସଙ୍ଗେ ଅନେକ ପରିମାଣରେ ପାଦ ପକାଇପାରିବ ବୋଲି ମୋ ମନରେ ଧାରଣା ହେଲା । ଡାକ୍ତର ସାହେବ ମୋ ସଙ୍ଗରେ ରୋଗୀଙ୍କ ପାଖକୁ ଗଲେ ଓ ଦେଖିଲି, ଶତାଧିକ ରୋଗୀଙ୍କୁ ଜଣ ଜଣ କରି ରୋଗୀର ଅବସ୍ଥା, ସକାଳଓଳି ଅପେକ୍ଷା ଏ ଓଳି ରୋଗର ପ୍ରକୋପ, କାଲି କୋଷ୍ଠଶୁଦ୍ଧି ନ ହେବାରୁ ଆଜି ଔଷଧ ଦିଆଯାଇଥିଲା, କି ଫଳ ହେଲା । ଏ ସବୁ ପ୍ରଶ୍ନ ପଚାରୁଥାଆନ୍ତି ଓ ପ୍ରତ୍ୟେକ ରୋଗୀଙ୍କ ରୋଗର ଇତିହାସ, ରୋଗର ବିବରଣ, ଚିକିତ୍ସାର ବିବରଣ ମୋ ଆଗରେ ବର୍ଣ୍ଣନା କରୁଥାଆନ୍ତି । ଏଥିରୁ ମୁଁ ଦେଖିପାରିଲି ଯେ, ଡାକ୍ତର ସାହେବ ପ୍ରତିଦିନ ପ୍ରତ୍ୟେକ ରୋଗୀଙ୍କୁ ସଙ୍ଖୁଳନ୍ତି ଓ ତାଙ୍କର ସବୁ ଖବର ବୁଝନ୍ତି । ଏହି ସମୟରେ ଡାକ୍ତରଖାନାରେ ଜଣେ ଭାଲୁଦ୍ୱାରା ଘାଇଲା ଲୋକ ଶଗଡ଼ରେ ବୁହା ହୋଇ ଆସିଲା । ଡାକ୍ତର ସାହେବ ସେ ବ୍ୟକ୍ତିର ବ୍ୟବସ୍ଥା କରିବାପାଇଁ ଆମ୍ଭମାନଙ୍କଠାରୁ ବିଦାୟ ନେଲେ ।

ମୁଁ ଦୁର୍ଗାଚରଣବାବୁଙ୍କ ସଙ୍ଗେ ଡାକ୍ତରଖାନାରୁ ବୁଲି ତାଙ୍କ କୋଠିକୁ ଫେରି ଆସିଲାବେଳକୁ ସାହିତ୍ୟିକ ବନ୍ଧୁଗୁଡ଼ିକ ସେଠାରେ ମୋ ଅପେକ୍ଷାରେ ବସିଥାଆନ୍ତି । କେତେକ ବନ୍ଧୁ ତାଙ୍କ ଲିଖିତ କେତୋଟି ପାଣ୍ଡୁଲିପି ଏଥିପୂର୍ବେ ମୋତେ ଦେଖିବାକୁ ଦେଇଥିଲେ । ସେମାନଙ୍କୁ କାହା ବହି ଦେଖିସାରି ଫେରାଇଦେଲି ଓ କାହା ବହି ଦେଖିସାରି ନ ଥିବାରୁ, ଦେଖିସାରି କଟକରୁ ପଠାଇଦେବି ବୋଲି କହି ସେମାନଙ୍କଠାରୁ ବିଦାୟ ନେଲି । ଏ ଅଞ୍ଚଳରେ ଗ୍ରୀଷ୍ମଦିନେ ଭାରି ଗରମ ହୁଏ ଓ ବେଳେ ବେଳେ ନିକଟବର୍ତ୍ତୀ ପାହାଡ଼ରେ ନିଆଁ ଲାଗିବାରୁ, ସେହି ନିଆଁର ତାପ ସହରରେ ଅନୁଭୂତ ହୁଏ । ଆମ୍ଭେମାନେ ଏଥର ବଲାଙ୍ଗିରରେ ଥିବା ସମୟରେ ସେହି ପାହାଡ଼ମାନଙ୍କରେ ବଣପୋଡ଼ି ହେଉଥାଏ । ଏ ଅଞ୍ଚଳରେ ଜଳାଭାବ । ଲୋକେ ଶୁଖିଲା ନଦୀଗର୍ଭରେ ଗଭୀର ଚୁଆ[୧] ଖୋଳି ସେଠାରୁ ପାଣି କାଢ଼ିଆଣନ୍ତି । ଶୁଣିଲି ଯେ, ଗ୍ରୀଷ୍ମଦିନେ ଏଠାରେ ଅନେକ ଥର ତାପମାନ ଯନ୍ତ୍ରରେ ପାରା ୧୨୦ ଡିଗ୍ରୀ ପର୍ଯ୍ୟନ୍ତ ଉଠିବା ଦେଖାଯାଏ । ରାଜଧାନୀ ମଧ୍ୟରେ ଥିବା ଗୋଟିଏ ବଡ଼ ପୋଖରୀ ଏବର୍ଷ ପୁଣି ଖୋଳା ହେଉଅଛି । ସେଥିରେ ଖରାଦିନେ ପାଣି ଥାଏ । ଏବର୍ଷ ତାହା ଶୁଖାଯାଇ ଖୋଳା ହେଉଥିବାରୁ ରାଜଧାନୀରେ ଏବେ ଜଳକଷ୍ଟ ଅପେକ୍ଷାକୃତ ବଢ଼ିଅଛି । ମୁଁ ମହାରାଜଙ୍କୁ ଦେଖା କରିବାବେଳେ ଭାଷାକୋଷ ସମ୍ପର୍କରେ ୪ଖଣ୍ଡ ପ୍ରାର୍ଥନାପତ୍ର ମହାରାଜଙ୍କ ଶ୍ରୀହସ୍ତରେ ଅର୍ପଣ କରିଥିଲି । ମହାରାଜ ଦରଖାସ୍ତମାନଙ୍କରେ

୧. ଖରାଦିନରେ ପାଣି ବାହାର କରିବାପାଇଁ ନଈ ପୋଖରୀ ଆଦିରେ ଖୋଳାଯାଇଥିବା ଖାଲ/ଛୋଟ ଗଡ଼ିଆ ।

ରୀତିମତେ ଆଦେଶ ଦେବେ ଓ ଆଦେଶମାନ ସମୟକ୍ରମେ ମୋତେ ଜ୍ଞାପିତ ହେବ ବୋଲି ମହାରାଜ ମୋତେ କହିଲେ । ଅତଏବ ମୋ ବନ୍ଧୁମାନଙ୍କୁ କହିଆସିଲି ଯେ, ମୋ ପ୍ରାର୍ଥନାପତ୍ରରେ ମହାରାଜଙ୍କ ଆଦେଶ ଲିପିବଦ୍ଧ ନ ହେବା ପର୍ଯ୍ୟନ୍ତ ସେମାନେ କଥା ଛଳରେ ଏ ସମ୍ପର୍କରେ ସାଧାରଣରେ କିଛି ପ୍ରକାଶ କରିବେ ନାହିଁ । ବନ୍ଧୁମାନଙ୍କୁ ବିଦାୟ ଦେବାବେଳକୁ ରାତି ପ୍ରାୟ ୧୦ଟା । ମୁଁ ଶୋଇବାକୁ ଯାଉଛି, ବାବୁ ଦୁର୍ଗାଚରଣ ଆସି ମୋତେ 'ଘରଆଡ଼'କୁ ଡାକିଲେ । ମୁଁ ଯାଇ ଦେଖିଲି ଯେ, ମାଆ ସୁମତି ଓ ତାଙ୍କ ପୁତ୍ରକନ୍ୟା ମୋପାଇଁ ଯୋଡ଼ିଏ ନୂଆ ଲୁଗା ଧରି ଅପେକ୍ଷା କରିଅଛନ୍ତି । ସେତେବେଳେ ମାଆ ସୁମତି ମୋ ଆଗକୁ ଆସି ମୋ ଗୋଡ଼ତଳେ ପଡ଼ିଲେ ଓ ପୁଅଝିଅ ଦିହେଁ ମଧ ଗୋଡ଼ତଳେ ପଡ଼ିଲେ । ମାଆ ସୁମତିଙ୍କୁ ଦେଖିଲାକ୍ଷଣି ଶଶୀଭାଇଙ୍କ ଘରେ ଓ ରାଧାନାଥ ମୂର୍ତ୍ତି ଉଦ୍ଘାଟନ ବେଳେ ୧୫/୨୦ ବର୍ଷ ତଳେ ରାଧାନାଥ କବିତାର ଛତ୍ରମାନ ଆବୃତ୍ତି କରୁଥିବା ସେହି ପିଲାଦିନର ସୁମତି ମୋ ଆଖି ଆଗରେ ନାଚିଗଲା । ମାଆ ସୁମତି କହିଲେ – ମୋର କେବଳ ଏତିକି ଅନୁରୋଧ ଯେ, ବାବା ଓ ଆପଣ ରାଧାନାଥ ଜୀବନୀର ପ୍ରୁଫ୍ ଦେଖିବେ, ଆପଣ ଦୁହେଁ ବସିଥାଉଁ ଥାଉଁ ରାଧାନାଥଜୀବନୀ ମୁଦ୍ରିତ ହେଉ । ମୁଁ ଈଶ୍ୱରଙ୍କ ଏହିତା ପ୍ରାର୍ଥନା କରୁଛି ।'' ଦେଖିଲି ଯେ, ନୂଆ ଲୁଗା ଯୋଡ଼ିକ ଗ୍ରହଣ ନ କଲେ ମରହଟ୍ଟିଆ ରୀତିର ଭକ୍ତ ବାବା ଦୁର୍ଗାଚରଣ ଓ ମାଆ ସୁମତି ମନରେ ଦୁଃଖ କରିବେ । ଏହା ଭାବି ଲୁଗା ଦୁଇଖଣ୍ଡି ଗ୍ରହଣ କଲି ଓ ରାୟଦମ୍ପତିଙ୍କୁ ବିଦାୟ ଦେଲାବେଳେ କହିଲି – ''ଶଶୀଭାଇ ସଙ୍ଗେ ମୋର ଇହକାଳର ସମ୍ପର୍କ ୫୦ ବର୍ଷ ହେଲା ଲାଗି ଆସିଅଛି । ତାଙ୍କ ଝିଅ ହୋଇଁ, ତୁମେ ଦୁହେଁ, ପାଟଣା ଷ୍ଟେଟ୍‌ରେ ଭାଷାକୋଷପାଇଁ ମହାରାଜଙ୍କଠାରୁ ବିଶିଷ୍ଟ ସାହାଯ୍ୟ ମୁଁ ପାଇବା ବିଷୟରେ ମୋ ପଥ ସୁଗମ କରିବ ବୋଲି ପ୍ରଭୁ ପାଟଣା ଷ୍ଟେଟ୍‌ରେ ତୁମକୁ ଆଗରୁ ଆଣି ରଖାଇଅଛନ୍ତି । ଶଶୀଭାଇଙ୍କର ଓ ମୋର ୫୦ ବର୍ଷର ବନ୍ଧୁତା ଆଜି ଭାଷାକୋଷ କ୍ଷେତ୍ରରେ ଫଳପ୍ରସୂ ହେଲା ।'' ରାତିରେ ଦାଣ୍ଡପାଖ ଚାନ୍ଦିନୀରେ ଶୋଇଲି ଓ ରାତି ୩ଟା ବେଳେ ଉଠି ତତ୍‌ସମୟକୃତ୍ୟ ପ୍ରାତଃକର୍ମମାନ ସମାଧା[1] କରି, ଭୋର୍ ୪ଟାବେଳେ ଦୁର୍ଗାଚରଣ ଓ ମାଆ ସୁମତିଙ୍କଠାରୁ ପୁଣି ବିଦାୟ ଗ୍ରହଣ କରି ଟାକ୍‌ସିରେ ଅନୁକୂଳ କଲୁଁ । ପାଟଣାରୁ ବରଗଡ଼କୁ ଆସିବା ବାଟରେ ସ୍ୱର୍ଗୀୟ କବି ଗଙ୍ଗାଧର ମେହେରଙ୍କ ବାସସ୍ଥାନ ଗ୍ରାମ ବରପାଲି ଅବସ୍ଥିତ । ଗ୍ରାମଟିର ଭିତର ଦେଇ ଯିବାକୁ ହେଲେ ପକ୍‌କା ସଡ଼କରୁ ବାଟ ଭାଙ୍ଗି ଗ୍ରାମ ଭିତର ଦେଇ ବୁଲି ପୁଣି ଖଣ୍ଡଦୂରରେ ପକ୍‌କା ସଡ଼କ ଧରିବାକୁ ହୁଏ । ଉକ୍ତ ଗ୍ରାମରେ ନ ପହଞ୍ଚୁଣୁ ସଡ଼କର ପଶ୍ଚିମ ଧାରରେ ଗୋଟିଏ ସମାଧିସ୍ତମ୍ଭ ଦେଖିଲି । ଏହା କବି ଗଙ୍ଗାଧରଙ୍କ ଶବଦାହ ଭୂମି । ସେଠାରେ ଟାକ୍‌ସି ଠିଆ କରି ଆମ୍ଭେମାନେ ସେହି ଚୈତ୍ୟ ନିକଟକୁ ଗଲୁଁ ଓ ସେଠାର ପବିତ୍ର ରେଣୁ ଦେହରେ ବୋଲି ହୋଇ; ସ୍ୱର୍ଗତ କବିଙ୍କ ଉଦ୍ଦେଶ୍ୟରେ ଭକ୍ତିପୂର୍ଣ୍ଣ ନମସ୍କାର କରି ଟାକ୍‌ସିକୁ

୧. ସଂପନ୍ନ ।

ଫେରିଲୁଁ । ସୁଯୋଗକ୍ରମେ ସେହିଠାରେ ବରପାଲି ଗ୍ରାମବାସୀ ଜଣେ ଯୁବକଙ୍କୁ ଭେଟିଲୁଁ ଓ ସେ ଆମ୍ଭମାନଙ୍କ ସଙ୍ଗେ ଅଦୂରବର୍ତ୍ତୀ ବରପାଲି ଗ୍ରାମକୁ ଯାଇ ସେଠାରେ ଆମ୍ଭମାନଙ୍କୁ କବିଙ୍କ ଘର ଦେଖାଇ ଦେବେ ବୋଲି ପ୍ରତିଶ୍ରୁତ ହେଲେ । ତାଙ୍କୁ ଆମେ ଟାକ୍ସିରେ ନେଲୁଁ । ଖଣ୍ଡଦୂର ବାଦ୍, ସଡ଼କରୁ ପୂର୍ବପାଖକୁ ଗଡ଼ି ଗୋଟିଏ ଗ୍ରାମ୍ୟ ରାସ୍ତାବାଟେ ବରପାଲିକୁ ଟାକ୍ସି ଗଲା । ଗଙ୍ଗାଧରଙ୍କ ଘର ମଟର୍‌ର ଅଗମ୍ୟ ଗୋଟିଏ ଗଳିରେ ଅବସ୍ଥିତ । ଛକରେ ମଟର୍ ରଖି ଆମ୍ଭେମାନେ ଗଙ୍ଗାଧରଙ୍କ ଘରକୁ ଗଲୁଁ । ତାଙ୍କ ଘରର ଦାଣ୍ଡଦୁଆର ଭିତର ଆଡୁ କୀଳା[୧] ବନ୍ଦ ଥିଲା ।

ଆମ୍ଭେମାନେ କବାଟରେ ହାତ ମାରିଲୁଁ । ଗୋଟିଏ ବାଳକ ଆସି ଭିତରଆଡୁ ଦାଣ୍ଡଘର ଫିଟାଇ ଦେଲେ । ସେ ମେହେର କବିଙ୍କ ସାନ ପୁଅ । ତାଙ୍କଠାରୁ ଶୁଣିଲୁଁ ଯେ, ବୋଡ଼ାସମ୍ବରର ଗୁଣଗ୍ରାହୀ ରାଜା ଗଙ୍ଗାଧରଙ୍କୁ ତାଙ୍କ ଜୀବଦ୍ଦଶାରେ ଯେଉଁ ଗୌନ୍ତି[୨] ଗ୍ରାମ ଖଣ୍ଡି ଦେଇଅଛନ୍ତି, ସେହି ଗ୍ରାମକୁ ତାଙ୍କ ବଡ଼ପୁଅ ଯାଇଅଛନ୍ତି । ମେହେର ଜାତିରେ ତନ୍ତୁବାୟ ଥିଲେ ଓ ତନ୍ତୁବାୟ ସାହିରେ ତନ୍ତୁବାୟମାନଙ୍କ ଘର ସାହାଲା ମଧରେ ତାଙ୍କ ତାଳଘର ଅବସ୍ଥିତ । ସେ ସେହି ଘରେ ତାଙ୍କର ବଂଶାନୁଗତ ଲୁଗାବୁଣା ଓ ନିଜର କବିତା ରଚନା କରୁଥିଲେ । ସାନ ପୁଅ ସେହି କୋଠରିଟି ଆମ୍ଭମାନଙ୍କୁ ଦେଖାଇଲେ, କୋଠରିର ମାଟି କାନ୍ଥରେ ଜଣକେତେ ଦେଶସେବକଙ୍କ ଛବି ଟଙ୍ଗା ହୋଇଅଛି । ସେ ଘରର ଭୂଇଁରେ ମୁଁ କିଛିକ୍ଷଣ ଲୁଣ୍ଠିତ ହୋଇ ବହୁ ଦିନର ମନର ଓରମାନା ମେଣ୍ଟାଇଲି । ଘରର ଧୂଳି ଦିହରେ ବୋଳି ହୋଇ ଘରେ ଟଙ୍ଗା ଥିବା ଗଙ୍ଗାଧରଙ୍କ ଫଟୋକୁ ନମସ୍କାର କରି ସେଠାରୁ ଆସିଲି । ସେହି ଗ୍ରାମରେ ଗଙ୍ଗାଧରଙ୍କ କୁଟୁମ୍ବୀ ବ୍ୟକ୍ତିଙ୍କ ଲୁଗାଦୋକାନରୁ ଖଣ୍ଡିକେତେ ଗାମୁଛା କିଣି ଆମ୍ଭେମାନେ ଆସି ପୁଣି ରାଜଦାଣ୍ଡ ଧଇଲୁଁ । ସକାଳ ୭ଟା ବେଳେ ବରଗଡ଼ରେ ପହଞ୍ଚିଲୁଁ । ସେଠାରେ ସୁଯୋଗକ୍ରମେ ସମ୍ବଲପୁରକୁ ଫେରୁଥିବା ଶ୍ରୀମାନ୍ ଲକ୍ଷ୍ମୀନାରାୟଣ ମିଶ୍ରଙ୍କ ସଙ୍ଗେ ଦେଖାହେଲା ଓ ସେ ମୋ ପ୍ରାର୍ଥନାକ୍ରମେ ଆମ ସଙ୍ଗେ ଟାକ୍ସିରେ ଆସିଲେ । ମହାନଦୀର ଭସା ପୋଲ ପାରି ହୋଇ ସମ୍ବଲେଇ ଠାକୁରାଣୀଙ୍କୁ ଦର୍ଶନ କରି ଭାଷାକୋଷର ନିର୍ବିଘ୍ନ ପୂର୍ତ୍ତିପାଇଁ ପ୍ରାର୍ଥନା କରି, ଦିନ ଦଶଟା ବେଳେ ଡାକ୍ତର ସନାତନଙ୍କ ବସାରେ ୨୧.୪.୩୫ରେ ପହଞ୍ଚିଲୁ । ସେଦିନ ସେଠାରେ ଡେପୁଟି କମିଶନର ରାୟବାହାଦୁର ରାଧାଚରଣ ଦାସଙ୍କ ସଙ୍ଗେ ଦେଖା କଲି ଓ ତାଙ୍କୁ ବୋଡ଼ାସମ୍ବରର ଓ ବଲାଙ୍ଗିରର ହାଲ୍‌ଚାଲ୍ ଜଣାଇଲି । ସନ୍ଧ୍ୟା ପୂର୍ବରୁ ବାବୁ ବାଳମୁକୁନ୍ଦ ବହିଦାର (ଅବସରପ୍ରାପ୍ତ ଡେପୁଟି କଲେକ୍ଟର)ଙ୍କ ସଙ୍ଗେ ସ୍ଥାନୀୟ ଭାରତୀୟ କ୍ଲବ୍ ଦେଖିଲି । ସନ୍ଧ୍ୟାବେଳେ ଗଙ୍ଗାଧର ସାହିତ୍ୟ ପରିଷଦର କେତେକ ବନ୍ଧୁ (ଶ୍ରୀମାନ୍ ସତ୍ୟବାଦୀ, ଶ୍ରୀମାନ୍ ନିତ୍ୟାନନ୍ଦ, ଶ୍ରୀମାନ୍ ବିଶ୍ୱକ୍‌ସେନ୍, ଡାକ୍ତର ସନାତନ, ବାବୁ ଜୟନାରାୟଣ ପାଣିଗ୍ରାହୀ (ଓକିଲ)ଙ୍କ ସଙ୍ଗେ ଗଙ୍ଗାଧର ସାହିତ୍ୟ ପରିଷଦପାଇଁ ଡେପୁଟି

---

୧. ବନ୍ଦ, ୨. ଜାଗିରି, ଜମିଦାରି ।

କମିଶନରଙ୍କୁ ପ୍ରାର୍ଥିତ ଖଣ୍ଡିଏ ଜମିକଥା ପରାମର୍ଶ ହେଲା ଓ ଜିଲ୍ଲା ସାହେବ ମହାଶୟଙ୍କ ଦୟାରୁ ଖଣ୍ଡିଏ ଜମି ମିଳିଲେ ଅଳ୍ପ ବ୍ୟୟରେ ଖଣ୍ଡିଏ ଖପରଲି ଘର କରାଯିବ ଓ ପ୍ରଭୁ ମୋତେ ସେପର୍ଯ୍ୟନ୍ତ ତାଙ୍କୁ ରଖିଥିଲେ, ମୁଁ ସେ କୁଡ଼ିଆର ଶୁଭ ଦେବି ବୋଲି ଇଚ୍ଛା ପ୍ରକାଶ କଲି । ସମ୍ବଲପୁର ଅଞ୍ଚଳକୁ ଭାଷାକୋଷପାଇଁ ଯେଉଁ ପ୍ରଥମ ବିଶିଷ୍ଟ ଅର୍ଥସାହାଯ୍ୟ ମୋତେ ମିଳିବ, ସେହି ଧନରୁ ପଚାଶଟଙ୍କା ଦେଇ ମୁଁ ପରିଷଦର ଆଜୀବନ ସଭ୍ୟ ହେବି ବୋଲି କଳ୍ପନା କରୁଥିବା କଥା ବନ୍ଧୁମାନଙ୍କୁ କହି, ସେମାନଙ୍କଠାରୁ ବିଦାୟ ନେଲି । ତହିଁ ଆରଦିନ ସକାଳୁ ସର୍ଭିସ୍ ଲରୀରେ ଅନୁଗୁଳବାଟେ ମେରାମୁଣ୍ଡଳି ଷ୍ଟେସନ୍‌କୁ ଗଲାବେଳେ, ଅନୁଗୁଳଠାରେ ଗଣ୍ଡିଏ ପକ୍ୱାନ୍ନ ମୋପାଇଁ ରଖିବାପାଇଁ ଅନୁଗୁଳ ଜିଲ୍ଲା ସ୍କୁଲର ହେଡ୍‌ମାଷ୍ଟର ବାବୁ ପଦ୍ମଚରଣ ପଟ୍ଟନାୟକଙ୍କଠାକୁ ଖଣ୍ଡିଏ ଟେଲିଗ୍ରାମ କଲି । ତହିଁ ଆରଦିନ (୨୨.୫.୩୬) ସର୍ଭିସ୍ ଲରୀରେ ଆସିବାବେଳକୁ ଶ୍ରୀଯୁକ୍ତ ବାଳମୁକୁନ୍ଦ ବହିଦାର, ବାବୁ ବିଶ୍ୱକ୍‌ସେନ୍, ସତ୍ୟବାଦୀବାବୁ, ନିତ୍ୟାନନ୍ଦବାବୁ ଆସି ଲରୀପାଖରେ ରୁଣ୍ଡ ହେଲେ ଓ ସମସ୍ତଙ୍କଠାରୁ ବିଦାୟ ନେଇ ମୁଁ ଲରୀରେ ବସିଲି । ଅନୁଗୁଳରେ ପହଞ୍ଚିଲାବେଳକୁ ଦିନ ୨ଟା । ସେତେବେଳକୁ ଲରୀରେ ଖରାଦିନର ଉଦୁଉଦିଆ ଖରାତକ ଭୋଗକରି ଆମେ ସବୁ ଛଟପଟ ହେଉଥାଉଁ ଓ ଭୋକରେ ମୋ କରଡ଼ି ଜଳୁଥାଏ । ହେଡ୍‌ମାଷ୍ଟର ସାହେବଙ୍କ ବସାରେ ପହଞ୍ଚିଲାବେଳକୁ ସେ କହିଲେ, ମୋପାଇଁ ତବତଂ[1] ଭାତ ଓ ଦହିପଖାଳର ବ୍ୟବସ୍ଥା ହୋଇଅଛି । ସେତେବେଳେ ଏ ଆତ୍ମା ଲୋଡ଼ୁଥିଲା ଦହିପଖାଳ । ଦହିପଖାଳ କଥା ଶୁଣିଲା ମାତ୍ରକେ ଖରା ତାତି ସହି ଶହେ ମାଇଲ୍ ଆସିଥିବା କ୍ଷୁଧାର୍ତ୍ତ ତୃଷାର୍ତ୍ତ ବୃଦ୍ଧପାଇଁ ପଟ୍ଟନାୟକ ଦମ୍ପତିଙ୍କର ଏ ବ୍ୟବସ୍ଥାଯୋଗୁଁ ତାଙ୍କ ଉପରେ ଆଶୀର୍ବାଦମୁଣି ମନକୁ ଝାଡ଼ି ହୋଇଗଲା । ଦହିପଖାଳ, ଶାଗ, ଭଜା ଆଦିର ସଦ୍‌ବ୍ୟବହାର କରି ଲରୀରେ ମେରାମୁଣ୍ଡଳୀ ଷ୍ଟେସନକୁ ଆସିଲି । ସେଠାରୁ ତାଳଚେର ଗାଡ଼ିରେ କଟକ ଆସି ୨୨.୪.୩୬ ତାରିଖ ରାତି ଆଠଟାବେଳେ କଟକ ବସା ଧରିଲି ।

॥ ୪ ॥

ସେଇଠଉଁ[2] କିସ ହେଲା କି – ସବୁଲିଙ୍ଗବିଶିଷ୍ଟ ପାଠକ ପଚାରିବେ, କୋଉଠଉଁ[2] କିସ ହେଲା ? ୨୭.୪.୩୬ ତାରିଖରେ ପାଟଣାଷ୍ଟେଟରୁ ଫେରିଆସି ମୁଁ ମୋ ଦୁଃଖଧନ୍ଦାରେ ଲାଗିଲି । ଦୁଃଖଧନ୍ଦାକୁ ସାଧାରଣ ଲୋକେ ଯେଉଁ ଅର୍ଥରେ ବ୍ୟବହାର କରନ୍ତି ସେ ଅର୍ଥରେ ବ୍ୟବହାର ନ କରି ଏଠାରେ ମଧ୍ୟପଦଲୋପୀ (ଦୁଃଖପୂର୍ଣ୍ଣ ଧନ୍ଦା) କରି ବୁଝିବାକୁ ହେବ । ମୁଁ ପୂର୍ବରୁ କହିଅଛି ଯେ, ଓଡ଼ିଶାର ଓ ଓଡ଼ିଆ ଜାତିର ବିଶେଷତ୍ୱ ଏହି କି, ଯେଉଁ ବ୍ୟକ୍ତି ତନ୍ତୀ ବ୍ୟବସାୟ କରିବାକୁ ବସିବ, ସେ କପାମଞ୍ଜି ଅଣାଇବ, ତାକୁ ବୁଣି ଗଛ ଉଠାଇବ, ସେଥିରୁ ତୁଳା ଆମଦାନି କରିବ, ତୁଳାକୁ କପା ଖାଇରେ ଭିଣିବ, ବଳଣା ତିଆରି କରିବ, ସୂତା କାଟିବ, ସୂତାକୁ ବତୁରେଇବ[3], ରଙ୍ଗେଇବ, ମାଠିବ, ଟାଣୀ

୧. ଗରମ, ୨. ସେହିଠାରୁ, ତାହାପରେ, ୩. ଭିଜାଇବା, ଓଦା କରିବା ।

ଭରଣୀ ସୂତା ବାରଯ ବାରଯ[୧] କରିବ, ଲୁଗାପାଇଁ ଆଉ ଯାହା ସୂତା ଲୋଡ଼ା ହେବ ତାକୁ ମହାଜନ ଘରୁ କରି ହାଟରୁ ବଜାରରୁ କିଣିଆଣିବ, ସୂତାରେ ଲୁଗା ବୁଣିବ, ପେଟରେ ଓଦାକନା ପକେଇ ଏତକ କରି ଲୁଗା ଖଣ୍ଡି ତିଆରି କଲା, ଏତିକିରେ ତା' ପାଇଟି ସରିଲା ନାହିଁ । ପୁଣି ଯାଇ ଗହକିଙ୍କ[୨] ଦୁଆର ଦୁଆର ବୁଲିବ, ତା କର୍ମକୁ ଅଦିଆ ବିନ୍ଧଣା ଗରାଖ ନ ଜୁଟିଲେ ହାଟକୁ ଯିବ, ହାଟରେ ତା ଭାଗ୍ୟର ଲସି[୩] ନ ଫିଟିଲେ ଚଲେଇବ ସହର ବଜାରକୁ ଓ ଶେଷକୁ ବୁଲି ବୁଲି ଟଙ୍କାକ ଚିଜକୁ ଦଶଅଣାରେ ଦେବ ଓ ଦେଖିବ ଯେ, ଲୁଗାଖଣ୍ଡକ ବୁଣିବାପାଇଁ ସେ ଯେତେଦିନ ନିକମା ହୋଇଛି ଓ କାମ କରିଛି ସେଥିର ମୂଲକଥା ଗାଧୋଇ ଯାଉ, ତାକୁ ତା' ନିଜ ହାତରୁ ଓ ମହାଜନ ଘରୁ ଆଣି ଯାହା ନଗଦ ଖରଚ କରିବାକୁ ହୋଇଅଛି, ତାହା ବି ଉଠିବ ନାହିଁ । ଏ ଅବସ୍ଥାରେ ଆମ ଦେଶର ତନ୍ତୀଙ୍କ ଅବସ୍ଥା ଯାହା ହୋଇଛି, ତାହା ତ ସମସ୍ତେ ଦେଖୁଥାଇଁ । ମହାଜନ ତା' ସୁଧ ମୂଳପାଇଁ ତନ୍ତୀର ଘର ଓ ଘରଡିହ ନିଲାମ କରୁଛି ଓ ଶେଷକୁ ତନ୍ତୀ ଯାଇଁ ଦାଣ୍ଡରେ ମୂଲ ଲାଗୁଛି ଓ ଶେଷକୁ କାଇମାଟିକୁ[୪] ନଇଲେ ଆସାମ ଚାହା ବଗିଚାକୁ, ନଇଲେ ରେଙ୍ଗୁନ ଚାଷକାମକୁ ଯାଉଛି । ଯେଉଁ ଆବହାଉଆର କରାମତିରେ ବଣିଆ, ବଢ଼େଇ, କମାର, ତନ୍ତୀ, ପାଟରା, ତେଲୀ ନିଜ ନିଜର ମଉରସୀ[୫] ବୃତ୍ତି ଛାଡ଼ି, ନିଜର ପୈତୃକ ଘରଡିହ ଛାଡ଼ି, ଗାଆଁ ଛାଡ଼ି ଯାଇ ପେଟପାଇଁ ସହରରେ, କାରଖାନାରେ, ଖଣିରେ, ଜାହାଜରେ ପଶୁଛି । ସେହି ହାଉଆବଳରେ ଓଡ଼ିଆ ଲେଖକ ବ୍ୟବସାୟ ଉପରେ ନିର୍ଭର କରୁଥିବା ଲୋକଙ୍କୁ ପେଟରେ ଓଦାକନା, ପିଠିରେ ଚିରାକନା, ମୁଣ୍ଡରେ ଅଖା ମୁତୁଳା, ଗୋଡ଼ରେ ଖଜୁରି ଛାଲର ପାଣ୍ଡୋଇ, ମୁହଁରେ ବାଆଁରା[୬] ଦେବାକୁ ହେଉଅଛି । ଖାଲି ଗୁଡ଼ିଏ ଗାରେଇଦେଲେ ତ ଚଳିବ ନାହିଁ । ମନେକରନ୍ତୁ ଯେ, କ୍ଷୁଦ୍‌ତୃଷ୍ଣା ଦେବୀମାନେ ଲେଖକକୁ ଦୟା କଲେ, ସେ ଭୋକ ଶୋଷ ମାରି ଗୁଡ଼ାଏ ରମ୍ଭାରମ୍ଭି କଲା । ଏତିକିରେ ତ କାମ ସରିଲା ନାହିଁ । ତା' ଲେଖାକୁ ସଂବାଦପତ୍ର ପତ୍ରିକାର ସମ୍ପାଦକ ଓ ତାଙ୍କ ବିରାଦରାନ୍, ଛାପାଖାନାବାଲା ଓ ତାଙ୍କ ଆସନ୍ନ ବନ୍ଧୁମାନେ ତ ଛାପିବାକୁ ଗ୍ରହଣ କଲେ ଯାଇ ହେବ । ଛାପା ହୋଇଗଲେ ମଧ ବିଷମ ସମସ୍ୟା ସାଧନ ହେଲା ନାହିଁ । ଛାପାହେବା ବହି ତ ବିକ୍ରି ହେବା ଦରକାର । ଏସବୁ ହୋଇ ଲେଖକ ହାତକୁ ମାଲପଇଠ[୭] ହେଲାବେଳକୁ ତା'ର ବ୍ରହ୍ମଚର୍ଯ୍ୟ, ଗୃହସ୍ଥ, ବାନପ୍ରସ୍ଥ ଆଶ୍ରମ କ୍ରୟ ଭୋଗଯାଇ ଭିକ୍ଷୁ ଆଶ୍ରମରେ ସେ ପହଞ୍ଚିଥିବ । ଏଥିପାଇଁ ମୁଁ କହିଲି ଯେ ଓଡ଼ିଶାରେ ଲେଖକର ଦୁଃଖଧନ୍ଦାକୁ ମଧପଦଲୋପୀ ସମାସରେ ଅର୍ଥ କରିବାକୁ ହେବ । ଆଉଲରୁ ଆଖରଯାକେ, ପ୍ରଣବରୁ ବିସର୍ଜନଯାଏ ତାହାର ଧନ୍ଦା ଦୁଃଖପୂର୍ଣ୍ଣ । ଏଥିପାଇଁ କହିଲି, ପାଟଣା ଷ୍ଟେଟରୁ ମହାରାଜ ରାଜେନ୍ଦ୍ରନାରାୟଣଙ୍କଠାରୁ ବିଦା ହୋଇ ଆସି କଟକରେ ପହଞ୍ଚି ପୁଣି ବେଙ୍ଗଜାରେ ଯୋଚା ହେଲି । ପୁଣି ଲାଗିଲା

---

୧. ଅଲଗା, ନିଆରା, ୨. ଗ୍ରାହକ, ୩. ଲାକ, ଅନୁକୂଳ ନ ହେଲେ, ଭଲ ସମୟ ନ ଆସିଲେ, ୪. କଲିକତା, ୫. କୌଳିକ, ୬. ଏକାଧିକ ମୁନଥିବା ଉପକରଣ ଯାହା ବାଛୁରି ମୁହଁରେ ବାନ୍ଧିଦେଲେ ସେ ଗାଈଠାରୁ ଦୁଧ ପିଇପାରେ ନାହିଁ, ୭. ଧନପ୍ରାପ୍ତି ।

କାଗଜରମ୍ପା, କଲମଠେଲା, ଭୋର ୩ଟାଠାରୁ ସନ୍ଧ୍ୟା ୮ଟା । ଏହି ୧୭ଘଣ୍ଟା ମଧ୍ୟରେ ପ୍ରାଣ, ଆପାନ, ବ୍ୟାନ, ଉଦାନ, ସମାନ ବାୟୁଙ୍କ ଅଲଘନୀୟ ବ୍ୟବସ୍ଥାରେ ଯାଏ ଘଣ୍ଟା ଦୁଇ କି ତିନି । ବାକି ସମୟ ବେଙ୍ଗଳାବୁଲା ଓ ବେଙ୍ଗଳାଅଡ଼ା । ଏ ଜୀବନଟା ଅୟସର ଜୀବନ, ମଉଜର ଜୀବନ, ସଉକୀର ଜୀବନ, ଆନନ୍ଦର ଜୀବନ, ମଜଲିସର ଜୀବନ, କି ଆରଜାତିକା, ତାହା ପାଠକ, ପାଠିକା ଓ ପାଠକମ୍ ସମସ୍ତେ ଠଉରାନ୍ତୁ[୧] । ବେଳେବେଳେ ହାଡ଼ଭଙ୍ଗା ମିହନ୍ତ[୨] କରୁଥିବା ଲୋକଙ୍କ ମୁହଁରୁ ରସରସିଆ ଗୀତ ପାଠକ-ପାଠିକାମାନଙ୍କ କାନରେ ବାଜିଥିବ, କୋବା[୩] ବାଡ଼ିଆ ଲାଗିଛି, ପାଣିବୁହା ଲାଗିଛି, ହଳବୁଲା ଲାଗିଛି, ସବାରିକାନ୍ଧିଆ ଲାଗିଛି, ଏଣେ ଗୀତର ଲହରୀ ଉଠୁଛି । କଥାରେ ଅଛି ମନଫୁଲାଣିଆ ଗୀତ ଗାଏ । ଅତଏବ ମନଟା ଖୁସି ଥିଲେ, ହାଡ଼ଭଙ୍ଗା ମିହନ୍ତରେ ମଧ୍ୟ ସରସପଣ ବାହାରିପଡ଼େ । ପାଟଣା ମହାରାଜାଙ୍କ ଶ୍ରୀମୁଖରୁ ଭାଷାକୋଷର ୬ଷ୍ଠ ଖଣ୍ଡର ମୁଦ୍ରଣକର୍ମ ଆରମ୍ଭ କରିବାପାଇଁ ଯେଉଁ ଆଶାମୟ ବଚନ ପାଇଲି, ତାହାହିଁ ହାଡ଼ଭଙ୍ଗା ମିହନ୍ତକୁ ସହନୀୟ ଓ ବହନୀୟ ଫଳପ୍ରସୂ କରିଦେଲା ।

ପୂର୍ବେ ମୁଁ କହିଛି, ପାଟଣାରୁ ଆସିବାବେଳେ ସେଠା ବନ୍ଧୁମାନଙ୍କୁ କହି ଆସିଲି ଯେ, ମୋ ଆବେଦନପତ୍ର ଉପରେ ପାଟଣା ମହାରାଜାଙ୍କର କିଛି ଶ୍ରୀହସ୍ତଲିଖିତ ଅର୍ଡର ମୋତେ ନ ମିଳିବାଯାକେ ମହାରାଜଙ୍କ ଅଭୟବଚନ ବିଷୟ ସାଧାରଣରେ ପ୍ରକାଶିତ ହେବ ନାହିଁ । କିନ୍ତୁ ମୁଁ କଟକରେ ଆସି ପହଞ୍ଚିବାର ୩/୪ ଦିନ ବାଦ୍ (୨୪.୪.୩୬ରେ) କଲିକତାର ଅମୃତବଜାର ପତ୍ରିକାରେ ଆସୋସିଏଟେଡ଼୍ ପ୍ରେସର ବଲାଙ୍ଗିର ସମ୍ବାଦଦାତାଙ୍କ ପ୍ରେରିତ ସମ୍ବାଦ ବାହାରିଛି ଯେ "ପାଟଣା ମହାରାଜା ଭାଷାକୋଷ ୬ଷ୍ଠ ଖଣ୍ଡର ମୁଦ୍ରଣପାଇଁ ଷୋଳହଜାର ଟଙ୍କା ଦେବେ ବୋଲି ଅଙ୍ଗୀକାର କରିଅଛନ୍ତି" !! ମହାରାଜ ମୋତେ ଏପରି ପ୍ରତିଶ୍ରୁତି ଦେଇ ନ ଥିଲେ କିମ୍ବା ୬ଷ୍ଠ ଖଣ୍ଡର ମୁଦ୍ରଣପାଇଁ ୧୬ ହଜାର ଟଙ୍କା ଦେବେ ବୋଲି କହି ନ ଥିଲେ । କିନ୍ତୁ ବଲାଙ୍ଗିର ସାମ୍ବାଦିକ ଜଳ୍ପନା, କଳ୍ପନାକୁ ଅଳ୍ପ ବହୁତ ମିଳାଇ ଏ ଗାଲୁଗଳ୍ପର ସୃଷ୍ଟି କରିଦେଲେ । ତାହୁଁ ତାହୁଁ ଏ ସମ୍ବାଦ ଉତ୍କଳର ପ୍ରାୟ ସବୁ ସମ୍ବାଦପତ୍ରରେ ପ୍ରତିଧ୍ୱନିତ ହୋଇଗଲା । ଉତ୍କଳରେ କେତେକ ଲୋକଙ୍କଠାରୁ ଶୁଣାଗଲା ଯେ, ପ୍ରହରାଜେ ପାଟଣା ମହାରାଜାଙ୍କଠାରୁ ୧୬ ହଜାର ଟଙ୍କା ମାରିଆଣିଲେ[୪] । ସମ୍ବାଦପତ୍ରାଦିରେ ଏପରି କପୋଳକଳ୍ପିତ ସମ୍ବାଦ ପ୍ରକାଶିତ ହେବା କଥା ଦେଖି ମୁଁ ଭାରି ଉଦ୍‌ବିଗ୍ନ ହେଲି । ମୋର ଆଶଙ୍କା ହେଲା ଯେ, ଏ ବିଷୟ ସମ୍ବାଦପତ୍ରରେ ପ୍ରକାଶିତ ହେବା ଦେଖି କାଳେ ମହାରାଜ ସାହେବ ମନେ କରିବେ ଯେ ଆମଠାରୁ ତୋଡ଼ା ଟାଣିବା ଫିକର଼ରେ ଏ ଲୋଭୀ ବ୍ରାହ୍ମଣ ଆମଠାରୁ ପ୍ରତିଶ୍ରୁତି ନ ପାଇ ଏପରି ଗୋଟାଏ ହୋ[୫] ଖବରକାଗଜରେ ଉଠାଇ ଦେଉଛି ପରା ! କିନ୍ତୁ ଆନନ୍ଦର କଥା ଯେ, ଏ ସମ୍ବାଦ ମୋ ଆଡୁ ବାହାରି ନାହିଁ ବୋଲି ମହାରାଜ ପରେ ବୁଝିପାରିଥିବା ଜାଣି ମୁଁ ଆଶ୍ୱସ୍ତ ହେଲି ।

---

୧. ଅନୁମାନ କରିବା, ୨. ପରିଶ୍ରମ, ୩. ଫଳପ୍ରସୂ, ୪. ଠକିଆଣିବା, ୫. ଗୋଳ ।

ଯେ ହେଉ, ପାଟଣାରୁ ଫେରି ଭାଷାକୋଷ ୬ଷ୍ଠ ଖଣ୍ଡର ମୁଦ୍ରଣ କର୍ମରେ ଅଗ୍ରସର ହେଲି ଓ ମହାରାଜଙ୍କ ଭଳି ମହତ୍ ବ୍ୟକ୍ତିଙ୍କ ଆଶ୍ୱାସ ବଚନର ବଳରେ ମୁଁ ମନଫୁଲାଣିଆ[1] ହୋଇ କାମରେ ଲାଗିଗଲି । ଭାଷାକୋଷପାଇଁ ଶବ୍ଦ ସଙ୍କଳନ, ପାଣ୍ଡୁଲିପି ଲିଖନ ଓ ସମ୍ମାର୍ଜନ, ଓଡ଼ିଆ ଶବ୍ଦମାନଙ୍କର ବଙ୍ଗଳା ଓ ହିନ୍ଦୀ ପ୍ରତିଶବ୍ଦ ଯୋଜନ, ଇତି ମଧ୍ୟରେ ହାବୁଡୁଥିବା ନୂଆ ଶବ୍ଦମାନଙ୍କ ଯୋଜନ, ପାଣ୍ଡୁଲିପିରୁ ଉତାରି ସାଫି କରି ଲେଖିବା ଓ ଗାଲିପ୍ରୁଫ୍ ଓ ପେଜ୍‌ପ୍ରୁଫ୍ ସଂଶୋଧନ, ଏ ସବୁ ମଧ୍ୟରୁ ପ୍ରଥମ ଦୁଇ କର୍ମ (ଶବ୍ଦ ସଂଗ୍ରହ ଓ ଲିଖନ) ପୂର୍ବରୁ ସରିଅଛି । ଶେଷୋକ୍ତ ସାତୋଟି କର୍ମପାଇଁ ୧୦ ଜଣ ସହକର୍ମୀଙ୍କ ସାହାଯ୍ୟ ଲୋଡ଼ା ହୋଇଥାଏ । କିନ୍ତୁ ପ୍ରେସ୍‌କୁ କପି ଦିଆଯିବା ପୂର୍ବରୁ ପାଣ୍ଡୁଲିପିର ସମସ୍ତ ଅଭାବ ପୂର୍ଣ୍ଣ ହୋଇଅଛି, ଏହା ମୋତେ ତନ୍ନ ତନ୍ନ କରି ଦେଖିବାକୁ ହୁଏ ଓ ଛାପାଖାନାରୁ ଆସୁଥିବା ପ୍ରୁଫମାନ ମୋତେ ଦେଖିବାକୁ ହୁଏ । ହିନ୍ଦୀ ଓ ବଙ୍ଗଳା ପ୍ରତିଶବ୍ଦମାନ ଯୋଗାଉଥିବା ସହକର୍ମୀଙ୍କଠାରୁ ତତ୍ତଦ୍ ପ୍ରତିଶବ୍ଦ ସଂଗ୍ରହ କରି ଯଥାସ୍ଥାନରେ ମୋତେ ସେମାନ ସନ୍ନିବେଶିତ କରିବାକୁ ହୁଏ । ଏ ସବୁ କରିସାରି ଅବସର ସମୟରେ ଭାଷାକୋଷର କର୍ମୀମାନଙ୍କର ଓ ମୋର ଅନ୍ନସଂସ୍ଥାନପାଇଁ ମାସକୁ ଲୋଡ଼ା ଅଢ଼େଇଶହ ଟଙ୍କାର ବ୍ୟବସ୍ଥା ପରବର୍ତ୍ତୀ ମାସର ପ୍ରଥମ ସପ୍ତାହ ମଧ୍ୟରେ କରିବାକୁ ହୁଏ । ଏହା ଅବଶ୍ୟ ମୋତେ କରିବାକୁ ହୁଏ ନାହିଁ । ସେହି ଭାଷାକୋଷ ସଙ୍କଳନର ପ୍ରେରଣାଦାତା ମାସକୁ ମାସ ସେତକ ଆଣି ହାବୁଡ଼େଇ ଦିଅନ୍ତି । ଗତ ୧୦ ବର୍ଷ ହେଲା ମୁଁ ବରାବର ଅଙ୍ଗେ ନିଭେଇଛି ଯେ, ମୁଁ ଓ ମୋର ଅନନଗତିକ ସହକର୍ମୀମାନଙ୍କପାଇଁ ଆଧାର ପ୍ରତିମାସ ୭ ତାରିଖବେଳକୁ ମହାପ୍ରଭୁ ଆଣି ପହଞ୍ଚାଇ ଦିଅନ୍ତି ଓ ପ୍ରତି ମାସ ୭ ତାରିଖ ବେଳକୁ ସହକର୍ମୀମାନେ ସମସ୍ତେ ଏକତ୍ର ହୋଇ ପ୍ରଭୁଙ୍କୁ କୃତଜ୍ଞତାଜ୍ଞାପନ ଓ ପ୍ରାର୍ଥନା କରିସାରି ଯେଝା ଖୋରାକି[2] ଗଣ୍ଡାକ ଯେ ରୋକ୍‌ଠୋକ୍ ଗଣି ନେଉଁ ।

ଓଡ଼ିଶାର ଲାଟ, ମାନ୍ୟବର ସାର୍ ଜନ୍ ହବ୍‌ବାକ୍ ଯେତେବେଳେ ଓଡ଼ିଶାର କମିଶନର ଥିଲେ, ସେତେବେଳେ ତାଙ୍କର ଏ ଅପ୍ରକାଶିତ ପାଣ୍ଡୁଲିପି ପ୍ରତି ଅହେତୁକ କରୁଣାଦୃଷ୍ଟି ପଡ଼ିଥିଲା ଓ ତାଙ୍କରି ସୁପାରିସ ବଳରେ ବିହାର-ଓଡ଼ିଶା ସରକାରଙ୍କଠାରୁ ଭାଷାକୋଷପାଇଁ କୋଡ଼ିଏ ଏକୋଇଶ ହଜାର ଟଙ୍କା ମିଳିଲା । ଭାଷାକୋଷର ସୌଭାଗ୍ୟକୁ ଭାଷାକୋଷର ୫ମ ଖଣ୍ଡର ପ୍ରକାଶ ବେଳକୁ ସେ ମହୋଦୟ ଓଡ଼ିଶାର ଲାଟ ହୋଇ ଆସି ୧.୪.୩୬ ତାରିଖରେ ନୂତନ ଓଡ଼ିଶା ପ୍ରଦେଶର ଭାର ଗ୍ରହଣ କଲେ । ସେ ଭାର ଗ୍ରହଣ କରିବାର ପରଦିନ ତାଙ୍କଠାରୁ ତାଙ୍କ ନିଜ ହସ୍ତାକ୍ଷର ଓ ସ୍ୱାକ୍ଷରରେ ମୁଁ ଖଣ୍ଡିଏ ପତ୍ର ଓ ତହିଁ ସଙ୍ଗେ ଦେଢ଼ଶତ ଟଙ୍କାର ଖଣ୍ଡିଏ ଚେକ୍ ପାଇଲି । ତହିଁର କିଛିଦିନ ପୂର୍ବରୁ ପାଟଣା ବିଶ୍ୱବିଦ୍ୟାଳୟ ୩ ବର୍ଷ ପୂର୍ବେ ଦେଇଥିବା ୫ ହଜାର ଟଙ୍କାରୁ ଅଧିକା ଆଉ ଦେଢ଼ହଜାର ଟଙ୍କା ମଞ୍ଜୁର କରିଥିବା ସମ୍ବାଦ ସର୍ବତ୍ର ପ୍ରକଟିତ ହୋଇଥାଏ ।

---

୧. ଆନନ୍ଦିତ, ମନଖୁସି ୨. ଖାଇବା ପଦାର୍ଥ ।

ପାଟଣାରୁ ଫେରିଆସିବାର ଅଳ୍ପ ଦିନ ପରେ ମୟୂରଭଞ୍ଜ ମହାରାଜ ସାର୍ ପ୍ରତାପଚନ୍ଦ୍ରଭଞ୍ଜଦେବଙ୍କଠାରୁ ତାଙ୍କର ପ୍ରଥମ ପ୍ରଦତ୍ତ ଆଠ ହଜାରରୁ ଅଧିକା ଆଉ ପାଞ୍ଚ ହଜାର ଟଙ୍କା ପାଇଲି । ପାଟଣା ବିଶ୍ୱବିଦ୍ୟାଳୟରୁ ଓ ମୟୂରଭଞ୍ଜ ମହାରାଜଙ୍କଠାରୁ ପ୍ରାପ୍ତ ଟଙ୍କାରେ ୫ମ ଖଣ୍ଡର ପ୍ରକାଶାର୍ଥ ଛାପାଖାନାବାଲା, କାଗଜବାଲା ଓ ବହିବନ୍ଧା ଦପ୍ତରୀଙ୍କ ହିସାବ ଅଂଶତଃ ନିକାସ କରିବାକୁ ମୁଁ ସମର୍ଥ ହେଲି ।

ମୁଁ ଏତେଆଡ଼ୁ ଏତେ ଟଙ୍କା ପାଇବା କଥା ଶୁଣି ଏ ଟଙ୍କାଗୁଡ଼ାକ ମୁଁ ମହାପ୍ରସାଦ ସେବା କଲା ଭଳି, ମୋ ଶୂନ୍ୟଗର୍ଭକୁ କ୍ଷେପି ଦେଉଛି ବୋଲି ମୋର କେତେ ସ୍ୱନାମୀ ଓ ବେନାମୀ ବିଶିଷ୍ଟ ବନ୍ଧୁଙ୍କର ବରାବର ସ୍ୱପ୍ନଦର୍ଶନ ଓ ସ୍ୱପ୍ନଦୋଷ ଘଟୁଅଛି । ପାଠକ ପାଠିକାଙ୍କ ମଧ୍ୟରୁ ଯେବେ କାହାକୁ ସେ ରୋଗ ଧରିଥାଏ, ଧରୁଛି ଓ ଧରିବ, ତେବେ ଭାଷାକୋଷ ଆଶ୍ରମରେ ସେଥିପାଇଁ ଡେଉଁରିଆ ଥୁଆହୋଇଛି, ସେ ଡେଉଁରିଆ ସାହାଯ୍ୟରେ ତାଙ୍କର ସେ ରୋଗ ଛାଡ଼ିଯିବ ।

ମାନ୍ୟବର ସାର୍ ଜନ୍ ହବ୍‌ବାକ୍‌ଙ୍କ ପତ୍ର ପରବର୍ତ୍ତୀ ସଂଖ୍ୟାରେ ପାଠକମାନେ ଦେଖିବେ ।

॥ ୫ ॥

୧୯୩୬ ସାଲ ଅପ୍ରେଲ୍ ମାସ ପହିଲା ତାରିଖ ବୁଧବାର ଦିନ ଓଡ଼ିଆ ଜାତିର ମହାବାରିଣୀ ଯୋଗ । ସେଦିନ ନୂଆ ଓଡ଼ିଶା ପ୍ରଦେଶର ପ୍ରତିଷ୍ଠା (inauguration) ହେଲା । ସେଦିନ ସକାଳେ ରେଭେନ୍‌ସା କଲେଜ୍ ହଲ୍‌ରେ ଓଡ଼ିଶାର ପ୍ରଥମ ଲାଟ ମାନ୍ୟବର ସାର୍ ଜନ୍ ହବ୍‌ବାକ୍ ଓଡ଼ିଶାର ପ୍ରଥମ ଦରବାର କଲେ ଓ ଉକ୍ତ ଦରବାରରେ ଓଡ଼ିଶା ପ୍ରଦେଶର ସୃଷ୍ଟି ହେବା ସମ୍ବନ୍ଧରେ ସମ୍ରାଟ୍‌ଙ୍କ ଛାମୁ ଚିଟାଉ (Royal Warrant) ପଢ଼ାଗଲା । ପାଟଣା ହାଇକୋର୍ଟର ଚିଫ୍ ଜଷ୍ଟିସ୍ ମାନ୍ୟବର ସାର୍ କୋର୍ଟ୍‌ନୀ ଟେରେଲ୍‌ଙ୍କ ସମ୍ମୁଖରେ ଲାଟ ମହୋଦୟ ପଦବୀ ଗ୍ରହଣ କରିବାର ଶପଥ ଗ୍ରହଣ କଲେ ଓ ସର୍ବସାଧାରଣ ପକ୍ଷରୁ ଦିଆଯିବା ଯୋଠ (joint) ଅଭିନନ୍ଦନପତ୍ର (address) ର ପ୍ରତ୍ୟୁତ୍ତର ଦେଲେ । ସେଦିନ ଦରବାରରେ ନବ ପ୍ରଦେଶର ବିଭିନ୍ନ ଅଞ୍ଚଳରୁ ନିମନ୍ତ୍ରିତ ବ୍ୟକ୍ତିମାନଙ୍କ ମଧ୍ୟରୁ ମୋ ସଙ୍ଗେ ପରିଚିତ ବନ୍ଧୁମାନଙ୍କ ସଙ୍ଗେ ମୋର ଦେଖାହେଲା । ଆଜିକୁ ୩୩ ବର୍ଷ ତଳେ ସମଗ୍ର ଉତ୍କଳଭାଷୀ ଅଞ୍ଚଳକୁ ଏକଶାସନାଧୀନ କରିବାର କଳ୍ପନା ଜଳ୍ପନା ଉତ୍କଳ ସମ୍ମିଳନୀରେ ହେବା ବେଳେ ସେହି କଳ୍ପନା ଜଳ୍ପନା, ଆନ୍ଦୋଳନ ଅନୁମୋଦନାଦିରେ କାର୍ଯ୍ୟ କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଏ ନଗଣ୍ୟ ବ୍ୟକ୍ତି ଜଣେ ଖିଜ୍‌ମଦ୍‌ଗାର[୧] ଥିଲା । ସେ ଆନ୍ଦୋଳନର କର୍ଣ୍ଣଧାର ଓ ନାଉରି ମିଷ୍ଟର୍ ଦାସ, ଖଲ୍ଲିକୋଟର ସ୍ୱର୍ଗୀୟ ରାଜା ହରିହର, ନୀଳମଣି ବିଦ୍ୟାରତ୍ନ, ବିଶ୍ୱନାଥ, ନରସିଂହ ଦାସ, ରାମଚନ୍ଦ୍ର ଦାଶ, ମଥୁରୀ

୧. ସେବକ, ଚାକର ।

ସାହୁ, ଫକୀରମୋହନ, ଗୌରୀଶଙ୍କର ଆଦି ଆଜି ମରଧାମରୁ ବିଦାୟ ଗ୍ରହଣ କରିଅଛନ୍ତି । ସେହି ୩୩ ବର୍ଷ ତଳର ସ୍ୱପ୍ନରାଜ୍ୟର କଳ୍ପନା ଜଳ୍ପନାକୁ ପ୍ରଭୁ ଆଜି ବାସ୍ତବ ସତ୍ୟରେ ପରିଣତ କଲେ ଓ ଏହା ଦେଖିବାକୁ ପ୍ରଭୁ ମୋତେ ବସାଇ ରଖିଛନ୍ତି, ଏହି କଥା ଭାବୁ ଭାବୁ ଏ ଆନ୍ଦୋଳନ ନୌକାର ସ୍ୱର୍ଗୀୟ ମଙ୍ଗଧରା[୧] ଓ ନାଉରିମାନଙ୍କ ପୁଣ୍ୟସ୍ମୃତି ହୃଦୟରେ ଉଇଁ ଉଠିଲା ଓ ସେମାନଙ୍କ ଉଦ୍ଦେଶ୍ୟରେ ହାତ ଦୁଇଟା ସ୍ୱତଃ ନତ ମସ୍ତକରେ ଲାଗିଗଲା । ସେହିକାଳର ଆନ୍ଦୋଳନରେ ଯୋଗ ଦେଇଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ କନିକାର ରାଜା ବାହାଦୁର ରାଜେନ୍ଦ୍ରନାରାୟଣ, ଶ୍ରୀ ଜୟକୃଷ୍ଣ ଚ୍ୟାଉପଟ୍ଟନାୟକ, ଶ୍ରୀ କୃଷ୍ଣଚନ୍ଦ୍ର ସାହାଣି, ଶ୍ରୀ ଶଶିଭୂଷଣ ରାୟ, ଶ୍ରୀ ଶଶିଭୂଷଣ ରଥ, ରାୟସାହେବ ରଘୁନାଥ ରାଓ, ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଓ ଶ୍ରୀ ବନବିହାରୀ ପାଲିତ ଆଦିଙ୍କ ସଙ୍ଗେ ଦରବାରରେ ଓ ଦରବାର ପରେ ଭେଟ ହେବାରୁ ପରସ୍ପର ପରସ୍ପରଙ୍କୁ ଅଭିବାଦନ (Congratulate) କଲୁଁ । ତହିଁ ପରଦିନ ଦୁଇ ତାରିଖ ଅପ୍ରେଲରେ ଉତ୍କଳର ଐତିହାସିକ ସ୍ମୃତିପୂତ ବାରବାଟୀ କିଲ୍ଲାରେ ମାନ୍ୟବର ଲାଟ ସାହେବଙ୍କୁ ଭେଟିବା ସକାଶେ ଯେଉଁ ବନ୍ଧୁ ସମ୍ମେଳନ ହୋଇଥିଲା, ତହିଁରେ ନବ ଓଡ଼ିଶାର ସବୁ ଅଞ୍ଚଳର ସହସ୍ରାଧିକ ବ୍ୟକ୍ତି ଯୋଗ ଦେଇଥିଲେ । ଏପରି ବିରାଟ ବନ୍ଧୁ ସମ୍ମେଳନ କଟକରେ ଦେଖିବା ଭାଗ୍ୟ ପୂର୍ବେ ମୋର ଘଟି ନ ଥିଲା । ଯେଉଁ ଯେଉଁ ଓଡ଼ିଆଭାଷୀ ଅଞ୍ଚଳମାନ ଓଡ଼ିଶା ପ୍ରଦେଶରେ ମିଶି ନାହିଁ, ସେମାନଙ୍କ ବିଚ୍ଛେଦଜନିତ ଦୁଃଖ ମଧ ମନକୁ ଘାଣ୍ଟୁଥାଏ । ସେହି ସମୟରେ ଜୟପୁରର ମହାରାଜ ସାହିତ୍ୟସମ୍ରାଟ୍ ବିକ୍ରମଦେବଙ୍କର ଦରବାର ଓ ସମ୍ମେଳନରେ ଯୋଗ ଦେବାପାଇଁ କଟକ ଆସିବା ସ୍ଥିର ହୋଇଥିଲା । ସେ ମଧ ୩୩ ବର୍ଷ ତଳେ ଓଡ଼ିଆଭାଷୀ ଅଞ୍ଚଳର ଏକୀକରଣ ପ୍ରସ୍ତାବର ଜଣେ ପୁରୋଧା ଥିଲେ । ମହାରାଜ କଟକ ଆସିଥିଲେ, ବିଦୁରଘରେ ଶ୍ରୀକୃଷ୍ଣ କୁଳୁହାଁ[୨] ହେଲାଭଳି ମୋ ସଙ୍ଗରେ ରହିଥାଆନ୍ତେ ବୋଲି ପୂର୍ବରୁ ଅଙ୍ଗୀକାର କରିଥିଲେ, କିନ୍ତୁ ଅପ୍ରତ୍ୟାଶିତ ପୀଡ଼ା ଓ ଦୁର୍ବଳତାଯୋଗୁଁ ସେ କଟକ ଆସିପାରିଲେ ନାହିଁ ଓ ମହାରାଜ ତାଙ୍କ ଜାମାତା କୁମାର ବିଦ୍ୟାଧର ସିଂହଦେବଙ୍କୁ ପଠାଇଲେ ଓ କୁମାରସାହେବ ମୋର ଅଦିନିଆ ଅତିଥି ହୋଇଥାଆନ୍ତି । 'ଅଦିନିଆ ଅତିଥି' ବୋଲି କହିବାର ଅର୍ଥ ଏହି କି, ସେ ସମୟରେ କୁମାର ସାହେବଙ୍କର ଗୁଡ଼ିଏ ଲଗ୍ନିକ ଓ ଅନ୍ତରଙ୍ଗ ମହାରାଜ, ରାଜା, ଯୁବରାଜ ଓ କୁମାର କଟକରେ ଉପସ୍ଥିତ ଥିଲେହେଁ, କୁମାର ସାହେବ ଶ୍ୱଶୁର ମହାରାଜଙ୍କ ଉପଦେଶ ପାଳନ କରି ମୋ ଘରେ ଶାଗଭାତରେ ସନ୍ତୁଷ୍ଟ ହୋଇ ରହିଲେ । ସେହି ସମୟରେ ଖଲ୍ଲିକୋଟର ରାଜାବାହାଦୁର ଓ ପାରଳାର ଗଜପତି ମହାରାଜଙ୍କୁ ଭେଟି ନବଓଡ଼ିଶା ପ୍ରଦେଶ ଗଢ଼ାଯିବା ବିଷୟରେ ସେମାନଙ୍କ ଉଦ୍ୟମପାଇଁ ସମଗ୍ର ଜାତିର କୃତଜ୍ଞତା ସେମାନଙ୍କଠାରେ ଅର୍ପଣ କଲି । ଦରବାର ଓ ବନ୍ଧୁ ସମ୍ମେଳନର ମଉଜ ମଜଲିସରେ ଦୁଇଦିନ କଟିଗଲା । ତୃତୀୟ ଦିନ ସକାଳୁ ଲାଟଭବନର ପୋଷାକ, ତକମା[୩] ଓ ଚପରାସ

---

୧. ନିୟଂତ୍ରକ, ମୁଖ୍ୟ, ୨. ଅତିଥି, ୩. ସନନ୍ଦ ।

ପିଅନ୍ଧା ଜଣେ ତଗର ଖଣ୍ଡିଏ ଚିଠି ଆଣି ମୋତେ ଦେଲା । ଚିଠିର ଲଫାଫା ଉପରେ ଇଂରାଜୀରେ ଲେଖା 'ବାବୁ ଗୋପାଳଚନ୍ଦ୍ର ପ୍ରହରାଜ' ଓ ପଛରେ 'ଗଭର୍ଣ୍ଣରଙ୍କ ଡେରା, ଓଡ଼ିଶା' ମୁଦ୍ରିତ । ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ମାନ୍ୟବର ସାର ଜନ୍ ହବ୍‌ବାକ୍ ପ୍ରଥମ ସହାୟକ ଥିବା କଥା ଆଗରୁ ଲେଖିଅଛି । ତଦ୍‌ସମ୍ପର୍କରେ ତାଙ୍କଠାରୁ ମୁଁ ଏକାଧିକ ପତ୍ର ପୂର୍ବରୁ ପାଇଅଛି, ଅତଏବ ତାଙ୍କ ଶ୍ରୀହସ୍ତାକ୍ଷର ମୋର ସୁପରିଚିତ । ଓଡ଼ିଶା ଡିଭିଜନର କମିଶନର୍ ହେବାଠାରୁ ସେ ମହୋଦୟ ବାଙ୍କିଙ୍ଗ୍ ଏନକ୍ୱାୟାରୀ କମିଟିର ପ୍ରେସିଡେଣ୍ଟ, ବିହାର-ଓଡ଼ିଶା ଲାଟସଭାର ଅର୍ଥସଦସ୍ୟ, ଓଡ଼ିଶା ଶାସନବିଷୟକ କମିଟିର ପ୍ରେସିଡେଣ୍ଟ ହୋଇଥିବା ସମୟରେ ମୁଁ ତାଙ୍କଠାରୁ ଏକାଧିକ ଅନୁଗ୍ରହ ଓ ଉତ୍ସାହଲିପି ପାଇଅଛି । ଅତଏବ ତାଙ୍କ ସ୍ୱହସ୍ତାକ୍ଷର ସହିତ ମୁଁ ସୁପରିଚିତ । ଲଫାଫା ଉପରେ ତାଙ୍କ ହସ୍ତାକ୍ଷର ଦେଖି ମୋ ଛାତି ଉଦ୍‌ବେଗରେ ଧଡ଼ ଧଡ଼ ହେଲା । ଲଫାଫାଟି ଫିଟାଇଲା ବେଳକୁ ଚିଠି ମଧ୍ୟରୁ ଖଣ୍ଡିଏ ଦେଢ଼ଶହ ଟଙ୍କାର ଚେକ୍ ଖସି ପଡ଼ିଲା । ମୁଁ ଅନୁଭବରୁ ଦେଖିଛି ଯେ, ବ୍ରାହ୍ମଣସ୍ୱଭାବସୁଲଭ ଲୋଭ ଚୂଡ଼ାଦେହି, ବିଦାକି ତାମ୍ରମୁଦ୍ରା ପ୍ରତି ଯେତେ, ରୌପ୍ୟମୁଦ୍ରାପାଇଁ ତତୋଽଧିକ ୧୬ ଗୁଣ ଓ ଚେକ୍ ପ୍ରତି ତତୋଽଧିକ ୧୬ ଗୁଣ । ଚେକ୍ ଖଣ୍ଡିକ ଭୂମିରୁ ଗୋଟାଇ ନେଇ ପତ୍ରଖଣ୍ଡି ପାଠ କଲି । ପତ୍ରଖଣ୍ଡି ତାଙ୍କ ସ୍ୱହସ୍ତରେ ଲେଖା । ପତ୍ରର ଓଡ଼ିଆ ଅନୁବାଦ :

"ଓଡ଼ିଶା ଗଭର୍ଣ୍ଣରଙ୍କ କ୍ୟାମ୍ପ
କଟକ
୨-୪-୩୬

ପ୍ରିୟ ଗୋପାଳଚନ୍ଦ୍ର ପ୍ରହରାଜ,

ତୁମ୍ଭ ଭାଷାକୋଷର ପୂର୍ତ୍ତିପାଇଁ ପାଟଣା ବିଶ୍ୱବିଦ୍ୟାଳୟ ଆଖିଦୃଷ୍ଟିଆ ଦାନ କରିଥିବା ଶୁଣି ମୁଁ ଅତି ଆନନ୍ଦିତ ହେଉଅଛି । ମୁଁ ମୋର ଯତ୍‌କିଞ୍ଚିତ୍ ସାହାଯ୍ୟ ଏଥି ସଙ୍ଗେ ପଠାଇଲି ।

ସେଠାରେ କି କି ଓଡ଼ିଆ ବହି ଅଛି, ଏହି କଥା ଦେଖିବାକୁ ମୁଁ ଲଣ୍ଡନର ପ୍ରାଚ୍ୟବିଦ୍ୟାଶିକ୍ଷା କଲେଜ୍ (London College of Oriental Studies)କୁ ଯାଇଥିଲି । ସୁଖର କଥା ଯେ, ତୁମ ଡିକ୍ସନାରୀକୁ କଲେଜର କର୍ତ୍ତୃପକ୍ଷମାନେ ରଖିଛନ୍ତି । କିନ୍ତୁ ସେମାନଙ୍କ ସଂଗୃହୀତ ଓଡ଼ିଆ ବହିର ସଂଖ୍ୟା ନଗଣ୍ୟ ଅଟେ । ମୁଁ ଆଶା କରୁଛି ଯେ, ମୁଁ ମୋ ଅମଳରେ ଉକ୍ତ କଲେଜ୍ ଲାଇବ୍ରେରୀର ଏ ଅଭାବ ଦୂର କରିପାରିବି । ଇତି ।

ତୁମ୍ଭର ଶୁଭାନୁଧ୍ୟାୟୀ

[ସ୍ୱାକ୍ଷର] ଜେ.ଏ. ହବ୍‌ବାକ୍"

ଚିଠି ଖଣ୍ଡି ପାଠକରି ମୋର 'ଭିଦ୍ୟତେହୃଦୟଗ୍ରନ୍ଥିଃ ଛିଦ୍ୟତେ ସର୍ବସଂଶୟଃ' ହୋଇଗଲା । ଭାବିଲି, ନୂତନ ପ୍ରଦେଶର ଗୁରୁଜଞ୍ଜାଳ ଓ ଅୟମାରମ୍ଭ ଦରବାର, ସମ୍ମେଳନ ଓ ଅନ୍ୟ ଆନୁଷଙ୍ଗିକ ଓ ଶାସନଗତ ବ୍ୟବସ୍ଥା ଆଦିର ତଡ଼ବଡ଼ିରେ¹ ମଧ୍ୟରେ ଯେଉଁ

---

୧. ତରବର, କାର୍ଯ୍ୟବ୍ୟସ୍ତତା ।

ମହାନୁଭବ ବ୍ୟକ୍ତି ଭାଷାକୋଷକୁ ହୃଦୟୈକଦେଶରେ ସ୍ନେହମ୍ରକ୍ଷିତ ସ୍ଥାନ ଦେଇଅଛନ୍ତି ଓ ବିଲାତରେ ଥାଇ ସୁଦ୍ଧା ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଯାହାଙ୍କର ସ୍ନେହଦୃଷ୍ଟି ପଡ଼ିଅଛି, ତାଙ୍କୁ ପାଇ ଆଜି ଓଡ଼ିଶା ପ୍ରଦେଶ ଓ ଓଡ଼ିଆ ଜାତି ଧନ୍ୟ ହୋଇଅଛି । ସେହି ୩ ତାରିଖ ଦିନ ଉତ୍କଳ ସାହିତ୍ୟ ସମାଜର ସାମ୍ୱତ୍ସରିକ ଉତ୍ସବ କୁମାର, ବିଦ୍ୟାଧର ସିଂହଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା । ମହାରାଜ ବିକ୍ରମଦେବ ଏ ଉତ୍ସବର ସଭାପତିତ୍ୱରେ ବଞ୍ଚିତ ହୋଇଥିଲେହେଁ, ପୀଡ଼ାଯୋଗୁଁ ସେ ଉପସ୍ଥିତ ହୋଇ ନ ପାରିବାରୁ କୁମାର ସାହେବ ସେ କ୍ଷେତ୍ରରେ ମଧ୍ୟ ଶ୍ୱଶୁରଙ୍କ କର୍ତ୍ତବ୍ୟ ତୁଲାଇନେଲେ । ସାଧାରଣତଃ ଲାଟସାହେବଙ୍କ ପତ୍ରମାନ ସେ ସ୍ୱହସ୍ତାକ୍ଷରରେ ଲେଖନ୍ତି ନାହିଁ, ତାଙ୍କ ଆଦେଶରେ ପ୍ରାଇଭେଟ୍ ସେକ୍ରେଟରୀ ପତ୍ର ଲେଖନ୍ତି । କିନ୍ତୁ ଭାଷାକୋଷର ସଂଗ୍ରାହକ ନିକଟକୁ ଏ ପତ୍ର ସ୍ୱହସ୍ତରେ ଲେଖି, ସାର୍ ଜନ୍ ଭାଷାକୋଷକୁ ନିଜର ଘରୋଇ ଇଲାକାଭୁକ୍ତ କରିଛନ୍ତି, ଏହା ଭାବି ମୁଁ ଆନନ୍ଦରେ ବିହ୍ୱଳ ହୋଇଗଲି । ମୁଁ ଏପରି ବିହ୍ୱଳ ହୋଇଗଲି ଯେ, ତାଙ୍କଠାରୁ ଅନୁମତି ନ ପାଇ ସୁଦ୍ଧା ସେ ପତ୍ରର ବିଷୟ ଉତ୍କଳ ସାହିତ୍ୟ ସମାଜର ଉତ୍ସବରେ ସାହିତ୍ୟଶାଖାର ଓ ଇତିହାସଶାଖାର ଅଧିବେଶନରେ ପ୍ରକାଶ କରି ପକାଇଲି । ସୁଖର ବିଷୟ ଯେ, ମହାମନା ସାର ଜନ୍ ପରେ ମୋର ଏ ଧୃଷ୍ଟତା ମାର୍ଜନ କରିଅଛନ୍ତି ।

ଏହି ସମୟରେ ମାନ୍ୟବର ଲାଟସାହେବଙ୍କ ସଙ୍ଗେ କଟକଠାରେ ବହୁ ଲୋକଙ୍କ ମୁଲାକାତ୍[୧] ହେଲା, କିନ୍ତୁ ଭାଗ୍ୟବିଡ଼ମ୍ୱନାକ୍ରମେ ବନ୍ଧୁ ସମ୍ମେଳନୀରେ ଉପରଠାଉରିଆ ଦେଖାସାକ୍ଷାତ୍ ଛଡ଼ା ମୋ ସଙ୍ଗେ ଲାଟଭବନରେ ତାଙ୍କର ସାକ୍ଷାତ୍ ହୋଇପାରିଲା ନାହିଁ । ନୂତନ ପ୍ରଦେଶର ପ୍ରତିଷ୍ଠା ଉପଲକ୍ଷରେ ୧.୪.୩୬ରେ ହେବା ଦରବାରରେ ମୁଁ ସେପର୍ଯ୍ୟନ୍ତ ପ୍ରକାଶିତ ଭାଷାକୋଷ ୫ ଖଣ୍ଡ ଲାଟସାହେବଙ୍କ ହସ୍ତରେ ଅର୍ପଣ କରିବାକୁ ସେକ୍ରେଟେରୀଙ୍କୁ ପୂର୍ବରୁ ଅନୁମତି ମାଗିଥିଲି, କିନ୍ତୁ ତାହା ମୋ ଭାଗ୍ୟରେ ଘଟିଲା ନାହିଁ । ତତ୍ପରେ କଟକର ବହୁଲୋକଙ୍କୁ ଲାଟଭବନରେ ମାନ୍ୟବର ଲାଟସାହେବ ଭେଟ[୧] ଦେଇଥିବା ସ୍ଥଳରେ ମୁଁ ତାଙ୍କର ଭେଟ ପାଇଲି ନାହିଁ ।

ସାର୍ ଜନ୍ ଓଡ଼ିଶାର ଲାଟ୍ ଗାଦିରେ ବସିବା ପୂର୍ବରୁ ବିଲାତ ଯାଇଥିଲେ, ତେଣୁ ଫେରି ସଙ୍ଗେ ସଙ୍ଗେ ଓଡ଼ିଶାକୁ ଆସିଲେ ଓ କଟକରେ ସେହିଦିନ (୧.୧.୩୬) ଭୋର୍ ପହଞ୍ଚିଥିବାରୁ ମୋର ତାଙ୍କୁ ଭାଷାକୋଷ ଭେଟିବା ପ୍ରାର୍ଥନା ଓ ମୋର ତାଙ୍କୁ ମୁଲାକାତ୍ କରିବା ପ୍ରାର୍ଥନା ତାଙ୍କ କର୍ଣ୍ଣଗୋଚର ହୋଇ ନାହିଁ ବୋଲି ଭାବି ମୁଁ କର୍ମକୁ ଆଦରି ରହିଲି ।

ଏହି ଘଟନାଚକ୍ରର ଘୂର୍ଣ୍ଣନ ଓ ବିଧିବିଡ଼ମ୍ୱନା ଉପରେ କାହାର ହାତ ନାହିଁ । ସେଥିର କାହାଣୀ ପରେ କହିବି ।

---

୧. ଦେଖାସାକ୍ଷାତ୍ ।

॥ ୬ ॥

'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ର ପ୍ରକାଶ ବ୍ୟୟ ସଂଗ୍ରହ କରିବାପାଇଁ ଅନେକ ସାହିତ୍ୟାନୁରାଗୀ ସାହିତ୍ୟପ୍ରେମିକ, ସାହିତ୍ୟସେବକ, ସାହିତ୍ୟିକପୃଷ୍ଠଦରପୋଷକ ଲକ୍ଷ୍ମୀଙ୍କ ବରପୁତ୍ରମାନଙ୍କ ସିଂହଦ୍ୱାର ଓ ସରକାରଙ୍କର ଏବଂ ଅନେକ ସାହିତ୍ୟିକ ଅନୁଷ୍ଠାନ ଓ ବିଶ୍ୱବିଦ୍ୟାଳୟମାନଙ୍କ ଫାଟକ ପାଖରେ ମୋତେ ଲୁଙ୍ଗୁ ଫୁଙ୍ଗୁ[1] ହେବାକୁ ପଡ଼ିଅଛି ଓ ମୋଭଳି ଶକ୍ତିହୀନ, ସମ୍ବଳହୀନ, ବିଦ୍ୟାହୀନ ଓ ଧନହୀନ ବ୍ୟକ୍ତି – ପୃଷ୍ଠପୋଷକ, ଗ୍ରାହକ, ଉତ୍ତମର୍ଣ୍ଣ ସରକାର ଓ ବିଶ୍ୱବିଦ୍ୟାଳୟମାନଙ୍କ ଅର୍ଥାନୁକୂଲ୍ୟରୁ ଲକ୍ଷାବଧି ଟଙ୍କାର ବ୍ୟବସ୍ଥା କରି ଓଡ଼ିଆ ଭାଷାକୋଷ ରୂପ ଦୁସ୍ତର ସପ୍ତସିନ୍ଧୁ ମଧ୍ୟରୁ ଛଅ ସାର ଅତିକ୍ରମ କରିବାକୁ ସମର୍ଥ ହୋଇଅଛି । ଏ ସମ୍ପର୍କୀୟ ଗସ୍ତରେ ମୋର ଯେଉଁ ସବୁ ଅନୁଭୂତି ହୋଇଅଛି, ଉତ୍କଳରେ ଭବିଷ୍ୟତ୍‌ରେ ଏହିପରି ଦୁରୂହ କର୍ମରେ ହାତ ଦେବା ବ୍ୟକ୍ତିଙ୍କ ଅବଗତି ଓ ଅନୁଶାସନ (guidance) ନିମନ୍ତେ ମୁଁ ସେହିସବୁ ଅନୁଭୂତିକୁ 'ଭାଷାକୋଷ ପାଇଁ ସଫର୍' ଶିରୋନାମା ଦେଇ ଉତ୍କଳ ସାହିତ୍ୟରେ ଧାରାବାହିକ ଲେଖୁଅଛି । ମୁଁ ସେ ବିବୃତିମାନଙ୍କରେ ବ୍ୟକ୍ତିଗତ ଆକ୍ଷେପ ବା ଆକ୍ରମଣକୁ ଯଥାଶକ୍ତି ଏଡ଼ିବାକୁ ଚେଷ୍ଟା କରିଅଛି । କାରଣ, ବ୍ୟକ୍ତିବିଶେଷଙ୍କୁ ଗାଳିଦେବା କିମ୍ବା ଲୋକଙ୍କୁ ଚିହ୍ନାଇବା ମୋର ଉଦ୍ଦେଶ୍ୟ ନୁହେଁ, କେବଳ ଭବିଷ୍ୟତ୍ କର୍ମୀଙ୍କୁ କି କି ପ୍ରକାରର ସ୍ୱନାମୀ ଓ ବେନାମୀ 'ବୋଲୁଅ ମାଡ଼'ରୁ ଆପଣା ଦିହକୁ ବଞ୍ଚାଇ କାମ କରିବାକୁ ହେବ, ତାହାହିଁ ସୂଚନା କରିବା ମୋର ଉଦ୍ଦେଶ୍ୟ ଅଟେ ।

ଆପେ କାମ କରିବା ନାହିଁ, କିନ୍ତୁ ଅନ୍ୟ ଯେ କରିବ ତାକୁ ଶୋଧିବା, ତା'ର ଅନିଷ୍ଟ ଚିନ୍ତା କରିବା, ତା'ର ଦୁର୍ନାମ କରିବା, ତା' ନାମରେ ଚୁଗୁଲି କରିବା, ଦେଶସେବକ ମୁଖା ବାନ୍ଧି ତା' କାର୍ଯ୍ୟରେ ପ୍ରକାଶ୍ୟରେ ଓ ପ୍ରଚ୍ଛନ୍ନ ଭାବରେ ବାଧା ଜନ୍ମାଇବା ରୂପ ବ୍ରତରେ ମୋର ଗୁଡ଼ିଏ ବନ୍ଧୁ ଆଜିକୁ ୬/୭ ବର୍ଷ ହେବ ଲାଗିଅଛନ୍ତି । ସଂସ୍କୃତରେ ଗୋଟିଏ ଶ୍ଳୋକ ଅଛି-

ଏତେ ସତ୍‌ପୁରୁଷାଃ ପରାର୍ଥଘଟକାଃ
ସ୍ୱାର୍ଥଂ ପରିତ୍ୟଜ୍ୟ ଯେ,
ସାମାନ୍ୟାସ୍ତୁ ପରାର୍ଥମୁଦ୍ୟମଭୃତଃ
ସ୍ୱାର୍ଥାବିରୋଧେନ ଯେ ।
ତେଽମୀ ମାନୁଷରାକ୍ଷସାଃ ପରହିତଂ
ସ୍ୱାର୍ଥାୟ ନିଘ୍ନନ୍ତି ଯେ,
ଯେ ନିଘ୍ନନ୍ତି ନିରର୍ଥକଂ ପରହିତଂ
ତେ କେ ନ ଜାନୀମହେ ॥

୧. କାମ ହାସଲପାଇଁ ଏପଟସେପଟ ।

ଏଥିର ମର୍ମକୁ ନେଇ ଆମ ଶଶୀଭାଇ (ଶ୍ରୀ ଶଶିଭୂଷଣ ରାୟ) କାମଶାସ୍ତ୍ରୋକ୍ତ ପୁରୁଷ ଜାତିର ୪ ବିଭାଗ ପରି (ପାଠକ ମହାଶୟ ! ଏ ବାକ୍ୟଟା କୁରୁଚିପୂର୍ଣ୍ଣ ହେଲା କି ?) ପରର ସ୍ୱାର୍ଥଘାତକ ଜୀବ ଜାତିକୁ ଚାରିକିସମ ପ୍ରକାର କରି ଗୀତ ବନେଇଛନ୍ତି, ତାହା ଉତ୍କଳସାହିତ୍ୟ ପତ୍ରିକାର ୨୨ ଭାଗ ୩ୟ ସଂଖ୍ୟାରେ ବାହାରିଛି । ପାଠକମାନେ ଶଶୀଭାଇଙ୍କ କବିତା ଶୁଣି ଆଛା ହେଉନ୍ତୁ :

ଚାରି ଜାତି ପୁରୁଷ :
ନିଜ ବୋଲି ଭାଳି ପରପୀଡ଼ନରେ
ଯାହାର ହୃଦୟ ହୁଏ ବ୍ୟଥିତ,
ସ୍ୱାର୍ଥବଳି ଦିଏ ପର କାରଣରେ
'ଉତ୍ତମ ପୁରୁଷ' ସେହୁ କଥିତ । ୧ ।
ନିଜ କାର୍ଯ୍ୟ ସାଧି ଶେଷକୁ ପରର
ଉପକାର ବ୍ରତେ ଢାଳଇ ମନ,
ପ୍ରଶଂସନ୍ତି ସର୍ବେ ତଥାପି ତାହାକୁ
'ମଧମ ପୁରୁଷ' ଅଟେ ସେ ଜନ । ୨ ।
ସର୍ବଦା ସେ ଜନ ନିଜ ହିତପାଇଁ
ପରହିତ ନାଶକରଣେ ରତ,
'ଅଧମ ପୁରୁଷ' ଅଟଇ ସେ ଜନ
ଦୁରାଚାର ସିନା ସେହୁ ସତତ । ୩ ।
ବିନା କାରଣରେ ପରସ୍ୱାର୍ଥନାଶ
ଆଚରି ଯେ ଜନ ଆମୋଦ କରେ,
ନ ଜାଣଇ ମୁହିଁ ତାର ବିଶେଷଣ,
କି ବୋଲି ଡାକିବି ସେହି ପାମରେ । ୪ ।

ଉପରିଲିଖିତ ଶ୍ରେଣୀ ମଧ୍ୟରୁ ଶେଷୋକ୍ତ ଶ୍ରେଣୀର ଜୀବଙ୍କ କର୍ମକୁ 'ରୋଗବିଶେଷ' ବୋଲି ମୁଁ ସ୍ଥିର କରିଅଛି । ତଥାପି ସେ ରୋଗୀମାନଙ୍କୁ ନାମ ଧରି ମୁଁ ଚିହ୍ନାଇ ଦେଇ ନାହିଁ, କେବଳ ସେ ରୋଗର ବିବୃତି ମାତ୍ର 'ଭାଷାକୋଷ ପାଇଁ ସଫର'ରେ ଲେଖିଅଛି । ଲକ୍ଷଣ ଓ ଫଳ ଦେଖି ରୋଗ ନିର୍ଣ୍ଣୟ କରିବାରେ ବିଶେଷଜ୍ଞ ଓ ମାର୍କାମରା ଚିକିତ୍ସକମାନେ ଅନେକ ସମୟରେ ଝୁଣ୍ଟୁଅଛନ୍ତି ଅନ୍ୟମନସ୍କ ଅଥବା ତରବର ଯୋଗୁଁ ଆଘାତ ପାଇ ଅଟକିଯିବା ଏପରି ଅବସ୍ଥାରେ ରୋଗର ନାମକରଣରେ ଭୁଲ କରିବା ମୋଭଳି ଅନଭିଜ୍ଞ ବ୍ୟକ୍ତି ପକ୍ଷରେ ସ୍ୱାଭାବିକ । ଏ ରୋଗୀଙ୍କର ଗୋଟିଏ ପ୍ରଧାନ ଲକ୍ଷଣ ମୁଁ ଦେଖିଛି ଯେ, ସେମାନେ ସ୍ୱପ୍ନରେ ସୁଦ୍ଧା (ପାଠକମାନେ କ୍ଷମା କରିବେ, ପୁଣି ଶରତବାବୁଙ୍କଦ୍ୱାରା

ଆନୀତ ଅଭିଯୋଗର ବିଷୟୀଭୂତ କୁରୁଚିପୂର୍ଣ୍ଣ କୁକଥା ଓ ତାଙ୍କ ଟୀକାକାରଙ୍କ ମତରେ ଅଶ୍ଳୀଳତାବିଶିଷ୍ଟ ଶବ୍ଦଯୁଗ୍ମର ପ୍ରଥମ ଶବ୍ଦ ମୁଁ ବ୍ୟବହାର କରୁଛି)[୧] ଗତ ୨୦ ବର୍ଷ ମଧ୍ୟରେ ଭାଷାକୋଷ ଆଶ୍ରମରେ ଥରେ ମୁହଁ ବା ଟାପୁ[୨] ମାରି ନାହାନ୍ତି କିମ୍ବା ଭାଷାକୋଷପାଇଁ କେବେହେଲେ କାୟମନୋବାକ୍ୟରେ ସାହାଯ୍ୟ କରି· ନାହାନ୍ତି କିମ୍ବା ଭାଷାକୋଷର ସଙ୍କଳନ, ଶବ୍ଦସଂଗ୍ରହ, ଅର୍ଥସଂଗ୍ରହ, ଗ୍ରାହକସଂଗ୍ରହ ବିଷୟରେ ମୋତେ ସାହାଯ୍ୟ କରି ନାହାନ୍ତି କିମ୍ବା ମୋ ପାଖକୁ ଆସି ଭାଷାକୋଷରେ ପରିଲକ୍ଷିତ କୌଣସି ଭ୍ରାନ୍ତି ବା ପ୍ରମାଦ ବା ଦୋଷ ପ୍ରତି ମୋ ଦୃଷ୍ଟି ଆକର୍ଷଣ କରି ନାହାନ୍ତି, କିନ୍ତୁ ଭାଷାକୋଷର ପ୍ରଥମ ଓ ପରବର୍ତ୍ତୀ ଖଣ୍ଡମାନ ପ୍ରକାଶିତ ହେବା ଦେଖି ସେମାନଙ୍କ ପିଳେହି ପାଣି ହୋଇଯାଇଅଛି । (ପାଠକ ଅବଧାନ ! କ୍ଷମା କରିବେ । ଏ ବାକ୍ୟଟା ପୁଣି କୁରୁଚି ବା ଅଶ୍ଳୀଳତା ଆଡ଼କୁ ମୁହାଁଇଲା ବୋଲି ଆପଣ ନାକ ଟାଉଁ ଟାଉଁ କରନ୍ତୁ ନାହିଁ କାରଣ ଏ ବାକ୍ୟକୁ ଶ୍ଳୀଳ ଓ ସୁରୁଚିମୟ, ସାଧୁ ଶବ୍ଦରେ ବାକ୍ୟାନ୍ତର କଲେ ଏହା 'ପ୍ଳୀହା ଜଳୀଭୂତ ହୋଇଅଛି' ହେବ । ପ୍ଳୀହା ଜଳୀଭୂତ ହେବା ବାକ୍ୟ ବା ତହିଁର ଅର୍ଥ କି ଭାଷାକୋଷ, କି ପାଳକୋଷ, କି ବୈଦ୍ୟକ କୋଷ, କାହିଁରେ ମିଳିବ ନାହିଁ । ଏଥିପାଇଁ ଏ କୁରୁଚି ଆଶଙ୍କାବ୍ୟଞ୍ଜକ ବାକ୍ୟ ପ୍ରୟୋଗ କରିବାକୁ ବାଧ ହେଲି ।) ସେମାନେ ରାଗ ଓ ରୋଗବିକଳରେ ତାଟିଆ କାମୁଡ଼ିବାକୁ ଯାଇ ମୋ ଉପରେ ଗୁଡ଼ିଏ ଗରଳ ଗାଳିଅଛନ୍ତି । ''ଦଦତୁ ଦଦତୁ ଗାଳୀର୍ଗାଳିମନ୍ତୋ ଭବନ୍ତୋ, ବୟମପି ତଦଭାବାତ୍ ଗାଳିଦାନେଽସମର୍ଥାଃ'' (ଭର୍ତ୍ତୃହରି ବୈରାଗ୍ୟଶତକ) । ସେମାନେ ତାଙ୍କ ଗାଳିଦାନରେ ଶ୍ଳୀଳତା, ସୁରୁଚିକୁ ସାତ ସମୁଦ୍ର ଲଙ୍କା ପାରିରେ ଛାଡ଼ିଅଛନ୍ତି ଓ ବ୍ୟକ୍ତିଗତ ନିନ୍ଦା (ଯାହାକୁ କୁରୁଚିପୂର୍ଣ୍ଣ, ଅଶ୍ଳୀଳ ବାକ୍ୟରେ ତର୍ଜମା କଲେ 'ବଜାର' ଶବ୍ଦରୁ ଉତ୍ପନ୍ନ ଗୋଟିଏ ବିଶେଷଣ ଲଗାଇବାକୁ ହେବ[୩] ଓ ଶରଦ୍‌ବାବୁଙ୍କ ଭ୍ରୂକୁଟୀକୁ ଡରି ମୁଁ ତାହା ପ୍ରୟୋଗ କଲି ନାହିଁ) ଓ ଆକ୍ରମଣ କରିଅଛନ୍ତି । ସେସବୁ କେବେ ଶରଦ୍‌ବାବୁଙ୍କ ଆଖିରେ ପଡ଼ିଛି କି ? ତାହା ଦେଖି ଶରତବାବୁଙ୍କ କୁରୁଚିର ଓ କୁକଥାର ପ୍ରତିକୂଳ ମନୋଭାବରେ ଓ ଆଦର୍ଶରେ କୌଣସି ବିକାର । (ଏଠାରେ ବିକାର ସୁରୁଚିପୂର୍ଣ୍ଣ ଅର୍ଥରେ ବ୍ୟବହୃତ) ଉପସ୍ଥିତ ହୋଇଅଛି କି ? ସଂବାଦପତ୍ରରେ ଓ ପତ୍ରିକାରେ ମୋ ମୁଣ୍ଡରେ ଓ ଭାଷାକୋଷ ଉପରେ ନିଜର ନାମ ଦେଇ ବା ଅନ୍ୟ ନାମର ମୁଖା ପିନ୍ଧି ଗାଳିମୁଣି ଝାଡ଼ି ସୁଦ୍ଧା ବାନ୍ଧବମାନେ ନିରସ୍ତ ହୋଇ ନାହାନ୍ତି । ଗଭର୍ଣ୍ଣମେଣ୍ଟଙ୍କୁ, ଶିକ୍ଷାବିଭାଗର କର୍ତ୍ତୃପକ୍ଷଙ୍କୁ, ବିଶ୍ୱବିଦ୍ୟାଳୟଙ୍କୁ ଭାଷାକୋଷ ବିରୋଧରେ ପତ୍ର ଲେଖିଅଛନ୍ତି । ଏତିକିରେ ମଧ୍ୟ ନ ଥମ୍ଭି[୪] ଭାଷାକୋଷର ଭାବୀ ସହାୟକମାନଙ୍କଠାକୁ ସ୍ୱନାମୀ ଓ ବେନାମୀ ପତ୍ର ଲେଖି ଭାଷାକୋଷକୁ ସାହାଯ୍ୟ ନ ଦେବାକୁ ସେମାନଙ୍କୁ ଉତ୍ତେଜିତ କରିଅଛନ୍ତି । ସେଥିରେ ଫଳ ନ ହେବା ଦେଖି ପୃଷ୍ଠପୋଷକମାନେ କଟକ

---

୧. ଶରତଚନ୍ଦ୍ର ମୁଖାର୍ଜୀ, ଭାଷାକୋଷରେ ସଂକଳିତ ଅଶ୍ଳୀଳ ଶବ୍ଦର ଜଣେ ପ୍ରମୁଖ ସମାଲୋଚକ ।
୨. ପାଦ, ୩. ବଜାରୀ ୪. ନିରବ ହେବା ।

ଆସିଲାବେଳେ ନିଜେ ଯାଇ ସେମାନଙ୍କୁ ମୁଲାକାତ୍[୧] କରି ଭାଷାକୋଷପାଇଁ ସାହାଯ୍ୟ କରିବା କର୍ମରୁ ସେମାନଙ୍କୁ ନିବର୍ତ୍ତାଇଅଛନ୍ତି । ଏ ପର୍ଯ୍ୟନ୍ତ ଯାଇ ସୁଦ୍ଧା କେତେ ବ୍ୟକ୍ତିଙ୍କ ଶୋଧନେଚ୍ଛା ଓ ବୈରସାଧନକଣ୍ଡୁ ଶାନ୍ତ ହୋଇ ନାହିଁ । କେତେକ ବନ୍ଧୁ ଯାଇ ପୃଷ୍ଠପୋଷକଙ୍କ ସିଂହଦୁଆରରେ ପହଞ୍ଚି, ସ୍ୱୟଂ ଓ ଓକିଲଙ୍କଦ୍ୱାରା ଭାଷାକୋଷର ନିନ୍ଦା, ଭାଷାକୋଷକାରର ଭିକ୍ଷାଲବ୍ଧ ଧନର ଅକାତର ଅପବ୍ୟୟ, ଭାଷାକୋଷକାରର ବ୍ୟକ୍ତିଗତ ଚରିତ୍ର ପ୍ରତି ଆକ୍ଷେପ ଓ ଶେଷରେ ଭାଷାକୋଷପାଇଁ ଉକ୍ତ ପୃଷ୍ଠପୋଷକଙ୍କ ପ୍ରଦତ୍ତ ଧନ ଅସତ୍‌ପାତ୍ରରେ ଅର୍ପିତ ହେବା ଓ ଭବିଷ୍ୟତ୍‌ରେ ଆଉ ସାହାଯ୍ୟ ନ ଦେବାର ସମୀଚୀନତା ପୃଷ୍ଠପୋଷକମାନଙ୍କୁ ଭିତିରି ମୁଲାକାତ୍ ବେଳେ ଓ ସାଧାରଣରେ ପ୍ରଚାର କରିବାକୁ କୁଣ୍ଠିତ ହୋଇ ନାହାନ୍ତି । ଏଥିରେ ମୌଖିକ, ପାତ୍ରିକ, ଲୈଖିକ, ଲୌକିକ ଓ ସାମ୍ବାଦିକ ନିଦର୍ଶନ ମୋତେ ମିଳିଅଛି । ଏ ବନ୍ଧୁମାନଙ୍କ ମଧ୍ୟରୁ କେତେ ଜଣଙ୍କର ଅନ୍ୟ କାରଣରୁ ମୋ ସଙ୍ଗେ ବ୍ୟକ୍ତିଗତ ବିବାଦ ଅଛି, କେତେକଙ୍କର ନିଜ ନିଜର ସମ୍ପୃକ୍ତ ଅନୁଷ୍ଠାନପାଇଁ ଭିକ୍ଷୁକତା ବିଷୟରେ ମୋ ସଙ୍ଗେ ପ୍ରତିଯୋଗିତା ଅଛି ଓ ସେମାନେ ମନେକରନ୍ତି ଯେ, ଭାଷାକୋଷଆଡ଼କୁ ମୁହାଁଇଥିବା ଦାତାଙ୍କ ଦାନସ୍ରୋତକୁ ନିନ୍ଦା ଓ ଚୁଗୁଲିରୂପ କୋଡ଼ି ସାହାଯ୍ୟରେ ତାଙ୍କ ନିଜ ନିଜ ଅନୁଷ୍ଠାନ ଆଡ଼କୁ ବାଗେଇଦେଲେ, ଦାତାଙ୍କ ଶ୍ରୀ ହସ୍ତବାକ୍ସର ତାଲାଟା ତାଙ୍କପାଇଁ ମେଲା[୨] ହୋଇଯିବ ଏବଂ କେତେକ ବନ୍ଧୁ କାହିଁକି ଭାଷାକୋଷପାଇଁ ଏଡ଼େ ନିଷ୍ଠୁରତା ଓ ନୀଚତା ଅବଲମ୍ବନ କରନ୍ତି, ତହିଁର ଅଭିସନ୍ଧି (motive) ମତେ ବେମାଲୁମ୍ । ଦିଓଟି ଗୋଟିଏ ଉଦାହରଣ ଦେଲେ ପାଠକମାନେ କଥାଟାକୁ ଟିକିଏ ସଫା[୩] କରି ବୁଝିପାରିବେ । ଅବଶ୍ୟ ବନ୍ଧୁମାନଙ୍କର ନାମ ନ ଦେଇ ଗୋଟିଏ ଗୋଟିଏ ଉପନାମ ଦେଇ ପାଠକଙ୍କ କୌତୂହଳ ଚରିତାର୍ଥ କରିବି । ଏବେ ଜଣେ ବନ୍ଧୁ (ଗବେଶ୍ୱର ମିଶ୍ରେ) ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କଠାକୁ ଖଣ୍ଡିଏ ଚିଠି ଲେଖିଅଛନ୍ତି । ଶେଷୋକ୍ତ ବନ୍ଧୁ ସେ ପତ୍ରଟି ମୋ ପାଖରେ ପେଶ୍ କଲେ । ତହିଁରେ ଲେଖାଅଛି -

ଭାଇ !

ଏଥରକ ମୋ ଅନୁଷ୍ଠାନପାଇଁ ଅଯୋଧ୍ୟା ନବର ରାଇଜର ମହାରାଜାଙ୍କଠାକୁ ଯାଇଥିଲି । ସେଠାରୁ ଆଖିଦୃଷ୍ଟିଆ କିଛି ମିଳିବ ବୋଲି ଭାରି ଆଶା କରି ଯାଇଥିଲି । କିନ୍ତୁ 'ମୋ ସାଙ୍ଗରେ ଯାଇଥିବା ବୋକଚାବୁହା ଗୋବରାନନା (ଓରଫ ଗୋବର୍ଦ୍ଧନ ମଲ୍ଲ) ଉକ୍ତ ନରପତିଙ୍କ ଆଗରେ ଓଡ଼ିଆ ଭାଷାକୋଷର ଗୁଡ଼ିଏ ନିନ୍ଦା ଗାଇବାରୁ ଓ ଭାଷାକୋଷର ପ୍ରକାଶାର୍ଥ ଦେୟ ଓ ଦତ୍ତ ସାହାଯ୍ୟ ଅର୍ଥର ଅପବ୍ୟୟ ବୋଲି କହିବାରୁ ମୋ ଆଶାର କେନ୍ଦ୍ରସ୍ଥଳ ଉକ୍ତ ଦାତା ମୋତେ କିଛି ପାରମାର୍ଥିକ ତତ୍ତ୍ୱ ଦୀକ୍ଷା ଦେଇ, ମୋ ରିଟର୍ଣ୍ଣ ଟିକଟର ସଦ୍‌ବ୍ୟବହାର କରିବାକୁ ମୋତେ ବାଧ୍ୟ କଲେ । ସିଧା ସଞ୍ଚାର ବଳକା ଚିଜ ପୂରାଇ

୧. ସାକ୍ଷାତ୍, ୨. ଖୋଲା, ୩. ସ୍ପଷ୍ଟ ।

ଆଣିବାକୁ ମୁଁ ମୋ ସଙ୍ଗେ ନେଇଥିବା ମୁଣିଦାର୍ ବିସ୍ତରାବରଣ (Holdall) ଓ ବଡ଼ ପେଟୁଆ ଚମଡ଼ା ପେଟରା ଖଙ୍କା[୧] ପେଟ ହୋଇ ରାଜଧାନୀରୁ ବାହୁଡ଼ି ଅଇଲେ । ଗ୍ରହଣଖଣ୍ଡିଆ[୨] ଗୋବରାଟା ମୋର ସବୁ ଆଶାକୁ ଚୂର୍‌ମାର୍ କରିଦେଲା ।''

ପତ୍ରଲେଖକଙ୍କୁ ସାଧାରଣ କ୍ଷେତ୍ରାନ୍ତରେ କେବେ ମୁଁ ଅବା ବିରୁଦ୍ଧ ସମାଲୋଚନା କରିଥିବି, କିନ୍ତୁ ବ୍ୟକ୍ତିଗତଭାବରେ ତାଙ୍କର ଓ ମୋ ମଧରେ ସଦାଚାର, ଶିଷ୍ଟାଳାପ, ସାହଚର୍ଯ୍ୟ ଓ ସହାନୁଭୂତି ପ୍ରକାଶରେ ତ୍ରୁଟି ନ ଥାଏ । ଏମନ୍ତ କି, ସ୍ଥାନାନ୍ତରରେ ସାଧାରଣ ସଭାରେ ଭାଷାକୋଷର ପୃଷ୍ଟପୋଷକବିଶେଷଙ୍କ ମୁଣ୍ଡ ଉପରେ ଏହି ବନ୍ଧୁ ଅଭିବାଦନମୁଣି ଫିଟେଇ ଦେଇଥିବା ଶୁଣା ଅଛି । ଏପରି ଅବସ୍ଥାରେ ନିଜେ ଭାଷାକୋଷ ବିରୋଧରେ କିଛି କହିପାରିବେ ନାହିଁ ବୋଲି ଗୋବରାନନାଙ୍କୁ[୩] ବୋଲକରା ପାଖଲୋକ କରି ନେଇଯାଇଥିଲେ । ଅବଶ୍ୟ ଉଦେଶ୍ୟଟା ଥିଲା ଗୋପନୀଳା କଣ୍ଢେଇ[୪] ଭଳି ଗୋବରାନନାଙ୍କୁ ନଚାଇ ଥାଆନ୍ତେ । କିନ୍ତୁ ଗୋବରାଚଢ଼େଇ ପାଚିଲାକଦଳୀକୁ ଲୋଭେଇଲା ପରି ନନା ଟିକିଏ ପାଚିଲା କଦଳୀ[୫] ନ ଗିଳି, (କୁରୁଚିପୂର୍ଣ୍ଣ ଶବ୍ଦ ହେଲା, ନାଚାର) ଏକଦମ୍ ଗଡ଼େ ପାଚିଲାକଦଳୀ ଗଳାଧଃକରଣ କରିବାକୁ କସରତ କଲେ । ଫଳରେ ପାଚିଲାକଦଳୀ ଅଇଣ୍ଠା ହେଲା, ଏଣେ ଗୋବରା ବିଚାରାର ତୋଟିନଳା ଇହକାଳ ପାଇଁ ବନ୍ଦ ହେଲା ।

ଆଉ ଜଣେ ବନ୍ଧୁଙ୍କ ମୁହଁରୁ ମୁଁ ଶୁଣିଛି, ''ପ୍ରହରାଜେ ଆପଣେ ! ମୁଁ କିଛି ବିଶିଷ୍ଟ ସାହାଯ୍ୟ ଭାଷାକୋଷପାଇଁ କରିବି ବୋଲି ମୋ ହାତ ବାକ୍ସର ଚାବିରେ ହାତ ପକାଇଥିଲି, ଏତିକିବେଳେ ମୋର ଓ ଆପଣଙ୍କ ପରି ରଙ୍କଙ୍କ ବନ୍ଧୁ ଶ୍ରୀକରଣ ମୋ ହାତରୁ ଚାବିଟା ଝାମ୍ପିନେଲେ, କହିଲେ ହେ ଭୂମ୍ୟଧିକାରି ! କଅଣ କରିବାକୁ ଯାଉଛ ? ପହରାଜର ପାଣ୍ଡୁଲିପିଯାକଦ୍ୱାରା ଯେ କାଠଯୋଡ଼ି ନଈର ତେଲଙ୍ଗାବଜାର ପାଖ ଘାଇର ଘଳିଆ ବନ୍ଦ କରାଯାଏ (ସେ ବରଷ କଟକ ତେଲଙ୍ଗାବଜାର ପାଖରେ ଘାଇ ଭାଙ୍ଗିବା ଆଶଙ୍କାରେ କଟକ ସହର ଉବେଇ ଟୁବେଇ ହେଉଥାଏ) ତେବେ ଓଡ଼ିଆ ଜାତିର, ଓଡ଼ିଆ ଭାଷାର, ଓଡ଼ିଆ ସାହିତ୍ୟର କାଣିଚାଏ ଲୋକସାନ ହେବ ନାହିଁ । କଟକ ସହରର ପ୍ରାଚୀ ଦିଗରେ ନଦୀର ଦାଉରୁ ସହରର ରକ୍ଷକ ପ୍ରାଚୀରରୂପେ ଭାଷାକୋଷର ପାଣ୍ଡୁଲିପି ଖାତାଗୁଡ଼ିକ ଖଞ୍ଜା ହେଲେ କଟକର ଉପକାର ହୁଅନ୍ତା; କିନ୍ତୁ ଏମାନ ଛାପା ହେ଼ଲେ ଜାତିର କିଛି ଉପକାର ହେବ ନାହିଁ । ଗୁରୁଗୋସେଇଁଙ୍କଠାରୁ ଏ କଥାଟି ଶୁଣି ଭାଷାକୋଷପାଇଁ ପହ୍ଲେଇଥିବା ମୋ ମନୁଟା ବିସ୍କିଗଲା[୬] । ତାଙ୍କ କଥାର ଉଷ୍ମାଜନିତ ପ୍ରଭାବରେ ମୋ ହାତବାକ୍‌ସର ଚାବିରେ ଏପରି କଳଙ୍କି ଲାଗିଯାଇଛି ଯେ, ଗତ ୨/୩ ବର୍ଷ ହେଲା ଭାଷାକୋଷପାଇଁ ମୋ ନସି ଫିଟିବାକୁ ନାହିଁ, ଚାବିପାଇଁ ଖୋଷଣିକୁ ହାତ ନେଲାବେଳକୁ

---

୧. ଖାଲି, ୨. ନାକଖଣ୍ଡି, ୩. ଗୋଦାବରୀଶ ମହାପାତ୍ରଙ୍କୁ ଏଠାରେ ଇଙ୍ଗିତ କରାଯାଇଛି, ୪. ସୂତାକଣ୍ଢେଇ, ୫. ପ୍ରତୀକାତ୍ମକ ଭାବରେ : ପୁରୁଷର ଯୌନାଙ୍ଗ, ୬. ବିସରପି ଯିବା ।

ମୋ ହାତ ତଳଆଡ଼କୁ ତେରଛାଉଛି'' (ପାଠକ ମହୋଦୟ ! ଏ ବାକ୍ୟଗୁଡ଼ିକ ଅଶ୍ଳୀଳ ଓ କୁରୁଚିପୂର୍ଣ୍ଣ ହେଲା ପରା ?)

ଯେଉଁ ବନ୍ଧୁ ମୋର କଥକବନ୍ଧୁଙ୍କୁ ଭାଷାକୋଷପାଇଁ ଏ ସାର୍ଟିଫିକେଟ୍ ଦେଇଥିଲେ, ସେହି ବନ୍ଧୁ କେତେଥର ମୋତେ ବାଟରେ, ହାଟରେ, ନାଟରେ, ଫାଟରେ, ଘାଟରେ ଦେଖି ଆଲିଙ୍ଗନ କରି କହିଛନ୍ତି, ''ଭାଇ ! ଏକା ଗୋଟାଏ କାମ କଲୁ !'' ସେ ମଧ୍ୟ ସାଧାରଣ ସଭାରେ ଭାଷାକୋଷ ଉପରେ ତାଙ୍କ ବଚନାମୃତ ଓ ରଚନାମୃତର ବୋତଲ ଢାଳିଦେଇ ଅଛନ୍ତି । ତାଙ୍କର ଭୂମ୍ୟଧିକାରୀ ବାହାଦୁରଙ୍କ ଆଗରେ ଭାଷାକୋଷ ପାଣ୍ଡୁଲିପିର ନଈବଢ଼ିଜନିତ ଘାଇ ବନ୍ଦ କରିବା ପ୍ରୟୋଜନୀୟତାରୂପକ ବିବୃତି ଶୁଣି, ମୁଁ ଏହି ସିଦ୍ଧାନ୍ତରେ ଉପନୀତ ହେଲି ଯେ, ଶ୍ରୀକରଣଙ୍କର ମୋ ପାଖରେ ହେଉ ଅବା ସଭାମଞ୍ଚରେ ହେଉ ଅବା ଭୂମ୍ୟଧିକାରୀଙ୍କ ପାଖରେ ହେଉ, ଅନ୍ତତଃ ଗୋଟାଏ ସ୍ଥାନରେ ସ୍ୱପ୍ନଦର୍ଶନ ବା ସ୍ୱପ୍ନ ବିଭ୍ରାଟ ଘଟିଅଛି ।

ଆଉ ଜଣେ ଶୁକ୍ରାଚାର୍ଯ୍ୟ ବିଳିବିଳେଇ ଉଠିଲେ 'ଭାଷାକୋଷକୁ ଭ୍ରମକୋଷ ବୋଲାଯାଇ ପାରେ ଓ ଏହା ବ୍ୟୁପତ୍ତିମୂଳକ ଅଭିଧାନ ନୁହେଁ' । ଆହୁରି ଆଶ୍ଚର୍ଯ୍ୟର ବିଷୟ ଯେ, ଏ ସମାଲୋଚକ ସ୍ୱୟଂ ଜଣେ ଗ୍ରାହକଙ୍କ ୱାରସ୍ । ଯେଉଁଠାରେ ମୁଁ ପାରିଛି, ସେଠାରେ ଶବ୍ଦର ବ୍ୟୁପତ୍ତି ଦେଇଛି, କିନ୍ତୁ ତାଙ୍କର ଆଖିକୁ (ଆଖିଦ୍ୱୟକୁ ନୁହେଁ) ଶବ୍ଦମାନଙ୍କ ବ୍ୟୁପତ୍ତି ଲେଖାଥିବା ଅଂଶ ଦେଖାଗଲା ନାହିଁ କିମ୍ବା ତାଙ୍କ ବଡ଼ବୋଲା[୧] କର୍ଣ୍ଣଦ୍ୱୟକୁ ବ୍ୟୁପତ୍ତିର ଧ୍ୱନି ମାଲୁମ[୨] ପଡ଼ିଲା ନାହିଁ ।

ପୁଣି ଥୋକେ ବାହାରି କହିଲେ, ଓଡ଼ିଆ ଭାଷାରେ ଥିବା ଅଶ୍ଳୀଳ ଶବ୍ଦଗୁଡ଼ାକ ଭାଷାକୋଷରେ ସ୍ଥାନ ପାଇଥିବାରୁ ଏହା ଦେଶର ସ୍ୱାସ୍ଥ୍ୟପକ୍ଷରେ ଅତ୍ୟନ୍ତ ହାନିକର ।

ଫେର୍ ଲୁଚାଏ[୩] କହିଲେ ଭାଷାକୋଷରେ ଉତ୍କଳ ଶବ୍ଦ 'ଭାରବାହକ' ବୋଲି ଯେଉଁ ଅର୍ଥ ଦିଆଯାଇଅଛି, ତଦ୍ୱାରା ଓଡ଼ିଆଙ୍କ ବେହେରାପଣ ସାଫ୍ ସାବୁତ୍[୪] ହେଉଅଛି, ଅତଏବ ତାହା ଓଡ଼ିଆ ଜାତିର ସମ୍ମାନ ପକ୍ଷରେ ଓ ଜାତୀୟତା ବିକାଶ ପକ୍ଷରେ ହାନିକର, ଅତଏବ ଭାଷାକୋଷ ବିରୋଧରେ ହର୍ତ୍ତାଳ[୫], ପ୍ରତିବାଦ କରାଯାଉ ଓ ତହିଁର ସାହାଯ୍ୟକାରୀମାନଙ୍କ ପ୍ରତି ହରିତାଳ ଭସ୍ମ[୬] ପ୍ରୟୋଗ କରାଯାଉ ।

ଏହିପରି ଲେଖି ବସିଲେ ସପ୍ତାଧିକ କାଣ୍ଡ ଓ ଅଷ୍ଟାଦଶାଧିକ ପର୍ବ ହେବ ।[୭]

ଏସବୁ ଆଲୋଚନାର ମୂଳରେ ଦେଖିଲି ଯେ, କେତେକରେ ବ୍ୟକ୍ତିଗତ ଅଦଉତି ସାଧନ, କେତେକରେ ସ୍ୱେଷ୍ଟ[୮] ସାଧନାର୍ଥ ପରାର୍ଥ ହନନ, କେତେକରେ ବାଟରେ ଆରଜାତିକା କରି ଅଶ୍ଳୀଳ ଶବ୍ଦ ପରିହାର କରିବା ଆଦେଶ ପାଳନୀୟ ନାଆଁ ପକାଇବାର ଆଶା ଓ ଅଧିକାଂଶଙ୍କର ପରଶ୍ରୀକାତରତା ପ୍ରଚ୍ଛନ୍ନ ଓ ପ୍ରକାଶ୍ୟ ଭାବରେ ରହିଅଛି । ଅତଏବ ଏସବୁକୁ

---

୧. କାନଦୋଷଥିବା, ୨. ଜଣାଯିବା, ବୁଝାଯିବା, ୩. ଗୁଡ଼ାଏ, ବହୁତ, ୪. ସ୍ପଷ୍ଟପ୍ରମାଣ, ୫. ଧର୍ମଘଟ, ୬. ପାଉଁଶ, ୭. ମହାଭାରତ, ୮. ନିଜ ଇଚ୍ଛା ।

ମୁଁ ଗୋଟିଏ ଗୋଟିଏ 'ରୋଗ'ର ଭିନ୍ନ ଭିନ୍ନ ଲକ୍ଷଣ ବୋଲି ସ୍ଥିର କରି ଆଲୋଚିତ ପ୍ରବନ୍ଧରେ କହିଥିଲି ଯେ, ଶଂସିତ ସମାଲୋଚକଙ୍କର ସ୍ୱପ୍ନଦର୍ଶନ ଓ ସ୍ୱପ୍ନବିକାର ଘଟିଅଛି । ଏ ରୋଗର ପ୍ରତିକାରପାଇଁ ଭାଷାକୋଷ ଆଶ୍ରମରେ ତେଉଁରିଆ ଅଛି ବୋଲି ଲେଖିବାର ମର୍ମ ଏହି ଯେ, ସମାଲୋଚକ ଓ କର୍ଣ୍ଣେଜପମାନେ ଯେବେ ଦୟା କରି ଆଶ୍ରମକୁ ଆସନ୍ତେ, ତେବେ ଭାଷାକୋଷପାଇଁ ମୁଁ ଆଜିଯାକେ ପାଇଥିବା ଧନର ଆୟ ବ୍ୟୟ ହିସାବ ଦେଖିପାରନ୍ତେ ଓ ତାଙ୍କଠାରୁ ଏ 'ସ୍ୱପ୍ନର ଦୋଷ' ଛାଡ଼ିଯାଆନ୍ତା । ମୁଁ ଦୁଇଟି ପଦ ପ୍ରୟୋଗ ନ କରି ଗୋଟିଏ ସମସ୍ତ ପଦରେ କୈଫିୟତ୍ କାମଟା ସାରିଦେଲି । ସ୍ୱପ୍ନଦୋଷ ନ ଲେଖି ସ୍ୱପ୍ନର ଦୋଷ ବା ସ୍ୱପ୍ନର ବିକାର ବୋଲି ବା ସ୍ୱପ୍ନ ସ୍ଖଳନ ଲେଖିଥିଲେ ହୋଇଥାଆନ୍ତା, କିନ୍ତୁ ଲେଖନ ମୁନ ତ ସବୁବେଳେ ଲେଖକର ମନକୁ ମାନି ଚଳେ ନାହିଁ । ଏଥିରେ ଉତ୍କଳ-ସାହିତ୍ୟ ରାଜ୍ୟରେ କି ଭୟାବହ ତୁମୁଳ ଭୂକମ୍ପ ହୋଇଗଲା, ଅନ୍ତତଃ ମୁଁ ଏହା ଆଜିଯାକେ ଠଉରାଇ[୧] ପାରୁ ନାହିଁ । ''ହଗିଲା ଲୋକକୁ ଲାଜ ନାହିଁ, ଦେଖିବା ଲୋକକୁ ଲାଜ'' (ପାଠକେ ! ପୁଣି ମୁଁ କୁରୁଚିର ଓ କୁକଥାର ଆଶ୍ରୟ ନେଲି, କ୍ଷନ୍ତବ୍ୟୋ ମେଽପରାଧଃ) । ଯେଉଁମାନେ ବୃଥାରେ ବା ଈର୍ଷାରେ ଭାଷାକୋଷପାଇଁ ଏପରି ଜଘନ୍ୟ ପ୍ରଚାର ଓ ପିଠି କାମୁଡ଼ାରେ ତ୍ରୁଟି କରୁ ନାହାନ୍ତି, ଅଥଚ ଦିନେ ଆସି ମୋ ଭ୍ରମ ଦେଖାଇ ଦେଇ ମୋତେ ଯୁକ୍ତିତର୍କଦ୍ୱାରା କାଇଲ୍[୨] କରି ଭାଷାକୋଷର ପରବର୍ତ୍ତୀ ଖଣ୍ଡମାନଙ୍କରେ ଏପରି ଭ୍ରମ, ପ୍ରମାଦ, ଅଶ୍ଳୀଳତା ନ ରହିବାପାଇଁ ଚେଷ୍ଟା କରି ନାହାନ୍ତି, ସେମାନଙ୍କର ଏପରି ପରୋକ୍ଷରେ ତଣ୍ଟିକଟା କର୍ମକୁ ରୋଗ ବୋଲି ନ କହି କଅଣ କହିବି, ଭାବିପାରୁ ନାହିଁ । ଓଡ଼ିଆ, ହିନ୍ଦୀ, ବଙ୍ଗଳା ଓ ଇଂରାଜୀ ଭାଷା ଆଜିଯାକେ ଯେତେଗୁଡ଼ିଏ ସୁରୁଚିବିରୁଦ୍ଧ, ଶିଷ୍ଟତା ବହିର୍ଭୂତ ଓ ଶ୍ଳୀଳତାବିହୀନ ଓ ବିଶେଷ୍ୟ, ବିଶେଷଣ ଓ ସମ୍ବୋଧନ ପଦର ସୃଷ୍ଟି (coin) କରିଛି, ଏ ମହାପୁରୁଷମାନଙ୍କୁ ସମ୍ବୋଧନ କରିବାକୁ ତହିଁ ମଧ୍ୟରେ କିଛି ନାହିଁ ବୋଲି ମୁଁ ଭାବି ଏହାକୁ ରୋଗ ବୋଲି ଧରିଛି ।

ଶରତ୍‌ବାବୁ ଜଣେ ସାହିତ୍ୟସେବୀ । ସବୁଜ ସାହିତ୍ୟର ସେ ଜଣେ ନିଷ୍ଠାପର ସେବକ ଥିଲେ, ଉତ୍କଳ ସାହିତ୍ୟ ସମାଜର ସହକାରୀ ସମ୍ପାଦକ ଥିଲେ । ତାଙ୍କ ସଙ୍ଗେ ମୋର ବ୍ୟକ୍ତିଗତ ପରିଚୟ ଅଛି । ସେ ଓଡ଼ିଶାରେ ଥିବାବେଳଠାରୁ ଏଠାରୁ ବଦଳି ହୋଇଯିବା, ଲଗାଏତ୍[୩], ରାଞ୍ଚି ଆଦିରେ କର୍ମ କରୁଥିବା ପର୍ଯ୍ୟନ୍ତ ତାଙ୍କ ସଙ୍ଗେ ମୋର ପରିଚୟ ଓ ସଂଳାପ ଓ ବନ୍ଧୁତା ଥିଲା ଓ ଅଛି । ମୋର ଏପରି ସ୍ଖଳନ (ପାଠକେ, ଏ ଶବ୍ଦଟା ପୁଣି ଅଶ୍ଳୀଳତା ଆଡ଼କୁ ମୋହିଲା ପରା ?) ଯେବେ ତାଙ୍କୁ ମାଲୁମ ହେଲା କିମ୍ବା ତାଙ୍କ ମନକୁ ବାଧିଲା, ତେବେ ମୋତେ ପତ୍ର ଲେଖି ଚେତାଇ ଦେଇଥିଲେ ମୁଁ କାଇଲ୍ ମାନିଥାଆନ୍ତି ବା କୈଫିୟତ୍ ଦେଇଥାଆନ୍ତି । କିନ୍ତୁ ଖବରକାଗଜରେ ମୋ ନାଆଁ ପଡ଼ିବା ଓ ମୋ କଥିତ ସ୍ୱପ୍ନବିକାର ଦୋଷଗ୍ରସ୍ତ ଜୀବଗୁଡ଼ିକଙ୍କ ଚେଇଁଉଠିବା କଥା ହୋଇ ନ ଥାନ୍ତା । ମୋ ସ୍ୱପ୍ନବିକାର ବର୍ଣ୍ଣନ ପରେ, ଶରତ୍‌ବାବୁଙ୍କ କଟାକ୍ଷପାତ ଫଳରେ ମୋ ଶଂସିତ

୧. ଅନୁମାନ କରିବା, ୨. ଦୋଷୀ, ୩. ଅଧିକ ସମୟ ।

ବିକାରଗ୍ରସ୍ତ ଦେଶହିତୈଷୀ, ଦେଶପାଇଁ କାହାଣୀ କଥକ, ଓଡ଼ିଆ ସମାଜପାଇଁ ଧୃତବ୍ରତ, ଦେଶର ପରିସ୍ଥିତି ପର୍ଯ୍ୟବେକ୍ଷଣକାରୀ ଓ ଦେଶରେ ରସାଳବିତରଣକାରୀ ବନ୍ଧୁମାନଙ୍କୁ ମୋତେ ଗାଳି ଦେବାକୁ ଆଉ ଗୋଟିଏ ଖିଅ[୧] ମିଳିଗଲା । ମୁଁ ସବୁବେଳେ ସରକାରୀ କାମରେ ପାଏବନ୍ଦ[୨] ନ ଥାଏଁ, ମୁଁ ୪୦ ଆଜିକୁ ବରଷ ହେବ କଲମ ଧରିଛି । ସେତେବେଳକୁ ମୋ ଲେଖାର ଅନେକ ଆଧୁନିକ ସମାଲୋଚକଙ୍କ ଭାବରଙ୍ଗ ଭୂମିରେ ଆବିର୍ଭାବ ନଦାରଦ୍ । ମୋ ଲେଖାର ରୀତିକୁ ବର୍ତ୍ତମାନ ବଦଳାଇବାକୁ ମୋର ଆଉ ବଳ ବୟସ ନାହିଁ । ଯେତେ ଲୋକ ମୋ ଲେଖାକୁ ଅଶ୍ଳୀଳ, କୁରୁଚିପୂର୍ଣ୍ଣ ବଜାରି ଆଦି ବିଶେଷଣ ଦିଅନ୍ତି, ତାଙ୍କ ସଂଖ୍ୟା ଅପେକ୍ଷା ମୋ ଲେଖାକୁ ସ୍ନେହଚକ୍ଷୁରେ ଓ ମୋତେ ଆଦର ଚକ୍ଷୁରେ ଦେଖିବା ଲୋକଙ୍କ ସଂଖ୍ୟା ବେଶି କି କମି, ତାହା ଶରତ୍‌ବାବୁ ନଜରନଳି[୩] ଲଗାଇ ପ୍ରବାସରୁ ମଧ ଦେଖିପାରିବେ । ଭ୍ରମ, ଭ୍ରାନ୍ତି ଓ ଜାଗ୍ରତ ଅବସ୍ଥାରେ ପ୍ରମାଦ ଓ ସ୍ଖଳନ ଅଳ୍ପ ବହୁତ ସମସ୍ତଙ୍କର ଥାଏ, କିନ୍ତୁ ବେଳେବେଳେ ଅନ୍ୟକୁ ସମାଲୋଚନା କରିବାକୁ ଯାଇ ଯେଉଁମାନେ ଶ୍ଳୀଳତା, ସୁରୁଚି ଓ ଶାଳୀନତାକୁ ସାତସମୁଦ୍ର ଲଙ୍କାପାରି କରିଛନ୍ତି, ତାଙ୍କୁ ମୋର ଦୂରରୁ ଜୁହାର । ଯେଉଁ ଲେଖକ ଆପଣାର ନୈତିକ ସାହସର ଫଳରେ ସଂବାଦପତ୍ରରେ ଅନ୍ୟ ଜଣକୁ ଶିଖଣ୍ଡୀ ସମ୍ପାଦକ ଠିଆ କରି ମୋତେ ବୃଥାରେ ଗୁଡ଼ିଏ ଗାଳି ଦିଅନ୍ତି, ଏଣେ ତାଙ୍କର ଲୋଡ଼ା ପଡ଼ିଲା ବେଳେ ମୋଠାରୁ ସାର୍ଟିଫିକେଟ୍ ନେବାକୁ ମୋ ଦ୍ୱାରସ୍ଥ ହୁଅନ୍ତି, ଯେ ଲୋଡ଼ା ହେଲେ ଚରଣ ଧରନ୍ତି ଓ ଅଲୋଡ଼ା ହେଲେ ଚୁଟି ଧରନ୍ତି, ତାଙ୍କୁ ଯେଉଁ ବିଶେଷଣରେ ଅଳଙ୍କୃତ କରାଯାଏ, ସେ ବିଶେଷଣ ପଦର ପ୍ରୟୋଗକୁ ଶରତବାବୁ ଅଶ୍ଳୀଳ ଓ କୁରୁଚିପୂର୍ଣ୍ଣ କହିବେ, କହନ୍ତୁ; କିନ୍ତୁ ଏପରି ସମାଲୋଚକ ନିଜ-କୃତ ବ୍ରଣରେ ନିଜେ ବସି ତହିଁରୁ ଉପୁଜୁଥିବା ସ୍ୱାଦ ଓ ରସାଦି ଭୋଗ କରୁଥାଆନ୍ତୁ । ଏପରି ଦୋମୁହାଁ (ଅଶ୍ଳୀଳ ହେଲା କି ?) ଙ୍କୁ ଉତ୍ତର ଦେଇ ସେମାନଙ୍କ ମର୍ଯ୍ୟାଦା ବଢ଼ାଇବା ଉଚିତ ବୋଲି ମୁଁ ମନେ କରି ନାହିଁ କି ବର୍ତ୍ତମାନ କରୁ ନାହିଁ ।

ଶରତବାବୁ କଥାଟା ଉଖାରିବାରୁ ତାଙ୍କୁ ପ୍ରତ୍ୟୁତ୍ତର ନ ଦେଲେ କାଳେ ସେ ମନରେ ଦୁଃଖ କରିବେ, ଏହି ଆଶଙ୍କାରେ ଏତେ କୈଫିୟତ୍ ଦେଲି । ମଧ ଶରତବାବୁ ମୋତେ ଚିଠି ନ ଲେଖି ପ୍ରଥମେ ସଂବାଦପତ୍ର ଜରିଆରେ ଏଥର ଏତଲା ମୋତେ ଦେଇଥିବାରୁ ମୁଁ ବାଧ ହୋଇ ତାଙ୍କ ନୀତି ଅନୁସରଣ କରି ପତ୍ରିକା ଜରିଆରେ ମୋର ରଦ୍ଦ ଜବାବ ଦାଖଲ କଲି ।

ଶରତବାବୁଙ୍କୁ ମୁଁ ପୁଣି କହୁଅଛି ଯେ, ମୁଁ ମନୁଷ୍ୟ । ମୋର ଭ୍ରମ ପ୍ରମାଦ ଓ ତ୍ରୁଟି ଅବଶ୍ୟମ୍ଭାବୀ । ମୋତେ ସେମାନେ ଦେଖାଇ ଦେଲେ, ମୁଁ ମୋ ଲେଖାରେ ସତର୍କତା ଅବଲମ୍ବନ କରିବି ଓ ତାଙ୍କୁ ଏଥିପାଇଁ ଧନ୍ୟବାଦ ଦେବି । କିନ୍ତୁ କଣ୍ଟାବାଡ଼ରେ ଲୁଗା ପକାଇ ଓଟାରିଲେ ସବୁଠାରେ ଯାହା ଫଳ ହୁଏ, ଏଠାରେ ମଧ ସେହିତା ହେବ ଓ ଆମ ଦୁହିଁଙ୍କ ଚିରା ଲୁଗା ଦେଖି ଦେଖଣାହାରିଏ ହସିବେ ସିନା ![*]

---

୧. ସୂତ୍ର, କାରଣ, ଉପାଦାନ, ୨. ପୂରାପୂରି, ୩. ଦୂରବୀକ୍ଷଣ ଯନ୍ତ୍ର ।

* ବିଶେଷ ଦ୍ରଷ୍ଟବ୍ୟ : ଏହି ଗ୍ରନ୍ଥର ମୁଖବଂଧ ।

# ଭାଷା ଚର୍ଚ୍ଚା

## ସୂଚନା

ସାହିତ୍ୟର ଭାଷା ସମ୍ପର୍କରେ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ସ୍ୱତନ୍ତ୍ର ବିଚାର ରହିଛି । ରମ୍ୟ ରଚନା ଓ ଭାଷାକୋଷର ମୁଖବନ୍ଧ ବ୍ୟତୀତ, ଏହି ଛ' ଗୋଟି ଆଲୋଚନାରେ ତାହା ପ୍ରତିଫଳିତ । ଆଲୋଚନାଗୁଡ଼ିକ ହେଉଛି : ୧. ବିଶୁଦ୍ଧ ଭାଷା, ଉତ୍କଳ ସାହିତ୍ୟ (ଅଷ୍ଟମ ଭାଗ/୫ମ ସଂଖ୍ୟା, ଭାଦ୍ର ୧୩୧୧ ସାଲ: ୧୯୦୪) ୨. ବର୍ଗ୍ୟ 'ବ', ବାରୁଣୀ - (୧ମ ବର୍ଷ/୨ୟ ସଂଖ୍ୟା, ୧୯୨୧) ୩. ଓଡ଼ିଆ ଭାଷାରେ କେତେକ ବିଭ୍ରାଟ, ନବଭାରତ (କନ୍ୟା ୧୩୪୧ ସାଲ, ୧୯୩୪: ଏହା ଏକ ପତ୍ର ଆକାରରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ପାଖକୁ ଲିଖିତ ୪. ଓଡ଼ିଆ ଭାଷା ବ୍ୟବହାରରେ ସ୍ୱାଧୀନତା, (ଉତ୍କଳସାହିତ୍ୟ ୧୩୪୫ ସାଲ ଶ୍ରାବଣ, ୧୯୩୮) ୫. ବର୍ତ୍ତମାନ ଯୁଗରେ ସଂସ୍କୃତ ଶିକ୍ଷାର ଉପଯୋଗିତା, ଜାଗରଣ: (୧ମ ବର୍ଷ/୭ମ ସଂଖ୍ୟା, ଅଗଷ୍ଟ, ୧୯୪୨) । ଏବଂ A Brief survey of the Oriya Language । ଏତଦ୍‌ବ୍ୟତୀତ ନବଭାରତ, ୫ମ ବର୍ଷ, ଅଷ୍ଟମ ସଂଖ୍ୟା (୧୯୩୬) 'ପାଠ୍ୟ ପୁସ୍ତକ ଆଲୋଚନା' ଶୀର୍ଷକ ଲେଖାରେ ମଧ୍ୟ ଭାଷାସଂକ୍ରାନ୍ତ ବିଚାର ରହିଛି ।

ବିଶୁଦ୍ଧ ଭାଷା ଏବଂ ବର୍ତ୍ତମାନ ଯୁଗରେ ସଂସ୍କୃତ ଶିକ୍ଷାର ଉପଯୋଗିତା, ଆଲୋଚନାରେ ପ୍ରାୟ ଗୋଟିଏ କଥା କୁହାଯାଇଛି : ସଂସ୍କୃତ ଭାଷା ସହିତ ଓଡ଼ିଆଭାଷାର ଦୃଢ଼ ସମ୍ବନ୍ଧ ରହିଛି ଏବଂ ସଂସ୍କୃତଶିକ୍ଷା ଓଡ଼ିଆ ଶବ୍ଦ ଲେଖିବା ଓ କହିବାକୁ ଶୃଙ୍ଖଳିତ କରିଥାଏ ବୋଲି ସେ ମତବ୍ୟକ୍ତ କରିଛନ୍ତି ।

ଓଡ଼ିଆ ଭାଷାରେ କେତେକ ବିଭ୍ରାଟ, ଓଡ଼ିଆ ଭାଷା ବ୍ୟବହାରରେ ସ୍ୱାଧୀନତା, ଅବର୍ଗ୍ୟ 'ବ' ଓ A Brief survey of the Oriya Language ଆଦି ଆଲୋଚନା ଓଡ଼ିଆ ଭାଷାର ଇତିହାସ ଓ ବୈଶିଷ୍ଟ୍ୟ ସଂକ୍ରାନ୍ତ ଚର୍ଚ୍ଚା ପ୍ରବନ୍ଧ । ସେ ସ୍ପଷ୍ଟ କରିଦେବାପାଇଁ ଚାହିଁଛନ୍ତି ଯେ, ଓଡ଼ିଆ ଭାଷାର ଲିଖନ ଓ କଥନରେ ଅଦ୍ଭୁତ ସାଦୃଶ୍ୟ ରହିଛି, ଯାହା ପଡ଼ୋଶୀ ବଙ୍ଗଳା, ହିନ୍ଦୀ, ଅସମୀୟା ଭାଷାରେ ଲକ୍ଷ୍ୟ କରାଯାଏ ନାହିଁ ଏବଂ, ଏହା ପ୍ରମାଣପାଇଁ ସେ ନ/ଣ, ଁ/ ଂ, ଳ/ଲ, ବର୍ଗ୍ୟ ବ/ ଅବର୍ଗ୍ୟ ବ, ଜ/ଯ, ର/ରୁ' ର ଉଦାହରଣ ଦେଇଛନ୍ତି । ମାତ୍ର ନବଶିକ୍ଷିତ ଓଡ଼ିଆମାନେ ଶବ୍ଦଲିଖନ କାଳରେ ଏହି ନିୟମ ପାଳନ କରୁ ନ ଥିବାରୁ ଏବଂ ସେମାନେ ବହୁ ଭାବରେ ବଙ୍ଗଳାଭାଷା ଅନୁଗତ ହେଉଥିବାରୁ ସେ କ୍ଷୋଭ ପ୍ରକାଶ କରିଛନ୍ତି ଏବଂ ଆମେ କିପରି ବଙ୍ଗ ଅନୁଗତ, ତାହାର ପ୍ରମାଣପାଇଁ ଲିଖିତ ସାହିତ୍ୟରୁ ବହୁ ଉଦାହରଣ ଦେଇଛନ୍ତି । ସେ ଅନୁଭବ କରିଛନ୍ତି,

ଓଡ଼ିଆଭାଷାରେ ବ୍ୟାକରଣର ଅଭାବ, ମୁଦ୍ରାକରମାନଙ୍କର ଅସଚେତନତା ଓ ଅଜ୍ଞତା, ଆଧୁନିକ ଲେଖକମାନଙ୍କର ପରାଧୀନ ମାନସିକତା ଏବଂ ଗାଉଁଲୀମାନଙ୍କର ଅଜ୍ଞତା ଆମ ଦୁର୍ବଳତାର କାରଣ ।

ପ୍ରହରାଜଙ୍କର ଅନ୍ୟ ଏକ ସ୍ୱତନ୍ତ୍ର ଆଲୋଚନା ଓଡ଼ିଆ ଭାଷାରେ ବର୍ଗ୍ୟ 'ବ' ଓ ଅବର୍ଗ୍ୟ 'ବ' – କୈନ୍ଦ୍ରିକ । ଉପର୍ଯ୍ୟୁକ୍ତ ତିନିଗୋଟି ଆଲୋଚନା ଓ ଭାଷାକୋଷରେ ଅବର୍ଗ୍ୟ 'ବ' ପ୍ରବନ୍ଧରେ, ଓଡ଼ିଆ ଭାଷାରେ ଏହି ଧ୍ୱନିପାଇଁ ସ୍ୱତନ୍ତ୍ର ବର୍ଣ୍ଣର ଆବଶ୍ୟକତା ରହିଛି ବୋଲି ଦୃଢ଼ ଯୁକ୍ତି ବାଢ଼ିଛନ୍ତି ଏବଂ ଏହି ଉଦ୍ଦେଶ୍ୟରେ 'ୱ' ଅକ୍ଷର ତିଆରି କରିଛନ୍ତି ।

ବିଶୁଦ୍ଧ ଭାଷା, ଓଡ଼ିଆ ଭାଷା ଚର୍ଚ୍ଚା ପରମ୍ପରାରେ ଏକ ସ୍ୱତନ୍ତ୍ର ଆଲୋଚନା । ଏଥିରେ, ସେ, (୧) ଯାହା ପ୍ରଚଳିତ, ସେ ଶୁଦ୍ଧ; ଏହା ସାହିତ୍ୟବିଜ୍ଞାନରେ ଗୋଟେ ପ୍ରଧାନ ନିୟମ, ଏବଂ (୨) ଯେତିକି ଘରୋଇ ଭାଷା ଓ ଶବ୍ଦ ସଂଗୃହୀତ ହେବ, ଉତ୍କଳର ଭବିଷ୍ୟତ୍ ଶବ୍ଦକୋଷ ପ୍ରଣେତାଙ୍କ ମାର୍ଗ ସେତିକି ପରିଷ୍କୃତ ଓ ଆଶାପ୍ରଦ ହେଉଥିବ, ଏବଂ, 'ଓଡ଼ିଆଭାଷା ବ୍ୟବହାରରେ ସ୍ୱାଧୀନତା' ଆଲୋଚନାରେ 'ସାହିତ୍ୟ ଯାହାଙ୍କପାଇଁ ଅଭିପ୍ରେତ, ସେହିମାନେ ବୁଝିଲାପରି ଭାଷା ଓ ଶବ୍ଦମାନ ବ୍ୟବହାର ଆମ୍ଭମାନଙ୍କ କର୍ତ୍ତବ୍ୟ' ମନ୍ତବ୍ୟ ପ୍ରକାଶକରିଛନ୍ତି । ମାତ୍ର ଆଶ୍ଚର୍ଯ୍ୟର କଥା- ଭାଷା ସଂକ୍ରାନ୍ତରେ ଏତେ ଆଧୁନିକ ବିଚାରପୁଷ୍ଟ ପ୍ରହରାଜ, ସୀମାନ୍ତବର୍ତ୍ତୀ ଅଞ୍ଚଳଗୁଡ଼ିକ (ଗଞ୍ଜାମ, ବାଲେଶ୍ୱର, ସମ୍ବଲପୁର) ର ଲୋକକଥିତ ଶବ୍ଦର ସାହିତ୍ୟରେ ପ୍ରୟୋଗକୁ ପ୍ରମାଦପୂର୍ଣ୍ଣ କହିବା ସହିତ ''ଲେଖାକୁ ସରଳ କରିବାକୁ ଯାଇ ଗୁଡ଼ିଏ ପ୍ରାଦେଶିକ ଓ ଗାଉଁଲୀ ଶବ୍ଦ ଭାଷାରେ ପୂରାଇବା ଉଚିତ ନୁହେଁ । ଉଚ୍ଚାଙ୍ଗ ସାହିତ୍ୟ ଓ ଜନସାହିତ୍ୟର ଭାଷା ମଧ୍ୟରେ ପ୍ରଭେଦ ରହିବା ଅବଶ୍ୟମ୍ଭାବୀ । ସବୁ ଲେଖା ଉଚ୍ଚାଙ୍ଗ ସାହିତ୍ୟ ହେଲେ ଚଳିବ ନାହିଁ । ପକ୍ଷାନ୍ତରେ ସବୁ ଲେଖା ଗ୍ରାମ୍ୟ, ପ୍ରାଦେଶିକ ଓ ଇତର ଜନପ୍ରିୟ ଶବ୍ଦ ବା ବାକ୍ୟବହୁଳ ହେଲେ ହେବ ନାହିଁ । ତଉତ୍ ଶ୍ରେଣୀର ଲେଖାମାନଙ୍କପାଇଁ ଆଦର୍ଶ ରହିବା ଦରକାର'' ଉଲ୍ଲେଖ କରିଛନ୍ତି । ଅଥଚ ତାଙ୍କ ସାହିତ୍ୟ, ଲୋକମୁଖ ଓ ଦେଶଜ ଶବ୍ଦର ଯେ ଗନ୍ତାଘର, ଏହା ସେ ଭୁଲିଯାଇଛନ୍ତି ।

ଏବଂ, ଓଡ଼ିଆଭାଷା ବର୍ତ୍ତମାନ, ନୱାରିସ୍ ମାଲ୍ ଭଳି ବାରଲୋକଙ୍କ ହାତ ସଫେଇରେ ବାରଚାଉଳିଆ ହେଇ ହଲାପଟା ହେଉଛି ଓ ଭାଷାବିଜ୍ଞାନୀ ସମାଲୋଚକଙ୍କ ଅଭାବ ଏହାର କାରଣ ବୋଲି ଅନୁଭବ କରିଛନ୍ତି ।

ସମ୍ପାଦକ

# ବିଶୁଦ୍ଧ ଭାଷା

(ଉତ୍କଳ ସାହିତ୍ୟ-ସମାଜର ଦ୍ୱିତୀୟ ବର୍ଷର ପ୍ରଥମ ଅଧିବେଶନରେ ପଠିତ)

ସଭାପତି ମହାଶୟ ଓ ସଭ୍ୟବୃନ୍ଦ !

ମୁଁ ଯେଉଁ ବିଷୟଟି ଆପଣମାନଙ୍କ ସମ୍ମୁଖରେ ଉପସ୍ଥାପିତ କରୁଅଛି, ତାହା ପ୍ରବନ୍ଧ ମଧ୍ୟରେ ପରିଗଣିତ ହେବାର ଯୋଗ୍ୟ ନୁହେଁ । ସମୟ ସମୟରେ ମୁଁ ଯାହା ଭାବିଥିଲି, ତହିଁର ଟିପ୍ପଣୀ ଲେଖି ରଖିଥିଲି । ଏଥିରେ ଗବେଷଣା ବା ଚିନ୍ତାଶୀଳତାର ପରିଚୟ ମିଳିବ ନାହିଁ । ଏହା କେବଳ ଅବତରଣିକା ମାତ୍ର । ଏ ବିଷୟଟି ଉପସ୍ଥାପିତ କରି ଆପଣମାନଙ୍କର ଏ କ୍ଷେତ୍ରରେ ଅନୁଶୀଳନ ପ୍ରାର୍ଥନା କରୁଅଛି ।

ମୋର କେତେକ ପଦ୍ୟ ଓ କାହାଣୀରେ ତୁମେ, ଆମେ, ରାଇଜ, ରଜା, ତତେ, ମତେ, ହଉଚି, କିମିତି, ଇମିତି, ପଠେଇବା, ସପନ ଇତ୍ୟାଦି କେତେଗୁଡ଼ିଏ ଶବ୍ଦ ପ୍ରୟୋଗ ହୋଇଥିବାର ଦେଖି ମୋର ଜଣେ ଶୁଭାକାଙ୍କ୍ଷୀ ଗୁରୁଜନସ୍ଥାନୀୟ ବ୍ୟକ୍ତି ଦିନେ ମତେ କହିଥିଲେ, "ଏପରି ଅଶୁଦ୍ଧ ଶବ୍ଦଗୁଡ଼ିଏ ବ୍ୟବହାର କରିଛ କାହିଁକି ? ବାଳକମାନଙ୍କ ନିମନ୍ତେ ଅଭିପ୍ରେତ କାହାଣୀ ବା ନାନାବାୟା ଗୀତରେ ଏପରି ଗୁଡ଼ିଏ ଅପଭ୍ରଷ୍ଟ ଶବ୍ଦ ବ୍ୟବହାର କଲେ ବାଲ୍ୟକାଳରୁ ବାଳକମାନେ ଏହି ଅଶୁଦ୍ଧ ଶବ୍ଦଗୁଡ଼ିକ ଶିକ୍ଷା କରିବେ । ଏସବୁ **ପୁସ୍ତକଗତ ଭାଷା ନୁହେଁ, ମୁଖପ୍ରଚଳିତ ଭାଷାକୁ ସାହିତ୍ୟରେ ସ୍ଥାନ ଦେବା ଉଚିତ ନୁହେଁ** । ଏ ଭାଷାର ବ୍ୟବହାର ନାଟକରେ ମାର୍ଜନୀୟ । କିନ୍ତୁ ଅନ୍ୟ ଲେଖାରେ ଏହା ଆଦୌ ବାଞ୍ଛନୀୟ ନୁହେଁ । ଏ ଶବ୍ଦପ୍ରୟୋଗ ବିଷୟରେ ଗୋଟିଏ ଆଦର୍ଶ ଧରି ଲେଖିବା ଏକାନ୍ତ କର୍ତ୍ତବ୍ୟ । ବର୍ତ୍ତମାନ ଓଡ଼ିଆ ଭାଷା ଗଠନର ସମୟ । ଏ ସମୟରେ ଯେଝା ମନକୁ ଯେ ଗୁଡ଼ିଏ ଅଶୁଦ୍ଧ ଶବ୍ଦ ବ୍ୟବହାର କଲେ ଭାଷାର ତଥା ସାହିତ୍ୟର ଅମଙ୍ଗଳ ।"[୧]

ମୋଦ୍ୱାରା ସଂଗୃହୀତ 'ଉତ୍କଳ-କାହାଣୀ' ୧ମ ଭାଗର ସମାଲୋଚନା ପ୍ରସଙ୍ଗରେ ୧୯୦୧ ମସିହା ଡିସେମ୍ବର ମାସ ୨୧ ତାରିଖ ଉତ୍କଳଦୀପିକାରେ ତଳଲିଖିତ ମନ୍ତବ୍ୟ ପ୍ରକାଶିତ ହୋଇଥିଲା- "ପୁସ୍ତକର ଭାଷା ସରଳ ଏବଂ ହାଟବାଟର ଚାଳକମାନେ ସହଜରେ ପଢ଼ି ବୁଝିପାରିବାର କୌଣସି କଷ୍ଟ ନାହିଁ । ମାତ୍ର ଲେଖକ ଭାଷାକୁ ସମସ୍ତ ବାଳକଙ୍କର ସହଜବୋଧ କରିବାକୁ ଯାଇ **ପୁସ୍ତକର ଭାଷାର ଆକାର ଛାଡ଼ି ଛୋଟଲୋକଙ୍କ ପ୍ରଚଳିତ କଥାବାର୍ତ୍ତାର ଭାଷା ପ୍ରଚାର କରିଅଛନ୍ତି** ତାହା ଆମ୍ଭମାନଙ୍କୁ

---

୧. ବିଶ୍ୱନାଥ କରଙ୍କ କେତେକ ଆଲୋଚନାରେ ଏହି ମାନସିକତା ସୁସ୍ପଷ୍ଟ ।

ଭଲ ଲାଗିଲା ନାହିଁ । କଥାଛଳରେ ବାଳକମାନଙ୍କୁ ପ୍ରକୃତ ଭାଷା ଶିକ୍ଷା ଦେଲେ କି ଏକାର୍ଥରେ ଦୁଇ କ୍ରିୟା ସାଧିତ ହେବାଦ୍ୱାରା ଅଧିକ ଫଳ ଲାଭର ଆଶା ନାହିଁ ? ଲେଖକ, ହଉ, ଘିନି, ଇମିତି, ଶୁଧ୍ୟ, ତେଲଉଣି, ରଚ୍ଚା ଇତ୍ୟାଦି ପୁସ୍ତକର ଆଦ୍ୟପ୍ରାନ୍ତ ବ୍ୟବହାର କରି ତାହାର ଅବୟବକୁ ଦୂଷିତ କରିଅଛନ୍ତି । 'ଗର'କୁ 'ଗଡ଼' ଏବଂ 'ମଣିଆନ୍ନା' ଇତ୍ୟାଦି ବ୍ରାହ୍ମଣିଆ କଥାର ମଧ୍ୟ ଅଭାବ ନାହିଁ ।''[୧]

ଭାଷାର ଶୁଦ୍ଧତା ଅଶୁଦ୍ଧତା ବିଷୟ ମୁଁ କେତେକ ଦିନ ପୂର୍ବରୁ ପର୍ଯ୍ୟାଲୋଚନା କରି କାହାଣୀ ଏବଂ ନାନାବାୟା ଗୀତରେ ପ୍ରଚଳିତ ଘରେଇ ଭାଷା ବ୍ୟବହାର କରିଥିଲି ଏବଂ ଆଜିପର୍ଯ୍ୟନ୍ତ ମଧ୍ୟ କରି ଆସୁଅଛି । ମୁଁ ଏ ସମ୍ବନ୍ଧରେ କେତେକ ବିଜ୍ଞ ଓ ବିଦ୍ୱାନ୍ ବ୍ୟକ୍ତିମାନଙ୍କ ସଙ୍ଗେ ପରାମର୍ଶ କରିଥିଲି ଏବଂ କାହାଣୀଗୁଡ଼ିକ ପ୍ରକାଶିତ ହେବା ପରେ କେତେଗୁଡ଼ିଏ ବ୍ୟକ୍ତିଙ୍କଠାରୁ ପତ୍ର ପାଇଥିଲି । ସେମାନେ ମୋ ବ୍ୟବହୃତ ଭାଷା ସପକ୍ଷରେ ମତ ଦେଇଅଛନ୍ତି । ପରେ ପଣ୍ଡିତ ମାକ୍ସମୂଲର, ହ୍ୱିଟନୀ, ସେିସ ଇତ୍ୟାଦି ପାଶ୍ଚାତ୍ୟ ଭାଷାତତ୍ତ୍ୱବିଦ୍ ପଣ୍ଡିତମାନଙ୍କର ଏ ସମ୍ବନ୍ଧୀୟ କେତେକ ମନ୍ତବ୍ୟ ପାଠ କରି ମୋ ଧାରଣା କ୍ରମଶଃ ଦୃଢ଼ୀଭୂତ ହୋଇଅଛି । ବ୍ୟବହୃତ ଘରେଇ ଭାଷା ଅଶୁଦ୍ଧ ବା ଦୂଷଣୀୟ ଥିବାର ଉପରୋକ୍ତ ବ୍ୟକ୍ତିମାନଙ୍କର ମତ ନୁହେଁ ।

ବର୍ତ୍ତମାନ ଓଡ଼ିଆ ଭାଷା ଗଠନର କାଳ । ନାନାକାରଣରୁ ଭାଷାରେ ପୁସ୍ତକଗତ ଏବଂ କଥିତ ଭାଷାର ଅତ୍ୟନ୍ତ ବୈଷମ୍ୟ ପରିଲକ୍ଷିତ ହୁଏ । ଏପରିକି ମୁଁ ବାଲ୍ୟକାଳରେ ସ୍ତ୍ରୀମାନଙ୍କଦ୍ୱାରା ଅନୁରୁଦ୍ଧ ହୋଇ, କୌଣସି ଓଡ଼ିଆ ଗଦ୍ୟ ପୁସ୍ତକ ସେମାନଙ୍କ ନିକଟରେ ପଢ଼ିବାକୁ ଯାଇ ବାଧ୍ୟ ହୋଇ ପୁସ୍ତକଗତ ଭାଷାକୁ ଯଥାସମ୍ଭବ ଘରେଇ ଭାଷାରେ ପରିବର୍ତ୍ତିତ କରି ପଢ଼ିଅଛି । ଏପରି ନ କଲେ ସ୍ତ୍ରୀମାନେ ଅଧିକାଂଶ ସ୍ଥଳରେ ପୁସ୍ତକଗତ ଭାଷା ବୁଝିବା ବିଷୟରେ ଅପାରଗ ହେଉଥିଲେ । ବର୍ତ୍ତମାନ ଗଦ୍ୟ ପୁସ୍ତକର ଅନେକ ସ୍ଥଳ ସ୍ତ୍ରୀମାନେ ବୁଝି ପାରୁଅଛନ୍ତି । ସ୍ତ୍ରୀ ଶିକ୍ଷାର ଉନ୍ନତି ଏଥିର କାରଣ ଅଥବା ଆଜିକାଲିର ସାହିତ୍ୟରେ ଓ ପୁସ୍ତକମାନଙ୍କରେ ଘରେଇ ଶବ୍ଦ ବିଶେଷ ପରିମାଣରେ ପ୍ରବେଶଲାଭ କରୁଅଛି ବୋଲି ପୁସ୍ତକଗତ ଭାଷା ସ୍ତ୍ରୀମାନଙ୍କର ସହଜବୋଧ ହୋଇଅଛି – ଏହା ଆମ୍ଭମାନଙ୍କର ଭାବିବାର ବିଷୟ । ଆଜିପର୍ଯ୍ୟନ୍ତ ପୁସ୍ତକମାନଙ୍କରେ ଗୃହ ପ୍ରଚଳିତ ଭାଷା ବ୍ୟବହୃତ ହେଉ ନ ଥିଲା ବୋଲି ଏହା ଅଶୁଦ୍ଧ, ଏହି ଯୁକ୍ତି ସୁଯୁକ୍ତି ବୋଲି ଆମ୍ଭମାନଙ୍କୁ ବୋଧ ହେଉ ନାହିଁ ।

ସାହିତ୍ୟକୁ ସ୍ଥୂଳତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ- ୧. ଉଚ୍ଚ ସାହିତ୍ୟ (Refined literature) ୨. ସାଧାରଣ ସାହିତ୍ୟ (Popular Literature) । ନାଟକ ଅବଶ୍ୟ ଉଚ୍ଚ ସାହିତ୍ୟ ମଧ୍ୟରେ ଗଣ୍ୟ । କିନ୍ତୁ ଯେବେ ନାଟକରେ ଘରେଇ ଭାଷା ବ୍ୟବହୃତ ହେଉଅଛି, ସାଧାରଣ ସାହିତ୍ୟରେ (କାହାଣୀ ଇତ୍ୟାଦିରେ) ସେପରି ଭାଷା ଯେ ଦୋଷାବହ

୧. ଏହି ଆଲୋଚନାର ଲେଖକ ଗୌରୀଶଙ୍କର ରାୟ । ସଂପୂର୍ଣ୍ଣ ଆଲୋଚନା, ପ୍ରହରାଜ ଗ୍ରନ୍ଥାବଳୀ, ଲୋକ ସାହିତ୍ୟ ଖଣ୍ଡର ୨୦୨-୧୦ ପୃଷ୍ଠା ଦ୍ରଷ୍ଟବ୍ୟ ।

ଏହା କିପରି ବୋଲାଯିବ ? ଘରେଇ ଭାଷା (homely language) ଓ ଇତରଜନବ୍ୟବହୃତ ଭାଷା (slang) ମଧରେ ଢେର ପ୍ରଭେଦ ଅଛି ଏବଂ ଇତରଜନବ୍ୟବହୃତ ଭାଷାକୁ (slang) ସାହିତ୍ୟରେ ପ୍ରବେଶାଧିକାର ହେବାର ଆମ୍ଭେମାନେ ପକ୍ଷପାତୀ ନୋହୁଁ । କିନ୍ତୁ ସାଧାରଣ ସାହିତ୍ୟରେ ଆମ୍ଭେମାନେ ଘରେଇ ଭାଷା (home language) ବ୍ୟବହାର କରିବାର ପୂର୍ଣ୍ଣ ପକ୍ଷପାତୀ ।

ଘରେଇ ଭାଷା ଆମ୍ଭେମାନେ ବାଲ୍ୟକାଳରୁ ଶୁଣି ଓ ବ୍ୟବହାର କରି ଆସୁଥିବାରୁ ତାହା ସଙ୍ଗରେ ଆମ୍ଭମାନଙ୍କର ଗୋଟିଏ ସହଜ ମମତା (Association) ଓ ସ୍ନେହ ଜନ୍ମିଅଛି । ଅତଏବ ସେ ଭାଷା ଆମ୍ଭମାନଙ୍କର ପ୍ରିୟତର ।

କୌଣସି ଉଚ୍ଚ ଓ ମାର୍ଜିତ ସାହିତ୍ୟଗତ ପ୍ରବନ୍ଧରେ ମାର୍ଜିତ ଭାଷା ଓ ଶବ୍ଦ ବ୍ୟବହାର କରିବା ସର୍ବଥା ଉଚିତ । ତାହା ବୋଲି କାହାଣୀ, ନାଟକ, ନାନାବାୟା ଗୀତ ଓ କଥୋପକଥନରେ ଘରେଇ ଭାଷା ଯେ ଉପେକ୍ଷିତ ହେବ, ଏହା ସମୀଚୀନ ବୋଧ ହେଉ ନାହିଁ ।

ଭାଷାର ଶୁଦ୍ଧତା ଅଶୁଦ୍ଧତା ପ୍ରଚଳନ ଉପରେ ନିର୍ଭର କରେ, ଏହା ସାହିତ୍ୟ-ବିଜ୍ଞାନବେତ୍ତାମାନଙ୍କର ମତ । ଉତ୍କଳ ସମାଜର ଉଚ୍ଚସ୍ଥାନୀୟ ଗୃହସ୍ଥଙ୍କ ଘରେ, ହଉ, ଯାଉଚି, ଏଠେଇଁ ଇତ୍ୟାଦି ଶବ୍ଦ ଅବାଧରେ ବ୍ୟବହୃତ ହୁଏ । ଏଗୁଡ଼ିକ ଇତର-ପ୍ରଚଳିତ ଭାଷା ହେଲା କିପରି ? ଏଗୁଡ଼ିକ ସାହିତ୍ୟ-ଗତ ଭାଷା ନ ହେବ କାହିଁକି ? ଇଂରାଜୀରେ ଉଚ୍ଚ ସାହିତ୍ୟରେ ‘Do not’ ବ୍ୟବହୃତ ହୁଏ ସତ୍ୟ, କିନ୍ତୁ ସାଧାରଣ ସାହିତ୍ୟରେ ମୁଖପ୍ରଚଳିତ "Dont'ର ବ୍ୟବହାର ଦୂଷ୍ୟ ବୋଲି ପରିଗଣିତ ହୁଏ ନାହିଁ । ନାଟକ ବା କଥୋପକଥନର ଭାଷାରେ ମୁଖ ପ୍ରଚଳିତ ଭାଷା ବ୍ୟବହାର ନ କରି ମାର୍ଜିତ ଉଚ୍ଚ ଭାଷା ବ୍ୟବହାର କଲେ, ଏହା ଅଡୁଆ ଲାଗିବ । ଅତଏବ ନାଟ୍ୟକାର ବାଧ ହୋଇ ବ୍ୟକ୍ତିମୁଖରେ କଥୋପକଥନର ଭାଷା ବ୍ୟବହାର କରିଥାନ୍ତି । ବାଳକ କାହାଣୀରୁ ‘ଆମେ’ ଓ ଉଚ୍ଚ ସାହିତ୍ୟରୁ ‘ଆମ୍ଭେ’ ଏ ଦିଓଟି ବ୍ୟବହାର ଶିଖିଲେ, ଏପରି କି ବିଶେଷ କ୍ଷତି ହେବ ତାହା ମୁଁ ବୁଝିପାରୁ ନାହିଁ ।

ନାଟ୍ୟକାର କଥୋପକଥନରେ ମାର୍ଜିତ ଭାଷା ବ୍ୟବହାର କରିବାକୁ ବସିଲେ ଏହା ସାହିତ୍ୟ ପକ୍ଷରେ ଅମଙ୍ଗଳଜନକ ବୋଲିବାକୁ ହେବ । ଏପରି କରିବାଦ୍ୱାରା ପ୍ରାକୃତିକ ଅନୁକରଣରେ ବାଧା ପଡ଼ି ନାଟକର ଉଦ୍ଦେଶ୍ୟ ବିଫଳ ହେବ । ଘରେଇ ଭାଷାକୁ ସାହିତ୍ୟର ଅଙ୍ଗ କରିବା ନିମନ୍ତେ ଶ୍ରୀଯୁକ୍ତ ଫକୀରମୋହନ ସେନାପତି ଓ ଶ୍ରୀଯୁକ୍ତ ରାମଶଙ୍କର ରାୟଙ୍କ ଚେଷ୍ଟା ଅତ୍ୟନ୍ତ ପ୍ରଶଂସନୀୟ । ଭଦ୍ର ପରିବାର-ପ୍ରଚଳିତ ଭାଷା ସାହିତ୍ୟର ଅଙ୍ଗ ଓ ଶୁଦ୍ଧ ଭାଷା, ଆମ୍ଭେମାନେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଅଛୁଁ ।

ବୁଢ଼ୀମା ଓ ସ୍ତ୍ରୀମାନେ କାହାଣୀ କହିଥାନ୍ତି ଏବଂ ଆମ୍ଭେମାନେ କାହାଣୀଗୁଡ଼ିକ ଶିଶୁମାନଙ୍କ ନିମନ୍ତେ ଲେଖିଥାଉଁ, ସୁତରାଂ ତହିଁରେ କଥୟିତ୍ରୀମାନଙ୍କ ଭାଷା ବ୍ୟବହାର ନ

କଲେ, କାହାଣୀଗୁଡ଼ିକର କାହାଣୀ ନଷ୍ଟ ହୋଇଯିବ, ଏଥିରେ ସନ୍ଦେହ ନାହିଁ । ବାଳକବାଳିକାମାନେ ନିଜ ନିଜ ଘରେ ଲୋକମାନଙ୍କ ମୁଖରୁ କାହାଣୀର ଭାଷା ଦିନରାତି ଶୁଣିବାଦ୍ୱାରା ଯେବେ ଅଶୁଦ୍ଧ ଭାଷା ଶିକ୍ଷା କରୁଅଛନ୍ତି ବୋଲି ସ୍ୱୀକାର କରାଯାଏ, ତାହାହେଲେ କାହାଣୀରୁ ସେପରି ଭାଷା ପଢ଼ି ବିଗିଡ଼ିଯିବେ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ମୁଁ ଏ ମତ ସମର୍ଥନ କରିବାକୁ ଏକାନ୍ତ ଅକ୍ଷମ ।

ବଙ୍ଗଳାର ଜନୈକ ଖ୍ୟାତନାମା ସାହିତ୍ୟସେବକ ଶ୍ରୀଯୁକ୍ତ କ୍ଷୀରୋଦଚନ୍ଦ୍ର ରାୟ, M.A. ମୋର କେତେକ କାହାଣୀକୁ ବଙ୍ଗୀୟ ଗୃହପ୍ରଚଳିତ ଭାଷାରେ ଭାଷାନ୍ତରିତ କରି ବଙ୍ଗଳାର 'ସାହିତ୍ୟ' ପତ୍ରିକାରେ ପ୍ରକାଶିତ କରିଥିଲେ ଓ ଚୁଞ୍ଚୁଡ଼ାର Education Gazette ସେହି କାହାଣୀଗୁଡ଼ିକ ମଧ୍ୟ ଅବିକଳ ତଦ୍ରୂପ ଭାଷାରେ ପ୍ରକାଶିତ କରିଥିଲେ ।

ପୁସ୍ତକଗତ ଭାଷା ଯେପରି ସାହିତ୍ୟର ଗୋଟିଏ ଅଙ୍ଗ, ଘରେଇ ଭାଷା ସେହିପରି ଆଉ ଗୋଟିଏ ଅଙ୍ଗ । ସେଗୁଡ଼ିକ ଯେତେବେଳେ ଭଦ୍ରବଂଶରେ ଏବଂ ମାର୍ଜିତ ସମାଜରେ ବ୍ୟବହୃତ ହେଉଅଛି, ତାହା ଇତର ବା ଅଶୁଦ୍ଧ ବୋଲାଯାଇ ନ ପାରେ । ବରଂଚ ପ୍ରଚଳିତ ଘରେଇ ଭାଷା ଓ ଶବ୍ଦ ଲିପିବଦ୍ଧ ହୋଇ ନ ରହିଲେ, ଭବିଷ୍ୟତ୍‌ରେ ଉତ୍କଳ ଭାଷାବିଜ୍ଞାନ ଗବେଷଣା ପକ୍ଷରେ ବିଶେଷ ବାଧା ଜନ୍ମିବ ଓ ଶବ୍ଦମାନଙ୍କ ଇତିହାସ ସଙ୍କଳନ ବିଷୟ କୁହେଳିକାମୟ ହେବ । ଯେତେ ଅପଭ୍ରଷ୍ଟ ଓ ଘରେଇ ଶବ୍ଦ ଲିପିବଦ୍ଧ ହୋଇ ରହେ ସାହିତ୍ୟ ଓ ଭାଷାବିଜ୍ଞାନର ସେତିକି ମଙ୍ଗଳ । ଯାହା ପ୍ରଚଳିତ ତାହା ଶୁଦ୍ଧ, ଏହା ସାହିତ୍ୟବିଜ୍ଞାନର ଗୋଟିଏ ପ୍ରଧାନ ନିୟମ ।

ଉତ୍କଳଭାଷୀ ଅଞ୍ଚଳମାନଙ୍କରେ ନାନାଦି ପ୍ରଭାବରୁ ଭାଷା ଓ ଶବ୍ଦ ରାଜ୍ୟରେ ଅନେକ ସ୍ଥାନୀୟ ବିଶେଷତ୍ୱ ପ୍ରବେଶ କରିଅଛି । ମୋ କ୍ଷୁଦ୍ର ମତରେ ସେଗୁଡ଼ିକ ଯଥାଶକ୍ତି ସଂଗ୍ରହ ଓ ଲିପିବଦ୍ଧ କରି ରଖିବା ସାହିତ୍ୟ ସେବକମାନଙ୍କର ଗୋଟିଏ ପ୍ରଧାନ କର୍ତ୍ତବ୍ୟ । ଏ କ୍ଷେତ୍ରରେ ଶ୍ରୀ ଶ୍ୟାମସୁନ୍ଦର ନନ୍ଦ, ଶ୍ରୀ ମୃତ୍ୟୁଞ୍ଜୟ ରଥ, ଶ୍ରୀ ଆର୍ତ୍ତତ୍ରାଣ ଶତପଥୀ, ଏମାନଙ୍କର ପରିଶ୍ରମ ପ୍ରଶଂସାର୍ହ । ଯେତିକି ଘରେଇ ଶବ୍ଦ ଓ ଭାଷା ସଂଗୃହୀତ ହେବ, ଉତ୍କଳର ଭବିଷ୍ୟଦ୍ ଶବ୍ଦକୋଷ ପ୍ରଣେତାଙ୍କ ମାର୍ଗ ସେତିକି ପରିଷ୍କୃତ ଓ ଆଶାପ୍ରଦ ହେଉଥିବ ।

ମୋର କାହାଣୀ ଲେଖିବାର ପ୍ରଥମ ଉଦ୍ଦେଶ୍ୟ, ଉତ୍କଳର ନିର୍ବାଣୋନ୍ମୁଖ କାହାଣୀଗୁଡ଼ିକ ଲିପିବଦ୍ଧ କରି ରଖିବା, ଦ୍ୱିତୀୟ ଉଦ୍ଦେଶ୍ୟ ତହିଁ ସଙ୍ଗେ ସଙ୍ଗେ ଘରେଇ ଶବ୍ଦଗୁଡ଼ିକ Idiom (ବାକ୍ୟବିଶେଷ) ଯଥାଶକ୍ତି ଲିପିବଦ୍ଧ କରିବା । ଘରେଇ ଭାଷା ଓ ଶବ୍ଦ ବ୍ୟବହାର କରିବା ପ୍ରଥମେ ଯେଡ଼େ ସହଜ ଓ ହେୟ ବୋଲି ମନେହୁଏ, ପ୍ରକୃତରେ ତାହା ନୁହେଁ । ସେଥିରେ ବିଶେଷ ସାବଧାନ ହୋଇ ସୁଦ୍ଧା ଅଭ୍ୟାସ-ଦୋଷରୁ ସ୍ଥାନେ ସ୍ଥାନେ ପୁସ୍ତକଗତ ଭାଷା ଓ ଶବ୍ଦମାନ ରହିଯାଏ ।

ଭାରତର ଆର୍ଯ୍ୟମାନେ ପୂର୍ବେ ସଂସ୍କୃତରେ କଥାବାର୍ତ୍ତା କରୁଥିଲେ, କ୍ରମଶଃ ଦେଶ, କାଳ, ଜଳବାୟୁ ଇତ୍ୟାଦି ନାନା ପ୍ରଭାବରୁ ଭାଷା ପରିବର୍ତ୍ତିତ ହେଲା । ଏହାହିଁ ପ୍ରାକୃତ ଭାଷା ସୃଷ୍ଟିର ମୂଳ କଥା । ଭାଷାର କ୍ରମିକ ପରିବର୍ତ୍ତନ ଅନିବାର୍ଯ୍ୟ । କାଳକ୍ରମେ କଥିତ ଭାଷା ଭିନ୍ନ ଭିନ୍ନ ସ୍ଥାନରେ ହିନ୍ଦୁସ୍ଥାନୀ, ଓଡ଼ିଆ, ବଙ୍ଗଳା, ମହାରାଷ୍ଟ୍ରୀ ରୂପ ଧାରଣ କଲା । ପୁନଶ୍ଚ ଏ ଭାଷାମାନଙ୍କ ମଧ୍ୟରେ ସମୟକ୍ରମେ ଆନ୍ତରିକ ପରିବର୍ତ୍ତନ ଚାଲିଅଛି । ଏ ଦଶା ସବୁ ଭାଷା ଭୋଗ କରିବାକୁ ବାଧ୍ୟ । ଉଦାହରଣସ୍ୱରୂପ - ଅହମ୍ ସ୍ଥଳରେ ଅହ୍ମେ, ହାମ୍, ଆମ୍ଭେ, ଆମି, ହାମେ, ଆସେ ପ୍ରଚଳିତ ହେଲା । ଏଥିରୁ ଗୋଟିକୁ ଶୁଦ୍ଧ ଓ ଆଉ ଗୋଟିକୁ ଅଶୁଦ୍ଧ କିପରି ବୋଲାଯିବ । ଯେଉଁ ନିୟମ ଓ କାରଣ ପ୍ରଭାବରୁ 'ଅହମ୍' 'ସ୍ଥଳରେ' 'ଅହ୍ମେ' ହୋଇଅଛି ସେହି କାରଣରୁ ଆମ୍ଭେ 'ଆମେ'ରେ ପରିବର୍ତ୍ତିତ ହେବା ଆଶ୍ଚର୍ଯ୍ୟ ନୁହେଁ ଏହା ବରଂ ସ୍ୱାଭାବିକ ।

ଇତିପୂର୍ବେ ୬ଷ୍ଠ ଭାଗ ୫ମ ଓ ୬ଷ୍ଠ (ଭାଦ୍ର ଓ ଆଶ୍ୱିନ) ସଂଖ୍ୟା 'ଉତ୍କଳ-ସାହିତ୍ୟ'ର 'ଦୁଇ ଖଣ୍ଡି ଓଡ଼ିଆ ପୁସ୍ତକ' ଶୀର୍ଷକ ସମାଲୋଚନା-ପ୍ରବନ୍ଧରେ ମୁଁ ଏ ପ୍ରସଙ୍ଗର ଅବତାରଣା କରିଥିଲି, କିନ୍ତୁ ଏପର୍ଯ୍ୟନ୍ତ ସେ ବିଷୟରେ କୌଣସି ପ୍ରକାର ଆଲୋଚନା ହୋଇଥିବାର ଦେଖୁ ନାହିଁ । ବିଷୟଟି 'ଉତ୍କଳ ସାହିତ୍ୟ ସମାଜ'ରେ ଆଲୋଚିତ ହେବା ଅସଙ୍ଗତ ନୁହେଁ ମନେକରି ଆଜି ମୋର କ୍ଷୁଦ୍ର ଅଭିମତ ଓ ଆଲୋଚନାର ଫଳ ମାତ୍ର ଆପଣମାନଙ୍କ ନିକଟରେ ଉପସ୍ଥାପିତ କରିବାକୁ ପ୍ରବୃତ୍ତ ହେଲି । ଯୋଗ୍ୟତର ବ୍ୟକ୍ତିଙ୍କଦ୍ୱାରା ଏ ପ୍ରସଙ୍ଗ ଧାରାବାହିକରୂପେ ଆଲୋଚିତ ହେବାର ଦେଖିଲେ, ମୋର କ୍ଷୁଦ୍ର ଉଦ୍ଦେଶ୍ୟ ସାଧିତ ହେଲା ବୋଲି ମନେ କରିବି । ପୁନଶ୍ଚ କହି ରଖିଲି, ଏହା ପ୍ରବନ୍ଧ ବା ଆଲୋଚନା ନାମରେ ଯୋଗ୍ୟ ନୁହେଁ, ଏହା ସୂଚନା ମାତ୍ର ।

# ଅବର୍ଗ୍ୟ 'ବ'

ଏହା ବ୍ୟଞ୍ଜନ ବର୍ଣ୍ଣମାଳାର ଊନବିଂଶ ଅକ୍ଷର ଓ ଅବର୍ଗ୍ୟ ବର୍ଣ୍ଣମାଳାର ୪ର୍ଥ ଅକ୍ଷର । ଏହାର ଉଚ୍ଚାରଣ ସ୍ଥାନ ଦନ୍ତ ଓ ଓଷ୍ଠ ଥିବାରୁ ଏହାକୁ 'ଦନ୍ତ୍ୟୋଷ୍ଠ ବର୍ଣ୍ଣ' ବୋଲାଯାଏ । ବର୍ଗ୍ୟ ବ, ଅର୍ଥାତ୍ ପ ବର୍ଗର ୩ୟ ବର୍ଣ୍ଣ ଓଷ୍ଠ୍ୟ, ଏହା ଉଚ୍ଚାରଣ କରିବାପାଇଁ ୨ଟି ଓଷ୍ଠ ବ୍ୟବହୃତ ହୁଏ । ବର୍ଗ୍ୟ ବ ର ଉଚ୍ଚାରଣ ଇଂରାଜୀ 'B' (ବି) ଓ ଫାରସୀ ୨ୟ ବର୍ଣ୍ଣ 'ବେ'ର ଉଚ୍ଚାରଣ ସଙ୍ଗେ ସମାନ; କିନ୍ତୁ ଅବର୍ଗ୍ୟ ବ ଉଚ୍ଚାରଣରେ ଉପର ପାଟିର ଦାନ୍ତକୁ ତଳ ଓଠ ଉପରେ ଲଘୁଭାବରେ ଛୁଇଁଲାପରି କରି ଟେକିବାକୁ ହୁଏ । ଏହି ଅନ୍ତଃସ୍ଥ ବ ର ଉଚ୍ଚାରଣ ଇଂରାଜୀ 'V' (ଭି) ଓ 'W' (ଡବଲଇଉ) ଓ ଫାରସୀ 'ଉଆଓ'ର ଉଚ୍ଚାରଣ ସଙ୍ଗେ ତୁଳନୀୟ । ଓଡ଼ିଆ ଭାଷାରେ ବର୍ଗ୍ୟ ବ ଓ ଅବର୍ଗ୍ୟ ବ ମଧ୍ୟରେ ଆକାରଗତ ପ୍ରଭେଦ ନ ଥିବାରୁ, ଅବର୍ଗ୍ୟ ବ ଯୁକ୍ତ ଶବ୍ଦମାନ ବର୍ଗ୍ୟ ବ ପରି ଉଚ୍ଚାରିତ ହୋଇ ମୂଳତଃ ଯେଉଁ ଶବ୍ଦମାନଙ୍କରେ ସଂସ୍କୃତରେ ଅବର୍ଗ୍ୟ ବ ଅଛି । ସେଗୁଡ଼ିକ ଭାଷାରେ ବର୍ଗ୍ୟ ବ ହୋଇସାରିଅଛି ।

ବର୍ଗ୍ୟ ବ ର ଉଚ୍ଚାରଣ 'ଅମ୍ବା' 'ଲମ୍ବ' 'ଉଦ୍ବୃତ୍ତ' 'ଉଦ୍ବହ' ଆଦି ଶବ୍ଦରେ ଲକ୍ଷିତ ହୁଏ । ଅବର୍ଗ୍ୟ ବ ର ଉଚ୍ଚାରଣ 'ପକ୍ୱ', 'ଅନୟ', 'ଚତ୍ୱର', 'ଦ୍ୱିତୀୟ' ଆଦି ଶବ୍ଦରେ ଲକ୍ଷିତ ହୁଏ ।

ସଂସ୍କୃତରେ ବର୍ଗ୍ୟ ବ ଓ ଅବର୍ଗ୍ୟ ବ ର ସ୍ୱାତନ୍ତ୍ର୍ୟ ରକ୍ଷିତ ହେଉଥିଲା, ଅବଧି ମଧ୍ୟ ହିନ୍ଦୀ, ମରହଟ୍ଟୀ ଆଦି କେତେକ ଆଧୁନିକ ଜୀବନ୍ତ ଭାଷାରେ ଏହି ଦୁଇଟି 'ବ'ର ସ୍ୱାତନ୍ତ୍ର୍ୟ ରକ୍ଷିତ ହେଉଅଛି । କିନ୍ତୁ ଓଡ଼ିଆ ଓ ବଙ୍ଗଭାଷାରେ ଏହା ରକ୍ଷିତ ହେଉ ନ ଥିବାରୁ, ଭାଷାରେ 'ବ' ଉଚ୍ଚାରଣଯୁକ୍ତ ଶବ୍ଦମାନଙ୍କପାଇଁ ସଂସ୍କୃତ ଡିକ୍ସିନାରୀରେ ବର୍ଗ୍ୟ ବ ଓ ଅବର୍ଗ୍ୟ ବ ତଳେ ଖୋଜିବାକୁ ପଡ଼େ । ଆହୁରି ମଧ୍ୟ ସଂସ୍କୃତରେ କେଉଁ ନିୟମ ଅନୁସାରେ ଶବ୍ଦରେ ଥିବା 'ବ' ବର୍ଗ୍ୟ ବା ଅବର୍ଗ୍ୟ ଏହା ଚିହ୍ନାଯିବ, ତହିଁପାଇଁ ସୁସ୍ପଷ୍ଟ ବିଧି ମତେ ମିଳି ନାହିଁ । ସଂ-ବ୍ୟାକରଣର ଗୋଟିଏ ସୂତ୍ରରୁ ଦେଖାଯାଏ ଯେ, ସନ୍ଧିର ନିୟମ ଅନୁସାରେ 'ଉ' ସ୍ଥାନରେ ଯେଉଁ 'ବ' ହୁଏ - ଯଥା, (ଅନୁ – ଏଷଣ = ଅନ୍ୱେଷଣ) ଏବଂ ଯେଉଁ 'ବ' ସ୍ଥଳରେ ଦ୍ୱକାର ହୁଏ (?) ଏବଂ ପ୍ରତ୍ୟୟର 'ବ' (ଯଥା, ବତ୍ ପ୍ରତ୍ୟୟ)କୁ ଅନ୍ତଃସ୍ଥ ବା ଅବର୍ଗ୍ୟ ବ ବୋଲି ବୁଝାଯିବ ।

ସଂସ୍କୃତ କୋଷକାରମାନେ ମଧ୍ୟ ଏ ସମ୍ବନ୍ଧେ ଆଖି କିଆରିରେ ଭୁଆଁ ବୁଲୁଥିବାର ଦେଖାଯାଏ । ରାଜା ସାର୍ ରାଧାକାନ୍ତ ଦେବଙ୍କ 'ସମର୍ଥକୋଷ'ରେ 'ବକ' ଓ 'ବକ' ଯୁକ୍ତ ଶବ୍ଦରୁ କେତେଗୁଡ଼ିଏ 'ବର୍ଗ୍ୟ ବ' ତଳେ ଓ କେତେଗୁଡ଼ିଏ ଶବ୍ଦ 'ଅବର୍ଗ୍ୟ ବ' ତଳେ ଲେଖାଯାଉଅଛି ଓ 'ଲବଣ' 'ଲବଙ୍ଗ'ରେ ଥିବା 'ବ' କୁ ବର୍ଗ୍ୟ ଓ ଅବର୍ଗ୍ୟ, ଉଭୟତ୍ର ଲେଖାଯାଇଅଛି ।

ଓଡ଼ିଆ ଅଭିଧାନକାର, ସଂସ୍କୃତ ଅଭିଧାନରେ ଯେଉଁ ଶବ୍ଦମାନ 'ବର୍ଗ୍ୟ ବ' ତଳେ ଦେଖିଅଛନ୍ତି, ତାକୁ 'ବର୍ଗ୍ୟ ବ' ତଳେ, ଯେଉଁ ଶବ୍ଦମାନ 'ଅବର୍ଗ୍ୟ ବ' ତଳେ ଦେଖିଅଛନ୍ତି ତାକୁ ଅବର୍ଗ୍ୟ ତଳେ ଲେଖିଅଛନ୍ତି । ତେଣୁ ଓଡ଼ିଆରେ 'ବ' କାରାଦ୍ୟ କୌଣସି ଶବ୍ଦ ଖୋଜିବାକୁ ହେଲେ, ସେଥିରେ ନ ପାଇଲେ, 'ଅବର୍ଗ୍ୟ ବ' ତଳେ ଖୋଜିବାକୁ ପଡ଼େ । ଜଗନ୍ନାଥ ରାଓ 'ବ' କାରାଦ୍ୟ ଦେଶଜ ଶବ୍ଦମାନଙ୍କୁ 'ଅବର୍ଗ୍ୟ ବ' ତଳେ ଲେଖିଅଛନ୍ତି ଓ ଗୋପୀନାଥ ନନ୍ଦ ଶର୍ମା ଦେଶଜ ଶବ୍ଦମାନଙ୍କୁ 'ବର୍ଗ୍ୟ ବ' ତଳେ ଲେଖିଅଛନ୍ତି ।

ଭାଷାରେ 'ବର୍ଗ୍ୟ ଓ ଅବର୍ଗ୍ୟ ବ' ର ଉଚ୍ଚାରଣଭେଦ ରକ୍ଷା ହେଉ ନ ଥିବାରୁ 'ବ' କାରାଦ୍ୟ ଶବ୍ଦମାନଙ୍କୁ କେତେକ ବଙ୍ଗଭାଷାର କୋଷକାରମାନେ 'ବର୍ଗ୍ୟ ବ' ତଳେ ଲେଖିଅଛନ୍ତି । ଏହାଦ୍ୱାରା ଗୋଟିଏ ବ କାରାଦ୍ୟ ଶବ୍ଦପାଇଁ ଦୁଇ ସ୍ଥାନ ଧଣ୍ଡିବାକୁ ପଡ଼େ ନାହିଁ ।

ଏହି ପ୍ରକାରେ ଭାଷାରେ ଦୁଇଟି 'ବ'କୁ ମିଶାଇ ଏକ କରିସାରି ମଧ୍ୟ, 'ଅବର୍ଗ୍ୟ ବ'ର ମୌଳିକ ଉଚ୍ଚାରଣରୁ ଭାଷା ତ୍ରାହି ପାଇପାରି ନାହିଁ । ଇଂରାଜୀ W (ଡବଲିଉ) ଓ ଫାରସୀ 'ଉଓଆଏ' ଅକ୍ଷରଯୁକ୍ତ ଯେଉଁ ଶବ୍ଦମାନ ଅବିକଳ ଆମ ଭାଷାକୁ ଆସିଅଛି, ତାକୁ 'ବ' କରି ଲେଖିଲେ ଲୋକେ ଅବର୍ଗ୍ୟ ବ ଉଚ୍ଚାରଣ କରିବେ ନାହିଁ, ଏଥିପାଇଁ କେହି କେହି ଏହି ଉଚ୍ଚାରଣକୁ 'ଉଅ' (ଉଆରଣ୍ଟ), କେହି କେହି ଓ୍ୱ (ଓ୍ୱାରଣ୍ଟ) କେହି ଓ୍ୟ (ଓ୍ୟାରଣ୍ଟ) କେହି କେହି ଡ୍ୱ (ଡ୍ୱାରଣ୍ଟ) ଓ ବଙ୍ଗଳାରେ ଓୟ (ଓୟାରଣ୍ଟ) ସାରା ପ୍ରକାଶ କରୁଅଛନ୍ତି । କବି ରାଧାନାଥ ତାଙ୍କ 'ଦରବାର' ପଦ୍ୟରେ 'warrant' କୁ 'ବାରେଣ୍ଟ' କରିଅଛନ୍ତି ଓ ଲୋକେ ତାକୁ 'ବର୍ଗ୍ୟ ବ' ଯୁକ୍ତ କରି ପଢୁଅଛନ୍ତି ।

ଦେଖିବାକୁ ଗଲେ 'ଅବର୍ଗ୍ୟ ବ'ର ଉ ଉଚ୍ଚାରଣ 'ଉଅ' ରୂପକ ଦୁଇଟି ଅକ୍ଷରର ପୃଥକ୍ ସନ୍ନିବେଶଦ୍ୱାରା ପ୍ରତିଭାତ ହୋଇପାରୁ ନାହିଁ କିମ୍ବା ବଙ୍ଗଳାରେ ବ୍ୟବହୃତ 'ଓୟ'ଦ୍ୱାରା ପ୍ରତିଫଳିତ ହେଉ ନାହିଁ । 'ଓ'ରେ 'ବଫଳା' (ଓ୍ୱ) କିମ୍ବା 'ଓ'ରେ 'ଯଫଳା' (ଓ୍ୟ) ଦେବାଦ୍ୱାରା, କେବଳ ଯେ 'ଅବର୍ଗ୍ୟ ବ'ର ପ୍ରକୃତ ଉଚ୍ଚାରଣ ପ୍ରତିଫଳିତ ହେଉ ନାହିଁ, ତାହା ନୁହେଁ; କିନ୍ତୁ ସ୍ୱରବର୍ଣ୍ଣରେ ଫଳା ଯୋଗ କରିବା ସଂସ୍କୃତ ବ୍ୟାକରଣର ରୀତିବିରୁଦ୍ଧ । ଯେବେ ସ୍ୱରବର୍ଣ୍ଣରେ ଫଳା ଯୋଗକରି ଅବ୍ୟାକରଣିକ ଓ ରୀତିବିରୁଦ୍ଧ ନୂଆପାଠ କାଢ଼ିବାକୁ ହେଲା, ତେବେ 'ଅବର୍ଗ୍ୟ ବ' ଉ ରୁ ଉତ୍ପନ୍ନ ହୋଇଥିବାରୁ, ତହିଁର ପ୍ରକୃତ ଉଚ୍ଚାରଣକୁ ପ୍ରତିଫଳିତ କରିବାପାଇଁ 'ଉ'ରେ 'ବଫଳା' (ଉ୍ୱ) ଦେଲେ ଏହା 'ଓ' ଓ 'ଓ୍ୟ' ଅପେକ୍ଷା ସ୍ପଷ୍ଟତର ଏବଂ ଶୁଦ୍ଧତର ଉଚ୍ଚାରଣ ହେବ - ଏହା କଲେ ମଧ୍ୟ ସ୍ୱରବର୍ଣ୍ଣରେ ଫଳା ଯୋଗ କରିବା ବ୍ୟାକରଣ ରୀତିବିରୁଦ୍ଧ ହେବ - ଏତେ ଗୋଲକଧନ୍ଦାରୁ ରକ୍ଷା ପାଇବାର ଏକମାତ୍ର ଉପାୟ ଏହିକି, 'ୟ' ଲେଖିବାଦ୍ୱାରା ଯେଉଁପରି 'ଇ୍ୟ' ଉଚ୍ଚାରଣକୁ 'ଯ' ଉଚ୍ଚାରଣଠାରୁ ପୃଥକ୍ ରଖାଯାଇଅଛି, 'ବ' ତଦ୍ରୂପ ଗୋଟିଏ କିଛି ପ୍ରଭେଦ-ଜ୍ଞାପକ ଚିହ୍ନ ଯୋଗକରି ତାକୁ 'ଅବର୍ଗ୍ୟ 'ବ'ରେ ପରିଣତ କରିବାହିଁ ଏ ସମସ୍ୟା

ସମାଧାନର ଏକମାତ୍ର ଉପାୟ ଅଟେ । ଦେବନାଗରରେ ବ (ব)ର ପୁଡ଼ାରେ ଗୋଟିଏ କିଲିଣୀ ଦେବାଦ୍ୱାରା (ৱ) ବର୍ଗ୍ୟ ଓ ଅବର୍ଗ୍ୟ 'ବ' ର ପ୍ରଭେଦ ରକ୍ଷା କରାଯାଇଅଛି । ହିନ୍ଦୀ ଭାଷାରେ ମଧ୍ୟ ବ ତଳେ ଗୋଟିଏ ବିନ୍ଦୁ ଦେଇ (ব়) ଅବର୍ଗ୍ୟ ବ କରାଯାଉଅଛି । ଆଧୁନିକ ବଙ୍ଗୀୟ ଭାଷାର ଲେଖକମାନେ ବଙ୍ଗଳା ବ ର ନିମ୍ନସ୍ଥ ପାର୍ଶ୍ୱରେଖା ଦ୍ୱୟ ସର୍ବ ନିମ୍ନକୋଣର ତଳେ ଗୋଟିଏ ବିନ୍ଦୁ ଦେଇ (ব়) ଅବର୍ଗ୍ୟ ବ କୁ ଚିହ୍ନାଉଅଛନ୍ତି (ଯଥା - ଶ୍ରୀଯୁକ୍ତ ଜ୍ଞାନେନ୍ଦ୍ର ମୋହନ ଦାସଙ୍କ 'ବଙ୍ଗଳାଭାଷାର ଅଭିଧାନ',) କିନ୍ତୁ; ଲେଖିଲାବେଳେ ଟିକିଏ ଅସାବଧାନତା ଯୋଗୁଁ ଉକ୍ତ ବିନ୍ଦୁଟି ବାଁ ଆଡ଼କୁ ଘୁଞ୍ଚି ଆସିଲେ ତାହା ବଙ୍ଗାକ୍ଷରର (ব়) ହୋଇଯିବ, ଏହି ଆଶଙ୍କା ଥିବାରୁ କେହି କେହି ଲେଖକ ବଙ୍ଗଳା ବ ର ନିମ୍ନତମ ବାମପାର୍ଶ୍ୱ ରେଖାତଳେ ଗୋଟାଏ ଗାର ଟାଣିଦେଇ (ব়)ଅବର୍ଗ୍ୟ ବ କୁ ଚିହ୍ନାଉଅଛନ୍ତି (ଯଥା – ଆଚାର୍ଯ୍ୟ ଯୋଗେଶ୍ଚନ୍ଦ୍ର ରାୟ ବିଦ୍ୟାନିଧିଙ୍କ ବାଙ୍ଗଲା ଶବ୍ଦକୋଷ) । କିନ୍ତୁ ଫଳତଃ ଏହି ପ୍ରସ୍ତାବିତ ପରିବର୍ତ୍ତନ ଅବଧି ବଙ୍ଗୀୟ ସାହିତ୍ୟ ଓ ଲେଖାରେ ସର୍ବବାଦିସମ୍ମତ ରୂପେ ଗୃହୀତ ହୋଇ ନାହିଁ ।

ମୋର କ୍ଷୁଦ୍ର ମତରେ 'ଯ' ସଙ୍ଗେ 'ୟ'ର ଯେଉଁ ସମ୍ପର୍କ, 'ବର୍ଗ୍ୟ ବ' ସଙ୍ଗେ 'ଅବର୍ଗ୍ୟ ବ' ର ସେହି ସମ୍ପର୍କ ବିଦ୍ୟମାନ ଥିବା ଦୃଷ୍ଟିରେ, 'ଅବର୍ଗ୍ୟ 'ବ'କୁ 'ବ' କରି ଚିହ୍ନାଇଲେ ବ୍ୟବହାରରେ ବିଶେଷ ସୁବିଧା ଘଟିବ ଓ ଏହା ଓଡ଼ିଆ ଲିପିର ରୀତିବିରୁଦ୍ଧ ହେବ ନାହିଁ । ଏଥିପାଇଁ ଓଡ଼ିଆ 'ୟ'ର ନଜିର ଆଗରେ ଥୁଆ ହୋଇଅଛି । ଏହି ପ୍ରସ୍ତାବଟି ମୋର କେତେକ ସାହିତ୍ୟ-ରସିକ ବନ୍ଧୁଙ୍କ ମନକୁ ଘେନିଅଛି । ପକ୍ଷାନ୍ତରରେ କେତେକ ବିଶିଷ୍ଟ ବନ୍ଧୁ ହିନ୍ଦୀ ଭାଷାରେ 'ବ' ତଳେ ବିନ୍ଦୁ ଦେଇ (ବ) ଅବର୍ଗ୍ୟ ବ କୁ ଚିହ୍ନାଇବାର ମତଦିଅନ୍ତି ଓ ଏଥିପାଇଁ ଅକ୍ଷର ତଳେ ବିନ୍ଦୁ ଯୋଗକରି ଉଚ୍ଚାରଣର ପ୍ରଭେଦ ଦେଖାଇବାରେ ବ୍ୟବହୃତ ଡ, ଢର ନଜିର ମଧ୍ୟ ଦେଉଅଛନ୍ତି । କେହି କେହି ବନ୍ଧୁ 'ଳ' ଠାରୁ ପ୍ରଭେଦ ଜ୍ଞାପକ ପୁଚ୍ଛଯୁକ୍ତ 'ଲ'ର ଦ୍ୱାହିଦେଇ ବ ରେ ଗୋଟିଏ ଥୋରପାହାର ବା ପୁଚ୍ଛ ଦେବାର (ବ) ପ୍ରସ୍ତାବ କରନ୍ତି, କିନ୍ତୁ ଏପରି କରିବାଦ୍ୱାରା ଲେଖକର ସାମାନ୍ୟ ଅସାବଧାନତା ଯୋଗୁଁ (ଯଥା : ବ) ଏହାକୁ 'ଦ୍ୱ' ଆକାରରେ ପାଠକ ଗୋଳମାଳ କରିବାର ଆଶଙ୍କା ଅଛି ।

ଯେ ହେଉ ବର୍ତ୍ତମାନ ଭାଷା ପ୍ରଚଳିତ କେତେଗୁଡ଼ିଏ ଶବ୍ଦ (ବିଶେଷତଃ ଇଂରାଜୀ ଓ ଯାବନିକ ଭାଷାଗତ ଶବ୍ଦମାନ) 'ଅବର୍ଗ୍ୟ ବ' ଉଚ୍ଚାରଣଯୁକ୍ତ ହୋଇଥିବାରୁ ଓ ସାଧାରଣ ଲୋକେ ଏବଂ କତିରିଆ ଲେଖକମାନେ ଏହାକୁ 'ଓ୍ୱ' ଓ 'ଓ୍ୟ'ଦ୍ୱାରା ଚିହ୍ନାଉଥିବାରୁ, ଏଥିପାଇଁ ଗୋଟିଏ ସମାଧାନ ଅତ୍ୟାବଶ୍ୟକୀୟ ହୋଇ ପଡ଼ିଅଛି ଓ ଏହି ପ୍ରଭେଦ ଜ୍ଞାପନ ଚିହ୍ନ କଅଣ ହେବ, ତାହା ଆଲୋଚନା କରି ସ୍ଥିର କରିବାପାଇଁ ମୁଁ ବିନୀତ ଭାବରେ ସାହିତ୍ୟିକମାନଙ୍କୁ ଓ ସାହିତ୍ୟ-ସମାଜଙ୍କ ନିକଟରେ ଏ ପ୍ରସ୍ତାବ ଆଗତ

କରୁଅଛି - ଓଡ଼ିଆ ଭାଷାର ଖଣ୍ଡିଏ ଶବ୍ଦକୋଷ ସଙ୍କଳନ କରିବାକୁ ଯାଇ ମୁଁ ଏହି ଧନ୍ଦକାରେ ଧନ୍ଦି ହେଉଅଛି ଓ ଆଶା କରେଁ ଯେ, ଅଚିରେ ସାହିତ୍ୟ-ରସିକମାନେ ଓ ସାହିତ୍ୟ-ପତ୍ରିକାମାନଙ୍କର ସମ୍ପାଦକମାନେ ଏ ବିଷୟର ସମ୍ୟକ୍ ଆଲୋଚନା କରି ଓଡ଼ିଆ ଭାଷାର ଗୋଟିଏ ଅଭାବ ଦୂର କରିବେ ।

ଭାଷା ପ୍ରଚଳିତ ସଂସ୍କୃତ ମୂଳକ ଶବ୍ଦରେ ମଧ୍ଯ ଏହି 'ଅବର୍ଗ୍ୟ ବ' ଉଚ୍ଚାରଣ ଦେଖାଯାଏ (ଯଥା : ବା – ଉ ବା ଓ୍ୱାଉ = ସଂ, ବହୁବାର ଓ ଭବ୍ୟ; କିନ୍ତୁ ବହୁବାରର 'ବ' ବର୍ଗ୍ୟ ବ ଅଟେ) କେହି କେହି ଏହାକୁ 'ଓଉ' ବୋଲି କହନ୍ତି ଓ ଲେଖନ୍ତି ।

ଇଂରାଜୀ ଭାଷାଗତ ବ୍ଲାଇନ୍, ବ୍ଲାଟର୍, ବ୍ଲାବ୍, ବ୍ଲାରଣ୍ଡ ଓ ଯାବନିକ ଚାକବ୍, ବେଚା ଆଦି ଅନେକ ଶବ୍ଦ ଭାଷାରେ ଚଳୁଅଛି ଓ ସେଗୁଡ଼ିକର ଉଚ୍ଚାରଣର ସ୍ୱାତନ୍ତ୍ର୍ୟ ରକ୍ଷା କରିବା ଆବଶ୍ୟକ ହୋଇଉଠିଅଛି ।

# ଓଡ଼ିଆ ଭାଷାରେ କେତେକ ବିଭ୍ରାଟ

ପଣ୍ଡିତ ଗୋପାଳଚନ୍ଦ୍ର ପ୍ରହରାଜ ଲେଖିଛନ୍ତି :

ସଂପାଦକ ମହାଶୟ,

ଓଡ଼ିଆ ଭାଷା ଓ ସାହିତ୍ୟରେ ପରିଲକ୍ଷିତ କେତେଗୁଡ଼ିଏ ତ୍ରୁଟି ଓ କେତେକ ଆବଶ୍ୟକ ସଂସ୍କାର ସମ୍ବନ୍ଧେ ମୋ ମନରେ ଯେଉଁ ଭାବମାନ ଉଦିତ ହେଲା, ତାହା ଆପଣଙ୍କ ପତ୍ରିକାରେ ପ୍ରକାଶିତ ହେଲେ ତହିଁର ସମ୍ୟକ୍ ଆଲୋଚନା ହୋଇପାରିବ, ଏହି ଆଶାରେ ଏମାନ ଜଣାଇଲି ।

୧. ଛାପାରେ ଓ ଲେଖାରେ ଆମ୍ଭେମାନେ ଡ ଓ ଡ଼ ର ପ୍ରଭେଦ ରକ୍ଷା କରୁ ନ ଥାଉଁ । ଡ ସ୍ଥାନରେ ଡ଼ ଓ ଡ଼ ସ୍ଥାନରେ ଡ ର ବ୍ୟବହାର ଅନେକ ସ୍ଥାନରେ ପାଠକର ଦୃଷ୍ଟିଗୋଚର ହେଉଅଛି । ଆପଣ ଯେ କୌଣସି ମୁଦ୍ରିତ ପୁସ୍ତକ ବା ପାଣ୍ଡୁଲିପି ଦେଖନ୍ତୁ, ତହିଁରେ ଏ ଦୋଷ ବହୁଶଃ ଲକ୍ଷ୍ୟ କରିବେ ।

୨. ଆମ୍ଭେମାନେ ଯେଉଁ ଯେଉଁ ଠାରେ ହସନ୍ତ ଉଚ୍ଚାରଣ କରୁଁ ଓ ବିଶେଷତଃ ଇଂରାଜୀ, ଆରବୀ, ଫାରସୀ ଆଦି ବୈଦେଶିକ ଭାଷାରୁ ଆଗତ ଶବ୍ଦମାନଙ୍କୁ ଲେଖିଲାବେଳେ ବା ଛାପିଲାବେଳେ ତତ୍ତଦ୍ ହସନ୍ତ ଚିହ୍ନର ବ୍ୟବହାର କରୁ ନ ଥାଉଁ ।

ଓଡ଼ିଆ ଭାଷାର ଗୋଟିଏ ବୈଶିଷ୍ଟ୍ୟ ଏହି ଯେ, ଓଡ଼ିଆ ଶବ୍ଦମାନ ଯେଉଁପରି ଲେଖାଯାଏ ସେହିପରି ଉଚ୍ଚାରିତ ହୁଏ । 'ପାନ' ଶବ୍ଦ ଓଡ଼ିଆରେ, ବଙ୍ଗଳାରେ ଓ ହିନ୍ଦୀରେ 'ପାନ' ରୂପେ ଲିଖିତ ହୁଏ, କିନ୍ତୁ ଉଚ୍ଚାରଣ କଲାବେଳେ ବଙ୍ଗଳାରେ ଓ ହିନ୍ଦୀରେ ତାହା 'ପାନ୍' ଉଚ୍ଚାରିତ ହୁଏ, କିନ୍ତୁ ଓଡ଼ିଆରେ 'ପାନ' ରୂପେ ଉଚ୍ଚାରିତ ହୁଏ । ବଙ୍ଗଳା ଓ ହିନ୍ଦୀ ଲେଖାକୁ ପଢ଼ିବା ଲୋକ ଅଧିକାଂଶ ସ୍ଥଳରେ ଶବ୍ଦ ଶେଷରେ ଥିବା ଅକାରଯୁକ୍ତ ବର୍ଣ୍ଣକୁ ହସନ୍ତ ଉଚ୍ଚାରଣ କରନ୍ତି ଓ ଏଥିଲାଗି ତତ୍ତଦ୍ ଭାଷାର ରୀତି ଜାଣି ନ ଥିବା ପାଠକଙ୍କୁ ଉକ୍ତ ଦୁଇ ଭାଷାର ଲେଖା ବା ଛାପାକୁ ପଢ଼ିବାପାଇଁ ଆୟାସ ପାଇବାକୁ ହୁଏ । 'ଆମି କାଲ ଏକଟା କାଲ କୁକୁର ଦେଖିଲାମ' ବଙ୍ଗଳାରେ ଏହି ବାକ୍ୟକୁ ପଢ଼ିବା ଲୋକ 'ଆମି କାଲ୍ ଏକ୍‌ଟା କାଲ କୁକୁର୍ ଦେଖି ଲାମ୍'ରୂପେ ପଢ଼ିବେ, ଅଥଚ ଏହି ବାକ୍ୟରେ ଥିବା ଦୁଇଟି 'କାଲ' ମଧ୍ୟରୁ ପ୍ରଥମଟିରେ ହସନ୍ତ ଲ ଓ ଦ୍ୱିତୀୟ କାଲରେ ହସନ୍ତହୀନ ଲ ଉଚ୍ଚାରଣର ପାର୍ଥକ୍ୟ ଲେଖାରେ ଚିହ୍ନିତ ହୋଇ ନ ଥାଏ । ଓଡ଼ିଆ ଭାଷାରେ ଚିରାଗତ ଏହି ହସନ୍ତ ଚିହ୍ନ ସମ୍ବନ୍ଧେ ଉଚ୍ଚାରଣ ଓ ଲେଖା ମଧ୍ୟରେ ଥିବା ପାର୍ଥକ୍ୟ ରୂପବୈଶିଷ୍ଟ୍ୟକୁ ଅକ୍ଷୁଣ୍ଣ ରଖିବା ଆଧୁନିକ ଲେଖକ ଓ ମୁଦ୍ରାକରମାନଙ୍କର ଉଚିତ ବୋଲି ମୁଁ ମନେକରେଁ । ବିଶେଷତଃ, ବୈଦେଶିକ ଭାଷାମାନଙ୍କରୁ ଓଡ଼ିଆ ଭାଷାକୁ ଆସିଥିବା ବିକୃତ ବା ଅବିକୃତ ଶବ୍ଦମାନଙ୍କୁ

ଲେଖିବା ବା ଛାପିବାବେଳେ ଯେଉଁ ଯେଉଁ ଅକ୍ଷର 'ହସନ୍ତରୂପେ' ଉଚ୍ଚାରିତ ହୁଏ, ସେହି ସେହି ଅକ୍ଷରକୁ 'ହସନ୍ତ ଚିହ୍ନିତ' କରିବା ଉଚିତ ବୋଲି ମୁଁ ମନେ କରୁଛି । ଉଦାହରଣସ୍ୱରୂପ, ଇଂରାଜୀ 'Ravenshaw College First Year Class'କୁ ଆମ୍ଭେମାନେ 'ରାଭେନ୍ସା କଲେଜ୍ ଫାଷ୍ଟ୍ ଇଅର୍ କ୍ଲାସ୍' ଉଚ୍ଚାରଣ କରୁଁ, କିନ୍ତୁ ଅଧିକାଂଶ ଲେଖା ଓ ଛାପାରେ ଏହି ପଦରେ ଥିବା ଜ, ଷ୍ଟ, ର ଓ ସ ବର୍ଣ୍ଣମାନଙ୍କର ହସନ୍ତ ଚିହ୍ନ ରଖାଯାଉ ନ ଥିବାର ଦେଖାଯିବ । ଏହିପରି କରିବାଦ୍ୱାରା ଫଳ ଏହିତା ହେଉଅଛି ଯେ, କାଳର ଗତିକ୍ରମେ ଓଡ଼ିଆ ଭାଷା ଏହାର ଉଚ୍ଚାରଣ ଓ ଲେଖା ମଧ୍ୟରେ ଥିବା ସାମଞ୍ଜସ୍ୟକୁ ହରାଉଅଛି ଓ ପରିଶେଷରେ ଏ ବିଷୟରେ ଏହା ବଙ୍ଗଳା ଓ ହିନ୍ଦୀ ପରି ହେବ । ସମ୍ବଲପୁରରେ ହିନ୍ଦୀ ଭାଷାର ପ୍ରଭାବରୁ ଓ ଉତ୍ତର ଓଡ଼ିଶା ଓ ମେଦିନୀପୁରରେ ବଙ୍ଗଳା ଭାଷାର ପ୍ରଭାବରୁ ଓଡ଼ିଆମାନେ ଅନେକ ଶବ୍ଦକୁ ହସନ୍ତ ବର୍ଣ୍ଣଯୁକ୍ତ କରିସାରିଲେଣି ।

୩. ଅନେକ ଲେଖାରେ ଓ ଛାପାରେ ଚନ୍ଦ୍ରବିନ୍ଦୁଯୁକ୍ତ ଉଚ୍ଚାରଣବିଶିଷ୍ଟ ଅକ୍ଷରମାନଙ୍କ ଉପରେ ଚନ୍ଦ୍ରବିନ୍ଦୁ ଚିହ୍ନ ଦିଆଯାଉ ନ ଥିବାର ଦେଖାଯାଏ । ଉଦାହରଣସ୍ୱରୂପ 'ନା' (ନାବ ବା ଡଙ୍ଗା) ଶବ୍ଦରେ ଥିବା 'ନା'ର ଅନନୁନାସିକ ଉଚ୍ଚାରଣରୁ 'ନାଁ' (ନାହିଁ ଓ ନାମ) ଶବ୍ଦରେ ଥିବା ଅନୁନାସିକ ଉଚ୍ଚାରଣ ପୃଥକ୍ ଅଟେ । କିନ୍ତୁ ସାଧାରଣତଃ ଲେଖକ ଓ ମୁଦ୍ରାକରମାନେ ଅନୁନାସିକ ଅକ୍ଷର ଉପରେ ଚନ୍ଦ୍ରବିନ୍ଦୁ ଚିହ୍ନ ଦେବା ପ୍ରତି ସର୍ବଦା ଦୃଷ୍ଟି ରଖନ୍ତି ନାହିଁ । ମୋର ମତ ଯେ, ଚନ୍ଦ୍ରବିନ୍ଦୁର ବ୍ୟବହାର ପ୍ରତି ଆମ୍ଭେମାନେ ସତର୍କ ଦୃଷ୍ଟି ରଖିବା ଉଚିତ ଅଟେ ।

୪. ଆମ୍ଭମାନଙ୍କ ମୁହଁରେ କେତେଗୁଡ଼ିଏ ଉଚ୍ଚାରଣ-ବିଭ୍ରାଟ ଘଟୁଥିବାର ଦେଖାଯାଏ । ସେ ବିଭ୍ରାଟମାନଙ୍କ ପ୍ରତିକାରପାଇଁ ସାହିତ୍ୟିକ ବ୍ୟକ୍ତି ଓ ସଂଘମାନଙ୍କ ପକ୍ଷରୁ ଚେଷ୍ଟା ହେବା ଉଚିତ ।

| | | |
|---|---|---|
| କୃଷ୍ଣ | କୁ | ଆମ୍ଭେମାନେ କୃଷ୍ଟଁ |
| ବାହ୍ୟ | କୁ | ବାଝ୍ୟ |
| ବ୍ରାହ୍ମଣ | କୁ | ବ୍ରାମ୍ହଣ |
| ସିଂହ | କୁ | ସିଂଘ |
| କ୍ଷ | କୁ | ଖ୍ୟ |

ଯ କୁ ଜ ରୂପେ ଉଚ୍ଚାରଣ କରୁଥାଉଁ ଓ ଶ, ଷ, ଓ ସ ର ଉଚ୍ଚାରଣରେ ପ୍ରଭେଦ ରକ୍ଷା କରୁ ନ ଥାଉଁ । ପ୍ରାକୃତ ଭାଷାରେ ଓ ହିନ୍ଦୀରେ ଏହି ୩ 'ସ' କାରର ଉଚ୍ଚାରଣର ପାର୍ଥକ୍ୟ ରଖାଯାଉ ନ ଥିବାରୁ, ଦେଶଜ ଶବ୍ଦମାନଙ୍କରେ ତଉଦ୍ ଭାଷାରେ ଗୋଟିଏ 'ଶ'ର ବ୍ୟବହାର ଚଳିଥିବାର ଦେଖାଯାଏ ।

୫. 'ବର୍ଗ୍ୟ ବ' ଓ 'ଅବର୍ଗ୍ୟ ବ' ର ଉଚ୍ଚାରଣ ପୃଥକ୍ ଥିବା ସ୍ଥଳରେ ଆମ୍ଭେମାନେ ଏହି ପାର୍ଥକ୍ୟ ରକ୍ଷା କରୁ ନ ଥିବାର ଦେଖାଯାଏ । ସଂସ୍କୃତରେ 'ବାଣ', 'ବାଳକ' ଆଦି ଶବ୍ଦରେ ଥିବା 'ବର୍ଗ୍ୟ ବ' ର ଉଚ୍ଚାରଣ 'ବାକ୍ୟ', 'ବାୟୁ' ଆଦି ଶବ୍ଦରେ ଥିବା ଅବର୍ଗ୍ୟ ବ-ର

ଉଚ୍ଚାରଣଠାରୁ ସ୍ୱତନ୍ତ୍ର ହେଲେହେଁ ଓଡ଼ିଆରେ ଆମ୍ଭେମାନେ ଏ ଦୁଇ 'ବ' ର ଏକ ବର୍ଗ୍ୟ 'ବ' ଉଚ୍ଚାରଣ କରି ଆସିଥାଇଁ । ଓଡ଼ିଆରେ ବ୍ୟବହୃତ ସଂସ୍କୃତ ଓ ସଂସ୍କୃତମୂଳକ ଶବ୍ଦମାନଙ୍କରେ ଥିବା ବର୍ଗ୍ୟ ଓ ଅବର୍ଗ୍ୟ ବକୁ ଆମେ ବର୍ଗ୍ୟ ବ ଉଚ୍ଚାରଣ କରୁଥାଇଁ । ତଥାପି ଓଡ଼ିଆ ଭାଷା 'ଅବର୍ଗ୍ୟ ବ' ର ସ୍ୱତନ୍ତ୍ର ଆବଶ୍ୟକତାରୁ ତ୍ରାହି ପାଇ ନାହିଁ । ଦେଶଜ ଓଉ । ସଂସ୍କୃତ ଉଦ୍ଦାଳକ, ବହୁବାର; ଲାଟିନ Cordia myxa Cordia Latifalia କୁ କେହି କେହି ଉଆଉ, କେହି କେହି ୱାଉ ବୋଲି ଲେଖନ୍ତି ଓ ଉଚ୍ଚାରଣ କରନ୍ତି । ଇଂରାଜୀ, ଫାର୍ସୀ, ଆରବୀ ଭାଷାରୁ ଆଗତ 'ଅବର୍ଗ୍ୟ ବ' ଯୁକ୍ତ ଶବ୍ଦରେ ଥିବା 'ଅବର୍ଗ୍ୟ ବ'-କୁ ଲେଖକ ଓ ମୁଦ୍ରାକରମାନେ 'ୱ' ବା 'ଓ୍ୟ' ରୂପେ ଚିହ୍ନିତ କରନ୍ତି; କିନ୍ତୁ ସ୍ୱରବର୍ଣ୍ଣ (ଓ) ରେ ବ ଫଳା ବା ଯ ଫଳା ଲଗାଇବା ବ୍ୟାକରଣବିରୁଦ୍ଧ ଥିବାରୁ କେହି କେହି ଅବର୍ଗ୍ୟ ବ କୁ 'ଉଅ' ରୂପେ ଲେଖନ୍ତି. ଯଥା - ୱାବ୍, ଓ୍ୟାବ୍, ଉଆବ୍; ବେୱା, ବେଓ୍ୟା, ବେଉଆ; ୱାରଣ୍ଟ, ଓ୍ୟାରଣ୍ଟ, ଉଆରଣ୍ଟ । କବିବର ରାଧାନାଥ ଇଂରାଜୀ warrant ଶବ୍ଦରୁ 'ବାରେଣ୍ଟି' କରିଅଛନ୍ତି । ଫାର୍ସୀ ୱକିଲ ଶବ୍ଦ ଓଡ଼ିଆରେ ଓକିଲରୂପ ଧାରଣ କରିଅଛି । ଯେ ହେଉ, ଅବର୍ଗ୍ୟ ବ କୁ ଗୋଟିଏ ସ୍ୱତନ୍ତ୍ର ଉଚ୍ଚାରଣବିଶିଷ୍ଟ ଅକ୍ଷର ରୂପେ ବର୍ଣ୍ଣମାଳାରେ ରଖିବା ଓଡ଼ିଆ ଭାଷା ପକ୍ଷରେ ପ୍ରୟୋଜନୀୟ ହୋଇପଡ଼ିଅଛି । କିନ୍ତୁ ଏ ଦୁଇ ବର୍ଣ୍ଣପାଇଁ ଓଡ଼ିଆରେ ପୃଥକ୍ ଅକ୍ଷର ନାହିଁ । ସଂସ୍କୃତରେ ଓ ହିନ୍ଦୀରେ ବର୍ଗ୍ୟ ବ କୁ ଓ ଅବର୍ଗ୍ୟ ବ କୁ ରୂପେ ଚିହ୍ନିତ କରାଯାଏ । ବଙ୍ଗଳାରେ ପୂର୍ବେ ଏ ଦୁଇ ଅକ୍ଷର ମଧ୍ୟରେ ଲେଖାରେ ପ୍ରଭେଦ ରହୁ ନ ଥିଲା, ସଂପ୍ରତି କେତେକ ଲେଖକ (ଯଥା ରାୟବାହା ଦୂର ଯୋଗେଶ ଚନ୍ଦ୍ର) ବର୍ଗ୍ୟ ବ କୁ ଏ ଅବର୍ଗ୍ୟ ବ କୁ ଐରୂପେ ଓ କେହି କେହି (ଯଥା ଅଭିଧାନକାର ଜ୍ଞାନେନ୍ଦ୍ର ମୋହନ) ଏ ରୂପେ ଚିହ୍ନିତ କରୁଅଛନ୍ତି । ଗୁଜରାଟୀ ଭାଷାରେ ବର୍ଗ୍ୟ ବ ଓ ଅବର୍ଗ୍ୟ ବ ପାଇଁ ସ୍ୱତନ୍ତ୍ର ଦୁଇଟି ଅକ୍ଷର ଅଛି । ମରହଟ୍ଟୀ ଭାଷା ସଂସ୍କୃତ ବା ଦେବନାଗରର ରୀତି ଅନୁସରଣ କରିଅଛି ।

ପୂର୍ଣ୍ଣଚନ୍ଦ୍ର ଭାଷାକୋଷରେ 'ବର୍ଗ୍ୟ ବ' କୁ ବର୍ତ୍ତମାନ ପ୍ରଚଳିତ 'ବ' ପରି ରଖି 'ଅବର୍ଗ୍ୟ ବ', ନିମନ୍ତେ ଅଧୁନା ବ୍ୟବହୃତ 'ଓ-ରେ' 'ବ'-ଫଳାର ଅନୁକରଣରେ ଓ ଅକ୍ଷରର ରୀତି ଆରମ୍ଭ କରା ହୋଇଅଛି । ଜୟପୁରର ରାଜା ସାହିତ୍ୟସମ୍ରାଟ୍ ଶ୍ରୀ ବିକ୍ରମ ଦେବ ବର୍ମା 'ଅବର୍ଗ୍ୟ ବ' କୁ 'ବ' (ପେଟ କୀଳା ତଳପୁଡ଼ା) ରୂପେ ଚିହ୍ନିତ କରୁଅଛନ୍ତି । ରାଜା ବିକ୍ରମ ଦେବଙ୍କ ବ୍ୟବହାରର ପୋଷକତାରେ କରଣୀ ଲେଖାରେ ବ ଅକ୍ଷର ରୂପେ ଲେଖା ହେଉଥିବାର ନଜିର ଅଛି । ଯେ ହେଉ, ବର୍ଗ୍ୟ ଓ ଅବର୍ଗ୍ୟ ବ-ର ପ୍ରଭେଦଜ୍ଞାପକ ଚିହ୍ନ ଓଡ଼ିଆ ଭାଷାରେ ଚଳିବା ଆବଶ୍ୟକ ବୋଲି ମୁଁ ସାହିତ୍ୟିକମାନଙ୍କଠରେ ଏ ପ୍ରସଙ୍ଗ ଉତ୍ଥାପନ କରୁଅଛି । ଏ ପ୍ରସଙ୍ଗ ନବ ଭାରତର ସମ୍ପାଦକଙ୍କ ନେତୃତ୍ୱରେ ସାହିତ୍ୟକ୍ଷେତ୍ରରେ ସମ୍ୟକ୍ ଆଲୋଚିତ ଓ ଆଲୋଡ଼ିତ ହେଉ ଓ ଏ ସମ୍ବନ୍ଧେ ବହୁବାର ସମ୍ମତ ପଦ୍ଧତି ଭାଷାରେ ସ୍ଥାନ ପାଉ ।

(ଏ ପ୍ରସଙ୍ଗରେ ଆମ୍ଭମାନଙ୍କ ମତାମତ ସ୍ଥାନାଭାବରୁ ଏଥର ପ୍ରକାଶ ହୋଇପାରିଲା ନାହିଁ, ଆସନ୍ତା ସଂଖ୍ୟାରେ ତାହା ପ୍ରକାଶ ହେବ । ଆମ୍ଭେମାନେ ଉତ୍କଳର ସାହିତ୍ୟରସିକମାନଙ୍କୁ ଆହ୍ୱାନ କରୁ, ସେମାନେ ସେମାନଙ୍କ ମତାମତ 'ନବଭାରତ' ଜରିଆରେ ପ୍ରକାଶ କରନ୍ତୁ । ସଂ, ନ)

# ଓଡ଼ିଆ ଭାଷା ବ୍ୟବହାରରେ ସ୍ୱାଧୀନତା

ଏହି ପ୍ରବନ୍ଧର କଅଣ ନାମ ଦେବି, ଏହା ମୁଁ ସ୍ଥିର କରି ନ ପାରି, ଆପାତତଃ ଉପର୍ଯ୍ୟୁକ୍ତ ନାମ ଦେଇ ଏ ପ୍ରସଙ୍ଗ ଆରମ୍ଭ କରିଅଛି । ନବ୍ୟ ସଭ୍ୟତା ପ୍ରଭାବରେ ଭାରତର ଅନ୍ୟାନ୍ୟ ପ୍ରାଦେଶିକ ସାହିତ୍ୟପରି ଓଡ଼ିଆ-ସାହିତ୍ୟ ମଧ୍ୟ ବର୍ତ୍ତମାନ ପ୍ରଗତିପଥରେ ପଥିକ ହୋଇଅଛି । ଲୋକଙ୍କର ଓ ଶିକ୍ଷିତ ଯୁବକମାନଙ୍କର ସାହିତ୍ୟ ଆଡ଼କୁ ଦୃଷ୍ଟି ପଡ଼ିଅଛି । ଦେଶରେ ଗୁଡ଼ିଏ ଦୈନିକ ଓ ସାପ୍ତାହିକ ସମ୍ବାଦପତ୍ର ଏବଂ ମାସିକ ଓ ସାମୟିକ ପତ୍ରିକା ପ୍ରକାଶ ହେବାଦ୍ୱାରା ଲେଖକମାନେ ତହିଁରେ ପ୍ରବନ୍ଧାଦି ଲେଖିବାପାଇଁ କ୍ଷେତ୍ର ପାଉଅଛନ୍ତି । ପୂର୍ବ ଅପେକ୍ଷା ଦେଶରେ ପାଠକସଂଖ୍ୟା ବଢ଼ିଲାଣି । ବର୍ତ୍ତମାନ ଆଶାର ଓ ଆନନ୍ଦର ବିଷୟ ଏହି କି, ପାଶ୍ଚାତ୍ୟ ଶିକ୍ଷା ଦୀକ୍ଷାରେ ଦୀକ୍ଷିତ ଅନେକ ଯୁବକ ଓ କେତେଗୁଡ଼ିଏ ଲଳନା ଓଡ଼ିଆ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇ ଲେଖନୀ ଚାଳନ କରୁଅଛନ୍ତି । କାଳକ୍ରମେ ଓଡ଼ିଶାରେ ସ୍ତ୍ରୀ ଶିକ୍ଷା ପ୍ରସାର ଲାଭ କରୁଅଛି । ଏ ସବୁ ଦେଖି ସ୍ୱଭାବତଃ ମନୁଷ୍ୟ ଆଶାବିସ୍ଫାରିତ ନୟନରେ ଓଡ଼ିଆଭାଷାର ଓ ସାହିତ୍ୟର ଉନ୍ନତି ଦେଖିବାକୁ ଉଦ୍‌ଗ୍ରୀବ ହୁଏ । କିନ୍ତୁ ସାହିତ୍ୟ-କ୍ଷେତ୍ରରେ ଲେଖକ ଲେଖିକାମାନଙ୍କ ସଂଖ୍ୟା ବୃଦ୍ଧି ହେବା ସଙ୍ଗେ ସଙ୍ଗେ ସେମାନଙ୍କ ଉପରେ ଯେଉଁ ଦାୟିତ୍ୱ ପୂର୍ବ ଅପେକ୍ଷା ଗୁରୁତରଭାବରେ ନ୍ୟସ୍ତ ହେଉଅଛି, ତାହା ମଧ୍ୟ ଚିନ୍ତା କରିବା ଆମ୍ଭମାନଙ୍କର ଉଚିତ ।

ଭାରତର ପ୍ରାଦେଶିକ ଭାଷା (vernacular) ମାନଙ୍କ ମଧ୍ୟରେ ଓଡ଼ିଆ ଗୋଟିଏ ପୁରାତନ ଓ ଶବ୍ଦବହୁଳ ଭାଷା ଅଟେ । ଓଡ଼ିଆ ଭାଷା ସ୍ୱତନ୍ତ୍ର ଭାଷା ନୁହେଁ ବା ଓଡ଼ିଆ ଭାଷାର ବୈଶିଷ୍ଟ୍ୟ, ବିଚିତ୍ରତା ବା ଶବ୍ଦ-ବିଭବ ନାହିଁ, ଏ କଥା କହି ଓଡ଼ିଆ ଭାଷାକୁ ହସରେ ଉଡ଼ାଇ ଦେବା ଦିନ ଆଉ ନାହିଁ ।

ପରନ୍ତୁ, ପ୍ରତିବେଶୀମାନଙ୍କ ଭାଷା (ଯଥା – ବଙ୍ଗଳା, ହିନ୍ଦୀ) ତୁଳନାରେ ଓଡ଼ିଆ ଭାଷାରେ କେତେଗୁଡ଼ିଏ ବୈଶିଷ୍ଟ୍ୟ ଆମ୍ଭେମାନେ ଲକ୍ଷ୍ୟ କରୁଁ । ହିନ୍ଦୀ ଓ ବଙ୍ଗଳା ଭାଷାରେ ଶବ୍ଦ ଶେଷରେ ଥିବା ଅକାରାନ୍ତ ବର୍ଣ୍ଣର ଉଚ୍ଚାରଣ ବିଷୟରେ ବିଭ୍ରାଟ ଦେଖାଯାଏ । ହିନ୍ଦୀରେ ଓ ବଙ୍ଗଳାରେ ଲେଖାଯାଏ ପାନ, କିନ୍ତୁ ଉଚ୍ଚାରଣ କରାଯାଏ ପାନ୍ । ପୁନଶ୍ଚ ଏହି ନିୟମ ତତ୍ତଦ୍ ଭାଷାରେ ସର୍ବତ୍ର ପାଳିତ ହୁଏ ନାହିଁ । ବଙ୍ଗଳାରେ 'ଆମି କାଲ ଏକଟି କାଲ କୁକୁର ଦେଖିଲାମ' ଲେଖାଯାଏ, କିନ୍ତୁ ଏ ଲେଖାକୁ 'ଆମି କାଲ୍ ଏକ୍‌ଟି କାଲ କୁକୁର ଦେଖ୍‌ଲାମ୍' ପଢ଼ିବାକୁ ହୁଏ । ଏ ଲିଖିତ ବାକ୍ୟରେ ଥିବା ପ୍ରଥମ 'କାଲ୍' ଶବ୍ଦ ଓ ଦ୍ୱିତୀୟ 'କାଲ' ଶବ୍ଦର ଉଚ୍ଚାରଣରେ ପାର୍ଥକ୍ୟବୋଧକ କୌଣସି ଚିହ୍ନ ଦିଆଯାଏ ନାହିଁ । ବଙ୍ଗଳାରେ କହନ୍ତି 'ଖାଉଆ' କିନ୍ତୁ ଲେଖନ୍ତି 'ଖାଓୟା', ଲେଖିବେ 'ବିଶ୍ୱାସ' ଉଚ୍ଚାରଣ କରିବେ

'ବିଶ୍ୱାସ' । ହିନ୍ଦୀ ଭାଷାରେ ଅନୁସ୍ୱାର ଓ ଚନ୍ଦ୍ରବିନ୍ଦୁର ବ୍ୟବହାରରେ ଓ ଉଚ୍ଚାରଣରେ ବିଭ୍ରାଟ ଦେଖାଯାଏ । ହିନ୍ଦୀରେ ଲେଖିବେ ''ହମାରେ ଘରମେଂ ଚାରୋଂ ବଚ୍ଚେଂ ପାଠ ପଢ଼ତେହେଂ' ଏ ବାକ୍ୟକୁ ପଢ଼ିବେ । 'ହାମାରେ ଘର୍‌ମେଁ ଚାରୋଁ ବଚ୍ଚେଁ ପାଠ୍ ପଢ଼୍‌ତେହେଁ ।'' ହିନ୍ଦୀରେ ଓ ବଙ୍ଗଳାରେ 'ଳ' ଉଚ୍ଚାରଣର ଓ 'ଣ' ଉଚ୍ଚାରଣର ଅସ୍ତିତ୍ୱ ନାହିଁ । ହିନ୍ଦୀରେ ଅନ୍ତସ୍ଥ ଯ, ର ଓ ୟ, ର ପୃଥକ୍ ଉଚ୍ଚାରଣ ଲକ୍ଷିତ ହୁଏ ନାହିଁ । ହିନ୍ଦୀଭାଷୀମାନେ ଅନ୍ତସ୍ଥ ଯ କୁ ୟ ଉଚ୍ଚାରଣ କରନ୍ତି । ବୈଦେଶିକ ଓ ବିଶେଷତଃ ଇଂରାଜୀ ଭାଷାରୁ ଆଗତ କେତେଗୁଡ଼ିଏ ଉଚ୍ଚାରଣ ବଙ୍ଗଳାରେ ଓ ହିନ୍ଦୀରେ ବିକୃତଭାବରେ ଲେଖାଯାଏ । ଇଂରାଜୀର 'ମାଜିକ୍' 'ମାନ୍,' 'ଇଂଲାଣ୍ଡ୍', 'ମାନେଜର୍' ହିନ୍ଦୀରେ ଲେଖାଯାଏ 'ମୈଜିକ', 'ମୈନ', 'ଇଂଲୈଣ୍ଡ' 'ମୈନେଜର', ବଙ୍ଗଳାରେ ଲେଖାଯାଏ 'ମ୍ୟା(ମେ)ଜକ୍', 'ମ୍ୟା(ମେ)ନ୍', 'ଇଂଲଣ୍ଡ', 'ମ୍ୟା(ମେ)ନେଜର'' । ଓଡ଼ିଆରେ ପୁରୁଣାକାଳିଆ ପଣ୍ଡିତମାନଙ୍କ ମୁହଁରୁ ଆଜି ମଧ୍ୟ 'ଜ' ଓ 'ଯ' ଉଚ୍ଚାରଣ ଏବଂ 'ସ', 'ଶ' ଉଚ୍ଚାରଣର ପାର୍ଥକ୍ୟ ଲକ୍ଷ୍ୟ କରାଯାଏ । ଯଥା – ଶନିର ଉଚ୍ଚାରଣ ସ୍ୟନି, ଶଙ୍କାର ସ୍ୟଙ୍କା, ଯାପନର ଜ୍ୟାପନ, ଯକ୍ଷର ଜ୍ୟକ୍ଷ, ଯଦିର ଜ୍ୟଦି, ଉଚ୍ଚାରଣ ଏଥିର ଉଦାହରଣ । ଏସବୁ ଉଲ୍ଲେଖ କରି ମୁଁ ତତ୍ତଦ୍ ଭାଷାର ନିକୃଷ୍ଟତା ପ୍ରତିପାଦିତ କରିବାକୁ ବସି ନାହିଁ । ଏ ସବୁ ଉଦାହରଣଦ୍ୱାରା ମୁଁ ଓଡ଼ିଆ ଭାଷାର ବିଶିଷ୍ଟତା ପ୍ରତି ଆପଣମାନଙ୍କ ଦୃଷ୍ଟି ଆକର୍ଷଣ କରୁଅଛି । ଓଡ଼ିଆ ଭାଷାରେ ଏସବୁ ଦୋଷ ପରିଲକ୍ଷିତ ହୁଏ ନାହିଁ । ଯେଉଁଠାରେ ଆମ୍ଭେମାନେ 'ଅ' ସ୍ୱରଯୁକ୍ତ ଅକ୍ଷର ଲେଖୁଁ ସେଠାରେ ଲେଖା ଅନୁସାରେ ଉକ୍ତ ଅକ୍ଷରକୁ 'ଅ' ସ୍ୱରଯୁକ୍ତ କରି ଉଚ୍ଚାରଣ କରୁ ଓ ଯେଉଁଠାରେ ହଳନ୍ତ ବର୍ଣ୍ଣ ଲେଖୁଁ, ସେଠାରେ ହଳନ୍ତ ଉଚ୍ଚାରଣ କରୁଁ । ମୋର ସମସ୍ତଙ୍କଠାରେ ନିବେଦନ ଏହିକି, ଆମ ମାତୃଭାଷାର ଏହି ବୈଶିଷ୍ଟ୍ୟକୁ ଆମ୍ଭେମାନେ ଛାଡ଼ିବା ନାହିଁ ଓ ଯଥାଶକ୍ତି ଉଚ୍ଚାରଣ ସଙ୍ଗେ ଲେଖାର ସମତା ରକ୍ଷା କରିବା । ଅଧିକାଂଶ ହଳନ୍ତ ବୈଦେଶିକ ଶବ୍ଦକୁ ଆମେ ଉଚ୍ଚାରଣ କରୁଥାଇଁ ଏକପ୍ରକାର, କିନ୍ତୁ ଲେଖୁଥାଇଁ ଅନ୍ୟ ପ୍ରକାର ଯଥା – କଲେଜ୍ ହେଡ୍‌ମାଷ୍ଟର୍, ପ୍ରୋଫେସର, ମାଜିଷ୍ଟ୍ରେଟ୍‌କୁ ଲେଖୁଥାଇଁ କଲେଜ, ହେଡ଼ମାଷ୍ଟର, ପ୍ରୋଫେସର ଓ ମାଜିଷ୍ଟ୍ରେଟ । ଏହିପରି ଓଡ଼ିଆରେ ନାମବାଚକ ଶବ୍ଦମାନଙ୍କୁ ଅକାରନ୍ତ କରି ଉଚ୍ଚାରଣ କରୁଥାଇଁ, କିନ୍ତୁ ଇଂରାଜୀରେ ଲେଖିଲା ବେଳକୁ ଲେଖୁଥାଇଁ ହଳନ୍ତ କରି : ଯଥା 'ପଣ୍ଡିତ ରାମଶଙ୍କର'କୁ ଇଂରାଜୀରେ ଲେଖୁଥାଇଁ Pandit Ramshankar ପଣ୍ଡିତ୍ ରାମ୍‌ଶଙ୍କର୍ । ଏହି ପ୍ରସଙ୍ଗରେ ବୋଲାଯାଇପାରେ ଯେ, ବିଦେଶାଗତ ବହୁ ଶବ୍ଦକୁ ଆମ୍ଭେମାନେ ମୁହଁରେ ହଳନ୍ତ ଉଚ୍ଚାରଣ କରୁଥିଲେହେଁ ଲେଖାରେ ହଳନ୍ତ ଚିହ୍ନ ରଖୁ ନ ଥାଇଁ, ଯଥା – ଠିକ୍, କମ୍, ବେଶ୍, ଭୁଲ୍, ଦାମ୍, ଖୁବ୍ । ଓଡ଼ିଆ ଭାଷାରେ ହଳନ୍ତ ଶବ୍ଦମାନଙ୍କର ବିଭକ୍ତ୍ୟନ୍ତ ଆକାରରେ ହଳନ୍ତ ବର୍ଜନ କରାଯିବା ବ୍ୟବହାରସିଦ୍ଧ ହେଲାଣି । ଆମ୍ଭେମାନେ ନାମ ଉଚ୍ଚାରଣ କରୁଥାଇଁ କୃଷ୍ଣ, ଲେଖୁଥାଇଁ Krishna କ୍ରିଷ୍ଣ । ଇଂରାଜୀ ଅକ୍ଷରରେ ଓଡ଼ିଆ ନାମମାନଙ୍କୁ ଉଚ୍ଚାରଣ ଅନୁସାରେ ଲେଖିଲାବେଳକୁ ଅନେକ ଅସୁବିଧା ଅଛି । ଆଜିପର୍ଯ୍ୟନ୍ତ ଅକାରାନ୍ତ ହୋଇ ଉଚ୍ଚାରିତ

ନାମମାନ ସରକାରଙ୍କ ସିରସ୍ତାରେ, ସ୍କୁଲ୍, କଲେଜ୍ ଓ ବିଶ୍ୱବିଦ୍ୟାଳୟରେ ହଳନ୍ତ ଉଚ୍ଚାରଣ ଅନୁସାରେ ଇଂରାଜୀରେ ଲେଖା ହୋଇ ସାରିଲାଣି ଓ ତହିଁ ଉପରେ ସରକାର ଛାପା ମାରି ମଞ୍ଜୁର୍ କଲେଣି । ବର୍ତ୍ତମାନ ସେମାନେ ବଦଳାଇବାକୁ ପ୍ରସ୍ତାବ କରିବା ଅରଣ୍ୟରୋଦନରେ ପରିଣତ ହେବ । ଓଡ଼ିଆରେ ବ୍ରାହ୍ମଣ ଶବ୍ଦକୁ ଇଂରାଜୀରେ ଲେଖୁଥାଇଁ ବ୍ରାହ୍ମିନ୍, ବ୍ରାହ୍ମ ଶବ୍ଦକୁ ଇଂରାଜୀରେ ଲେଖୁଥାଇଁ ବ୍ରାହ୍ମୋ ।

ସଂସ୍କୃତ ସଙ୍ଗେ ଓଡ଼ିଆ ଭାଷାର ଦୃଢ଼ ସମ୍ବନ୍ଧ ଥିବା କଥା କେହି ଅସ୍ୱୀକାର କରିବେ ନାହିଁ । ଏପରି ସ୍ଥଳରେ ଅନେକ ବିଷୟରେ ସଂସ୍କୃତ ବ୍ୟାକରଣର ନିୟମମାନଙ୍କୁ ବରାବର ବର୍ଜନ କରି ଓଡ଼ିଆ ଭାଷା ବ୍ୟବହାର କରିବା ଉଚିତ ନୁହେଁ ବୋଲି ମୋ ମତ । ଉଦାହରଣ-ସ୍ୱରୂପ ଦେଖାଯାଉ ଯେ, ସଂସ୍କୃତରେ 'ଗୁଣବାନ୍' ପୁଂଲିଙ୍ଗ ଶବ୍ଦର ସ୍ତ୍ରୀଲିଙ୍ଗରୂପ 'ଗୁଣବତୀ' ଓ କ୍ଳୀବଲିଙ୍ଗ 'ଗୁଣବତ୍' ଅଟେ । ଓଡ଼ିଆରେ ଆମେ ଲେଖିଲାବେଳେ ଲେଖୁଥାଇଁ, ଗୁଣବାନ୍ ପୁରୁଷ ଓ ଗୁଣବତୀ ସ୍ତ୍ରୀ, କିନ୍ତୁ ନପୁଂସକ ଲିଙ୍ଗବାଚକ ଶବ୍ଦ ଲେଖିଲାବେଳେ ଅମୁକ ଅମୁକ ଗୁଣବତ୍ ବସ୍ତୁ ନ ଲେଖି, ଅମୁକ ଅମୁକ ଗୁଣବାନ୍ ବସ୍ତୁ ବୋଲି ଲେଖୁଥାଇଁ । ସଂସ୍କୃତରେ 'ହସ୍ତିନ୍' ଶବ୍ଦର ପୁଂଲିଙ୍ଗ 'ହସ୍ତୀ', ସ୍ତ୍ରୀଲିଙ୍ଗ 'ହସ୍ତିନୀ' ଅଟେ, ଓଡ଼ିଆରେ ମଧ୍ୟ ତାହା ଲେଖୁଥାଇଁ । ସଂସ୍କୃତରେ ହସ୍ତିନ୍ ଶବ୍ଦ ସଙ୍ଗେ ଦନ୍ତ ଶବ୍ଦ ଯୁକ୍ତ ହୋଇ 'ହସ୍ତିଦନ୍ତ' ହେଉଅଛି । ଓଡ଼ିଆରେ ମୂଳ ଶବ୍ଦକୁ ହସ୍ତିନ୍ ବୋଲି ଧରଇଲେ, ଏହାତ ଓଡ଼ିଆ ବ୍ୟାକରଣ ହେଲା ନାହିଁ । ଓଡ଼ିଆ ବ୍ୟାକରଣରେ ମୂଳ ଶବ୍ଦ କଅଣ କରିବା ? ଯେବେ ହସ୍ତୀ ଶବ୍ଦ ଧରିବା, ତେବେ ବହୁବଚନରେ 'ହସ୍ତୀମାନେ' କରିବା । କିନ୍ତୁ ହସ୍ତୀଗଣ ଲେଖିଲାବେଳେ ତ ହସ୍ତୀଗଣ ଲେଖି- ପାରିବା ନାହିଁ । ଏ କ୍ଷେତ୍ରରେ କେତେ ଲେଖକ 'ହସ୍ତିମାନେ' ଲେଖୁଅଛନ୍ତି ଓ କେତେକ ଲେଖକ 'ହସ୍ତୀମାନେ' ଲେଖୁଅଛନ୍ତି । ଏହିପରି ହସ୍ତିନ୍ ଶବ୍ଦର ଅପଭ୍ରଷ୍ଟ 'ହାତୀ' ଓଡ଼ିଆ ଶବ୍ଦର ଭିନ୍ନ ଭିନ୍ନ ବିଭକ୍ତ୍ୟନ୍ତ ଆକାରରେ ଓ ସମସ୍ତ ପଦରେ କେହି କେହି ଲେଖୁଛନ୍ତି 'ହାତିଦାନ୍ତ' କେହି କେହି ଲେଖୁଛନ୍ତି 'ହାତୀଦାନ୍ତ' । ଶଶିନ ଶବ୍ଦର ଓଡ଼ିଆରେ ଶଶୀ ମୂଳ ଶବ୍ଦ ନେଉଥାଇଁ, କିନ୍ତୁ ସଂସ୍କୃତ ଶବ୍ଦ ଲେଖିଲାବେଳେ ଶଶିକଳା, ଶଶିଭୂଷଣ ଲେଖୁଥାଇଁ । ସଂସ୍କୃତରେ ସୁନ୍ଦର ପୁଂଲିଙ୍ଗ ଓ ସୁନ୍ଦରୀ ସ୍ତ୍ରୀଲିଙ୍ଗ ଥିଲେହେଁ, ଓଡ଼ିଆରେ ସୁନ୍ଦରକୁ ସ୍ତ୍ରୀଲିଙ୍ଗ ଶବ୍ଦରୂପେ ବ୍ୟବହାର କରୁଥାଇଁ, ଏଥିଯୋଗୁଁ ଓଡ଼ିଆ ଭାଷାରେ ଏ ବିଷୟରେ କୌଣସି ଦୃଢ଼ ନିୟମ ରହୁ ନାହିଁ ।

ଏହାଛଡ଼ା ଗୁଡ଼ିଏ ବ୍ୟାକରଣବିରୁଦ୍ଧ ପ୍ରୟୋଗ ଆମ୍ଭମାନଙ୍କ ଲେଖାରେ ପରିଲକ୍ଷିତ ହୁଏ । ସରକାରଙ୍କଠାରୁ ବେଶି ଦର୍ମା ପାଉଥିବା ଅନୁବାଦକଙ୍କ ଲେଖାରେ ଓ ପ୍ରସିଦ୍ଧ ସୁପ୍ରତିଷ୍ଠିତ ଲେଖକମାନଙ୍କ ଲେଖାରେ ମଧ୍ୟ ଆବଶ୍ୟକ ସ୍ଥଳରେ ଆବଶ୍ୟକୀୟ, ନାନା ସ୍ଥଳରେ ନାନାଦି, ଏକତ୍ର ସ୍ଥଳରେ ଏକତ୍ରିତ, ବିବିଧ ସ୍ଥଳରେ ବିଭିନ୍ନପ୍ରକାର, ଉପର୍ଯ୍ୟୁକ୍ତ ସ୍ଥଳରେ ଉପରୋକ୍ତ, ଅଧୀନତା ସ୍ଥଳରେ ଅଧୀନସ୍ଥ, ଅଧୀନତା ସ୍ଥଳରେ ଅଧୀନରେ, ସ୍ଥଗିତ ସ୍ଥଳରେ ସ୍ଥକିତ, ଠିକ୍ ସ୍ଥଳରେ ସଠିକ, ଉଦୟମାନ ସ୍ଥଳରେ ଉଦୀୟମାନ, ରାଜନୀତିକ ସ୍ଥଳରେ ରାଜନୈତିକ, ଗରିମା ସ୍ଥଳରେ ଗାରିମା, ଆରକ୍ତ ସ୍ଥଳରେ ରକ୍ତିମ ପ୍ରଭୃତି ଶବ୍ଦର ପ୍ରୟୋଗ ପରିଦୃଷ୍ଟ ହୁଏ ।

ସେହିପରି ବାସ୍ତବିକ ସ୍ଥାନରେ ବାସ୍ତବିକ୍, ତିର୍ଯ୍ୟକ ସ୍ଥାନରେ ତୀର୍ଯ୍ୟକ୍, ଅସନ୍ଦିଗ୍ଧ ବା ନିଃସନ୍ଦେହ ସ୍ଥାନରେ ନିଃସନ୍ଦିଗ୍ଧ, ମନୋଯୋଗ ସ୍ଥାନରେ ମନଯୋଗ, ମନୋମୋହନ ସ୍ଥାନରେ ମନମୋହନ, ମନୋମୋହକର ସ୍ଥାନରେ ମନୋମୁଗ୍ଧକର, ଅନଟନ ସ୍ଥାନରେ ଅନାଟନ, ଐକ୍ୟ ସ୍ଥାନରେ ଐକ୍ୟତା, ଜଗତ୍ ସ୍ଥାନରେ ଜଗତ, ଜାଗ୍ରତ୍ ସ୍ଥାନରେ ଜାଗ୍ରତ ବା ସଜାଗ, କିଂବା ସ୍ଥାନରେ କିମ୍ବା, ତ୍ରିବାର୍ଷିକ ସ୍ଥାନରେ ତ୍ରୈବାର୍ଷିକ, ତ୍ରିମାସିକ ସ୍ଥାନରେ ତ୍ରୈମାସିକ, ସମ୍ମେଳନ (ଳି) ସ୍ଥାନରେ ସମ୍ମିଳନ (ନୀ), ଷଣ୍ମାସିକ ସ୍ଥାନରେ ଷାଣ୍ମାସିକ, ସୌଜନ୍ୟ ସ୍ଥାନରେ ସୌଜନ୍ୟତା, ଦିଗମ୍ବର ସ୍ଥାନରେ ଦିଗାମ୍ବର, ପୃଥକୀକରଣ ସ୍ଥାନରେ ପୃଥକ୍‌କରଣ, ଦ୍ୱିବାର୍ଷିକ ସ୍ଥାନରେ ଦ୍ୱୈବାର୍ଷିକ, ନିନ୍ଦକ ସ୍ଥାନରେ ନିନ୍ଦୁକ, ଭୂମ୍ୟଧିକାରୀ ସ୍ଥାନରେ ଭୂମ୍ୟାଧିକାରୀ, ନିରପରାଧ ସ୍ଥାନରେ ନିରପରାଧୀ, ନିରପରାଧା ସ୍ଥାନରେ ନିରପରାଧିନୀ, ସନ୍ୟାସୀ ବା ସନ୍ନ୍ୟାସୀ ସ୍ଥାନରେ ସନ୍ୟାସୀ, ନିର୍ଦ୍ଦୋଷ ସ୍ଥାନରେ ନିର୍ଦ୍ଦୋଷୀ, ପର୍ବତୀୟ ସ୍ଥାନରେ ପାର୍ବତୀୟ, ମୁଁ ସ୍ୱୀକାର କଲି ସ୍ଥାନରେ ମୁଁ ସ୍ୱୀକୃତ ହେଲି, ଅନ୍ତର୍ଜାତୀୟ ସ୍ଥାନରେ ଆନ୍ତର୍ଜାତୀୟ, ଭୁଜଙ୍ଗୀ ସ୍ଥାନରେ ଭୁଜଙ୍ଗିନୀ, ହଂସୀ ସ୍ଥାନରେ ହଂସିନୀ, ମହାନ୍ ଲୋକ ସ୍ଥାନରେ ମହଦ୍ ଲୋକ, ମହାତ୍ମଗଣ ସ୍ଥାନରେ ମହାତ୍ମାଗଣ, ଆତ୍ମରାଜ୍ୟ ସ୍ଥାନରେ ଆତ୍ମାରାଜ୍ୟ, ସାମ୍ରାଜୀ ବା ସମ୍ରାଜ୍ଞୀ ସ୍ଥାନରେ ସମ୍ରାଜ୍ଞୀ, କରୁଣ ନିବେଦନ ସ୍ଥାନରେ ସକରୁଣ ନିବେଦନ, ବୟଃସ୍ଥ ସ୍ଥାନରେ ବୟସ୍କ, ବଶଂବଦ ସ୍ଥାନରେ ବଶମ୍ବଦ, ବାହ୍ୟ ସ୍ଥାନରେ ବାହ୍ୟିକ, ବୃଥା ସ୍ଥାନରେ ବୃଥାରେ, ଚକିତ ସ୍ଥାନରେ ସଚକିତ, କ୍ଷମ ସ୍ଥାନରେ ସକ୍ଷମ, ସ୍ୱତ୍ୱ ସ୍ଥାନରେ ସତ୍ୱ ବା ସତ୍ତ୍ୱ, ସମ୍ମତ ସ୍ଥାନରେ ସନ୍ମତ, ସମ୍ମାନ ସ୍ଥାନରେ ସନ୍ମାନ, ସର୍ଜନ ସ୍ଥାନରେ ସୃଜନ, ଜାଗର୍ତ୍ତି ବା ଜାଗ୍ରତି ବା ଜାଗରଣ ସ୍ଥାନରେ ଜାଗୃତି, ଯାଚ୍ଞା ସ୍ଥାନରେ ଯାଚନା, ସାବିଧାନତାପୂର୍ବକ ସ୍ଥାନରେ ସାବଧାନପୂର୍ବକ, ସଶଙ୍କ ବା ଶଙ୍କିତ ସ୍ଥାନରେ ସଶଙ୍କିତ, ସବିନୟ ବା ବିନୟପୂର୍ବକ ସ୍ଥାନରେ ସବନୟପୂର୍ବକ, ନିରୁତ୍ସାହ ସ୍ଥାନରେ ନିରୁତ୍ସାହିତ, ଅଦ୍ୟାବଧି ସ୍ଥାନରେ ଅବଧି, ପିତାମାତାଙ୍କୁ ସମ୍ମାନ କରିବା ସ୍ଥାନରେ ମାନ୍ୟ କରିବା, ମାନାସ୍ପଦ ସ୍ଥାନରେ ମାନ୍ୟାସ୍ପଦ, ପୂଜାସ୍ପଦ ସ୍ଥାନରେ ପୂଜ୍ୟାସ୍ପଦ, ପ୍ରୀତିପାତ୍ର ସ୍ଥାନରେ ପ୍ରିୟପାତ୍ର, ଅଦ୍ୟାପି ସ୍ଥଳରେ ଅଦ୍ୟାପି ସୁଦ୍ଧା, ତଥାପି ସ୍ଥଳରେ ତଥାପି ସୁଦ୍ଧା, ସ୍ଥିତିମାନ୍ ସ୍ଥଳରେ ସ୍ଥିତିବାନ୍, ଯଦିଚ ସ୍ଥାନରେ ଯଦିଓ ଇତ୍ୟାଦି ଶବ୍ଦ ବା ପଦମାନଙ୍କର ଭ୍ରମାତ୍ମକ ପ୍ରୟୋଗ ନାନା ସ୍ଥଳରେ ପରିଦୃଷ୍ଟ ହୁଏ ।

ଉଚ୍ଚାରଣ ଅନୁସାରେ ଲେଖା ହେଉ ନ ଥିବାର ଉଦାହରଣ ରୂପେ ଡ ଓ ଡ଼ ର ଏବଂ ଢ ଓ ଢ଼ ର ଯଥେଚ୍ଛ ବ୍ୟବହାର ଲେଖାରେ ଓ ବିଶେଷତଃ ଛାପରେ ବହୁ ସ୍ଥଳରେ ଦେଖାଯାଏ । ଯଥା – କହୁଥାଇଁ ମାଡ, ଲେଖୁଥାଇଁ ଓ ଛାପୁଥାଇଁ ମାଡ଼ । କହୁଥାଇଁ ପ୍ରେସିଡେଣ୍ଟ, ଲେଖୁଥାଇଁ ଓ ଛାପୁଥାଇଁ ପ୍ରେସିଡ଼େଣ୍ଟ । ଏହିପରି ଓଡ଼ିଆ ସ୍ଥଳରେ ଓଡିଆ ଓ ଡିଭିଜନ୍, ଡେପୁଟୀ ଡାଇରେକ୍ଟର୍ ଓ ଡାକ୍ତର ଆଦି ଶବ୍ଦର ଡ ସ୍ଥଳରେ ଡ଼ର ପ୍ରୟୋଗ ଓ ଢାକା ସ୍ଥଳରେ ଢ଼ାକା, ମାଢ଼ ସ୍ଥଳରେ ମାଢ ଲେଖା ଓ ଛାପା ଯେ କୌଣସି ପୁସ୍ତକରେ ବା ସଂବାଦପତ୍ରରେ ବା ସାହିତ୍ୟ ପତ୍ରିକାରେ ଶତ ଶତ ହାବୁଡ଼େ ପଡ଼ିବ ।

ଅନୁସ୍ୱାରର ବ୍ୟବହାରରେ ମଧ ଆମ୍ଭେମାନେ ଉଚ୍ଚାରଣ ସଙ୍ଗେ ସମତା ରକ୍ଷା କରୁ ନ ଥାଇଁ । ଟ୍ରେନିଙ୍ଗକୁ ଲେଖୁଥାଇଁ ଟ୍ରେନିଂ, ୱେଟିଙ୍ଗ ରୁମକୁ ଲେଖୁଥାଇଁ ଓୟେଟିଂ ରୁମ୍, ଇଙ୍ଗଲାଣ୍ଡକୁ ଲେଖୁଥାଇଁ ଇଂଲଣ୍ଡ, ହେଣ୍ଡିକୁ ଲେଖୁଥାଇଁ ହେଂଡ଼ି, ହେଡ଼ିଙ୍ଗକୁ ଲେଖୁଥାଇଁ ହେଡିଂ । ଅନୁସ୍ୱାରପ୍ରେମର ପ୍ରଗତି ପହଞ୍ଚିଲାଣି 'ମାନସିଂହ' ସ୍ଥଳରେ 'ମାନସିଂ' ବ୍ୟବହାରରେ ।

ବଙ୍ଗଳାର କେତେଗୁଡ଼ିଏ ଭ୍ରମପୂର୍ଣ୍ଣ ଲେଖାପଦ୍ଧତି ଏବଂ ଶବ୍ଦ ଓ ବାକ୍ୟରୀତି (Idiom) କୁ ମଧ ଆମ୍ଭେମାନେ ବିନା ବିଚାରରେ ଆମ ଭାଷା ଭିତରକୁ ଘେନି ଆସୁଥାଇଁ । ବର୍ଗ୍ୟ ବ ଓ ଅବର୍ଗ୍ୟ ୱର ପ୍ରଭେଦଜ୍ଞାପକ ଅକ୍ଷର ଓଡ଼ିଆ ଭାଷାରେ ସର୍ବତ୍ର ଚଳି ନ ଥିବାରୁ ଅବର୍ଗ୍ୟ ୱ ସ୍ଥାନରେ ବଙ୍ଗାନୁକରଣରେ ଓୟ ଲେଖି କିମ୍ୱା 'ଓ' ସ୍ୱରବର୍ଣ୍ଣରେ ଯ ଫଳା ବା ବ ଫଳା ଯୋଗ କରି ଆମ୍ଭେମାନେ ଭାଷାରେ ବିଶୃଙ୍ଖଳତା ପୂରାଉଥାଇଁ କିମ୍ୱା ମାରୱାଡ଼ି ସ୍ଥଳରେ ମାରଉଆଡ଼ି କରୁଥାଇଁ ।

ରେଲୱେ ସ୍ଥଳରେ ରେଲଓୟେ, ୱେଟିଙ୍ଗ ରୁମ୍ ସ୍ଥଳରେ ଓୟେଟିଂ ରୁମ୍, ୱାଚ୍ ସ୍ଥଳରେ ଓୟାଚ, ବେୱା ସ୍ଥଳରେ ବେଉଆ, ୱାସିଲ୍ ବାକୀ ସ୍ଥଳରେ ଓ୍ୟାସିଲ୍ ବାକୀ ବା ଉଆସିଲ୍ ବାକୀ ଲେଖୁଥାଇଁ ।

ପୁନଶ୍ଚ ଉପଯୁକ୍ତ ଶବ୍ଦ ଓ ବାକ୍ୟ ବିଦ୍ୟମାନ ଥାଉଁ ଥାଉଁ ଅନେକଗୁଡ଼ିଏ ବଙ୍ଗଭାଷାସୁଲଭ ବ୍ୟବହାର, ଶବ୍ଦ ଓ ରୀତି ପୂରାଇ ଆମ ଭାଷାକୁ ଆମେ ଖେଚାଡ଼ି କରି ପକାଉଥାଇଁ ।

ନିମ୍ନରେ କେତୋଟି ମାତ୍ର ଉଦାହରଣ ପ୍ରଦତ୍ତ ହେଲା ।

| ବଙ୍ଗଳା ସୁଲଭ ବ୍ୟବହାର | ଓଡ଼ିଆ |
|---|---|
| ଜାଗିବା | ଚେଇଁ ଉଠିବା |
| ଚାଲାକ | ଚଲାଖ |
| କାନ ଭୋଁ ଭୋଁ କରିବା | କାନ ଘୁ ଘୁ ହେବା |
| ମଥାରେ ଢୁକିଲା | ମୁଣ୍ଡରେ ପଶିଲା |
| ତିନିଜଣଙ୍କୁ ନେଇ | ତିନିଜଣଙ୍କୁ ଘେନି |
| ଝରକା ଦେଇ ଦେଖିଲା | ଝରକାବାଟେ ଦେଖିଲା |
| ମନରେ ଅବସାଦ ଆସେ | ମନରେ ଅବସାଦ ହୁଏ |
| କରନ୍ତୁ ନା କାହିଁକି | କରନ୍ତୁ ପଛକେ |
| ଅଫୁଟନ୍ତ | ଅଫୁଟା |
| ଏହାକୁଇ | ଏହାକୁହିଁ |
| ଅଫୁରନ୍ତ | ଅସରନ୍ତି |
| ଭଲ ପାଇବା | ସୁଖ ପାଇବା |
| ଭଲ ବାସିବା | ଦେଖି ପାରିବା, ସ୍ନେହ କରିବା |

| ବଙ୍ଗଳା ସୁଲଭ ବ୍ୟବହାର | ଓଡ଼ିଆ |
|---|---|
| ଶିର ତୋଳିବା | ମୁଣ୍ଡ ଟେକିବା |
| ଯିବାକୁ ହେଲା | ଯିବାକୁ ପଡ଼ିଲା |
| ଖାଇବାକୁ ଲାଗିଲା | ଖାଇଲା, ଖାଇବାରେ ଲାଗିଲା |
| ଯୁଗଯୁଗାନ୍ତ ଧରି | ଯୁଗଯୁଗାନ୍ତବ୍ୟାପୀ |
| କିଚିରିମିଚିରି | ଚେଁ ଚାଁ, ଚେଏଁ ଚାଁ |
| ସେ ମରିବା ଉପରେ | ସେ ମରି ନାହିଁ, ମଲାପରି ହେଲାଣି |
| ଛୁତା | ଛୋତା |
| ସେ ମୋତେ ଯିବାକୁ ଦେଲା ନାହିଁ | ସେ ମୋତେ (ଯିବାକୁ) ଛାଡ଼ିଲା ନାହିଁ |
| ନିକଟରେ | ଶୀଘ୍ର |
| କହାଗଲା | କୁହାଗଲା |
| ଏହି କଥା ନେଇ | ଏହି କଥା ଲାଗି |
| ବୋକା | ବକା ବା ଓଲା |
| ସେ ମୋତେ ଖାଇବାକୁ ଦେଲା ନାହିଁ | ସେ ମୋତେ ଖୁଆଇ ଦେଲା ନାହିଁ |
| ଧଡ଼ାସ୍ କରି | ଧଡ଼ୋକିନି |
| ଥତମତ ହେବା | ଥାଥା ମାମା ହେବା |
| ଦିନ ଥିଲା, ଯେତେବେଳେ ରଥେ ଓ ଦାସେ ନିର୍ବାଚନରେ ମାତି ଥିଲେ | ଦିନେ ରଥେ ଓ ଦାସେ ନିର୍ବାଚନରେ ମାତିଥିଲେ |
| ଜାୟଗା | ଜାଗା |
| ଦୁଇଟି | ଦିଓଟି |
| ମୟଦାନ | ମୈଦାନ |
| କରତଃ | କରି |
| ସେ ଥିବା ସତ୍ତ୍ୱେ, ସତ୍ତ୍ୱେ – ଓ | ସେ ଥିଲେ ବି |
| ଯଦିଓ | ଯଦ୍ୟପି, ଯହିତ |
| ପାୟାଯିବା | ମିଳିବା |
| ତୟାର | ତିଆର (ରି) |
| ମୋଟେ, ମୋଟେଇ | ଆଦୌ |
| ହୁଏତ | ବୋଧହୁଏ |
| କେବଳ ମାତ୍ର | କେବଳ |
| ମୂଲ୍ୟ ମାତ୍ର ଦଶଅଣା | ମୂଲ୍ୟ ଦଶଅଣା ମାତ୍ର |
| ବ୍ୟଥମାନ | ବ୍ୟଥାୟମାନ |

ଏଥିରୁ କେତେଗୁଡ଼ିଏ ଶବ୍ଦ ଓ ବାକ୍ୟ ବଙ୍ଗୀୟମାନେ ଇଂରାଜୀ ଭାଷାରୁ ନେଇ ବଙ୍ଗଳାରେ ପୂରାଇଅଛନ୍ତି ଓ ଏବେ ସେମାନ ଆମେ ତାଙ୍କଠାରୁ ଆଣି ଆମ ଭାଷାରେ ପୂରାଉଁଥାଇଁ । ଏହିଠାରେ ବଙ୍ଗାନୁକରଣ ପ୍ରସଙ୍ଗରେ ଗୋଟିଏ ଅବାନ୍ତର କଥାର ଉତ୍ଥାପନ କରୁଅଛି ।

ଆମ୍ଭେମାନେ ମଫସଲରେ ଅଶିକ୍ଷିତ ଲୋକଙ୍କ ମୁହଁରୁ 'ଯୋଗୀନ୍ଦ୍ର ଦାଣ୍ଡଧୁଆ', 'ଶରୀରଭେଦ ଭଜନ,' 'ତୁଳାଭିଣା' ଆଦି ଶୁଣିଥାଉଁ :

'ବସିଛି ଓଲଟ ହଂସ ସରୋବରରେ'
ସାହୁକୁ ଖାତକ ଗଞ୍ଜି ମାରୁଅଛି
ବାଡ଼ ଭାଙ୍ଗି ପଳାଇଲେ ବେଉସା'
ବଳଦ ବାପୁଡ଼ା ବିଭା ହୋଇଗଲା
ଗଗନେ ଉଡ଼ିଲା ଧୂଳି
ବିଲର କଙ୍କଡ଼ା ମୃଦଙ୍ଗ ଟିପିଲେ
ବେଙ୍ଗ ଦେଲେ ହୁଳହୁଳି' ।

ଏ ସବୁ ପଦମାନଙ୍କର ଗୂହ୍ୟ ଅର୍ଥ ତନ୍ତ୍ର, ଯୋଗ, ବାୟୁ ସାଧନ (ପ୍ରାଣାୟାମ) ସଙ୍ଗେ ସଂପୃକ୍ତ; କିନ୍ତୁ ଯେଉଁ ଇତର ଲୋକେ ଖଞ୍ଜଣି ଓ ଘୁମୁରା ମାଡ଼ କରି ଏହାକୁ ଗାଆନ୍ତି, ତାଙ୍କ ମଧ୍ୟରୁ କେହି ଜଣେ ସୁଦ୍ଧା ଏଥିର ଗୂହ୍ୟ ଅର୍ଥ ବୁଝନ୍ତି ନାହିଁ, ଏଥିର ରହସ୍ୟ ଅନୁଭବ କରିବା ତ ଦୂରର କଥା । ଏ ଗୀତ ବୋଲିସାରି କଥାଭାଷା ହେଲା ବେଳେ ସେମାନଙ୍କ ମଧ୍ୟରୁ ଜଣେ କହେ "ଭାଇ ! ଇଅଁଳା ବାଟେ ପଣି ପିଅଁଳାରେ ବାହାରିଲା, ମଝିରେ ନିବାଡ଼ ଜୋତିକି ଟିଆଁ ଚେତନଠାରେ ଭେଟିଲା, ସେଇଠଉଁ ଓଲଟହଂସ ବା ଲାଞ୍ଜବାଟେ ପାଣି ପିଇଲା । ବୁଝିଲ ଟିକିଭାଇ ?" ଅନ୍ୟଜଣକ କହେ "ହଁ ଭାଇ ! ସେ ଅଡ଼େଇ ଘେରାରେ ଉର୍ମ, ଧୂର୍ମ, ଜୋତି, ଜାଳାକୁ ବୁଲି ଅଇଲା" । ଏହି କଥାବାର୍ତ୍ତା ଓ ଗୀତକୁ କେହି ବୁଝନ୍ତି ନାହିଁ, କିନ୍ତୁ ସମସ୍ତେ ହଁ ମାରନ୍ତି ।

ଆଜିକାଲି ଓଡ଼ିଆ କବିତା ରାଜ୍ୟରେ ଏ ଶ୍ରେଣୀର କବିତାର ପ୍ରାଦୁର୍ଭାବ ହୋଇଅଛି । ଅବଶ୍ୟ ସେମାନ ଶରୀରଭେଦ ଭଜନ, ବା ବଦଳ ବିଭା ବିଭା ନୁହେଁ । ସେଥିରେ ଯାହା ଲେଖାଥାଏ, ତା'ର ମର୍ମ କବି ଉପଲବ୍ଧି କରୁଥିବେ; କିନ୍ତୁ ଆମଭଳି ସାଧାରଣ ପାଠକଙ୍କ ପକ୍ଷରେ ତାହା କାଲ ଆଗରେ ମୂଳା ଚୋବାଇବା ପରି ହେଉଅଛି ।

ଏଠାରେ ମୁଁ କାହା ପ୍ରତି ବ୍ୟକ୍ତିଗତ ଆକ୍ଷେପ କରୁ ନାହିଁ । ଏ ଶ୍ରେଣୀର କବିତାରେ ଅତିଦୃଷ୍ଟିବାଦ (Transcendentalism) ଓ ରହସ୍ୟବାଦ (Mysticism) ଅଛି କି ନାହିଁ, ମୁଁ ଆଲୋଚନା କରୁ ନାହିଁ । କିନ୍ତୁ ମୁଁ ଓ ମୋ ଶ୍ରେଣୀର ଯେଉଁ ପାଠକମାନେ ମାସିକ ପତ୍ରପତ୍ରିକାମାନ ନିୟମିତରୂପେ ପଢ଼ୁ, ଆମ୍ଭମାନଙ୍କ ବୁଝି ନ ପାରିବା ଭଳି ଲେଖା ପତ୍ରିକାମାନଙ୍କରେ ବାହାରିବା ଯୁକ୍ତିଯୁକ୍ତ ନୁହେଁ ବୋଲି ମୋ ମତ ଅଟେ । ଅତଏବ ଯାହା 'ଓଲଟହଂସ' ଭଳି ଅବୋଧ ଓ ରହସ୍ୟପୂର୍ଣ୍ଣ, ରବୀନ୍ଦ୍ରନାଥ ଓ ବିଶ୍ୱସାହିତ୍ୟିକମାନଙ୍କ ଦ୍ୱାହି ଦେଇ ସେଗୁଡ଼ିକ ସାହିତ୍ୟରେ ପୂରାଇବା କେତେଦୂର ଯୁକ୍ତିଯୁକ୍ତ, ତାହା ଆପଣମାନେ ସ୍ଥିର କରନ୍ତୁ । ଯେବେ ଆପଣମାନେ ସ୍ଥିର କରନ୍ତି ଯେ, ଏପରି ଲେଖା ବଢ଼ିଲେ ସାହିତ୍ୟର

ଅଙ୍ଗପୁଷ୍ଟି ହେବ, ତେବେ ହେଉ, ମୋର ଆପତ୍ତି ନାହିଁ । ବରଂଚ ମୁଁ ମୋ ଆପତ୍ତିକୁ ପ୍ରତ୍ୟାହାର କରୁଅଛି ।

ତତ୍ପରେ କେତେ ଆଧୁନିକ କବିତା ରଚକ ଯେଉଁ ଛନ୍ଦରେ ଓ ଭାଷାରେ କବିତା ରଚନା କରୁଅଛନ୍ତି, ତାହା ଓଡ଼ିଆ ସଂସ୍କୃତିର ଭିତ୍ତି ଉପରେ ପ୍ରତିଷ୍ଠିତ ନ ହେବାରୁ ଲେଖକମାନଙ୍କର କେବଳ ମନବୋଧ ହେଉଅଛି, କିନ୍ତୁ ତାହା ସାଧାରଣଙ୍କ ସୁଖସେବ୍ୟ ହେଉ ନାହିଁ । 'ବାସଃ ପ୍ରଧାନଂ ଖଳୁ ଯୋଗ୍ୟତାୟାଃ' । ଯୋଗ୍ୟତା ବିଚାରରେ ପରିଧାନ ପ୍ରଥମ ସ୍ଥାନ ଅଧିକାର କରିଥାଏ । ଭାଷା ଓ ଛନ୍ଦ କବିତାର ପରିଧାନ । ଏ ଦୁଇଟି ଚିତ୍ତାକର୍ଷକ ନ ହେଲେ ପାଠକ ଓ ଶ୍ରୋତାଙ୍କ ମନୋରଞ୍ଜନ କରିବାକୁ ଅସମର୍ଥ ହୁଏ ଓ ଫଳତଃ, ପତ୍ରିକାରେ ପ୍ରକାଶିତ କବିତା ପୃଷ୍ଠାଗୁଡ଼ିକ ପୋଟଳି ବଣିଆଙ୍କ ଗୁଜରାନ୍ ଚଳାଇବାରେ ଲାଗେ ।

ଆମ୍ଭେମାନେ ଚନ୍ଦ୍ରବିନ୍ଦୁ ଉଚ୍ଚାରଣର ସ୍ୱାତନ୍ତ୍ର୍ୟ ଲେଖାରେ ରକ୍ଷା କରୁ ନ ଥାଇଁ ।

ନଞର୍ଥକ ଓ ପ୍ରଶ୍ନାର୍ଥକ ନାଁ ସ୍ଥଳରେ ନା, ଆମ୍ଭେମାନେ ଘରକୁ ଗଲୁଁ ସ୍ଥଳରେ ଘରକୁ ଗଲୁ, ନୁହେ ସ୍ଥଳରେ ନୁହେଁ, ନୁହେଁ ସ୍ଥଳରେ ନୁହେ ।

ଆମ୍ଭେ କହିପାରୁଁ ସ୍ଥଳରେ ଆମ୍ଭେ କହିପାରୁ,

ମୁଁ କହେଁ ସ୍ଥଳରେ ମୁଁ କହେ ଆଦି ଲେଖିଥାଇଁ ।

ପୁନଶ୍ଚ ଆଉ କେତେଗୁଡ଼ିଏ ଶବ୍ଦ ଉଚ୍ଚାରଣ ବେଳେ କରୁଥାଇଁ ଏକପ୍ରକାର, ଲେଖୁଥାଇଁ ଅନ୍ୟପ୍ରକାର ଯଥା :

| | |
|---|---|
| ଗାଆଁ ସ୍ଥଳରେ | ଗାଁ |
| ମାଆ ସ୍ଥଳରେ | ମା |
| ନାଆ (ହା) ସ୍ଥଳରେ | ନା |
| କଅଣ ସ୍ଥଳରେ | କଣ |
| ଥାଆନ୍ତି ସ୍ଥଳରେ | ଥାନ୍ତି |
| ତାହାର ସ୍ଥଳରେ | ତାର |
| ଦୋଅଣି ସ୍ଥଳରେ | ଦୋଣି |

ଚନ୍ଦ୍ରବିନ୍ଦୁଯୁକ୍ତ ଓ ଚନ୍ଦ୍ରବିନ୍ଦୁବିହୀନ ଅନେକ ଶବ୍ଦର ଅର୍ଥ ପୃଥକ୍, ଏହା ଲକ୍ଷ୍ୟ କଲେ ଜଣାଯିବ ।

| | | |
|---|---|---|
| ଯଥା : | ନାଆ | ନାଆଁ |
| | ନା | ନାଁ |
| | ବାଆ | ବାଆଁ |
| | ଖା | ଖାଁ |
| *ଆମ୍ଭେମାନେ ଉଚ୍ଚାରଣ କରୁଥାଇଁ* | | *ଲେଖୁଥାଇଁ* |
| | କିମିଆଁ | କିମିଆ |
| | ଅଢ଼େଇଦିନିଆଁ | ଅଢ଼େଇଦିନିଆ |

ଆଉ କେତେ ଲେଖକ ଇଂରାଜୀ ଆପଷ୍ଟ୍ରଫି ଲୁପ୍ତଚିହ୍ନ (') ବ୍ୟବହାର କରି ଲେଖାରେ ଗୋଟିଏ ନୂଆ ପଧ୍ଵବ କାଢୁଥାଇଁ । ଯଥା :

| | |
|---|---|
| କଅଣ ସ୍ଥଳରେ | କ'ଣ |
| ତାହାର | ତା'ର |
| ଯାହା | ଯା' |
| ଯାହାର | ଯା'ର |
| ଚାଆ (ହା) ସ୍ଥଳରେ | ଚା' |
| ଚାଆ (ହା) ପାନ, | ଚା'ଖିଆ |
| ଛଅଟା | ଛ'ଟା |

କେତେଦିନ ହେଲା ଲେଖାରେ 'ନି' ଶବ୍ଦର ବ୍ୟବହାର ପଶିଅଛି । ନାହିଁ ସ୍ଥଳରେ ଆମ୍ଭେମାନେ କେତେ ସମୟରେ ନିଁ କହିଥାଉଁ । 'ମୁଁ ଆଜି ଖାଇ ନାହିଁ'କୁ 'ମୁଁ ଆଜି ଖାଇନିଁ' 'ଓ 'ସେ ଆସି ନାହିଁ'କୁ 'ସେ ଆସିନି' କହିଥାଉଁ । କିନ୍ତୁ ପର୍ଯ୍ୟବେକ୍ଷଣ କଲେ ଦେଖାଯିବ ଯେ, ଏହି ନିଁ ଅନୁନାସିକ ଅଟେ ଓ ତହିଁର ଅନ୍ୟ ଆକାର ନାଇଁ ଓ ନେଇଁ । ଆଉ ମଧ 'ନି' ଶବ୍ଦ ପ୍ରାଦେଶିକ ପ୍ରୟୋଗରୂପେ କଥାରେ ଜୋର୍ ଦେବାପାଇଁ ତୁ ଏକଥା କହୁନି, ତୁ ସେଠାକୁ ଯାଆନି, ପ୍ରୟୋଗରେ ଓ କ୍ରିୟାର କାଳ୍ପନିକ ଓ ନିଶ୍ଚୟାର୍ଥକ ଆକାରରେ 'ଣି' ସ୍ଥଳରେ ବିକଳ୍ପରେ ବ୍ୟବହୃତ ହୁଏ । ଯଥା - ସେ ଆଜି ସକାଳୁଁ କଟକ ଅନୁକୂଳ କରିବେନି । ପଦ୍ୟରେ ମଧ ଣି ସ୍ଥଳରେ ନି ଓ ନିକି ବ୍ୟବହାର ହୁଏ ।

ଯଥା - ସରିଯିବନି ଜୀବନେ କିଶୋରୀ, ହେ ବଂଶୀଧାରୀ ।

କିନ୍ତୁ କେତେକ ନବ୍ୟ ଲେଖକ ଓ ତାଙ୍କ ଦେଖାଦେଖି ପ୍ରତିଷ୍ଠିତ ଲେଖକ ଏହି 'ନି'ର ବ୍ୟବହାର ତୁହାଇ ତୁହାଇ ଲେଖାରେ ପୂରାଇଲେଣି ।

ଜଣେ ପ୍ରବନ୍ଧ ଲେଖକଙ୍କର ଗୋଟିଏ ସନ୍ଦର୍ଭରେ 'ନି' ଶବ୍ଦର ପ୍ରୟୋଗ ନିମ୍ନୋକ୍ତ ରୂପେ ହୋଇଅଛି :

''ବିଶେଷ ଯତ୍ନ କରିବାର ଜଣାଯାଏ ନି''

''ତା କରିବାପାଇଁ କେହିହେଲେ ଯତ୍ନ କରନ୍ତିନି ।''

''ଜାତୀୟ ଜୀବନର ନିଦର୍ଶନ ଦେଖାଯାଇନି ।''

''କେହି କାହାକୁ ବୁଝି ପାରୁନି ।''

''ଜାତୀୟ ଭାବ ପ୍ରକାଶ ପାଇନି ।''

''ଆମ୍ଭର ନେତାମାନେ କଅଣ ଏଇ ଓଡ଼ିଶା ପ୍ରଦେଶପାଇଁ କୌଣସି ଜାତୀୟ ପୋଷାକ ଓ ଖାଦ୍ୟ ଠିକ୍ କରିପାରିବେନି ?''

''ମୁଁ ତ ପଲ୍ଲୀର ଲୋକମାନଙ୍କଠୁଁ ଏପରି କୌଣସି ସ୍ପନ୍ଦନ ଦେଖିପାରିନି ।''

ଏହି ନି-ପ୍ରୟୋଗପ୍ରେମିକ ଲେଖକ ଶେଷରେ ନିମ୍ନୋକ୍ତ ବାକ୍ୟରେ ନି-ପ୍ରୟୋଗ ବିଷୟରେ ନବ୍ୟତାର ପରାକାଷ୍ଠା ଦେଖାଇଅଛନ୍ତି, ''ଏହାକୁ ପଢ଼ିଲେ ଓଡ଼ିଶାର ସବୁ ଅଞ୍ଚଳବାସୀ ଏକ ଜାତୀୟ ଭାଷା ଶିକ୍ଷା କରିପାରିବେ କି ନି ପାଠକ-ପାଠିକା ସ୍ଥିର କରନ୍ତୁ ।''

ଏପରି 'ନି' ଟିଏ ଆପଣମାନେ କେବେ ଶୁଣିଛନ୍ତି ବା ଦେଖିଛନ୍ତି କି ?

୬ଷ୍ଠୀ ବିଭକ୍ତିର ଚିହ୍ନ 'ର'କୁ ଆମ୍ଭେମାନେ ଲେଖାରେ ଅତିରିକ୍ତ ମାତ୍ରାରେ ବ୍ୟବହାର କରୁଥାଇଁ । ଏହା ବଙ୍ଗଭାଷାର ପ୍ରଭାବ ଅଟେ । ଓଡ଼ିଆଭାଷାରେ 'ସେ ତା ଘରକୁ ଗଲା' କହନ୍ତି । 'ସେ ତାର ଘରକୁ ଗଲା' କହନ୍ତି ନାହିଁ ।

'ମୋ ଦେହ ସୁଖ ନାହିଁ'କୁ 'ମୋର ଦେହ ସୁଖ ନାହିଁ' ଲେଖାଯାଉଅଛି । କେତେକ ଲେଖକ ଏହି 'ର'କୁ ୧ମା ବିଭକ୍ତିରେ ବହୁଳ ବ୍ୟବହାର କରିବା ଦେଖାଯାଉଅଛି । ଯଥା

୧. ଦଶବର୍ଷ ତଳେ ଏପରି ଘଟିଥିବାର ଶୁଣାଯାଏ ।

୨. ମୋର ସେଠାକୁ ଯିବାର ନ ହେଲା ।

ବ୍ୟାକରଣ ନିୟମର ବହିର୍ଭୂତ ପ୍ରୟୋଗମାନ ମଧ୍ୟ ଆମ୍ଭମାନଙ୍କ ଲେଖାରେ ଅଳ୍ପ ନୁହେ । ଯଥା :

୧. ''ସେ ଦିଗରେ ଆମ୍ଭେମାନେ ଆଜହୁଁ କାର୍ଯ୍ୟ କରିବାକୁ ପଡ଼ିବ ।''

୨. ''ତାହା ଆମ ଦେଶର ପ୍ରତ୍ୟେକ ଓଡ଼ିଆନେତା ଓ ବିଚ୍ଛିନ୍ନ ଓଡ଼ିଶାବାସୀ ଅନୁକରଣ କରିବାକୁ ହେବ ।''

୩. ''ମୁଁ ତ ପଲ୍ଲୀର ଲୋକମାନଙ୍କଠୁ ଏପରି କୌଣସି ସ୍ପନ୍ଦନ ଦେଖିପାରିନି ।''

୪. ''କିନ୍ତୁ ଆମ ଭାରତବର୍ଷର କଥା ଶୁଣିଲେ ହତାଶ ବୋଧ ହୁଏ ।''

ଗୁଡ଼ିଏ ସଂସ୍କୃତ ଶବ୍ଦ ଓ ସମସ୍ତ ପଦକୁ ଆମ୍ଭେମାନେ ଅଶୁଦ୍ଧ କରି ଲେଖୁଥାଇଁ । ଯଥା:

| ସଂସ୍କୃତ | ଅଶୁଦ୍ଧ ଓଡ଼ିଆ ପ୍ରୟୋଗ |
|---|---|
| ଅହରହଃ | ଅହରହ |
| ପୁନଃ ପୁନଃ | ପୁନପୁନ |
| ଇତସ୍ତତଃ | ଇତସ୍ତତ |
| ମନୋଯୋଗ | ମନଯୋଗ |
| ଜଗଦ୍‌ବନ୍ଧୁ | ଜଗବନ୍ଧୁ |
| ମନୋମୋହନ | ମନ୍ମୋହନ ବା ମନମୋହନ |
| ପୌନଃପୁନିକ | ପୌନଃପୌନିକ |

ଆମ୍ଭମାନଙ୍କୁ ଅବଶ୍ୟ ଏହା ସ୍ୱୀକାର କରିବାକୁ ହେବ ଯେ, ଆମ ଭାଷାରେ ଯେଉଁ ଯେଉଁ ଶବ୍ଦ ନାହିଁ ଓ ବିଜ୍ଞାନ ଆଦିର ଆଲୋଚନା ଓ ଶିକ୍ଷାବିସ୍ତାର ଫଳରେ ଯେଉଁ ଯେଉଁ ବୈଜ୍ଞାନିକ ଓ ପାରିଭାଷିକ ଶବ୍ଦମାନ ହାବୁଡ଼େ ପଡୁଛି, ତାକୁ ସବୁ ଅନ୍ୟ ଭାଷାରୁ ନ ଆଣିଲେ କିମ୍ବା ସେଥିପାଇଁ ନୂତନ ଶବ୍ଦ ନ ଗଢ଼ିଲେ ଚଳିବ ନାହିଁ । ବଙ୍ଗାଳୀ ଓ ହିନ୍ଦୁସ୍ଥାନୀମାନେ

ସେମାନଙ୍କ ଭାଷାପାଇଁ ବୈଜ୍ଞାନିକ ପରିଭାଷା ଗଢ଼ିଲେଣି ଓ ବ୍ୟବହାର କଲେଣି, ଓଡ଼ିଆରେ ସେମାନଙ୍କୁ ଅନୁକରଣ କରିବା ଛଡ଼ା ଅନେକ ସମୟରେ ଉପାୟାନ୍ତର ନାହିଁ । ଇଂରେଜମାନେ ଲାଟିନ୍ ଓ ଗ୍ରୀକ୍ ଭାଷାର ସାହାଯ୍ୟ ଗ୍ରହଣକରି ଅଧିକାଂଶ ପାରିଭାଷିକ ଶବ୍ଦ ଗଢ଼ିଅଛନ୍ତି, କିନ୍ତୁ ଏ ଯୁକ୍ତିର ଦ୍ୱାହି ଦେଇ ବିନା ଆଲୋଚନାରେ ଓ ବିନା ବିଚାରରେ ଯେଛାତା ଆଣି ଆମ ଭାଷାରେ ପୂରାଇବା ଉଚିତ ବା ସୁନ୍ଦର ନୁହେଁ । ବଙ୍ଗୀୟ, ହିନ୍ଦୀ, ମରହଟ୍ଟୀ, ଗୁଜରାଟୀ ଓ ତୈଲଙ୍ଗୀ ଭାଇମାନେ ନିଜ ନିଜର ମାତୃଭାଷାର ପୁଷ୍ଟି ସାଧନପାଇଁ ଯେଉଁ ଅଦମ୍ୟ ଉତ୍ସାହ ଦେଖାଉଅଛନ୍ତି, ଯେ ଉଦ୍ୟମ ଆମ୍ଭମାନଙ୍କର ସର୍ବଥା ଅନୁକରଣୀୟ । ସ୍ନେହାସ୍ପଦ ପ୍ରୋଫେସର୍ ବିପିନବିହାରୀ ରାୟ, ପ୍ରୋଫେସର୍ ପରିଜାସାହେବ ଆମ ଭାଷାକୁ ଗୁଡ଼ିଏ ପାରିଭାଷିକ ଶବ୍ଦ ଉପହାର ଦେଇ ଭାଷାର ଅଙ୍ଗପୁଷ୍ଟି କରୁଅଛନ୍ତି ।

କେତେଗୁଡ଼ିଏ ବୈଦେଶିକ ଶବ୍ଦ ଆଗରୁ ବିକୃତ ଉଚ୍ଚାରଣଯୁକ୍ତ ହୋଇ ଭାଷାରେ ଅଧିକାର ଜମାଇ ସାରିଲେଣି । ସେମାନେ ଆମ ଭାଷାରେ ପଶିଲା ବେଳେ ଦେଶରେ ଇଂରାଜୀ ଶିକ୍ଷାର ପ୍ରସାର ନ ଥିଲା, କିନ୍ତୁ ବର୍ତ୍ତମାନ ଏ ରୀତିକୁ ସମର୍ଥନ କରି ହେବ ନାହିଁ । ବର୍ତ୍ତମାନ ଯାହା ହେବାର ତା ହୋଇସାରିଲାଣି । ଏଣିକି ଆମର ଜାଗତିଆର ହେବା ଆବଶ୍ୟକ ।

"ବୋହିଗଲା ପାଣି ଯାଉ ତେଣିକି,
ବନ୍ଧେଇଲା ପାଣି ରହୁ ଏଣିକି ॥"

କଲେକ୍ଟରକୁ କିଲଟର, ମାଜିଷ୍ଟ୍ରେଟକୁ ମେଜେଷ୍ଟର, ଲାଣ୍ଟର୍ଣ୍ଣକୁ ଲଣଟଣ, ଲଲଟଣ, ନାଲଟିଣ, ଲଲଟିଣି; ସୁପରିଣ୍ଟେଣ୍ଡେଣ୍ଟକୁ ସୁପ୍ରଦଣ୍ଡ, ଏହିପରି ଶବ୍ଦ ଗଢ଼ିବାବେଳ ଆଉ ନାହିଁ ।

ବର୍ତ୍ତମାନ ଫଟୋ ସ୍ଥାନରେ ଫୋଟ, ଭୋଟର୍ ସ୍ଥାନରେ ଭୋଟେର ଆଦି ବ୍ୟବହାର କରିବା ନିନ୍ଦନୀୟ ।

ଅନ୍ୟାନ୍ୟ ପ୍ରଦେଶର ସୀମାନ୍ତବର୍ତ୍ତୀ ଓଡ଼ିଆ ଅଞ୍ଚଳରେ ବାସ କରୁଥିବା ଓଡ଼ିଆମାନେ ତତ୍ତଦ୍ ଅଞ୍ଚଳର ଅଧିବାସୀମାନଙ୍କର ବୈଦେଶିକ ଶବ୍ଦମାନଙ୍କ ବିକୃତ ଉଚ୍ଚାରଣମାନ ଅନୁକରଣ କରୁଅଛନ୍ତି ।

ଗଞ୍ଜାମୀମାନେ ତୈଲଙ୍ଗୀୟ ପ୍ରଭାବରେ

| | |
|---|---|
| ଜଜ୍ | ଜଡ଼ଜି |
| ବଜେଟ୍ | ବଡ଼ଜେଟ |
| ହିଅରିଙ୍ଗ୍ | ହେରିଙ୍ଗ୍ |
| ମାଇଲ୍ | ମଇଲ |
| ଇଞ୍ଜିନିଅର୍ | ଏଞ୍ଜିନିଏର୍ |
| ଜେଲ୍ | ଜଇଲ |
| ମାଷ୍ଟର | ମାଷ୍ଟ୍ରୁ |

| | |
|---|---|
| ମାଜିଷ୍ଟ୍ରେଟ୍ | ମେଷ୍ଟ୍ରେଟ |
| ଲ | ଲା |
| ଓଭରସିଅର | ଓଭେରସିଏର |
| ଫରେଷ୍ଟର୍ | ଫାରେଷ୍ଟର |
| ଫରେଷ୍ଟ | ଫାରେଷ୍ଟ |
| ଅନ୍‌ଟ୍ରେନ୍‌ଡ | ଅନଟ୍ରେଇଣ୍ଡ |
| ଟାଇଫଏଡ୍ | ଟାଇଫାଇଡ଼ ଲେଖୁଅଛନ୍ତି ଓ ଛାପୁଅଛନ୍ତି । |

ଗଞ୍ଜାମୀ ଭାଇମାନେ ଦେଶୀ ନାମମାନ ବିକୃତ କରି ଇଂରାଜୀରେ ଲେଖୁଅଛନ୍ତି । ଦାମୋଦର ରଥକୁ ଇଂରାଜୀରେ ଦାମୋଦରୋ ରୋଥୋ (Damadoro Rotho) ଲେଖୁଅଛନ୍ତି ।

ବାଲେଶ୍ୱରିଆ ଓ ମେଦିନୀପୁରିଆ ଭାଇମାନେ ବଙ୍ଗଳା ଭାଷାର ପ୍ରଭାବରେ

| | |
|---|---|
| ଲୋକାଲ୍ | ଲୋକେଲ |
| ମାନେଜର୍ | ମ୍ୟା(ମେ)ନେଜର |
| ସର୍ | ସାର୍ |
| ମାଷ୍ଟର | ମାଷ୍ଟାର୍ |
| ମାଜିକ୍ | ମେ(ମ୍ୟା)ଜିକ୍ |
| ବାଙ୍କ୍ | ବ୍ୟା(ବେ)ଙ୍କ୍ ଲେଖୁଅଛନ୍ତି । |

ସିଂହଭୂମବାସୀମାନେ ହିନ୍ଦୀ ପ୍ରଭାବରେ

| | |
|---|---|
| ରେଲୱେ | ରେଲବେ |
| ମାନେଜର | ମୈନେଜର |
| ମାଜିକ୍ | ମୈଜିକ ଲେଖୁଅଛନ୍ତି । |

ଯେଉଁ ଯେଉଁ ବୈଦେଶିକ ଶବ୍ଦ ଓଡ଼ିଆ ଭାଷାରେ ବ୍ୟବହାର ନ କଲେ ନ ଚଳେ ତଉଦ୍ ଶବ୍ଦମାନଙ୍କ ବୈଦେଶିକ ଆକାରକୁ କଥାରେ ଓ ଲେଖାରେ ସମାନ ରଖିବା ଉଚିତ, ଯଥା: ଇନସିପଟର ବାଙ୍କ ଇନସ୍‌ପେକଟର ନ ଲେଖି ଇନ୍‌ସପେକ୍‌ଟର୍ ଲେଖିବା ଉଚିତ ।

ବଙ୍ଗଳାର ଲେଖକମାନେ କେତେକ ଅସଂସ୍କୃତ ଶବ୍ଦକୁ ସଂସ୍କୃତରୂପେ ବ୍ୟବହାର କରି ଆସିଅଛନ୍ତି । ଆମେ ମଧ୍ୟ ତାଙ୍କ ଦେଖାଦେଖି ସେସବୁକୁ ଓଡ଼ିଆ ଭାଷାରେ ପୂରାଇଥାଉଁ, ଯଥା: ଗଠିତ – ଗଠନମୂଳକ, ଗଠନାତ୍ମକ ।

ବଙ୍ଗଳାରେ 'ବୈଦ୍ୟ' ଅର୍ଥରେ କବିରାଜ ଶବ୍ଦର ପ୍ରୟୋଗ ହେଲା । ତାହା ଦେଖାଦେଖି ଏବେ ସେ ଶବ୍ଦ ସେହି ଅର୍ଥରେ ଓଡ଼ିଆରେ ଚଳିଲାଣି । ମୋ ବାଲ୍ୟକାଳରେ କୋଠଦେଶର ରାଏଟ୍‌ସିଂହଙ୍କ ଦରବାରର ଉତ୍କଳବିଖ୍ୟାତ ବୈଦ୍ୟ ଯୋଗୀ ସାଆନ୍ତରାଙ୍କୁ ବୈଦ୍ୟରାଜ ବୋଲାଯିବା ମୁଁ ଶୁଣିଅଛି । ବିଦ୍ରୂପ ଶବ୍ଦ ମଧ୍ୟ ଏହି ଶ୍ରେଣୀର ବଙ୍ଗଳା ଗତ ଶବ୍ଦ ।

କେତେଗୁଡ଼ିଏ ବହୁବଚନସୂଚନ ଶବ୍ଦ ଏକ ସ୍ଥାନରେ ଦୁଇଥର ବ୍ୟବହାର ଆମ୍ଭମାନଙ୍କ ମଧ୍ୟରେ ଦେଖାଯାଏ, ଯଥା –

କେତେ ବ୍ୟକ୍ତିମାନେ
ଅନେକ ଲୋକମାନେ
ସମସ୍ତ ଅଟ୍ଟାଳିକାଚୟ
କତିପୟ ବନ୍ଧୁମାନେ
ଯେଉଁ ଯେଉଁ ଉଦାହରଣମାନ
ସେହି ସେହି ବ୍ୟକ୍ତିମାନେ

କେତେକ ଲେଖକ ସଂସ୍କୃତ ଶବ୍ଦ ସଙ୍ଗେ ଓଡ଼ିଆ ଶବ୍ଦର ସନ୍ଧି କରି ଓ କେତେକ ଦୁଇଟି ଓଡ଼ିଆ ଶବ୍ଦକୁ ସଂସ୍କୃତ ବ୍ୟାକରଣର ସୂତ୍ର ଅନୁସାରେ ସନ୍ଧି ଓ ପ୍ରତ୍ୟୟ କରି, ଉକ୍ତ ସନ୍ଧି ଓ ପ୍ରତ୍ୟୟ ନିଷ୍ପନ୍ନ ପଦମାନଙ୍କ ସୃଷ୍ଟି କରୁଅଛନ୍ତି । ଯଥା -

| | |
|---|---|
| ମନାନ୍ତର | ଉପରୋକ୍ତ |
| ଦିଗାମ୍ବର | ଅନାଟନ |
| ଚକ୍ଷୁଲଜ୍ଜା | ଅନାୟତ୍ତ |
| ଦିଗାଙ୍ଗନା | ଓଡ଼ିଆତ୍ୱ |

ବୈଦେଶିକ ଶବ୍ଦରେ ଥିବା ହଳନ୍ତ ଅକ୍ଷରମାନଙ୍କୁ କେତେକ ସ୍ଥଳରେ ପୂର୍ବ ବର୍ଣ୍ଣର ପ୍ରଭାବରେ 'ଇ' ବା 'ଉ' ଯୁକ୍ତ କରି ଓଡ଼ିଆରେ ଉଚ୍ଚାରଣ କରାଯାଏ, ଯଥା :

| | |
|---|---|
| ମାଇଲ୍ | ମାଇଲି |
| ଇନ୍ସ୍‌ପେକ୍ଟର୍ | ଇନିସିପେକ୍ଟର |
| ପେନ୍ସିଲ୍ | ପେନ୍ସିଲି, ପେନିସିନି |
| ଆଇନ୍ | ଆଇନି |
| ସ୍କାଉଟ୍ | ସ୍କାଉଟୁ |
| ଖୁବ୍ | ଖୁବୁ |
| ସ୍କୁଲ୍ | ଇସ୍କୁଲ |
| ଷ୍ଟେସନ୍ | ଇଷ୍ଟେସନ |

ବୈଦେଶିକ ଶବ୍ଦମାନଙ୍କର ଅକ୍ଷରାନ୍ତରି ବିତକରଣରେ ମଧ୍ୟ ଆମ୍ଭମାନଙ୍କୁ ଉଚ୍ଚାରଣ ବିଭ୍ରାଟରେ ପଡ଼ିବାକୁ ହୁଏ ।

| | |
|---|---|
| ଇଂରାଜୀ Zed (z) ଅକ୍ଷରକୁ | ଢ |
| W. ଓ V ଅକ୍ଷରକୁ | ଵ |
| Ph ଠାରୁ ସ୍ୱତନ୍ତ୍ର F ଅକ୍ଷରକୁ | ଫ |
| S ଅକ୍ଷରର Zed ଉଚ୍ଚାରଣ | ଢ |
| ଯଥା (his) | ଫିଢିକାଲ୍, ଫିଢିଅଲଢି, ମିଉଢିଅମ୍ କରିବାକୁ ହୁଏ କାରଣ |

ଓଡ଼ିଆରେ ତଥା ସଂସ୍କୃତରେ ତଭଦ୍ ଉଚ୍ଚାରଣଜ୍ଞାପକ ଅକ୍ଷର ନାହିଁ । ଯାହା ଅବଶ୍ୟମ୍ଭାବୀ ତାହା ମୁଣ୍ଡ ପତେଇ ଅଙ୍ଗେ ନିଭେଇ ନେବା ଛଡ଼ା ଉପାୟାନ୍ତର ନାହିଁ ।

ମୁଦ୍ରାକରମାନେ ଡ ଓ ଡ଼, ଢ ଓ ଢ଼ର ପ୍ରଭେଦ ଆଦୌ ରକ୍ଷା କରୁ ନାହାନ୍ତି ଏବଂ ଅନେକ ସ୍ଥଳରେ ଳ ଓ ଲ ଅକ୍ଷରର ମଧ୍ୟ ଯଥେଚ୍ଛ ବ୍ୟବହାର କରୁଅଛନ୍ତି ଓ ହଳନ୍ତ ଚିହ୍ନ ବିଷୟରେ ସାବଧାନ ହେଉ ନାହାନ୍ତି । ଏହା ଛଡ଼ା ମୁଦ୍ରଣ କାଳରେ ଅକ୍ଷରମାନଙ୍କ ଦେହରୁ ମାତ୍ରାମାନ ଖସି ପଡ଼ିବା ଓଡ଼ିଆରେ ମୁଦ୍ରିତ ପୁସ୍ତକରେ ଓ ପତ୍ରିକାରେ ନିତ୍ୟ ଅନୁଭୂତ ଘଟନା । କିନ୍ତୁ ତା' ଉପରେ ମୁଦ୍ରାକରମାନେ ଉପର୍ଯ୍ୟୁକ୍ତ ବିଭ୍ରାଟମାନ ପୂରାଇ ଓଡ଼ିଆ ପୁସ୍ତକମାନଙ୍କୁ ଦୁଷ୍ପାଠ୍ୟ କରି ଦେଉଅଛନ୍ତି । ଅବର୍ଗ୍ୟ 'ୱ' ଓ ବର୍ଗ୍ୟ 'ବ'ର ଉଚ୍ଚାରଣ ସ୍ୱାତନ୍ତ୍ର୍ୟ ଗୁଜୁରାଟୀ ଓ ହିନ୍ଦୀରେ ରକ୍ଷା କରାଯାଏ । ଓଡ଼ିଆ ଭାଷାରେ ଅବର୍ଗ୍ୟ 'ବ' ପାଇଁ ଗୋଟିଏ ସ୍ୱତନ୍ତ୍ର ଅକ୍ଷର ନ ପୂରାଇଲେ କାମ ଚଳିବ ନାହିଁ ଓ ଏହା ନ ହେବା ପର୍ଯ୍ୟନ୍ତ ବଙ୍ଗଳାର ଅନୁକରଣରେ ଓ ସ୍ଥାନରେ ଓୟ କରି ଓ୍ୟାବ୍-ଓୟାବ୍, ଓୟାଟର, ଟ୍ରାମଓୟେ, ରେଲଓୟେ, ଓୟେଟିଙ୍ଗ୍ ରୁମ୍ କିମ୍ବା ଓ୍ୟାଇନ ସ୍ଥଳରେ ଉଆଇନ ଆଦି ଆମେ ଲେଖୁଥିବା ।

ଗଡ଼ଜାତ ଓ ସମ୍ବଲପୁର ଭାଷା ଓ ଶବ୍ଦମାନ ହିନ୍ଦୀଦ୍ୱାରା ପ୍ରଭାବିତ ହୋଇ, ମେଦିନୀପୁରର ଓ ଉତ୍ତର ବାଲେଶ୍ୱରର ଲୋକେ ବଙ୍ଗଳାଦ୍ୱାରା ପ୍ରଭାବିତ ହୋଇ, ଶବ୍ଦର ଶେଷ ବର୍ଣ୍ଣକୁ ହଳନ୍ତ କରୁଅଛନ୍ତି ।

| | | |
|---|---|---|
| ଯଥା : | ପାନ ସ୍ଥଳରେ | ପାନ୍ |
| | ପାଣି | ପାନି |
| | କୋଳ | କୋଲ୍ |

ଓ ଓକାର ସ୍ଥାନରେ ଉ କାର କରୁଅଛନ୍ତି, ଯଥା :

| | |
|---|---|
| ଗୋଡ଼ | ଗୁଡ଼ |
| ଜୋତା | ଜୁତା |

ଏବଂ, ସମ୍ବଲପୁରୀ ଭାଇମାନେ ଆହୁରି ପାହୁଣ୍ଡେ ଆଗକୁ ବଢ଼ି

| | |
|---|---|
| ପାଣିକୁ | ପାଏନ |
| ନଦୀକୁ | ନଏଦ୍ |
| ରାତିକୁ | ରାଏତ୍ କରୁଅଛନ୍ତି । |

କଚିରି, ଜମିଦାରୀସିରସ୍ତା ଓ ମହାଜନୀସିରସ୍ତାରେ ବର୍ଣ୍ଣାଶୁଦ୍ଧି ପ୍ରତି ଆଦୌ ଦୃଷ୍ଟି ଦିଆଯାଉ ନାହିଁ । ସାହିତ୍ୟାନୁରାଗୀ ଓକିଲମାନେ ମଧ୍ୟ ନିଜ ନିଜ ସିରସ୍ତାର ଓ ମୋହରିରମାନଙ୍କ ଲେଖାର ବର୍ଣ୍ଣାଶୁଦ୍ଧି ପ୍ରତି ଆଦୌ ଦୃଷ୍ଟି ଦେଉ ନାହାନ୍ତି ।

ମୋର ଏ 'ପରୋପଦେଶେ ପାଣ୍ଡିତ୍ୟଂ'ରୁ ଆପଣମାନେ ମନେ କରିବେ ନାହିଁ ଯେ, ମୁଁ ଏ ସବୁ ଦୋଷରେ ଓ ଭ୍ରମରେ ନିଜେ ଅପରାଧୀ ନୁହେଁ । ଆମ ଭାଷାରେ

ବହୁଥିବା ହାଓ୍ୱାର ପ୍ରଭାବ ମୋତେ ମଧ୍ୟ ସଂକ୍ରମିଛି ଓ ମୋ ଲେଖାରେ ପୂର୍ବୋକ୍ତ ଭ୍ରମର ଉଦାହରଣ ଭୂରି ଭୂରି ବାହାରିବ । ଏମନ୍ତ କି, ଓଡ଼ିଆ ଭାଷାକୋଷରେ, ମୁଁ 'ଗଠନ' ଓ 'ଗଠିତ'କୁ କେତେକ ବଙ୍ଗଳା ଅଭିଧାନରୁ ଅନୁକରଣ କରି ସଂସ୍କୃତ ବୋଲି ନିର୍ଦ୍ଦେଶ କରିଅଛି ଓ କବିରାଜର ବୈଦ୍ୟ ଅର୍ଥ ସଂସ୍କୃତାନୁମୋଦିତ ବୋଲି ଲେଖିଅଛି । ଏ ସବୁ ବିଶୃଙ୍ଖଳତା ଅନ୍ୟ ଭାଷାଭାଷୀମାନଙ୍କ ସଂଶ୍ରବରେ ଆସିଥିବା ସବୁ ଭାଷାରେ ଅବଶ୍ୟମ୍ଭାବୀ । ଏ ସବୁ ଦୋଷର ଉପଲବ୍ଧି କରି, ଏ ସବୁକୁ ସୁଧାରିବାପାଇଁ ଆମ୍ଭମାନଙ୍କର ଯତ୍ନ କରିବା ଦରକାର । ଯେଉଁପରି ଜହୁରୀ ମୋତିହାର ଗୁନ୍ଥିଲାବେଳେ ପ୍ରତ୍ୟେକ ମୋତିଦାନାକୁ ଟାଙ୍କି କରି ହାରରେ ଲଗାଏ, ସେହିପରି ଲେଖାରେ ପ୍ରତ୍ୟେକ ଶବ୍ଦ ଓ ବାକ୍ୟ ବସାଇବା ପୂର୍ବରୁ ଉକ୍ତ ଶବ୍ଦକୁ ଲେଖକଙ୍କର ଟାଙ୍କି, ତଉଲି ଓ ବାଛି ନେବା ଦରକାର । ପ୍ରବନ୍ଧରେ, ପତ୍ରାଦିରେ ଓ ପୁସ୍ତକରେ ଆମ ମନବୋଧ ହେଲାଭଳି ଭାଷା ଓ ଶବ୍ଦମାନ ନ ଖଞ୍ଜି, ଯାହାଙ୍କପାଇଁ ଏମାନ ଅଭିପ୍ରେତ, ସେମାନଙ୍କ ବୁଝିଲା ଭଳି ଭାଷା ଓ ଶବ୍ଦମାନ ପ୍ରୟୋଗ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ।

ଯାହା ଲେଖିବା, ତାହା ଶୁଦ୍ଧ ହେବ; ବ୍ୟାକରଣଗତ ଦୋଷଦୁଷ୍ଟ ହେବ ନାହିଁ, ମାତୃଭାଷାର ରୀତିବିରୁଦ୍ଧ ହେବ ନାହିଁ, ପ୍ରାଦେଶିକ ଦୋଷ ପୂର୍ଣ୍ଣ ହେବ ନାହିଁ, ଉଚ୍ଚାରଣର ପ୍ରତିଲିପି ହେବ; ଯେବେ ଏ ସବୁ ପ୍ରତି ଦୃଷ୍ଟି ରଖି ଲେଖିବା, ତେବେ ସାବଧାନତା ଫଳରେ ଆମ ଲେଖା ପୂର୍ବ ଅପେକ୍ଷା ଅବଶ୍ୟ ଭଲ ହେବ ।

ସମ୍ବାଦପତ୍ର ଓ ପତ୍ରିକାମାନଙ୍କର ସମ୍ପାଦକ ଓ ମୁଦ୍ରାଯନ୍ତ୍ରର ପରିଚାଳକମାନଙ୍କ ଉପରେ ଏ କ୍ଷେତ୍ରରେ କଠୋର ଦାୟିତ୍ୱ ରହିଅଛି । କାରଣ,

ଯଦ୍ ଯଦାଚରତି ଶ୍ରେଷ୍ଠଃ
ତତ୍ ଦେବେତରୋ ଜନଃ
ସ ଯଦ୍ ପ୍ରମାଣଂ କୁରୁତେ
ଲୋକସ୍ତଦନୁବର୍ତ୍ତତେ । (ଭଗବଦ୍‌ଗୀତା)

ଅର୍ଥାତ୍ ଶ୍ରେଷ୍ଠ ବା ପ୍ରତିଷ୍ଠିତ ବ୍ୟକ୍ତି ଯାହା ଯାହା ଆଚରଣ କରନ୍ତି, ଇତର ଜନ ତାହା ଅନୁକରଣ କରନ୍ତି । ସେମାନେ ଯାହା ଆଦର୍ଶ ବୋଲି ଥାପିଦିଅନ୍ତି, ଏମାନେ ତହିଁର ଅନୁବର୍ତ୍ତନ କରନ୍ତି ।

ସାହିତ୍ୟ ଓ ପତ୍ରିକା କ୍ଷେତ୍ରରେ ଯେଉଁମାନେ ପ୍ରତିଷ୍ଠା ଲାଭ କରିଅଛନ୍ତି, ସେମାନଙ୍କ ଉପରେ ଦେଶର ନବ୍ୟ ଲେଖକମାନଙ୍କ ଲେଖାର ରୀତି ଓ ଶୁଦ୍ଧି ଅନେକ ପରିମାଣରେ ନିର୍ଭର କରୁଅଛି । ସେମାନେ ଅସଂଯତ ହେଲେ, ଭାଷାର ନିୟାମକ ହେବ କିଏ ?

ମୁଁ ଉପରେ ଯେଉଁ ଯେଉଁ ଉଦାହରଣ ଦେଇଅଛି, ସେମାନ କେବଳ ଗୋଟିଏ ଦୁଇଟି ପତ୍ରିକାର ଓ ପୁସ୍ତକର ଦୁଇଟି ଚାରୋଟି ସ୍ତମ୍ଭର ଓ ପୃଷ୍ଠାରୁ ସଂଗ୍ରହ କରିଅଛି । ସଭ୍ୟ ଜଗତର ଉନ୍ନତ ସାହିତ୍ୟମାନଙ୍କରୁ ଗ୍ରହଣୀୟ ଭାବ ଓ ବିଷୟମାନ ସଂଗ୍ରହ କରି, ତଦ୍ଦ୍ୱାରା ମାତୃଭାଷାର ଶ୍ରୀବୃଦ୍ଧି କରିବାପାଇଁ କେତେଜଣ ଯୁବକ ଓ କର୍ମଠ ଲେଖକ ଅଣ୍ଟା ଭିଡ଼ି

ଅଛନ୍ତି, ଏହା ସୁଖର ବିଷୟ । ଉଚ୍ଚ ପାଶ୍ଚାତ୍ୟ ଶିକ୍ଷା ଫଳରେ ଅନେକ ଦେଶର ଉନ୍ନତ ସାହିତ୍ୟମାନଙ୍କରୁ ଯେଉଁ ରତ୍ନମାନ ଆମେ ଆହରଣ କରୁଥାଇଁ, ସେମାନ ଆମ ମାତୃଭାଷାର ନିଜସ୍ୱ କରିବା ଓ ତତ୍ତଦ୍ ଭାଷାନଭିଜ୍ଞ ଆମ ଦେଶବାସୀମାନଙ୍କୁ ତହିଁର ଭାଗୀଦାର କରାଇବା, ଏ ଉଦ୍ୟମ ପ୍ରଶଂସାର୍ହ । ଏ କ୍ଷେତ୍ରରେ ଓଡ଼ିଆ ପ୍ରବନ୍ଧ, ଉପନ୍ୟାସ ଓ ଗଳ୍ପ ଲେଖକମାନଙ୍କର ଛ୍ୟାମିତିକ 'ସ୍ୱୀକାର୍ଯ୍ୟ' ରୂପେ କଳ୍ପନା କରିବାକୁ ହେବ ଯେ, ଓଡ଼ିଆରେ ସେମାନେ ଏହି ଶ୍ରେଣୀର ଯାହା ଲେଖୁଅଛନ୍ତି, ତାକୁ ଯେଉଁମାନେ ପଢ଼ିବେ, ସେମାନେ ଓଡ଼ିଆ ଛଡ଼ା ଅନ୍ୟ ଭାଷା ଜାଣନ୍ତି ନାହିଁ; ଅତଏବ ବୈଦେଶିକ ନାମ, ଶବ୍ଦ ଓ ଉଦ୍ଧୃତବାକ୍ୟମାନଙ୍କୁ ବନ୍ଧନୀ ସାହାଯ୍ୟରେ ବା ପାଦଟୀକା ସାହାଯ୍ୟରେ ଓଡ଼ିଆରେ ବୁଝାଇଦେବା କିମ୍ବା ସୂଚାଇଦେବା ଆବଶ୍ୟକ । ଏଥିପ୍ରତି ଲେଖକମାନଙ୍କ ଦୃଷ୍ଟି ରହୁ ନାହିଁ । ଆମ ଲେଖାରେ ଇଂରାଜୀଭାଷାରେ ବ୍ୟବହୃତ କମ୍ମା, ସେମିକୋଲନ୍, କୋଲନ୍, ପୂର୍ଣ୍ଣଛେଦ, ଡାସ୍ (Dash), * ଚିହ୍ନ (asterisk) ଓ ବନ୍ଧନୀ ଆଦିର ସୁଚିନ୍ତିତ ବ୍ୟବହାର ଆମ୍ଭେମାନେ କରୁ ନ ଥାଇଁ ।

ଇଂରାଜୀରେ ଗୋଟିଏ ପ୍ରବଚନ ଅଛି 'Write as you speak' (ତୁମେ ଯେଉଁପରି କଥା କୁହ, ସେହିପରି ଲେଖ), ଏଥିର ଅର୍ଥ ଏହି ଯେ, ଲେଖାମାନ ସରଳ ଓ ସର୍ବଜନବୋଧ ହେବ; କିନ୍ତୁ ଲେଖାକୁ ସରଳ କରିବାକୁ ଯାଇ ଗୁଡ଼ିଏ ପ୍ରାଦେଶିକ ଓ ଗାଉଁଲି ଶବ୍ଦ ଭାଷାରେ ପୂରାଇବା ଉଚିତ ନୁହେଁ । ଉଚ୍ଚାଙ୍ଗ ସାହିତ୍ୟ ଓ ଜନ ସାହିତ୍ୟର ଭାଷା ମଧ୍ୟରେ ପ୍ରଭେଦ ରହିବା ଅବଶ୍ୟମ୍ଭାବୀ । ସବୁ ଲେଖା ଉଚ୍ଚାଙ୍ଗ ସାହିତ୍ୟ ହେଲେ ଚଳିବ ନାହିଁ । ପକ୍ଷାନ୍ତରରେ ସବୁ ଲେଖା ଗ୍ରାମ୍ୟ, ପ୍ରାଦେଶିକ ଓ ଇତରଜନପ୍ରିୟ ଶବ୍ଦ ବା ବାକ୍ୟବହୁଳ ହେଲେ ହେବ ନାହିଁ । ତତ୍ତଦ୍ ଶ୍ରେଣୀର ଲେଖାମାନଙ୍କପାଇଁ ଆଦର୍ଶ ରହିବା ଦରକାର । ଏ ଆଦର୍ଶପାଇଁ ଗାର କାଟିବ କିଏ ?

ଓଡ଼ିଆ ଭାଷାରେ ଭାଷାତତ୍ତ୍ୱ ବିଚାର ଉପରେ ସୁପ୍ରତିଷ୍ଠିତ ଗୋଟିଏ ବ୍ୟାକରଣ ସଙ୍କଳିତ ହେବା ଦରକାର । ପ୍ରଥମରେ ଭାଷାର, ତା'ପରେ ଲେଖାର ସୃଷ୍ଟି, ଏହା ଭାଷାତତ୍ତ୍ୱବିଦ୍ ମାନେ ସ୍ଥିର କରିଅଛନ୍ତି । ବ୍ୟାକରଣକାର ତୁଳନାମୂଳକ ଗବେଷଣା ସାହାଯ୍ୟରେ ଭାଷାରୁ ଓ ଲେଖାରୁ ବ୍ୟାକରଣପାଇଁ ନିୟମମାନ ସଙ୍କଳନ କରନ୍ତି । ବ୍ୟାକରଣ ସଙ୍କଳନ ପରେ ଭାଷା ଓ ସାହିତ୍ୟ ଛାଞ୍ଚରେ ପଡ଼ିଯାଏ । ବ୍ୟାକରଣଦ୍ୱାରା ଉଚ୍ଛୃଙ୍ଖଳତାର ବାଟ ବୁଜା ହୋଇଯାଏ । ବିବାକ୍ ବୁଜା ହୋଇ ନ ଗଲେ ମଧ୍ୟ ସେ ବାଟରେ 'ଡିଆଁ, (stile) ବସିଯାଏ । ଓଡ଼ିଆ ଭାଷାରେ ଗୋଟିଏ ସୁଚିନ୍ତିତ ବ୍ୟାକରଣ ସଙ୍କଳିତ ହେଲେ ବର୍ତ୍ତମାନ ପରିଲକ୍ଷିତ ଉଚ୍ଛୃଙ୍ଖଳତା ଓ ନିୟମାଭାବ ବହୁ ପରିମାଣରେ କମିଯାଆନ୍ତା ଓ 'ବ୍ରହ୍ମା ବିକି ବିକେଇଲେ ବେଦ' ହୁଅନ୍ତା ନାହିଁ ।

ସଂସ୍କୃତ ଓ ପ୍ରାକୃତ ଭାଷା ସଙ୍ଗେ ଆମ ମାତୃଭାଷାର ଦୃଢ଼ ସମ୍ବନ୍ଧ ଅଛି, ତଥାପି ଆମ ଭାଷା ଗୋଟିଏ ସ୍ୱତନ୍ତ୍ର ଭାଷା ଅଟେ ଓ ତହିଁର ସ୍ୱତନ୍ତ୍ର ବ୍ୟାକରଣଗତ ନିୟମମାନ ଅଛି । ଏ କ୍ଷେତ୍ରରେ ସ୍ୱର୍ଗୀୟ ସର୍ ସୁଜଳ ଦେବ, ସ୍ୱର୍ଗୀୟ ପଣ୍ଡିତ ଶ୍ୟାମସୁନ୍ଦର ରାଜଗୁରୁ

ଓ ପଣ୍ଡିତ ଗୋପୀନାଥ ନନ୍ଦ ଚେଷ୍ଟା କରୁଥିଲେ । କେତେ ବର୍ଷ ପୂର୍ବେ ପରମ ସ୍ନେହାସ୍ପଦ ପଣ୍ଡିତ ନୀଳକଣ୍ଠ ଦାଶ ଖଣ୍ଡିଏ ଓଡ଼ିଆ ବ୍ୟାକରଣ ସଙ୍କଳନ କର୍ମ ଆରମ୍ଭ କରିଥିଲେ; କିନ୍ତୁ ଓଡ଼ିଶାର ଅନ୍ୟାନ୍ୟ ଜନହିତକର ଉଦ୍ୟମ ଭଳି ଏ ଉଦ୍ୟମ ମଧ୍ୟ ଆଜିଯାକେ କାର୍ଯ୍ୟରେ ପରିଣତ ହେଲା ନାହିଁ ଓ ହେବ କି ନାହିଁ ମା' ସରସ୍ୱତୀଙ୍କୁ ଜଣା । ପଣ୍ଡିତ ନୀଳକଣ୍ଠ, ପଣ୍ଡିତ କୁଳମଣି ଦାଶ ଓ ରାୟସାହେବ ଆର୍ତ୍ତବଲ୍ଲଭଙ୍କ ସମ୍ମିଳିତ ଉଦ୍ୟମରେ ଖଣ୍ଡିଏ ଓଡ଼ିଆ ବ୍ୟାକରଣ ସଙ୍କଳିତ ହେଲେ ତାହା ଓଡ଼ିଆ ଭାଷାକୁ ଅଧୁନା ପରିଲକ୍ଷିତ ଉଚ୍ଛୃଙ୍ଖଳତ୍ୱ ବହୁଳତାରୁ ରକ୍ଷା କରନ୍ତା ।

ତା'ପରେ ଓଡ଼ିଶାରେ ସମାଲୋଚକଙ୍କ ଅଭାବ । ସମାଲୋଚକଙ୍କ ଆସନ ଅତି ଉଚ୍ଚ ଓ ପବିତ୍ର । ସେ ଆସନ କିପରି ଓଡ଼ିଆଭାଷା ରାଜ୍ୟରେ କଳୁଷିତ ହେଉଅଛି, ତାହା ସମସ୍ତେ ଅଙ୍ଗେ ନିଭାଉଥାଇଁ । ସମାଲୋଚକଙ୍କ ଲେଖନୀ ଜିଘାଂସୁର ଅସି ନୁହେଁ, କିମ୍ୱା ରଡ଼ ସାଧିବାର ଠେଙ୍ଗଣୀ ନୁହେଁ । ଉଚ୍ଛୃଙ୍ଖଳତା ନିବାରଣ କରିବା ଓ ସୁଲେଖକଙ୍କୁ ସମୁତ୍ସାହିତ କରିବା ସମାଲୋଚକଙ୍କ କାର୍ଯ୍ୟ । ସମାଲୋଚନାର ସୌରଭ ଭାଷାକୁ ଓ ସାହିତ୍ୟକୁ ଆମୋଦିତ କରେ । କିନ୍ତୁ ଆମ୍ଭମାନଙ୍କର ଅଧିକାଂଶ ସମାଲୋଚନା ବ୍ୟକ୍ତିଗତ ଆକ୍ରମଣର ପୂତିଗନ୍ଧରେ କଳୁଷିତ ।

ଏକ ଦିଗରେ ଏ ଶ୍ରେଣୀର ସମାଲୋଚକଙ୍କ କଠୋରତା, ଅନ୍ୟ ଦିଗରେ ସାହିତ୍ୟରଥୀମାନଙ୍କ ସାର୍ଟିଫିକଟ୍ ଦେବା ବିଷୟରେ ମୁକ୍ତହସ୍ତତା, ଏ ଦୁଇମୁଣ୍ଡ ମଧ୍ୟରେ ଉବେଇଟୁବେଇ ହୋଇ ଓଡ଼ିଆ ସାହିତ୍ୟର ଦୁର୍ଗତି ବଢୁଅଛି । ଯେ ଖଣ୍ଡିଏ ପାଣ୍ଡୁଲିପି ମୋଠାକୁ 'ମତ' ପାଇଁ ଆଣିଲେ, ମୁଁ ତାଙ୍କ ମନ ରକ୍ଷା କରିବାକୁ ଲେଖିଦେଲି 'ପୁସ୍ତକଟି ଗୋଟିକଯାକ ତୁଳସୀ ।' ଏଥିରେ ଗ୍ରନ୍ଥକାର ସନ୍ତୁଷ୍ଟ, ଗ୍ରନ୍ଥକାରଙ୍କ ପାଣ୍ଡୁଲିପିର ମୁଦ୍ରଣ ବ୍ୟୟ ବହନକାରୀ ପୃଷ୍ଠପୋଷକ ସନ୍ତୁଷ୍ଟ ଓ ସାହିତ୍ୟ ଜଗତରେ ପଣ୍ଡାପଣିଆଁରେ ମୋ ପ୍ରସିଦ୍ଧି ଲାଭ ମଧ୍ୟ ସୁନିଶ୍ଚିତ ।

ମୋର ଆପଣମାନଙ୍କଠାରେ ନିବେଦନ ଏହି କି, ଭାଷା ରାଜ୍ୟରେ ଉଚ୍ଛୃଙ୍ଖଳତା ନିବାରଣର ପ୍ରଧାନ ଉପାୟ, ଏକ ନିୟାମକ ଶକ୍ତିଶାଳୀ ସାହିତ୍ୟସଂଘର ପ୍ରତିଷ୍ଠା । ଓଡ଼ିଶାରେ ସେହି ସ୍ଥାନ ନାମତଃ ଉତ୍କଳ ସାହିତ୍ୟ ସମାଜଦ୍ୱାରା ଅଧିକୃତ । କିନ୍ତୁ ସମାଜ ଏ କ୍ଷେତ୍ରରେ କିଛି କରୁ ନାହାନ୍ତି । ନିୟମାବଳୀ ପୁସ୍ତିକାରେ ଉଦ୍ଦେଶ୍ୟ ତାଲିକାରେ 'ସାହିତ୍ୟରୁ ଆବର୍ଜନା ଦୂରୀକରଣ' ରହିଅଛି । କିନ୍ତୁ 'ଲଫାଫା ଦୋରସ୍ତ' ଛଡ଼ା ଫଳତଃ କିଛି ହେଉ ନାହିଁ । ସମାଜ ଯଦି ଗୋଟିଏ ଶକ୍ତିଶାଳୀ ସମିତି ଗଢ଼ି, ଭାଷାରାଜ୍ୟରେ ଯଥେଚ୍ଛାଚାର ରାଜତ୍ୱ ବିରୋଧରେ ଠିଆ ନ ହେବେ, ତେବେ ଓଡ଼ିଆ ସାହିତ୍ୟର ଓ ଭାଷାର ଘୋର କ୍ଷତି ହେବ ।

ଓଡ଼ିଆ ଭାଷାର ଓ ସାହିତ୍ୟର ନିୟମିତ ଓ ଦୈନନ୍ଦିନ ଚର୍ଚ୍ଚାପାଇଁ ଗୋଟିଏ ସାର୍ବଜନିକ ମିଳନ କ୍ଷେତ୍ର ଓଡ଼ିଶାର ସଂସ୍କୃତି (culture) ର କେନ୍ଦ୍ର ଏହି କଟକ ନଗରରେ ନାହିଁ । ଅନ୍ୟ ସ୍ଥାନମାନଙ୍କ କଥା କିଏ ପଚାରେ ? ଉତ୍କଳ ସାହିତ୍ୟ ସମାଜର ନେତୃବୃନ୍ଦ ନାମତଃ

ରାମଚନ୍ଦ୍ର ଭବନରେ ଗୋଟିଏ ପାଠାଗାର ଥାପି ଦେଇ, ନିଜ ନିଜର କର୍ତ୍ତବ୍ୟରେ ଡୋରି ବାନ୍ଧିଦେଇ ବସିଅଛନ୍ତି । ସାହିତ୍ୟ ସମାଜର ଅଧିବେଶନରେ ଯେଉଁ ପ୍ରବନ୍ଧ ପଢ଼ାଯାଉଛି, ତହିଁର ଚର୍ଚ୍ଚା ସେତିକିରେ ବନ୍ଦ । ଓଡ଼ିଆ ଭାଷା ବର୍ତ୍ତମାନ ନଓ୍ୱାରସି ମାଲ ଭଳି ବାରଲୋକଙ୍କ ହାତ ସଫେଇରେ ବାରଚାଉଳିଆ ହୋଇ ହଲାପଟା ହେଉଅଛି । ଏହି ଦୁର୍ଦ୍ଦଶାର ନିରାକରଣ ଓ ମାତୃଭାଷାର ଉଦ୍ଧାରପାଇଁ ମୁଁ ଉତ୍କଳ ସାହିତ୍ୟ ରଣ-ରଙ୍ଗଭୂମିର ସେନାପତି, ମାଜର୍, କର୍ଣ୍ଣେଲ୍, ଲେଫ୍‌ଟନେଣ୍ଟ୍, କାପ୍‌ଟେନ୍ ତଥା ରଥାରୋହୀ, ଗଜାରୋହୀ, ଅଶ୍ୱାରୋହୀ, ପଦାତି ତଥା ନୌକାରୋହୀ ଓ ଆକାଶପୋତାରୋହୀ ବୀରମାନଙ୍କୁ ଆବାହନ କରୁଅଛି । ସେମାନେ ଗୋଟିଏ ଟାଣୁଆ ସମିତି ଗଢ଼ି ଭାଷା ବ୍ୟବହାରରେ ଅଧୁନା ପରିଲକ୍ଷିତ ନିରଙ୍କୁଶତା ବା ଉଚ୍ଛୃଙ୍ଖଳତାର ଅବାରିତ ଗତି ରୋଧ କରନ୍ତୁ ।

ଶେଷରେ କବିବର ରାଧାନାଥଙ୍କ ଦରବାରରୁ ମୂଲ୍ୟବାନ୍ ପଦ କେତୋଟି ଉଦ୍ଧାର କରି ଆପଣମାନଙ୍କ ମୂଲ୍ୟବାନ୍ ସମୟ ନଷ୍ଟ ନ କରି ଉପସଂହାର କରୁଅଛି ।

ମଣ ନାହିଁ ମୁହିଁ ନେଇଛି ଏସନ
ଜ୍ଞାନଦର୍ପେ ଜ୍ଞାନଦାତାର ଆସନ;
ଥୋଇ ଏ ମୁକୁର ତୁମ୍ଭ ଆଗେ ଭାଇ,
ନିଜ ମୁଖ ମୁଁ କି ନିଜେ ଦେଖୁ ନାହିଁ ।
ସବୁବେଳେ ମୁହିଁ କରୁଛି ଅଧିକ
ସବୁବେଳେ ଯେଣୁ ହଲୁଛି ଅଧିକ ।

କାରଣ, ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷକୁ ପୂର୍ଣ୍ଣ କରିବାରେ ମୁଁ ଯେଉଁ ଦୋହଲରେ ପଡ଼ିଛି, ସେ ଦୋହଲ – ହଂସାଉଡ଼ା, ଧୈର୍ଯ୍ୟବୁଡ଼ା, ଅକଲଛଡ଼ା, ମୂକତାତଡ଼ା, ଦମ୍ଭଘଉଡ଼ା, ଏରିଓପ୍ଲେନରଚଢ଼ା, ଅଣ୍ଡାଭିଡ଼ା ଅଟେ ।

ପର୍ଯ୍ୟାଲୋଚିତ ତ୍ରୁଟିମାନଙ୍କ ବିଷୟରେ ମୁଁ ଜଣେ 'ସି' କ୍ଳାସ୍ ଦାଗୀ । ମୋ ଲେଖାରେ ଆପଣମାନେ ଏ ଦୋଷମାନ ଭୂରି ଭୂରି ପାଇବେ । ମୁଁ ସ୍ୱୟଂ ଅସିଦ୍ଧ, ଅନ୍ୟମାନଙ୍କୁ କଅଣ ସୁଧାରିବି ? ମୋର ଏହି ଆଶା ହେଉଛି, ଉତ୍କଳ ସାହିତ୍ୟ ସମାଜକୁ ଭାଷା ଓ ସାହିତ୍ୟ ରାଜ୍ୟରେ ନିୟାମକରୂପେ ଦୃଢ଼ ପ୍ରତିଷ୍ଠିତ କରି ଆପଣମାନେ ସୁଧୁରିବେ ଓ ଷ୍ଟୀମର୍ ପଛରେ ବନ୍ଧା ହୋଇଥିବା ଗଧିଆବୋଟ୍ ଭଳି, ଆପଣମାନଙ୍କ ବୋଲକରା ହୋଇ ମୁଁ ମଧ୍ୟ ସୁଧୁରିବି ଓ ସମସ୍ତେ ମିଶି ମାତୃଭାଷାର ଉନ୍ନତି କରିବା । ଦିନେ ଆମ ମାତୃଭାଷା – ପ୍ରତିବେଶୀମାନଙ୍କଦ୍ୱାରା ଅବହେଳିତ ଓଡ଼ିଆ ଭାଷା-ଅନ୍ତର୍ଜାତୀୟ ଭାଷା ସଂସଦରେ ବିଶିଷ୍ଟ ଓ ମହନୀୟ ଆସ୍ଥାନ ଅଧିକାର କରିବ । ଭଗବାନ୍ ଏ ଦିନ ଚଞ୍ଚଳ ଆଣନ୍ତୁ ଓ ତାଙ୍କ ମଙ୍ଗଳମୟ ପ୍ରେରଣାଦ୍ୱାରା ଆମ ଦେଶ, ଆମ ଜାତି, ଆମ ଭାଷା ଓ ସାହିତ୍ୟକୁ ଗୌରବବିମଣ୍ଡିତ ହେଉ । ତଥାସ୍ତୁ ।

ଗୋପାଳ

# ବର୍ତ୍ତମାନ ଯୁଗରେ ସଂସ୍କୃତ ଶିକ୍ଷାର ଉପଯୋଗିତା

ପ୍ରାଚୀନ କାଳରେ ଭାରତବର୍ଷ ଆର୍ଯ୍ୟମାନଙ୍କର ବିହାରସ୍ଥଳ ଥିଲା ଓ ସଂସ୍କୃତ ଭାଷା ଆର୍ଯ୍ୟମାନଙ୍କର ଭାଷା ଥିଲା । ପ୍ରତ୍ନତତ୍ତ୍ୱାନ୍ୱେଷୀ ପ୍ରାଚ୍ୟ ଓ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ଗବେଷଣାଦ୍ୱାରା ଅନୁମାନ କରାହୋଇଅଛି ଯେ, ଅନ୍ତତଃ ଆଠହଜାର ବର୍ଷ ପୂର୍ବେ ଆର୍ଯ୍ୟ ସଭ୍ୟତା ଭାରତରେ ବିଦ୍ୟମାନ ଥିଲା ଓ ଉତ୍ତରଭାରତ ବା ଆର୍ଯ୍ୟାବର୍ତ୍ତ, ଆର୍ଯ୍ୟମାନଙ୍କର ଆଦି ବାସସ୍ଥାନ ଥିଲା । ଏହି ଆଠ ହଜାର ବର୍ଷ ମଧ୍ୟରେ ପୃଥିବୀରେ ବହୁତ ସଭ୍ୟତାର ଉତ୍‌ଥାନ ଓ ପତନ ଘଟିଛି । ଏହା ଆଠହଜାର ବର୍ଷ ମଧ୍ୟରେ ପୃଥିବୀର ଅନ୍ୟାନ୍ୟ ଅଞ୍ଚଳରେ ଯେତେ ତତ୍ତ୍ୱ, ଚିନ୍ତା ଓ ଭାବଧାରା ଆବିଷ୍କୃତ, ଉଦ୍‌ଭୂତ ଓ ବିଲୁପ୍ତ ହୋଇଅଛି, ପ୍ରାଚୀନ ଭାରତରେ ସେ ସମସ୍ତର ବୀଜାଙ୍କୁର ଥିଲା । କି ଧର୍ମ, କି ସମାଜ, କି ଜ୍ଞାନ ସବୁ କ୍ଷେତ୍ରରେ ଭାରତ ବହୁ ପ୍ରାଚୀନ କାଳରେ ପୂର୍ଣ୍ଣତା ଲାଭ କରିଥିଲା । ବର୍ତ୍ତମାନ ପୃଥିବୀରେ ଯେଉଁ ତଥାକଥିତ ସଭ୍ୟ, ଉନ୍ନତ ଜାତିମାନେ ବିରାଜମାନ, ସେମାନଙ୍କ ମଧ୍ୟରେ ଏପରି କିଛି ତତ୍ତ୍ୱ ନାହିଁ, ଯାହା ପ୍ରାଚୀନ ଭାରତରେ ନ ଥିଲା ।

ଇଂରାଜୀ ଭାଷାରେ ପୃଥିବୀର ଇତିହାସର ପ୍ରଥମ ପ୍ରଣେତା ସାର୍‌ ୱାଲ୍ଟର ରାଲେଙ୍କ ମତରେ, 'ଭାରତବର୍ଷ ହିଁ ସଭ୍ୟତାର ତଥା ମନୁଷ୍ୟ ସୃଷ୍ଟିର ଆଦିସ୍ଥାନ' ।

ଶ୍ରୀ ଦୁର୍ଗାଦାସ ଲିହିଡ଼ି ତାଙ୍କ ପ୍ରଣୀତ 'ପୃଥିବୀର ଇତିହାସ'ରେ ଭାରତବର୍ଷ ବିଷୟରେ ବହୁ ଗବେଷଣା କରି ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଛି, ତହିଁର ସାରମର୍ମ ତଳେ ଦେଉଛି ।

'ସଂସ୍କୃତ ଭାଷା, ପୃଥିବୀର ଆଦି ଭାଷା, ସଂସ୍କୃତ ଭାଷା ପୂର୍ଣ୍ଣାବୟବ ସମ୍ପନ୍ନ ଭାଷା, : ସଂସ୍କୃତ ଭାଷା ବିଜ୍ଞାନସମ୍ମତ ଭାଷା, ସଂସ୍କୃତ ଭାଷା ମୌଳିକ ଭାଷା । ସଂସ୍କୃତ ଭାଷାରୁ ପୃଥିବୀର ଅନ୍ୟାନ୍ୟ ସଭ୍ୟଜାତିମାନଙ୍କର ଭାଷାର ଉତ୍ପତ୍ତି ହୋଇଅଛି । ଏ ସବୁ କଥା ଯେ ଆମେ କହୁଛୁ, ଏହା ନୁହେଁ । ବିବିଧ ଭାଷା ଆଲୋଚନା କରି ଯଶସ୍ୱୀ ହୋଇଥିବା ପାଶ୍ଚାତ୍ୟ ପଣ୍ଡିତମାନେ ଏହା ମୁକ୍ତ କଣ୍ଠରେ ଘୋଷଣା କରିଅଛନ୍ତି । 'ଜର୍ମାନୀର ଅଧ୍ୟାପକ ମାକ୍‌ସ ମୁଲାର, ଇଂଲଣ୍ଡର ସାର୍‌ ଉଇଲିଅମ୍‌ ଜୋନ୍‌ସ, ବିଲାତର ଅଧ୍ୟାପକ ବୋଷ୍ପ, ଜର୍ମାନଦେଶୀୟ ସମାଲୋଚକ ସ୍ଲେଜଲ, ବିଲାତର ସାର ଉଇଲିୟମ ହଣ୍ଟର ଓ ମିଷ୍ଟର ପୋକ୍‌କ, ପ୍ରୋଫେସର ହିଗେନ୍‌ ଓ ସଂସ୍କୃତ ଭାଷାକୋଷାକାର ଅଧ୍ୟାପକ ଉଇଲସନ, ଫ୍ରାନ୍‌ସର ଭାଷାତତ୍ତ୍ୱବିଦ୍‌ ପଣ୍ଡିତ ମୁସେଡ୍ରବୋ ଓ ମିଷ୍ଟର ୱେବର ଆଦି ଶତ ଶତ ମନୀଷୀ, ସଂସ୍କୃତ ଭାଷାର ମହିମାରେ ମୁଗ୍ଧ ହୋଇଅଛନ୍ତି । ଅଧ୍ୟାପକ ମାକ୍‌ସମୁଲାର କହିଛନ୍ତି– ପୃଥିବୀର ସମସ୍ତ ଭାଷା ମଧ୍ୟରେ ସଂସ୍କୃତ ଭାଷା ଶ୍ରେଷ୍ଠ ।

ସଂସ୍କୃତ ଭାଷା, ଭାଷା ବିଜ୍ଞାନର ମୂଳଦୁଆ । ଅଧ୍ୟାପକ ବୋପ ଲେଖିଛନ୍ତି ଗ୍ରୀକ୍ ଓ ଲାଟିନ୍ ଭାଷା ଅପେକ୍ଷା ସଂସ୍କୃତ ଭାଷା ପୂର୍ଣ୍ଣାବୟ ସମ୍ପନ୍ନ ଓ ଅଧିକତର ଭାବଦ୍ୟୋତକ, ସୌନ୍ଦର୍ଯ୍ୟଶାଳୀ ଓ ଶବ୍ଦଚାତୁର୍ଯ୍ୟମୟ ।

Sanskrit is more perfect and copious than Greek and Latin and more exquisite and eloquent than either.

ଜର୍ମାନ ସମାଲୋଚକ ସ୍କେଲ୍ଗଲ ସାହେବ କହିଛନ୍ତି, ଏ ଭାଷା ପୂର୍ଣ୍ଣାଙ୍ଗ ଓ ସମ୍ପୂର୍ଣ୍ଣ ଅଟେ । ଅତଏବ ଏ ଭାଷାର ନାମ ସଂସ୍କୃତ ହୋଇଅଛି । Justly it is called Sanskrit, that is, perfect, exquisite, finished.

ଐତିହାସିକ ଉଇଲିୟମ୍ ହଣ୍ଟର ଲେଖିଛନ୍ତି ଯେ, ଇଉରୋପୀୟମାନଙ୍କଦ୍ୱାରା ସଂସ୍କୃତ ଭାଷାର ଅଧ୍ୟୟନ ଆରମ୍ଭ ହେବା ସମୟରୁ, ଆଧୁନିକ ଯୁଗର ଭାଷା ବିଜ୍ଞାନର ସୃଷ୍ଟି ହୋଇଅଛି । The modern philology dates from the study of Sanskrit by the Europeans.

ବହୁ ଭାଷାଭିଜ୍ଞ ପୋକ୍କ ସାହେବ କହିଛନ୍ତି – ଗ୍ରୀକ୍ ଭାଷା ସଂସ୍କୃତ ଭାଷାରୁ ଉତ୍ପନ୍ନ । The Greek Language is a derivation from the Sanskrit । ଅଧ୍ୟାପକ ହିଗେନ୍ ସାହେବ କହିଛନ୍ତି, ପାରସ୍ୟର ପ୍ରାଚୀନ ଜେନ୍ଦ୍ ଭାଷା ସଂସ୍କୃତରୁ ଉତ୍ପନ୍ନ ।

ଫ୍ରାନ୍ସର ବିଖ୍ୟାତ ଭାଷାବିତ୍ ଡୁବୋ ସାହେବ କହିଛନ୍ତି, ''ସଂସ୍କୃତ ଭାଷା ବର୍ତ୍ତମାନ ଇଉରୋପରେ ପ୍ରଚଳିତ ସବୁ ଭାଷାର ଆଦିରୂପ । ଆଚାର୍ଯ୍ୟ ବାଲେଣ୍ଟାଇନ୍ ସ୍ଥିର କରିଛନ୍ତି ଯେ, ସକଳ ଇଣ୍ଡୋ-ଇଉରୋପୀୟ ବା ଆର୍ଯ୍ୟଭାଷା ସଂସ୍କୃତ ଭାଷାରୁ ଉତ୍ପନ୍ନ । ଫ୍ରାନ୍ସର ଭାଷାତତ୍ତ୍ୱବିତ୍ ଲେ'ପେରେ' ପାଓଲିନ୍ କହିଛନ୍ତି - ଲାଟିନ୍ ଭାଷା ଅପେକ୍ଷା ସଂସ୍କୃତ ଭାଷା ଅଧିକତର ଶବ୍ଦବିଭବ ସମ୍ପନ୍ନ । ଗୋଟିଏ ବସ୍ତୁ ବୁଝେଇବାପାଇଁ ସଂସ୍କୃତରେ ବହୁ ଶବ୍ଦ ଥିବା ଜଣାଯାଏ । ସେ ଉଦାହରଣ ଦେଇଅଛନ୍ତି ଯେ, ସୂର୍ଯ୍ୟଙ୍କର ୩୦ ରୁ ଅଧିକ ଓ ଚନ୍ଦ୍ରଙ୍କର ୨୦ରୁ ଅଧିକ ନାମ ଅଛି । ଗୃହ ବୁଝାଇବାପାଇଁ ୨୦ଟି ଶବ୍ଦ, ପ୍ରସ୍ତରପାଇଁ ୬ଟି ୭ଟି, ବୃକ୍ଷର ପତ୍ରପାଇଁ ୫ଟି ଶବ୍ଦ, ବାନରପାଇଁ ୧୦ଟି ଓ କାକ ଶବ୍ଦପାଇଁ ୯ଟି ସଂସ୍କୃତ ଶବ୍ଦ ଅଛି । ସେ ମହାଶୟ ବିଦେଶୀ ଥିବାରୁ, ସଂସ୍କୃତ ଭାଷାର ଶବ୍ଦସାଗରରେ ସଂପୂର୍ଣ୍ଣ ରୂପେ ଅବଗାହୀ ହୋଇପାରି ନାହାନ୍ତି । ସମସ୍ତେ ଜାଣନ୍ତି ଯେ, ବିଷ୍ଣୁଙ୍କର, ସୂର୍ଯ୍ୟଙ୍କର, ମହାଦେବଙ୍କର, ଲକ୍ଷ୍ମୀଙ୍କର ଓ ଅନ୍ୟ ଦେବଦେବୀଙ୍କର ସହସ୍ର ନାମ ଅଛି ଏବଂ ଅନେକଙ୍କର ଏଥିମଧ୍ୟରୁ ଅନେକ ସହସ୍ର ନାମ କଣ୍ଠସ୍ଥ । ସଂସ୍କୃତ କୋଷଗ୍ରନ୍ଥ ପ୍ରଣେତା ଉଇଲସନ୍ ସାହେବ କହିଛନ୍ତି ଯେ, ଶବ୍ଦବିଭବହିଁ ଭାଷାର ସୌନ୍ଦର୍ଯ୍ୟ, ଗାମ୍ଭୀର୍ଯ୍ୟ ଓ ଅଭିନବତ୍ୱ ଓ ଏଥିଯୋଗୁଁ ଉକ୍ତ ଭାଷାର କାବ୍ୟ, ବାଗ୍ମିତା, ସାହିତ୍ୟ ଓ ବୁଦ୍ଧିମତ୍ତାର ବିକାଶ ଅବଶ୍ୟମ୍ଭାବୀ ।

ପାଶ୍ଚାତ୍ୟ ମନୀଷିଗଣ ସ୍ୱୀକାର କରିଅଛନ୍ତି ଯେ, ସ୍ୱରବିଜ୍ଞାନ ସମ୍ବନ୍ଧେ ସଂସ୍କୃତ ବ୍ୟାକରଣ ଯେଉଁ ଉତ୍କର୍ଷ ଦେଖାଇଅଛି, ତାହା ପୃଥିବୀର ଅନ୍ୟ କେଉଁ ଭାଷା ଦେଖାଇ-ପାରି ନାହିଁ ।

ଭାଷାବିଜ୍ଞାନତତ୍ତ୍ୱବିତ୍ ଅଧ୍ୟାପକ ମାକ୍ସମୁଲାର ପ୍ରତିପନ୍ନ କରିଅଛନ୍ତି ଯେ, ସଂସ୍କୃତରୁ ପ୍ରାକୃତର ଉତ୍ପତ୍ତି ଓ ପ୍ରାକୃତରୁ ଭାରତବର୍ଷର ଭାଷାମାନଙ୍କର ସୃଷ୍ଟି ହୋଇଅଛି । ନାଟ୍ୟ ସାହିତ୍ୟରେ ଦେଖାଯାଏ ଯେ, ରାଜା, ପୁରୋହିତ ଓ ସମ୍ଭ୍ରାନ୍ତ ବ୍ୟକ୍ତିଗଣ ସଂସ୍କୃତ ଭାଷା ଓ ସ୍ତ୍ରୀଗଣ ଓ ଭୃତ୍ୟ ଆଦି ପ୍ରାକୃତ ଭାଷା ବ୍ୟବହାର କରୁଥିଲେ ଓ କ୍ରମଶଃ ପରବର୍ତ୍ତୀ କାଳରେ ପ୍ରାକୃତଭାଷା ସାହିତ୍ୟରେ ସ୍ଥାନ ଲାଭ କଲା ଓ କାଳକ୍ରମେ ସେହି ପ୍ରାକୃତରୁ ଶାଖା ପ୍ରଶାଖା ରୂପେ ଭାରତର ଆଧୁନିକ ଭାଷାସମୂହର ଉଦ୍‌ଭବ ହେଲା । ପଣ୍ଡିତମାନଙ୍କ ଗବେଷଣାମୂଳକ ବିଭିନ୍ନ ମତମାନଙ୍କରୁ ଏହା ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଏକ ସମୟରେ ସଂସ୍କୃତ ଭାଷା ଭାରତରେ ସର୍ବତ୍ର ପ୍ରଚଳିତ ଥିଲା ଏବଂ ଦେଶଭେଦରେ ସାମାନ୍ୟ ରୂପାନ୍ତରରେ ସେହି ସଂସ୍କୃତ ଭାଷା – ପ୍ରାକୃତ, ପାଲୀ, ମାଗଧୀ, ଦ୍ରାବିଡ଼ୀ, ଅବନ୍ତିକା, ଦାକ୍ଷିଣାତ୍ୟ ଆଦି ରୂପଧାରଣ କଲା । ପ୍ରିନ୍‌ସେପ୍ ସାହେବ ଆଦି ବହୁ ପଣ୍ଡିତ ନିର୍ଦ୍ଧାରଣ କରିଅଛନ୍ତି ଯେ, ପାଲୀ ଭାଷା ସଂସ୍କୃତ ଭାଷାର ଜ୍ୟେଷ୍ଠା କନ୍ୟା, ପ୍ରଥମେ ସଂସ୍କୃତରୁ ପାଲୀ ଭାଷାର ଉତ୍ପତ୍ତି ହେଲା ଓ ପରେ ପାଲୀରୁ ଅପରାପର ପ୍ରାଦେଶିକ ଭାଷାମାନଙ୍କର ଉତ୍ପନ୍ନ ହୋଇଅଛି । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଭାରତରେ ପ୍ରଚଳିତ ଭାଷା ଓ ବର୍ଣ୍ଣମାନଙ୍କରୁ ଏ ଉକ୍ତିର ସାର୍ଥକତା ପ୍ରତିପନ୍ନ ହେଉଅଛି । ଅଶୋକଙ୍କ ଘୋଷଣା ଲିପିମାନ ପାଲୀ ଭାଷାରେ ଉତ୍କୀର୍ଣ୍ଣ । ଭାଷାତତ୍ତ୍ୱ ଗବେଷଣା ଦିଗରୁ ଦୃଷ୍ଟି କଲେ ଦେଖାଯାଏ ଯେ, ସଂସ୍କୃତ ଭାଷାର ପରିବର୍ତ୍ତନ ୬ଟି ଯୁଗ ବାଟେ ଗତି କରି ପ୍ରାକୃତ ଭାଷାରେ ପହଞ୍ଚିଛି । ୧. ବୈଦିକ ଯୁଗ, ୨. ମହାକାବ୍ୟ, ୩. ଯୁକ୍ତତର୍କ ଯୁଗ (ଏ ଯୁଗରେ ବୌଦ୍ଧ ସାହିତ୍ୟର ପାଲୀଭାଷାର ଅଭ୍ୟୁଦୟ) । ୪. ପୌରାଣିକ ଯୁଗ (ଏହି ଯୁଗରେ ପ୍ରାକୃତ ଭାଷାର ଅଭ୍ୟୁଦୟ) ପାଲୀଭାଷା ସଂସ୍କୃତ ବ୍ୟାକରଣର ଯେତେଦୂର ଅନୁସରଣ କରୁଥିଲା, ପ୍ରାକୃତ ଭାଷା ତେତେଦୂର ଅନୁସାରୀ ଥିଲା । ୫. ମହାରାଷ୍ଟ୍ରୀ, ଶୂରସେନୀ, ପୈଶାଚୀ, ମାଗଧୀ ଆଦି ଭାଷାମାନଙ୍କ ଅଭ୍ୟୁଦୟ ଯୁଗ । ଏହି ଯୁଗରେ ଉତ୍ତରଭାରତରେ ହିନ୍ଦୀ ଭାଷାର ଉଦ୍ଭବ ହୋଇଥିଲା । ତତ୍‌ପରବର୍ତ୍ତୀ ଯୁଗରେ ଭାରତର ପ୍ରଚଳିତ ଭାଷାସମୂହ ପଞ୍ଚଗୌଡ଼ ଓ ପଞ୍ଚଦ୍ରାବିଡ଼ – ଏହି ୧୦ ବିଭାଗରେ ବିଭକ୍ତ ହୋଇଥିଲା । ପଞ୍ଚଗୌଡ଼ - ସାରସ୍ୱତ, କାନ୍ୟକୁବ୍ଜ, ଗୌଡ଼, ମୈଥିଳ, ଉତ୍କଳ; ପଞ୍ଚଦ୍ରାବିଡ଼ - କର୍ଣ୍ଣାଟ, ତୈଲିଙ୍ଗ, ଗୁର୍ଜ୍ଜର, ମହାରାଷ୍ଟ୍ର ଓ ଦ୍ରାବିଡ଼ ବା ତାମିଲ । ପଞ୍ଚ ଗୌଡ଼ୀୟ ଭାଷାମାନ ଉତ୍ତରଭାରତରେ ଓ ପଞ୍ଚ ଦ୍ରାବିଡ଼, ଦକ୍ଷିଣଭାରତରେ ପ୍ରଚଳିତ । ଏ ଭାଷାମାନଙ୍କ ଛଡ଼ା (ଭାରତବାସୀ ଅନାର୍ଯ୍ୟ, ଅସଭ୍ୟ ଓ ବଣ୍ୟର ଜାତିମାନଙ୍କ ମଧ୍ୟରେ ହୋ, ମୁଣ୍ଡା, ସବର, କୋହ୍ଲ, ନିଷାଦ, ଧୂମାଳ ଆଦି ଭାଷା ପ୍ରଚଳିତ । ଭାରତରେ ୧୪୭ ଭାଷା ପ୍ରଚଳିତ ଥିବା ବିଷୟ ୧୯୦୧ ସାଲରେ ଜନଗଣନା ରିପୋର୍ଟରେ ଗ୍ରୀୟରସନ୍ ସାହେବ ତାଙ୍କ Linguistic Survey of India ଗ୍ରନ୍ଥରେ ଆଉ କେତୋଟି ଭାଷା ପୂରାଇ ଏ ଗଣନାକୁ ବଢ଼ାଇ ଅଛନ୍ତି ଓ ଭାରତରେ ପ୍ରଚଳିତ ଭାଷାମାନଙ୍କୁ ୭ଟି ବିଭାଗଭୁକ୍ତ କରିଛନ୍ତି । ତଥାପି ଏ ତାଲିକା ସମ୍ପୂର୍ଣ୍ଣ ନୁହେଁ । କାରଣ, ପ୍ରାୟ ପ୍ରତ୍ୟେକ ଭାଷାରେ ଗୁଡ଼ିଏ Dialect

ବା ଉପଭାଷା ଅଛି । ଯା'ହେଉ ବର୍ତ୍ତମାନ ସଂସ୍କୃତ ଭାଷା ଆଲୋଚନା କରି ପଣ୍ଡିତମାନେ ସଂସ୍କୃତ ଭାଷାରେ ଦୁଇଟି କ୍ରମଯୁକ୍ତ ସ୍ତର ନିର୍ଣ୍ଣୟ କରିଅଛନ୍ତି - ଯଥା – ବୈଦିକ ସଂସ୍କୃତ ଓ ଆଧୁନିକ ସଂସ୍କୃତ ।

'ଭାରତରେ ଭାଷା' ନାମକ ତ୍ରୟୋଦଶ ପରିଚ୍ଛେଦରେ, ଶ୍ରୀ ଦୁର୍ଗା ଦାସ ଲାହିଡ଼ୀ ତାଙ୍କର ପୃଥିବୀ ଇତିହାସର ୩ୟ ଖଣ୍ଡରେ ସଂସ୍କୃତ ସମ୍ବନ୍ଧେ ଯେଉଁ ବାକ୍ୟମାନ ପ୍ରୟୋଗ କରିଅଛନ୍ତି, ତାହା ମୁଁ ପାଠକମାନଙ୍କ ଆଗରେ ଓଡ଼ିଆ ଭାଷାରେ ଉଦ୍ଧାର କରୁଅଛି ।

ପୃଥିବୀର ଇତିହାସପ୍ରଣେତା କହିଅଛନ୍ତି, ''ଭାରତବର୍ଷରେ କେତେ ଯୁଗାନ୍ତରର ପୂର୍ବେ ଏକ ଭାଷା ଓ ଏକ ବର୍ଣ୍ଣମାଳା ପ୍ରଚଳିତ ଥିଲା । ବେଦ, ବେଦାନ୍ତ, ଉପନିଷଦ, ପୁରାଣ, ଦର୍ଶନ ପ୍ରଭୃତିର ବିଦ୍ୟମାନତା ବିଷୟ ବିଚାର କରି ଦେଖିଲେ, ପୃଥିବୀର ଅନ୍ୟାନ୍ୟ ପ୍ରଦେଶରେ ସଭ୍ୟତାର ଆଲୋକ ରଶ୍ମି ବିକୀର୍ଣ୍ଣ ହେବାର ବହୁ ପୂର୍ବରେ, ଏହି ଭାରତବର୍ଷ ସଂସ୍କୃତ ସାହିତ୍ୟର ଉଜ୍ଜ୍ୱଳ ଆଲୋକରେ ଉଦ୍‌ଭାସିତ ହୋଇଥିଲା । ଆଜି ଏହି ଯେଉଁ ଦେବ ଭାଷା ବୀଣାଧ୍ୱନି ପରି ଝଙ୍କୃତ ହେଉଅଛି, ସ୍ମରଣାତୀତ କାଳରେ ଭାରତବର୍ଷରେ ଏଥିର ଅଭ୍ୟୁଦୟ ହୋଇଥିଲା । ସଂସ୍କୃତ ସାହିତ୍ୟ ପୃଥିବୀର ଇତିହାସରେ, ଭାରତବର୍ଷର ଯେଉଁ ବିଜୟ ବୈଜୟନ୍ତୀ ଉଡ଼ାଇ ଆସିଛି, କୌଣସି ଦେଶର, କୌଣସି ଭାଷାରେ ତାହାର ତୁଳନା ଅଛି କି ? ପୃଥିବୀର ସବୁ ଦେଶର, ସବୁ ସାହିତ୍ୟର, ସବୁ ଭାଷାର ଇତିହାସ ଅନ୍ୱେଷଣ କରି ଦେଖିଥାଉଁ ଯେ, ମୌଳିକ ତତ୍ତ୍ୱରେ ଓ ପ୍ରାଚୀନତ୍ୱରେ କେହି ସଂସ୍କୃତ ଭାଷାର ସମକକ୍ଷତା ଲାଭରେ ସମର୍ଥ ହୋଇ ନାହାନ୍ତି । ସର୍ବବାଦିସମ୍ମତ କ୍ରମେ ପୃଥିବୀର ଆଦିସଭ୍ୟ ଜାତିର ଆଦି ଭାଷା-ସେହି ଦେବ ଭାଷା ସଂସ୍କୃତ ଭାଷା-ଦିନେ ଭାରତର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ବିସ୍ତୃତ ଥିଲା, ଏଥିର ଜାଜ୍ଜ୍ୱଲ୍ୟମାନ ନିଦର୍ଶନ ବେଦରେ, ବ୍ରାହ୍ମଣରେ, ଆରଣ୍ୟକରେ, ଉପନିଷଦରେ, ପୁରାଣରେ, ଦର୍ଶନରେ, ରାମାୟଣରେ, ମହାଭାରତରେ ବିଦ୍ୟମାନ ରହିଛି । ଅବଶ୍ୟ ସେ ସମୟରେ ଭାରତରେ ବଣ୍ୟ ଜାତି (Barbarous tribes) ମାନଙ୍କ ମଧ୍ୟରେ ସଂସ୍କୃତର ମିଶ୍ରଭାଷା ପ୍ରଚଳିତ ଥିଲା, କିନ୍ତୁ ସଂସ୍କୃତ ଭାଷା ଭାରତରେ ଶୀର୍ଷସ୍ଥାନ ଅଧିକାର କରିଥିଲା, ଏଥିରେ ସନ୍ଦେହ ନାହିଁ ।

ସଂସ୍କୃତ ବର୍ଣ୍ଣମାଳାପରି, ବୈଜ୍ଞାନିକ ଭିତ୍ତି ଉପରେ ପ୍ରତିଷ୍ଠିତ ବର୍ଣ୍ଣମାଳା ଓ ବର୍ଣ୍ଣମାନଙ୍କ ଶ୍ରେଣୀବିଭାଗ, ଧ୍ୱନି ଏବଂ ଉଚ୍ଚାରଣ ସ୍ଥାନ ଅନୁସାରେ ବର୍ଣ୍ଣମାଳାର ବର୍ଣ୍ଣମାନଙ୍କର ପ୍ରତିଷ୍ଠାନ ପୃଥିବୀର ଅନ୍ୟ କୌଣସି ଭାଷାର ବର୍ଣ୍ଣମାଳାରେ ନାହିଁ ।

ମୁଁ ଏ ଯେଉଁ କଥାମାନ ଉଲ୍ଲେଖ କଲି, ଏ ସବୁ ଚର୍ବିତ ଚର୍ବଣ ବୋଲି ମୁଁ ଆଗରୁ କହିଛି, କିନ୍ତୁ ମୁଁ ଦେଖୁଛି ଯେ, 'ଗୋପାଗୁଲି' ନାମରେ କେତେକ ହିନ୍ଦୁ ଘରେ ଗୋରୁଙ୍କ 'ଚର୍ବିତ ଚର୍ବଣ' ଦିଅଁଙ୍କ ଖଟୁଲିରେ ସ୍ଥାନ ପାଇଥାଏ । ଏଥିରୁ ବହୁ ବିଷୟ ମୁଁ ନିଜେ ଜାଣି ନ ଥିଲି, ଅତଏବ ଏଗୁଡ଼ିକ ପ୍ରତି ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ ମୁଁ ଏମାନ ଉଲ୍ଲେଖ କଲି ।

ସଂସ୍କୃତ ଭାଷା ଆମ ପୂର୍ବପୁରୁଷମାନଙ୍କ ମସ୍ତିଷ୍କ ପ୍ରସୂତ ଓ ଆମ୍ଭେମାନେ ଉତ୍ତରାଧିକାରୀ ରୂପେ ସଂସ୍କୃତ ଭାଷାକୁ ପାଇଅଛୁଁ । ଯେବେ ଆମ୍ଭେମାନେ ପୂର୍ବପୁରୁଷଙ୍କ ପ୍ରଦତ୍ତ ରତ୍ନକୁ ହରାଇବସୁଁ, ତେବେ ଆମ୍ଭମାନଙ୍କର ଏହା ଦୁର୍ଭାଗ୍ୟ ବୋଲିବାକୁ ହେବ ସିନା !

ମୋର ପରମ ସ୍ନେହାସ୍ପଦ ଭ୍ରାତୃପ୍ରତିମ ସୁହୃଦ୍, ଆଶୈଶବ ସାହିତ୍ୟସେବକ ଶ୍ରୀ ଶଶିଭୂଷଣ ରାୟଙ୍କର ୧୩୩୯ ଭାଦ୍ର ସଂଖ୍ୟା ଉତ୍କଳ ସାହିତ୍ୟର ସଂସ୍କୃତ ଶିକ୍ଷା ଶୀର୍ଷକ ଗୋଟିଏ ସନ୍ଦର୍ଭ ପ୍ରକାଶିତ ହୋଇଥିଲା । ଆଜି ସେ ସନ୍ଦର୍ଭ ବିଷୟରେ ତାଙ୍କ ଭାବଧାରା ସଙ୍ଗେ ମୋ ଭାବଧାରା ସାମଞ୍ଜସ୍ୟ ଉପଲବ୍ଧି କରି ତହିଁର ସାରାଂଶ ପାଠକମାନଙ୍କୁ ଉପହାର ଦେଉଅଛି ।

"ଜାଗତିକ ବୈଶିଷ୍ଟ୍ୟକୁ ପରିହାର କରାହୋଇ କୌଣସି ଜାତିରେ ଶିକ୍ଷାର ବ୍ୟବସ୍ଥା ହେଲେ, ସେ ଜାତିର ଜାତୀୟତା ନଷ୍ଟ ହୋଇଯାଏ, ସେ ଜାତିର ପ୍ରତିଭା ମନୀଷା ପ୍ରଭୃତି ଲୁପ୍ତ ହୁଏ । ଜାତୀୟ ବୈଶିଷ୍ଟ୍ୟ ଲଂଘନ କରାଯାଇ ଯେଉଁ ଶିକ୍ଷାର ବ୍ୟବସ୍ଥା ପରିକଳ୍ପିତ ହୁଏ, ତାହା ବିଜାତୀୟ ଶିକ୍ଷା ସିନା । ଜାତିଗତ ଧନୁପ୍ରକୃତି ଯେଉଁ କୌଳିନ ଅବଦାନ, ପରମ୍ପରା ଓ ପାରିପାର୍ଶ୍ୱିକ ପ୍ରାକୃତିକ ଶକ୍ତିର ବୈଶିଷ୍ଟ୍ୟ ଉପରେ ବିଶେଷ ଭାବରେ ନିର୍ଭର କରିଥାଏ; ପ୍ରତ୍ୟେକ ଜାତିର ପୂର୍ବଜଗଣଙ୍କ ଅବଦାନ ପରମ୍ପରା, ସେମାନଙ୍କ ପ୍ରକୃତିରେ ଯେଉଁ ଭାବକୁ ସୁଗଭୀର ଭାବରେ ଅଙ୍କିତ କରି ଦେଖାଏ, ତାକୁ ପୋଛି ପକେଇବା ଅସମ୍ଭବ । ତାକୁ ପୋଛି ପକାଇବାକୁ ଚେଷ୍ଟା କଲେ ହିତରେ ବିପରୀତ ଘଟେ । ଯେଉଁ ଜାତି ଯେତେ ବେଶି କାଳ କୌଣସି ଗୋଟିଏ ବିଶିଷ୍ଟ ସଭ୍ୟତା କ୍ରୋଡ଼ରେ ପାଳିତ ହୋଇ ଆସିଥାଏ; ସେହି ଜାତି, ସେହି ପରିମାଣରେ; ସେହି ଗୋଟିଏ ଜାତୀୟଭାବରେ ଗଢ଼ା ହୋଇଥାଏ ଓ ସେହି ଜାତୀୟତାର ମୁଦ୍ରା ଚରିତ୍ରରେ ବିଶେଷଭାବରେ ଅଙ୍କିତ ହୋଇ ରହିଥାଏ ।

ଆମ୍ଭମାନଙ୍କର ଅତୀତ ଭାଷା ସଂସ୍କୃତ, ଆମ ପୂର୍ବପୁରୁଷମାନଙ୍କର ଯେଉଁ ଶକ୍ତି, ବୈଶିଷ୍ଟ୍ୟ, ଚିନ୍ତାଧାରା, ସଭ୍ୟତା ଓ କୃଷି ବୀଜାକାରରେ ଉକ୍ତଭାଷାରେ ଓତପ୍ରୋତ ଭାବରେ ଜଡ଼ିତ ହୋଇ ରହିଅଛି, ଉକ୍ତ ଭାଷାର ଅଧ୍ୟୟନ ବିନା ତାହା ଆମ୍ଭମାନଙ୍କ ମଧ୍ୟରେ ଆୟତ୍ତ ବା ଜ୍ଞାତ ହୋଇ ନ ପାରେ । ଆମ ପୂର୍ବପୁରୁଷମାନଙ୍କର କୀର୍ତ୍ତି ସଂସ୍କୃତ ଭାଷାର ଭାଷାତତ୍ତ୍ୱ, ବ୍ୟାକରଣ, ବେଦ, ଗୃହ୍ୟସୂତ୍ର, ଉପନିଷଦ, ଆରଣ୍ୟକ, ବେଦାନ୍ତ, ଶିକ୍ଷା ସୂତ୍ର, କଳାସୂତ୍ର, ଦର୍ଶନ, ନ୍ୟାୟ, ଆୟୁର୍ବେଦ, ଧନୁର୍ବେଦ, ଗଣିତ ଓ ଫଳିତ ଜ୍ୟୋତିଷ, ଜଡ଼ବିଜ୍ଞାନ, ପ୍ରାଣିବିଜ୍ଞାନ, ଭୂତତ୍ତ୍ୱ; କାବ୍ୟ, ସାହିତ୍ୟ, ଅଳଙ୍କାର, ନାଟ୍ୟଶାସ୍ତ୍ର, ସଙ୍ଗୀତଶାସ୍ତ୍ର, ଶିଳ୍ପଶାସ୍ତ୍ର, କାମଶାସ୍ତ୍ର, ସ୍ମୃତି, ଯୋଗଶାସ୍ତ୍ର, ପାଟୀଗଣିତ, ଇତିହାସ, ଭୂଗୋଳ, ବୀଜଗଣିତ, ଅର୍ଥଶାସ୍ତ୍ର, ନୀତିଶାସ୍ତ୍ର, ଅର୍ଥନୀତି, ସମାଜନୀତି, କ୍ଷେତ୍ରତତ୍ତ୍ୱ ତ୍ରିକୋଣମିତି, ଜ୍ଞାନର ସବୁ ଶାଖାରେ ପ୍ରତିଷ୍ଠିତ । ସେହି ସବୁ ଆଧାରରେ ଆମ ପୂର୍ବପୁରୁଷମାନଙ୍କର ପ୍ରାଚୀନ ସଭ୍ୟତାର ଓ ସୃଷ୍ଟିର ପ୍ରଭୂତ ଉପକରଣ ସଂଗୃହୀତ ହୋଇ ରହିଅଛି । କେବଳ ଏତିକି ନୁହେଁ, ଆଜି ମଧ୍ୟ ଆମେ ହିନ୍ଦୁମାନେ ଏହି ସଂସ୍କୃତ ଭାଷାରେ

ଅଭିଧାନାଦି ସଂସ୍କାର, ଶ୍ରାଦ୍ଧତର୍ପଣ, ସନ୍ଧ୍ୟା, ବନ୍ଦନା, ସ୍ତୋତ୍ର, ଉପାସନା, ଧ୍ୟାନମନ୍ତ୍ର ଆଦି ନିତ୍ୟ ଓ ନୈମିତ୍ତିକ ଅନୁଷ୍ଠାନ ସାଧନ କରିଥାଉଁ । ଏପରି ସ୍ଥଳରେ ଏହି ଅପୂର୍ବ ବିଭବସମ୍ପନ୍ନ ଭାଷାର ଶିକ୍ଷା ଆମ୍ଭମାନଙ୍କ ପକ୍ଷରେ ଏକାନ୍ତ ପ୍ରୟୋଜନୀୟ । ଏହା ଆମ୍ଭମାନଙ୍କୁ ବାଧ୍ୟ ହୋଇ ସ୍ୱୀକାର କରିବାକୁ ହେବ ।

ପୃଥିବୀର ଅପରାପର ଜାତିମାନେ ଆମ ପୂର୍ବପୁରୁଷଙ୍କର ସଞ୍ଚିତ ଯେଉଁ ଧନକୁ ନେଇ ପାଣ୍ଠି କରି, ତାକୁ ଖଟାଇ ପୃଥିବୀର ସଭ୍ୟ ଜାତିରେ ଗଣା ହେଉଛନ୍ତି, ଆମେ ସେଗୁଡ଼ିକ ସଂଗ୍ରହ ନ କରି, ସାଇତା ସାଇତି ନ କରି ଆମ ପୂର୍ବପୁରୁଷଙ୍କଠାରୁ ଋଣ ଓ ଚୋରି କରିଥିବା ଜାତିମାନଙ୍କଠାରୁ ତାହା ଗ୍ରହଣ କରିବା ଆମ୍ଭମାନଙ୍କ ପକ୍ଷରେ ମୂର୍ଖତା ସିନା ! ଆଜି ପାଶ୍ଚାତ୍ୟରେ ବିଜ୍ଞାନର ଭିନ୍ନ ଭିନ୍ନ ଶାଖା ଯେତେ ଦୂର ଅଗ୍ରସର ହେଉଅଛି, ଆମ ପୂର୍ବପୁରୁଷମାନେ ତତ୍ତଦ୍ ଶାଖାରେ ଏତଦପେକ୍ଷା ଅଧିକତର ଉନ୍ନତି କରିପାରିଥିଲେ । ଏଥିରେ ଭୂରି ଭୂରି ପ୍ରମାଣ ରହିଅଛି । ସେମାନଙ୍କ ପଦାଙ୍କ ଅନୁକରଣ ନ କରିବା, ସେ ଜ୍ଞାନର ସଦ୍‌ବ୍ୟବହାର ଓ ଉତ୍ତରୋତ୍ତର ଉନ୍ନତି ସାଧନ ଓ ସମ୍ମାର୍ଜନ ନ କରିବା, ଆମ ପକ୍ଷରେ ମୂର୍ଖତା ସିନା ! ମନୁଷ୍ୟମାତ୍ରେ ଭ୍ରମ ପ୍ରମାଦପୂର୍ଣ୍ଣ । To err is human, ଆମ ପୂର୍ବପୁରୁଷମାନେ ଯେଉଁଠାରେ ଭ୍ରମ ପ୍ରମାଦରେ ପଡ଼ିଥିଲେ ଓ ସେସବୁ ଭ୍ରମପ୍ରମାଦ କି ପରିସ୍ଥିତିରେ ଓ ବେଷ୍ଟନୀରେ ଘଟିଥିଲା, ତାହା ଆମ୍ଭମାନଙ୍କୁ ଜାଣିବାକୁ ହେବ ଓ ଅତୀତ ସମ୍ବନ୍ଧେ ଅଭିଜ୍ଞତା ଲାଭ କରି ଆମ୍ଭମାନଙ୍କୁ ବର୍ତ୍ତମାନ ଓ ଭବିଷ୍ୟତ୍ ମାର୍ଗ ସ୍ଥିର କରିବାକୁ ହେବ । ସଂସ୍କୃତ ଭାଷା ହିଁ ଆମ୍ଭମାନଙ୍କର ସେହି ଗୌରବମୟ ଅତୀତ ସଙ୍ଗେ ଯୋଗସୂତ୍ର ସ୍ଥାପନ କରିବାର ଏକମାତ୍ର ପନ୍ଥା । 'ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ' କିନ୍ତୁ ପରିତାପର ବିଷୟ ଯେ, ସଂସ୍କୃତ ଶିକ୍ଷା ଆମ୍ଭମାନଙ୍କ ପାଠ୍ୟତାଲିକାରୁ କ୍ରମଶଃ ନିର୍ବାସିତ ହେବାକୁ ବସିଲାଣି ଓ ନିକଟ ଭବିଷ୍ୟତ୍‌ରେ ସଂସ୍କୃତ ଶିକ୍ଷା ଆମ ଦେଶରୁ ଲୁପ୍ତ ହେବାର ଆଶଙ୍କା ଜନ୍ମିଲାଣି । ଇଂରେଜମାନେ ଗ୍ରୀକ୍ ଓ ଲାଟିନ୍ ଭାଷାକୁ ସେମାନଙ୍କ ପାଠ୍ୟତାଲିକାରୁ ଉଠାଇ ଦେଇପାରନ୍ତି । କାରଣ ଗ୍ରୀକ୍ ଓ ଲାଟିନ୍ ସେମାନଙ୍କର ପୂର୍ବପୁରୁଷମାନଙ୍କର ଭାଷା ନ ଥିଲା ବା ଲାଟିନ୍ ଓ ଗ୍ରୀକ୍ କୃଷ୍ଟି ସେମାନଙ୍କ ପୂର୍ବପୁରୁଷଙ୍କ କୃଷ୍ଟି ନୁହେଁ । କିନ୍ତୁ ଆଧୁନିକ ଇଂରେଜମାନଙ୍କ ନିକଟରେ ପୂର୍ବପୁରୁଷମାନଙ୍କ ଆଙ୍ଗ୍ଲେସାକ୍‌ସନ୍ ଭାଷାକୁ ସେମାନଙ୍କ ଇଂରାଜୀ ଉଚ୍ଚ-ଶିକ୍ଷା ଗ୍ରନ୍ଥରୁ ବର୍ଜନ କରିପାରି ନାହାନ୍ତି । ମୁଁ ଇଂରାଜୀ ସାହିତ୍ୟରେ ଏମ୍.ଏ. ପଢ଼ିଲାବେଳେ ଆଙ୍ଗ୍ଲସାକ୍‌ସନ ଭାଷା ଓ ବ୍ୟାକରଣ, ଏମ୍. ଏ. ର ପାଠ୍ୟଭୁକ୍ତ ଥିଲା । ଆଙ୍ଗ୍ଲୋ ସାକସନ୍ ସଙ୍ଗେ ଇଂରାଜୀର ଯେଉଁ ସମ୍ପର୍କ, ସଂସ୍କୃତ ସଙ୍ଗେ ଆମ ଓଡ଼ିଆ ଭାଷାର ସମ୍ପର୍କ ତଦପେକ୍ଷା ଢେର ବେଶି । ମୁଁ ଆଜକୁ ୪୫ ବର୍ଷ ତଳର କଥା କହୁଛି । ସେ ସମୟର ଏଣ୍ଟ୍ରାନ୍‌ସ ଏବଂ ଆଜକୁ ଫାଷ୍ଟ ଆର୍ଟସ ପାଠ୍ୟତାଲିକାରେ ସଂସ୍କୃତ ଶିକ୍ଷା ବାଧ୍ୟତାମୂଳକ (Compulsory) ଥିଲା । ଯେଉଁମାନେ ଆରବୀ, ଫାର୍ସୀ ବା ଲାଟିନ୍ ପଢୁଥିଲେ,

ସେମାନଙ୍କ ପକ୍ଷରେ ସଂସ୍କୃତ ଶିକ୍ଷା ବାଧ୍ୟତାମୂଳକ (Compulsory) ନ ଥିଲା । ବର୍ତ୍ତମାନ ପ୍ରାଚୀନ ଭାଷାକୁ ଇଚ୍ଛାଧୀନ ପାଠ୍ୟ ବିଷୟ (Optional) କରାହୋଇଅଛି । ଫଳରେ ଓଡ଼ିଶାରେ ଓଡ଼ିଆ ଭାଷାକୁ ବାଧ୍ୟତାମୂଳକ କରି, ସଂସ୍କୃତ ଶିକ୍ଷାକୁ ଇଚ୍ଛାଧୀନ କରିବାଦ୍ୱାରା ତା'ର ମୂଳକୁ କାଟି, ଗଛର ଅଗଡାଳରେ ପାଣି ଛିଞ୍ଚି ଗଛକୁ ଜୀଅନ୍ତା ରଖିବାର ପ୍ରୟାସ ହୋଇଅଛି ସିନା !

ଓଡ଼ିଆ ଭାଷାରେ ପ୍ରଚଳିତ ବାରପଣରୁ ଅଧିକ ଶବ୍ଦ ଅବିକୃତ ରୂପରେ ସଂସ୍କୃତ ଭାଷାରୁ ଗୃହୀତ । ସେହି ସଂସ୍କୃତ ଭାଷାକୁ ବାଦ୍ ଦେଲେ, ଓଡ଼ିଆ ଭାଷା ଶିକ୍ଷା ପୂର୍ଣ୍ଣାଙ୍ଗ ହୋଇପାରିବ ନାହିଁ । ଆମ ଭାଷାର ଅନେକ ଶବ୍ଦତତ୍ତ୍ୱରୂପ ସଂସ୍କୃତ ଭାଷାଗତ ଆକାରରେ ବ୍ୟବହୃତ ହେଉଅଛି । ସେସବୁ ଶବ୍ଦ କି ଭାବରେ, କି ପ୍ରଣାଳୀରେ, କେଉଁ ବ୍ୟାକରଣ ସୂତ୍ର ଅନୁସାରେ ଗଢ଼ା ହୋଇଅଛି, ସେସବୁର ବ୍ୟୁତ୍ପତ୍ତିଗତ ଅର୍ଥ କ'ଣ, ଏହା ହୃଦୟଙ୍ଗମ କରିବାପାଇଁ ସଂସ୍କୃତ ଶିକ୍ଷା ନିତାନ୍ତ ପ୍ରୟୋଜନୀୟ । ଶବ୍ଦର ବ୍ୟୁତ୍ପତ୍ତି ନ ଜାଣି ଆମ୍ଭମାନଙ୍କୁ ଅନେକ ସମୟରେ ଭୁଲଧାରଣା କରିବାକୁ ପଡ଼େ । ଶୁକ୍ରଙ୍କ ରୂପବର୍ଣ୍ଣନା ପ୍ରସଙ୍ଗରେ ଲେଖାଅଛି - 'ହିମକୁନ୍ଦ ମୃଣା ଲାଭଂ, ଦୈତ୍ୟାନାଂ ପରମଗୁରୁ'- ଅର୍ଥାତ୍ ଦୈତ୍ୟଗୁରୁ ଶୁକ୍ରଙ୍କୁ ତୁଷାର, କୁନ୍ଦଫୁଲ, ପଦ୍ମନାଡ଼ପରି ଶୁଭ୍ର ବୋଲି ବର୍ଣ୍ଣନା କରା ହୋଇଅଛି । କିନ୍ତୁ ଆପଣମାନେ ପଦ୍ମନାଡ଼ ଦେଖିଅଛନ୍ତି, ତାହା ଧଳା ନୁହେଁ, ଶାଗୁଆ । ଅତଏବ ଶାଗୁଆ ପଦ୍ମନାଡ଼କୁ କୁନ୍ଦଫୁଲ ସଙ୍ଗେ ସମବର୍ଣ୍ଣ କରିବା ଆପାତତଃ ଦୃଷ୍ଟିରେ ଅସମୀଚୀନ ବୋଧ ହେଉ ନାହିଁକି ? କିନ୍ତୁ ମୃଣାଳର ବ୍ୟୁତ୍ପତ୍ତି (ମୃଦ୍ + ନାଳ) ନିପାତନ ସିଦ୍ଧ । ଅର୍ଥାତ୍ ମୃଦ୍ ବା ମୃତ୍ତିକା ବା ମାଟି ମଧ୍ୟରେ ଥିବା ପଦ୍ମନାଡ଼ର ଅଂଶ ମୃଣାଳ ଅଟେ । ପଦ୍ମନାଡ଼ର ଯେଉଁ ଅଂଶ ପାଣିରେ ବା ପାଣି ଉପରେ ଥାଏ, ତାହା ଶାଗୁଆ । କିନ୍ତୁ ଯେଉଁ ଅଂଶ ପଙ୍କ ମଧ୍ୟରେ ପୋତା ହୋଇଥାଏ, ତାହା ଧଳା । ଅତଏବ, ଏ ସ୍ଥଳରେ ଧଳାବର୍ଣ୍ଣର ବସ୍ତୁ ମୃଣାଳ ସଙ୍ଗେ ଶୁକ୍ରଙ୍କ ବର୍ଣ୍ଣରେ ତୁଳନା କରା ହୋଇଅଛି । ନିଃଶ୍ୱାସ ଓ ପ୍ରଶ୍ୱାସ ଶବ୍ଦଦ୍ୱୟର ପ୍ରୟୋଗ ସମ୍ବନ୍ଧେ ମଧ୍ୟ ଆମ୍ଭମାନଙ୍କର ଭ୍ରମ ଦେଖାଯାଏ । ନିଃଶ୍ୱାସର ବ୍ୟୁତ୍ପତ୍ତିଗତ ଅର୍ଥ ନାସିକାରୁ ନିର୍ଗତ ଶ୍ୱାସ ଓ ପ୍ରଶ୍ୱାସର ଅର୍ଥ ପ୍ରକୃଷ୍ଟ ଶ୍ୱାସ, ଯାହା ଜୀବନଧାରଣର ପ୍ରକୃଷ୍ଟ ଉପାଦାନ ଅଟେ । ସେଥିପାଇଁ ଜାଣିବା ଲୋକେ କୁହନ୍ତି ନିଃଶ୍ୱାସ ପକାଇବା ବା ଛାଡ଼ିବା ଓ ପ୍ରଶ୍ୱାସ ନେବା ବା ଗ୍ରହଣ କରିବା । ଏହିପରି ଶତ ଶତ ଉଦାହରଣ ଦିଆଯାଇପାରେ ଯେ, ସଂସ୍କୃତ ଭାଷାର ଶିକ୍ଷାବିନ୍ଦ୍ ଓଡ଼ିଆ ଭାଷାର ବ୍ୟବହାର ବିଷୟରେ ପ୍ରବୀଣତା ଲାଭ ସମ୍ଭବ ନୁହେଁ ଓ ଓଡ଼ିଆ ଶବ୍ଦମାନଙ୍କୁ ଯଥାଭାବରେ ବ୍ୟବହାର କରିବାପାଇଁ ସଂସ୍କୃତ ଭାଷା ଶିକ୍ଷାର ପ୍ରୟୋଜନ । ତା' ନ ହେଲେ ଭାଷାର ଅପପ୍ରୟୋଗ ଅବଶ୍ୟମ୍ଭାବୀ । ଏହିପରି ଅପପ୍ରୟୋଗ ଆଜିକାଲି ମୋଭଳି ସଂସ୍କୃତାଭିଜ୍ଞ ବହୁଲେଖକଙ୍କଠାରେ ପରିଲକ୍ଷିତ ହେଉଅଛି । ସଂସ୍କୃତ ଶିକ୍ଷା ଏସବୁ ଅପପ୍ରୟୋଗ ରୋଧ କରିବାର ଏକମାତ୍ର ବ୍ୟବସ୍ଥା, କିନ୍ତୁ ସଂସ୍କୃତ ଶିକ୍ଷାର ବାଟରେ ଖଞ୍ଜୁରିଛାଲି (କଣ୍ଟା)

ପୋତିବାଦ୍ୱାରା ଓଡ଼ିଆ ଭାଷାର ଓ ଓଡ଼ିଆ ସାହିତ୍ୟର ଘୋର ଅନିଷ୍ଟ ସାଧନ କରାହେଉଅଛି । ଓଡ଼ିଆ ଭାଷା ଶିକ୍ଷା ସଙ୍ଗେ ସଂସ୍କୃତ ଭାଷା ଶିକ୍ଷାର ଯୋଗସୂତ୍ର ଯେତିକି ଛିଣ୍ଡିଯାଉଥିବ, ସେତିକି ଆମ ମାତୃଭାଷା (mother tongue) ଅବନତି ଆଡ଼କୁ ଗତି କରୁଥିବ ।

ଅନ୍ୟ ଗୋଟିଏ ଦିଗରୁ ବିଚାର କଲେ ଦେଖାଯିବ ଯେ, ସଭ୍ୟତା ଓ ବିଜ୍ଞାନର ପରିସର ବୃଦ୍ଧି ସଙ୍ଗେ ସଙ୍ଗେ, ଶିକ୍ଷାର ଭିନ୍ନ ଭିନ୍ନ ଶାଖାରେ ଆଧୁନିକ ଯୁଗର ଉପଯୋଗୀ ଶତ ଶତ ନୂତନ ଶବ୍ଦ ଆମ ଭାଷାରେ ପୂରେଇବାକୁ ପଡୁଛି । ତାହା କରିବାକୁ, ବୈଦେଶିକ ଶବ୍ଦମାନଙ୍କୁ ତଚ୍ଛରୂପ ଆଣି, ଆମ୍ଭ ଭାଷାରେ ନ ପୂରାଇ, ତତ୍ତଦ୍ ଭାବଦ୍ୟୋତକ ସଂସ୍କୃତଧାତୁ, ପ୍ରତ୍ୟୟ ଓ ଉପସର୍ଗମାନଙ୍କ ସହଯୋଗରେ ପ୍ରୟୋଜନରୂପ ଶବ୍ଦମାନ ଗଢ଼ିବାକୁ ହେବ । ଇଂରାଜୀ ଭାଷାରେ ଅନାବିଷ୍କୃତ ବୈଜ୍ଞାନିକ ଓ ଦାର୍ଶନିକ ଆଦି ଶ୍ରେଣୀର ଶବ୍ଦମାନ ଲାଟିନ୍ ଓ ଗ୍ରୀକ୍ ଭାଷାରେ ଗଢ଼ା ହେଉଅଛି । ଆମ ପୂର୍ବପୁରୁଷମାନଙ୍କର ସଂସ୍କୃତ ଭାଷା, ଶବ୍ଦ ବିଭବର ଲାଟିନ୍ ଓ ଗ୍ରୀକ୍ ଭାଷା ଅପେକ୍ଷା ଧନୀ, ଏପରି ସ୍ଥଳରେ ଏରିଓପ୍ଲେନ ନ କହି 'ବ୍ୟୋମଯାନ' ବ୍ୟବହାର ନ କରିବ କାହିଁକି ? ଯେଉଁଠାରେ ମାତୃ ଭାଷାର ଶବ୍ଦ ସାହାଯ୍ୟରେ ବା ସଂସ୍କୃତ ଭାଷାର ଶବ୍ଦ ସାହାଯ୍ୟରେ ଆମେ କୌଣସି ଶବ୍ଦ ଗଢ଼ିପାରିବା, ସେ ସ୍ଥଳରେ ବୈଦେଶିକ ଭାଷାରୁ ଶବ୍ଦ ଆଣି ଆମର ପାରିବାରପଣ ଦେଖାଇହେବା ଅନୁଚିତ । ଅବଶ୍ୟ ଯାହା ଆମ ଭାଷାରେ ବା ସଂସ୍କୃତରେ ନାହିଁ, ତାହା ଅନ୍ୟ ଯେଉଁଠାରୁ ପାଇବା, ସେଠାରୁ ଆଣି ଆମ ଭାଷାର ଅଙ୍ଗପୁଷ୍ଟି କରିବାକୁ ହେବ । କିନ୍ତୁ ଆମ ଭାଷାର ଇତିହାସ କୃଷ୍ଟି ଆଦିର ସମ୍ମାନ ରକ୍ଷା ନ କରି, ଆମ ଶିକ୍ଷାରୁ ସଂସ୍କୃତ ଭାଷା ଶିକ୍ଷାକୁ ନିର୍ବାସିତ କରିବା ଅସମୀଚୀନତା ହେବ ।

ଯୁଗର ଗତି ସଙ୍ଗେ ସଙ୍ଗେ ଅବଶ୍ୟ ଆମ୍ଭମାନଙ୍କୁ ଗତି କରିବାକୁ ହେବ । ସଂସ୍କୃତ ଭାଷାକୁ ବାଦ ଦେଲେ ଚଳିବ ନାହିଁ । କିନ୍ତୁ ତା' ବୋଲି ଆଜିକାଲି ଯୁଗର ଉପଯୋଗୀ କରି ସଂସ୍କୃତ ଭାଷା ଶିକ୍ଷାକୁ ନିୟନ୍ତ୍ରିତ ନ କରି, କେବଳ ପ୍ରାଚୀନ ରୀତିରେ ବ୍ୟାକରଣ ପ୍ରଥମା, ବ୍ୟାକରଣ ଦ୍ୱିତୀୟା, କାବ୍ୟ ପ୍ରଥମା, କାବ୍ୟ ଦ୍ୱିତୀୟା ଆଦିର ଶିକ୍ଷା ଦେଲେ ଓ ଆଜିକାଲିର ପରିବେଷ୍ଟନୀପାଇଁ ଲୋଡ଼ା ଜ୍ଞାନ ସଙ୍ଗେ ଲୋଡ଼ା ସମତାନତା ଓ ସନ୍ଧିସ୍ଥାପନ ନ କରି, କେବଳ ସଂସ୍କୃତ ଶିକ୍ଷାକୁ ଶିକ୍ଷାର ଏକମାତ୍ର ଲକ୍ଷ୍ୟ କଲେ, ଆମ୍ଭମାନଙ୍କୁ ଏକ ଦେଶଦର୍ଶିତା ଦୋଷରେ ଅପରାଧୀ ହେବାକୁ ହେବ ଓ 'ପଣ୍ଡିତେବ ଗୁଣୀ ସର୍ବେ ମୂର୍ଖେ ଦୋଷାଦି କେବଳମ୍' ସ୍ଥଳରେ 'ପଣ୍ଡିତେ ଚ ଗୁଣାଃ, ସର୍ବେ ମୂର୍ଖେ ଦୋଷା ହିଁ କେବଳଂ' ଫଳ ଫଳିବ । ସଂସ୍କୃତ ଶିକ୍ଷା ସଙ୍ଗେ ବୈଷୟିକ, ବ୍ୟାବହାରିକ ଓ ବୈଜ୍ଞାନିକ ଶିକ୍ଷା ଆଦି ଯୋଗ କରିବାକୁ ହେବ । ତା'ହେଲେ ସମସ୍ତେ ସୁଖୀ ହେବା ଓ ଆମ ଶିକ୍ଷା, କୃଷ୍ଟି, ଆମ ସାଧନା, ଆମ ସଭ୍ୟତା, ପ୍ରାଚୀନ ଓ ନୂତନ ଉଭୟର ସମାବେଶରେ ଅଭିନବ ପୂର୍ଣ୍ଣତା ଲାଭ କରିବ ଓ ଆମ ଜାତି, ଆମ ମାତୃଭାଷା, ଆମ ସାହିତ୍ୟ ପୃଥିବୀର ଆନ୍ତର୍ଜାତିକ ପରିଷଦରେ ଯଥାଯୋଗ୍ୟ ଆସନ ଅଧିକାର କରିବ । ଅତ୍ର ସନ୍ଦେହୋ ନାସ୍ତି ।

# A BRIEF SURVEY OF THE ORIYA LANGUAGE

## Introduction

The Oriya language belongs to the Indo-Aryan branch of the Indo-European family of languages, being the sixth of the seven groups of Indian languages classified by Sir George Greierson in his 'Linguistic Survey of India'. It is related to Sanskrit through the Magadhi Prākrit, which later on assumed the form of *Pali*, the language of the Buddhist Scriptures. The language of the original inhabitants of Kalinga or Utkal (the ancient name of Orissa) was *Dravidian*; but by the advent of the Indo-Aryan language-speaking *Aryans* from the north, the original inhabitants merged in them, and the Aryan language moulded the Oriya a language. It was replenished by the Pali (Magadhi) and formed the basis of the present day Oriya. It is a sister language of Sindhi, Marhattee, Gujrati, Bengalee, Punjabi, Hindi, Bihari, Singhalese and Assamese.

Orissa, in its old names *Kalinga*, *Utkala* and *Odra* Desa, finds mention in the *Ramayana*, the *Mahabharata* and other Hindu mythological works.

The country and its inhabitants have been mentioned in the Manu *Samhita* (8th century B.C.), in the records of the Greek ambassador Megasthenes (3rd century B.C.), the Chinese travellers Fa-Hian (4th century A.D.) and Hiuen Tsang (7th century A.D.).

### Oriya, one of the most ancient Indian vernaculars

Oriya is one of the most ancient Indian vernaculars and is mentioned as a distinct language (Udra Bilhasa) in the *Natya Sastra* by sage Bharata (3rd century A.D.). There are indications to show that Oriya how been established as a distinct vernacular by the 7th century A.D. From copper plate inscriptions, and palmleaf records traced to the 10th century A.D. and from the palm-leaf annals

maintained in the great Temple of Jagannath since the 10th century A.D.. it can safely be said that Oriya had begun to assume the form of a special Prākrit (vernacular), and by the 12th century A.D. it had developed into what virtually it now is. The late Sir John Beames in his 'Comparative Grammar of four Indo-Aryan languages' says-

"At a period when Oriya was already a fixed language, Bengalee did not exist. We may place Hindi with its subsidiary forms, Gujarati and Punjabi, first fixing their rise and establishment as modern languages, distinct from their previous existence as Prākrit, till the 12th or 13th century A.D. Oriya must have completed its transformation by the end of the 14th century. Bengalee severed itself from Hindi and assumed characteristics to be considered as a separate language in the 17th or 18th century."

*Its richness.* Since the 12th century the Oriya language has been enriched by poetical compositions of high artistic order; and its poets have left a legacy of romantic and religious poems couched in most artistic compositions which can vide with the richest productions of any other Indian language. Whole books have been written in which every line begins with a particular letter of the alphabet. Alliterations, musical periods, figures of speech abound in these to an astonishing degree.

*Its peculiar script.* The peculiarity of the Oriya script though derived from the *Brahmi* and *Devanagara* script, is the circular curves at the top of all and bottom of some letters, whereas the *Devanagara* letters are topped by straight lines. The rounding of the letters at the top and of some at the bottom was necessitated by the writing materials. Letters had to be written or rather carved on parallel grained palm leaves with heavy pointed iron pens which cut into the body of the palm leaf and would tear it if the straightlines at the top of the letters would run parallel to the grain of the palm leaf. Moreover, palm leaf records are more lasting than paper or papyrus records. All the old manuscripts and royal records of Orissa were in palm leaves; and even now there are people who use the palm leaf and have not taken to writing on paper. The use of palm leaf and sharp pointed iron pen also explains the rounded tops and bottoms of many of the vernaculars of South India. Copper plate

and stone inscriptions ascribed to the 7th century A.D. contain scripts akin to the *Kutila* (Devanagara) ones with straightline tops. Palm leaf manuscripts of the 10th century gradually tend towards rounded tops and in case of some letters rounded bottoms also. So, we can safely affirm that the Oriya script had assumed the present day from by the 14th century A.D.. The Oriya alphabet follows the *Devanagara* (Sanskrit) alphabet in number and pronunciation.

There are some peculiarities of the Oriya language which give it a unique place amongst the Indian vernaculars.

I. *Absence of dialects.* Sir John Beames says that each of the six sister languages (Bengalee, Hindi, Marhattee, Gujrati, Punjabi and Sindhi) possesses several dialects, whereas the Oriya language consits of one form only, spoken throughout an area of 82,000 square miles by 12 millions of people. Sir George Greierson also says that Oriya has got no dialect. Only twenty thousand people of the Bastar State (now in the Eastern States Agency) speak a language which can be called a dialect of the Oriya language. Sir G. Greierson in his picturesque style says "The Oriya language spoken in the four provinces (Bihar and Orissa, Bengal, Madras and the Central Province) covers an area of a little less than Jugoslavia" (which is 95,000 square miles) "and is spoken by people numbering a little more than the combined population of Norway and Sweden" (10 millions).

II. *It is spoken as it is written.* Oriya is spoken as it is written. It preserves the distinctness in pronunciation between the cerebral N and the dental N, between dental LA and its cerebral variation L, between the palatal J and its variant gutteral Y, between cerebral *dh* and its blurred variation *rdh,* and between the dental S, cerebral Sh and palatal S, whereas many of the sister languages do not observe these distinct pronunciations, although they have got different letters representing different sounds. In Bengalee and Hindi, we find the last letter of a word ending with a consonant joined to the sound of 'a', pronounced without the vowel sound, whereas Oriya pronounces the last letter with the vowel sound, just as it is written. For instance, the word 'Pana' (meaning betel leaf) is written with 2 letters in Oriya, Bengalee and Hindi; but the Bengalee and the Hindi pronounce it as 'Pan', omitting the ultimate

ପ୍ରିନ୍ସିପାଲ୍ ଶ୍ରୀଯୁକ୍ତ ହେଣ୍ଡର୍‌ସନ୍ ଓ ଭୂତପୂର୍ବ ପ୍ରିନ୍ସିପାଲ୍ ଶ୍ରୀଯୁକ୍ତ ହ୍ୱିଟ୍‌ମୋର୍, ଗୁଜରାଟ ବିଦ୍ୟାପୀଠର ଆଚାର୍ଯ୍ୟ କାଲେଲାର୍, ଓଡ଼ିଶା ବିଭାଗର ସ୍କୁଲ ଇନ୍ସପେକ୍ଟର୍ ଶ୍ରୀଯୁକ୍ତ ଭବନାଥ ମୁଖର୍ଜୀ, ଉତ୍କଳର ବରପୁତ୍ର କୁଳବୃଦ୍ଧ ଶ୍ରୀଯୁକ୍ତ ମଧୁସୂଦନ ଦାସ, କଟକର କଲେକ୍ଟର ଶ୍ରୀଯୁକ୍ତ ମାରଭଡ୍‌ଙ୍କ ନାମ ଉଲ୍ଲେଖଯୋଗ୍ୟ । ୧୯୨୭ ସାଲରେ ମହାତ୍ମାଗାନ୍ଧି କଟକ ଆସିଥିବାବେଳେ ଏ ପାଣ୍ଡୁଲିପିର କେତେକ ଅଂଶ ପରୀକ୍ଷା କରି କେତେଗୁଡ଼ିଏ ମୂଲ୍ୟବାନ୍ ଉପଦେଶ ଦେଇଥିଲେ । ସମ୍ମାର୍ଜନ ବେଳେ ଉକ୍ତ ଉପଦେଶମାନ ଯଥାଶକ୍ତି ଅନୁସୃତ ହୋଇଅଛି । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶ ଏ ପାଣ୍ଡୁଲିପି ଲେଖାହେବା ସମୟରେ ୧୦ ବର୍ଷକାଳ ମୋ କାର୍ଯ୍ୟର ଖବର ରଖୁଥିଲେ ଓ ପାଣ୍ଡୁଲିପି ଲେଖା ଶେଷ ହେବା ମାତ୍ରେ ୧୯୧୭ ଅଗଷ୍ଟରେ ସମାଜ ପତ୍ରିକାରେ ସର୍ବପ୍ରଥମେ ଏ ସଂବାଦ ପ୍ରକାଶ କରିଥିଲେ । ଉତ୍କଳଭାଷୀ ଅଞ୍ଚଳର ପ୍ରାୟ ସମସ୍ତ ସଂବାଦପତ୍ରର ସମ୍ପାଦକ ପାଣ୍ଡୁଲିପିମାନ ପରିଦର୍ଶନ କରି ସ୍ୱୀୟ ପତ୍ରିକାରେ ଏଥିପ୍ରତି ବଦାନ୍ୟ ବରପୁତ୍ରମାନଙ୍କର ତଥା ଗଭର୍ଣ୍ଣମେଣ୍ଟଙ୍କ ଦୃଷ୍ଟି ବହୁବାର ଆକର୍ଷଣ କରିଅଛନ୍ତି ।

ପାଣ୍ଡୁଲିପିର ପ୍ରାଥମିକ ଲେଖା ଶେଷ କରିବା ପରେ ଏ ବିପୁଳ ବ୍ୟାପାରରେ ରିଭିଜନ୍ ଓ ଛାପାଖରଚର ସାହାଯ୍ୟପାଇଁ ମାନ୍ୟବର ବିହାର ଗଭର୍ଣ୍ଣମେଣ୍ଟଙ୍କଠାରେ ମୁଁ ଅଳିକଲି । ଗଭର୍ଣ୍ଣମେଣ୍ଟଙ୍କ ଉପଦେଶକ୍ରମେ ବାଇବଲ୍, ନୂତନ ସମାଚାର (New Testament) ର ଆଧୁନିକ ଓଡ଼ିଆ ଅନୁବାଦକ ପାଦ୍ରି ଶ୍ରୀଯୁକ୍ତ ପାଇକ୍ ପାଣ୍ଡୁଲିପିମାନ ତନ୍ନ ତନ୍ନକରି ପରୀକ୍ଷାକରି ଏହାର ରିଭିଜନ୍ ଓ ମୁଦ୍ରଣପାଇଁ ଗଭର୍ଣ୍ଣମେଣ୍ଟଙ୍କଠାରୁ ବିଶିଷ୍ଟ ସାହାଯ୍ୟ ମିଳିବା ଉଚିତ ବୋଲି ୧୯୨୮ ଅଗଷ୍ଟ ମାସରେ ରିପୋର୍ଟ କରିଥିଲେ । ତାଙ୍କ ରିପୋର୍ଟର ମର୍ମ ଏହି ଯେ 'ଏପରି ପ୍ରକାଣ୍ଡ ଓ ଗବେଷଣା ପୂର୍ଣ୍ଣ ଗ୍ରନ୍ଥ' ଆଜିପର୍ଯ୍ୟନ୍ତ ଓଡ଼ିଆରେ ହୋଇ ନାହିଁ; ଏହା ଆଧୁନିକ ଉଚ୍ଚ ଧରଣ ଇଂରାଜୀ ଡିକ୍ସିନାରୀର ଆଦର୍ଶରେ ସଙ୍କଳିତ; ଏହାକୁ ଅଭିଧାନ ନ କହି 'ବିଶ୍ୱକୋଷ' ନାମ ଦିଆଯାଇପାରେ ଏବଂ ଏହା ଭାଷାତତ୍ତ୍ୱାନୁସନ୍ଧିତ୍ସୁମାନଙ୍କର ଓ ଭାଷାର ତୁଳନାମୂଳକ ଗବେଷଣାକାରୀମାନଙ୍କ ପକ୍ଷରେ ଗୋଟିଏ ମୂଲ୍ୟବାନ୍ 'ଅଭିଜ୍ଞାନ ଗ୍ରନ୍ଥ' (Valuable and standard book of reference) ହେବ । ଏ ଅଭିଧାନ ସଙ୍ଗେ ତୁଳନା କରିବାକୁ ଓଡ଼ିଆ ଭାଷାରେ କୌଣସି ଅଭିଧାନ ନାହିଁ । ତତ୍‌ପରେ ୧୯୨୯ ଜାନୁଆରୀ ମାସରେ ଶିକ୍ଷାବିଭାଗର ଡାଇରେକ୍ଟର୍ ଶ୍ରୀଯୁକ୍ତ ଫକସ୍ ସାହେବ ପାଣ୍ଡୁଲିପିମାନ ପରିଦର୍ଶନ କରି ଏଥି ସମ୍ବନ୍ଧେ ଅନୁକୂଳ ମତ ପ୍ରକାଶ କଲେ ଓ ଗ୍ରନ୍ଥ ଛାପାହେଲେ ଶିକ୍ଷାବିଭାଗ ପକ୍ଷରୁ ୧୧୪ ଖଣ୍ଡ ଗ୍ରନ୍ଥ କିଣିବାପାଇଁ ବଚନ ଦେଲେ । ମାନ୍ଦ୍ରାଜ ଶିକ୍ଷାବିଭାଗର ଡାଇରେକ୍ଟର୍ ୫୦ ଖଣ୍ଡ ଓ ବଙ୍ଗ ଶିକ୍ଷାବିଭାଗର ଡାଇରେକ୍ଟର୍ ୧୦ ଖଣ୍ଡ ଗ୍ରନ୍ଥ କିଣିବା ପାଇଁ ମଧ୍ୟ ବଚନ ଦେଇଅଛନ୍ତି ।

କଟକର କଲେକ୍ଟର ଶ୍ରୀଯୁକ୍ତ ପେକ୍ ସାହେବ ୧୯୨୯ ମାର୍ଚ୍ଚ ମାସରେ ପାଣ୍ଡୁଲିପିମାନ ପରିଦର୍ଶନ କରି ଅତ୍ୟନ୍ତ ପ୍ରୀତ ହେଲେ ଏବଂ ତାଙ୍କ ଅନୁରୋଧକ୍ରମେ ଓଡ଼ିଶାର କମିଶନର୍

ଶ୍ରୀଯୁକ୍ତ ହବ୍ବାକ୍ ସାହେବ ୧୯୨୯ ଜୁଲାଇରେ ଏହା ପରିଦର୍ଶନ କରି ଜ୍ୟୋତିଷିକ ଓ ଉଦ୍ଭିଦବିଦ୍ୟା ସମ୍ବନ୍ଧୀୟ କେତେଗୁଡ଼ିଏ ଟୀକା ଦେଖି ପରମ ପରିତୋଷ ଲାଭକଲେ । ହବ୍ବାକ୍ ସାହେବ ପାଣ୍ଡୁଲିପିରେ ଗଭୀର ଗବେଷଣା ଓ ଅଧ୍ୟବସାୟର ପ୍ରମାଣ ପାଇ ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ ଶିକ୍ଷାବିଭାଗର ଡାଇରେକ୍ଟର୍ ଫକସ୍ ସାହେବଙ୍କ ସଙ୍ଗେ ପରାମର୍ଶ କରି ଗଭର୍ଣ୍ଣମେଣ୍ଟଙ୍କୁ ବେସରକାରୀ ଭାବରେ ସୁପାରିସ୍ କଲେ ଯେ ଏପରି ଅନନ୍ୟସାଧାରଣ ଗବେଷଣାପୂର୍ଣ୍ଣ ଗ୍ରନ୍ଥର ରିଭିଜନ୍ ଓ ମୁଦ୍ରଣରେ ଗଭର୍ଣ୍ଣମେଣ୍ଟଙ୍କର ମୁକ୍ତହସ୍ତତା ସହିତ ସାହାଯ୍ୟ କରିବା ବିଧେୟ । ସାହେବ ମହୋଦୟ ମଧ ପ୍ରକାଶକଲେ ଯେ, ଛାପା ହେଲେ ଏ ଗ୍ରନ୍ଥ କେବଳମାତ୍ର ଉତ୍କଳର ବିଦ୍ୱନ୍ମଣ୍ଡଳୀ ଓ ରାଜନ୍ୟମଣ୍ଡଳୀରେ ନୁହେ ସମଗ୍ର ଭାରତରେ ଓ ସମଗ୍ର ପାଶ୍ଚାତ୍ୟ ବିଦ୍ୱଜ୍ଜନମଣ୍ଡଳୀରେ ସାଦର ସମ୍ଭାଷଣ ଲାଭ କରିବାକୁ ସମର୍ଥ ହେବ । ବିହାର ଗଭର୍ଣ୍ଣମେଣ୍ଟଙ୍କ ଅର୍ଥସଦସ୍ୟ ମାନ୍ୟବର କନିକା ରାଜାସାହେବ ୧୯୨୯ ଅକ୍ଟୋବର ମାସରେ କଟକରେ ବିରାଜମାନ ହୋଇଥିବା ସମୟରେ ପାଣ୍ଡୁଲିପି ଦେଖିବାକୁ ଆସିଲେ । ଗଭର୍ଣ୍ଣମେଣ୍ଟଙ୍କ ଉପଦେଶକ୍ରମେ ଓଡ଼ିଶା ବିଭାଗର ତଦାନୀନ୍ତନ ଏକ୍ଟିଙ୍ଗ୍ କମିଶନର୍ ଶ୍ରୀଯୁକ୍ତ ପେକ୍ ସାହେବ ୧୯୨୯ ଡିସେମ୍ବରରେ ମୁଦ୍ରଣର ବିସ୍ତାରିତ ଓ ସଂଶୋଧିତ ଏଷ୍ଟିମେଟ୍ ଗଭର୍ଣ୍ଣମେଣ୍ଟଙ୍କୁ ସରକାରୀ ରିପୋର୍ଟଦ୍ୱାରା ଜଣାଇଲେ । ଉକ୍ତ ରିପୋର୍ଟ ମାନ୍ୟବର ଅର୍ଥସଦସ୍ୟଙ୍କଦ୍ୱାରା ଅନୁମୋଦିତ ହୋଇ ଗଭର୍ଣ୍ଣମେଣ୍ଟଙ୍କ ଛାମୁରେ ଉପସ୍ଥାପିତ ହେଲା ଏବଂ ଦୟାପର ବିହାର-ଗଭର୍ଣ୍ଣମେଣ୍ଟ ୩୦।୧।୩୦ର ଆଦେଶ ପତ୍ରଦ୍ୱାରା ୧୦୦୦ ଖଣ୍ଡ ଗ୍ରନ୍ଥ ଛାପିବାପାଇଁ ମୋତେ ଆଦେଶ ଦେଲେ ଓ ମୁଦ୍ରଣର ଅର୍ଦ୍ଧେକ ଖରଚ (ଅର୍ଥାତ୍ ୧୪୨୦୦ଟଙ୍କା) ସାହାଯ୍ୟ କରିବାପାଇଁ ଅଙ୍ଗୀକାର କଲେ ଏବଂ ରିଭିଜନର ବ୍ୟୟ ଚଳାଇବାପାଇଁ ସଙ୍ଗେସଙ୍ଗେ ମୋତେ ୫୦୦୦ଟଙ୍କା ଦିଆଯିବାର ହୁକୁମ କଲେ; ଆହୁରି ମଧ ଅର୍ଦ୍ଧ ମୂଲ୍ୟ ଅର୍ଥାତ୍ ୨୦ଟଙ୍କା ସେଟ୍ ଛାପା ଗ୍ରନ୍ଥ ଗଭର୍ଣ୍ଣମେଣ୍ଟଙ୍କୁ ବିକ୍ରୟ କରିବାପାଇଁ ଗଭର୍ଣ୍ଣମେଣ୍ଟ ମୋଠାରୁ ଏଗ୍ରିମେଣ୍ଟ ରେଜିଷ୍ଟରୀ କରାଇନେଲେ । ଗଭର୍ଣ୍ଣମେଣ୍ଟଙ୍କର ଉକ୍ତ ଇଂରାଜୀ ଆଦେଶପତ୍ରର ପ୍ରତିଲିପି 'B' ଚିହ୍ନିତ ହୋଇ ଏଥିସଙ୍ଗେ ଦିଆଗଲା ।

ଗଭର୍ଣ୍ଣମେଣ୍ଟଙ୍କ ଆଦେଶ ପାଇଲା ପରେ, ଗଡ଼ଜାତସମୂହର ପୋଲିଟିକାଲ୍ ଏଜେଣ୍ଟ୍ ଓ କମିସନର୍ ଶ୍ରୀଯୁକ୍ତ ଷ୍କଟ୍ ସାହେବଙ୍କ ନିକଟରେ ମୁଁ ଗଭର୍ଣ୍ଣମେଣ୍ଟଙ୍କ ଆଦେଶପତ୍ର, ଖଣ୍ଡିଏ ଛାପାନମୁନା ଓ ପାଣ୍ଡୁଲିପି ପରୀକ୍ଷକମାନଙ୍କ ମତ ଉପସ୍ଥାପିତ କଲି । ଗୁଣଗ୍ରାହୀ ଷ୍କଟ୍ ସାହେବ ମହୋଦୟ ସମସ୍ତ ବିବରଣ ଅବଗତ ହୋଇ ଆଦେଶ ଦେଲେ ଯେ, ସରକାରଙ୍କ ସାକ୍ଷାଦ୍ ଶାସନାଧୀନ ସାତଟି ଗଡ଼ଜାତ ଷ୍ଟେଟ୍ ପ୍ରତ୍ୟେକେ ଅଗ୍ରିମ ୬୦ଟଙ୍କା ଦେଇ ଦୁଇସେଟ୍ ଗ୍ରନ୍ଥ ନିମନ୍ତେ ଆଗତୁରା ଗ୍ରାହକ ଶ୍ରେଣୀଭୁକ୍ତ ହେବେ । ରୁଲିଙ୍ଗ୍‌ଚିଫ୍‌ମାନେ ଏ ବିରାଟ ଉଦ୍ୟମର ନିଶ୍ଚେ ପୃଷ୍ଠପୋଷକ ହେବେ ବୋଲି ତାଙ୍କର ସମ୍ପୂର୍ଣ୍ଣ ଆସ୍ଥା ଥିବାର ଶ୍ରୀଯୁକ୍ତ ଷ୍କଟ୍ ସାହେବ ପ୍ରକାଶକଲେ । ସାହେବ ମହୋଦୟଙ୍କ ପ୍ରେରିତ ଇଂରାଜୀ ଚିଠିର ପ୍ରତିଲିପି ଏଥିସଙ୍ଗେ 'C' ଚିହ୍ନିତ ହୋଇ ଦିଆଗଲା ।

ଏ ଗ୍ରନ୍ଥ ଦୁଇ ଭାଗଯାକ ଛାପିବାପାଇଁ ୧୦୦୦ ଖଣ୍ଡକୁ ୨୮୪୦୦ଟଙ୍କା ଲାଗିବ ଓ ଏ ଦୁଇ ଭାଗଯାକ ଛାପା ହେଲେ ସାରେ ଗ୍ରନ୍ଥ ୪୦ଟଙ୍କା ଲେଖାଏଁ ନଗଦ ମୂଲ୍ୟରେ ବଜାରରେ ବିକ୍ରି କରାଯିବ, କିନ୍ତୁ ଯେଉଁମାନେ ଆଗତୁରା ଅର୍ଡର ଦେଇ ମୁଦ୍ରଣରେ ସହାୟ ହେବେ ସେମାନଙ୍କପାଇଁ ଭିନ୍ନ ଭିନ୍ନ ଅବସ୍ଥାଦୃଷ୍ଟିରେ ନିମ୍ନୋକ୍ତମତେ ମୂଲ୍ୟ କମାଇ ଦିଆଯାଇଅଛି । ଆଜିପର୍ଯ୍ୟନ୍ତ ଗଭର୍ଣ୍ଣମେଣ୍ଟଙ୍କଠାରୁ ଓ ଅନ୍ୟ ଗ୍ରାହକମାନଙ୍କଠାରୁ ୩୪୦ ଖଣ୍ଡ ବହିପାଇଁ ଆଗତୁରା ଅର୍ଡ଼ର୍ ମିଳିଛି ଓ ୧୪ ସେଟ୍ ଗ୍ରନ୍ଥର ଅଗ୍ରିମ ମୂଲ୍ୟ ୪୨୦ଟଙ୍କା ମୋର ହସ୍ତଗତ ହୋଇଅଛି । ଗ୍ରନ୍ଥ ଦୁଇଭାଗର ଛାପା ଖରଚ ୨୮୪୦୦ଟଙ୍କା ମଧ୍ୟରୁ ଗଭର୍ଣ୍ଣମେଣ୍ଟ ମଞ୍ଜୁର କରିଥିବା ୧୪୨୦୦ଟଙ୍କା ବାଦ୍ ବାକି ୯୪୨୦୦ଟଙ୍କା ଉଠାଇବାପାଇଁ ଏ ଅନୁଷ୍ଠାନପତ୍ର ଉତ୍କଳର, ଭାରତର ଓ ସଭ୍ୟ ଜଗତର ସାହିତ୍ୟାନୁରାଗୀ ଦାନଶୀଳ ଉଦାରମନା ବ୍ୟକ୍ତିମାନଙ୍କ ଛାମୁରେ ଉପସ୍ଥାପିତ କରୁଅଛି । ଏଥିସଙ୍ଗେ 'A' ଚହ୍ନିତ ଛାପାନମୁନା, 'B' ଚିହ୍ନିତ ଗଭର୍ଣ୍ଣମେଣ୍ଟଙ୍କ ଚିଠି, 'C' ଚିହ୍ନିତ ପୋଲିଟିକାଲ୍ ଏଜେଣ୍ଟ୍ ଓ କମିସନରଙ୍କ ଚିଠି ଓ ଇଂରାଜୀ ଏବଂ ଓଡ଼ିଆ 'D' ଚିହ୍ନିତ ଅର୍ଡର୍ ଫାରମ୍ ପଠାଇଲି । ଆଶାକରେ ଯେ, ନିମ୍ନୋକ୍ତ ପ୍ରସ୍ତାବମାନଙ୍କ ମଧ୍ୟରୁ ଯେଉଁ ଗ୍ରାହକଙ୍କର ମନକୁ ଓ ଧନକୁ ଯେଉଁ ପ୍ରସ୍ତାବ ପାଇବ, ସେ ସେହି ପ୍ରସ୍ତାବ ଅନୁସାରେ ଇଂରେଜୀରେ ବା ଓଡ଼ିଆରେ ଏଥିସଙ୍ଗେ ଥିବା ଅର୍ଡର ଫାରମ୍ ପୂରଣ କରିବେ ଓ ଅର୍ଡର୍ ଫାରମ୍ ସଙ୍ଗେ ଅଗ୍ରିମ ଦେୟ ଟଙ୍କା ପ୍ରେରଣ କରି ଏ ଗ୍ରନ୍ଥର ଶୀଘ୍ର ଛାପା ବିଷୟରେ ମୋତେ ସାହାଯ୍ୟ ଓ ଉତ୍ସାହ ଦେବେ । ମୋର ପ୍ରସ୍ତାବମାନ ଏହି –

## ପ୍ରଥମ ଶ୍ରେଣୀ ସାହାଯ୍ୟରୂପରେ ବିଶିଷ୍ଟ ଦାନ

ଏ ଗ୍ରନ୍ଥର ମୁଦ୍ରଣ ବ୍ୟୟପାଇଁ ଦାତା ବର୍ତ୍ତମାନ ଏକକାଳୀନ ଦାନ ଦେଇପାରିବେ ।

(ଦ୍ରଷ୍ଟବ୍ୟ – ଯେଉଁ ବ୍ୟକ୍ତି ୫୦୦ଟଙ୍କା ବା ତଦୂର୍ଦ୍ଧ୍ୱ ପରିମାଣ ଅର୍ଥ ଏକକାଳୀନ ଦାନ କରିବେ ତାଙ୍କ ନାମ ଓ ଦତ୍ତ ଧନର ପରିମାଣ ଭୂମିକାରେ କୃତଜ୍ଞତା ସହକାରେ ଲେଖାଯିବା ଏବଂ ଗ୍ରନ୍ଥର ପ୍ରଥମ କ୍ରୋଡ଼ ପୃଷ୍ଠା (front page) ରେ ପୃଷ୍ଠପୋଷକ (patron) ମାନଙ୍କ ତାଲିକାରେ ତାଙ୍କ ନାମ ଅଙ୍କିତ ହେବ । ୫୦୦ଟଙ୍କା ବା ତଦୂର୍ଦ୍ଧ୍ୱ ଅର୍ଥ ଦାନକରିବା ବ୍ୟକ୍ତିଙ୍କୁ ଛାପାଗ୍ରନ୍ଥ ଦୁଇସାର ଉପହାର ଦିଆଯିବ ।)

## ଦ୍ୱିତୀୟ ଶ୍ରେଣୀ

ବର୍ତ୍ତମାନ ସମଗ୍ର ମୂଲ୍ୟ ଅଗ୍ରିମ ଦେବା ଗ୍ରାହକଙ୍କପାଇଁ ମୂଲ୍ୟ ୩୦ଟଙ୍କା ।

ଏକସାର ଛାପା ଗ୍ରନ୍ଥପାଇଁ ଯେଉଁ ବ୍ୟକ୍ତି ବର୍ତ୍ତମାନ ଅଗ୍ରିମ ୩୦ଟଙ୍କା ଦେବେ ତାକୁ ବନ୍ଧା ଗ୍ରନ୍ଥ ଦୁଇ ଭାଗପାଇଁ ୩୦ଟଙ୍କା ମୂଲ୍ୟରେ ଆଗତୁରା ଗ୍ରାହକ ଶ୍ରେଣୀଭୁକ୍ତ କରାଯିବ । ଗ୍ରନ୍ଥ ଛାପା ହେଲେ ଦୁଇ ଭାଗ ବନ୍ଧାବହି ଉକ୍ତ ଗ୍ରାହକଙ୍କ ନିକଟକୁ ଡାକରେ ବା ରେଳରେ ପଠାଯିବ ଓ ପଠାଯିବାର ଆନୁଷଙ୍ଗିକ ଖରଚ ମାତ୍ର ତାଙ୍କଠାରୁ ଭି.ପି.ଦ୍ୱାରା ଆଦାୟ କରାଯିବ ।

## ତୃତୀୟ ଶ୍ରେଣୀ

ବର୍ତ୍ତମାନ ଅଗ୍ରିମ ୧୦ଟଙ୍କା ଡିପୋଜିଟ୍ କରିବା ଗ୍ରାହକଙ୍କପାଇଁ ମୂଲ୍ୟ ୩୫ଟଙ୍କା ।

ଏକସାର ଗ୍ରନ୍ଥପାଇଁ ଯେଉଁ ବ୍ୟକ୍ତି ବର୍ତ୍ତମାନ ଅଗ୍ରିମ ୧୦ଟଙ୍କା ଡିପୋଜିଟ୍ କରିବେ ତାଙ୍କୁ ବନ୍ଧାଗ୍ରନ୍ଥ ଦୁଇ ଭାଗପାଇଁ ୩୦ଟଙ୍କା ମୂଲ୍ୟରେ ଆଗତୁରା ଗ୍ରାହକ ଶ୍ରେଣୀଭୁକ୍ତ କରାଯିବ ।

ଗ୍ରନ୍ଥ ଛାପାହେଲେ ଦୁଇ ଭାଗ ବନ୍ଧା ବହି ଉକ୍ତ ଗ୍ରାହକଙ୍କ ନିକଟ ଡାକରେ ବା ରେଲରେ ପଠାଯାଇ ଗ୍ରନ୍ଥର ବାକି ମୂଲ୍ୟ ୨୫ଟଙ୍କା ଓ ପଠାଯିବାର ଆନୁଷଙ୍ଗିକ ଖରଚ ତାଙ୍କଠାରୁ ଭି.ପି.ଦ୍ୱାରା ଆଦାୟ କରାଯିବ ।

## ଚତୁର୍ଥ ଶ୍ରେଣୀ

ବର୍ତ୍ତମାନ ଅଗ୍ରିମ ୮ଟଙ୍କା ଡିପୋଜିଟ୍ କରିବା ଗ୍ରାହକଙ୍କପାଇଁ ଆଠଭାଗ ଅବନ୍ଧା ବହିର ମୂଲ୍ୟ ୩୨ଟଙ୍କା ।

ଏକସାର ଛାପା ଗ୍ରନ୍ଥପାଇଁ ଯେଉଁ ବ୍ୟକ୍ତି ବର୍ତ୍ତମାନ ଅଗ୍ରିମ ୮ଟଙ୍କା ଡିପୋଜିଟ କରିବେ ଆଠଖଣ୍ଡ ଅବନ୍ଧା ଭାଗରେ ବିଭକ୍ତ ଗ୍ରନ୍ଥ ପାଇଁ ତାଙ୍କୁ ୩୨ଟଙ୍କା ମୂଲ୍ୟରେ ଆଗତୁରା ଗ୍ରାହକ ଶ୍ରେଣୀଭୁକ୍ତ କରାଯିବ । ତାଙ୍କ ନିକଟକୁ ପ୍ରଥମ ଛଅ ଭାଗ ଡାକରେ ବା ରେଲରେ ପଠାଯାଇ ତାଙ୍କଠାରୁ ପ୍ରତି ଭାଗ ପାଇଁ ୫ଟଙ୍କା ଓ ଖରଚ ଭି. ପି. ଦ୍ୱାରା ଆଦାୟ ହେଉଥିବ ଓ ଶେଷ ଦୁଇ ଭାଗର ମୂଲ୍ୟରେ ସେ ବର୍ତ୍ତମାନ ଡିପୋଜିଟ କରୁଥିବା ୮ଟଙ୍କା ମଯୁରା ଦିଆଯାଇ କେବଳ ପଠାଯିବା ଖରଚା ତାଙ୍କଠାରୁ ଭି. ପି. ଦ୍ୱାରା ଆଦାୟ କରାଯିବ ।

## ପଞ୍ଚମ ଶ୍ରେଣୀ

ଅର୍ଥାଭାବଯୋଗୁଁ ଥରକେ ୨ଟଙ୍କାରୁ ବେଶି ଦେବାକୁ ଅକ୍ଷମ ଥାଇ ବର୍ତ୍ତମାନ ଅଗ୍ରିମ ୨ଟଙ୍କା ଡିପୋଜିଟ୍ କରିବା ଗ୍ରାହକଙ୍କପାଇଁ ଦୁଇ ଭାଗ ବନ୍ଧା ବହିର ମୂଲ୍ୟ ୩୬ ଟଙ୍କା

ଏକସାର ଛାପାଗ୍ରନ୍ଥପାଇଁ ଯେଉଁ ବ୍ୟକ୍ତି ବର୍ତ୍ତମାନ ଅଗ୍ରିମ ୨ଟଙ୍କା ଡିପୋଜିଟ୍ କରିବେ ତାଙ୍କୁ ବନ୍ଧାଗ୍ରନ୍ଥ ୨ ଭାଗ ପାଇଁ ୩୬ଟଙ୍କା ମୂଲ୍ୟରେ ଆଗତୁରା ଗ୍ରାହକ ଶ୍ରେଣୀଭୁକ୍ତ କରାଯିବ, ସେ ଏଣିକି ପ୍ରତି ମାସରେ ବା ସମୟକ୍ରମେ ୨ଟଙ୍କା ବା ତଦୂର୍ଦ୍ଧ୍ୱ ଟଙ୍କା ମୋ ନିକଟ ଡିପୋଜିଟ୍ କରୁଥିବେ, ଯେମନ୍ତ ବି ପ୍ରଥମ ଡିପୋଜିଟ୍ ତାରିଖରୁ ତିନି ବର୍ଷ ମଧ୍ୟରେ ପ୍ରତି ସାର ପାଇଁ ଧାର୍ଯ୍ୟ ମୂଲ୍ୟ ୩୬ଟଙ୍କା ପୂରଣ ହୋଇଯିବ । ଗ୍ରନ୍ଥ ଛାପା ସରିବା ପରେ ଓ ତାଙ୍କର ଦେୟ ୩୬ଟଙ୍କା ପୂର୍ଣ୍ଣ ହୋଇଗଲା ମାତ୍ରେ ତାଙ୍କ ନିକଟ ଦୁଇ ଭାଗ ବନ୍ଧା ବହି ପଠାଯାଇ ତାଙ୍କଠାରୁ କେବଳ ମାତ୍ର ଖରଚା ଭି. ପି. ଦ୍ୱାରା ଆଦାୟ କରାଯିବ ।

(ମନିଅର୍ଡର ଖରଚା କମିଲାଗିବାପାଇଁ ଏହି ଶ୍ରେଣୀର ଏକାଧିକ ଗ୍ରାହକ ତାଙ୍କର କିସ୍ତିରେ ଦେୟ ଟଙ୍କା ଏକତ୍ର ପଠାଇ ପାରିବେ ।)

## ସପ୍ତମ ଶ୍ରେଣୀ

ବର୍ତ୍ତମାନ ସମଗ୍ର ମୂଲ୍ୟ ଅଗ୍ରିମ ଦେବା ସାଧାରଣ ସଭା ଲାଇବ୍ରେରୀପାଇଁ ଦୁଇ ଭାଗ ବନ୍ଧା ବହିର ମୂଲ୍ୟ ୨୮ଟଙ୍କା ।

ଯେବେ ଦୁଇଜଣ ସ୍ଥାନୀୟ ବିଶିଷ୍ଟ ବ୍ୟକ୍ତି (ଯଥା, ଗେଜେଟେଡ୍ ଅଫିସର୍, ମାଜିଷ୍ଟ୍ରେଟ୍, ଗଭର୍ଣ୍ଣମେଣ୍ଟଙ୍କଦ୍ୱାରା ଉପାଧିପ୍ରାପ୍ତ ବା ଚିହ୍ନିତ ବ୍ୟକ୍ତି)ଙ୍କ ସୁପାରିସ୍ ଦସ୍ତଖତ ସହିତ କୌଣସି ଧର୍ମ, ସାହିତ୍ୟ, ବା ଦାତବ୍ୟ ସଭା ପକ୍ଷରୁ ଭାରପ୍ରାପ୍ତ କର୍ମୀ ଏକ ସାର ଛାପାଗ୍ରନ୍ଥପାଇଁ ୨୮ଟଙ୍କା ୧୯୩୦ ଡିସେମ୍ବର ମାସ ମଧ୍ୟରେ ପଠାଇବେ, ତେବେ ତାଙ୍କୁ ବନ୍ଧାଗ୍ରନ୍ଥ ଦୁଇ ଭାଗ ପାଇଁ ୨୮ଟଙ୍କା ମୂଲ୍ୟରେ ଆଗତୁରା ଗ୍ରାହକ ଶ୍ରେଣୀଭୁକ୍ତ କରାଯିବ । ଗ୍ରନ୍ଥ ଛାପା ହେଲେ ଦୁଇ ଭାଗ ବନ୍ଧା ବହୁ ଉକ୍ତ ବ୍ୟକ୍ତିଙ୍କ ନିକଟରୁ ଡାକରେ ବା ରେଲରେ ପଠାଯିବ ଓ ପଠାଯିବାର ଆନୁଷଙ୍ଗିକ ଖରଚ ମାତ୍ର ତାଙ୍କଠାରୁ ଭି. ପି. ଦ୍ୱାରା ଆଦାୟ କରାଯିବ ।

## ଅଷ୍ଟମ ଶ୍ରେଣୀ

ଯେଉଁ ବ୍ୟକ୍ତି ଉପରେ ନିର୍ଦ୍ଦିଷ୍ଟ କୌଣସି ଶ୍ରେଣୀର ଆଗତୁରା ଗ୍ରାହକଙ୍କଠାରୁ ସାର ଗ୍ରନ୍ଥ ପାଇଁ ଅର୍ଡର ସଂଗ୍ରହ କରି ପଠାଇବେ ତାଙ୍କପ୍ରତି ବାର ସାର ପାଇଁ ଏକ ସାର ଗ୍ରନ୍ଥ ଉପହାର ଦିଆଯିବ । ତାଙ୍କଦ୍ୱାରା ସଂଗୃହୀତ ଗ୍ରାହକମାନଙ୍କ ନିକଟକୁ ଯେଉଁ ସମୟରେ ଓ ଯେଉଁ ରୀତିରେ ଗ୍ରନ୍ଥ ପଠାଯାଉଥିବ ତାହାଙ୍କ ନିକଟକୁ ମଧ ସେହି ସମୟରେ ସେହି ରୀତିରେ ଉପହାର ଗ୍ରନ୍ଥ ପଠାଯାଇ କେବଳ ଆନୁଷଙ୍ଗିକ ଖରଚା ତାଙ୍କଠାରୁ ଭି. ପି. ଦ୍ୱାରା ଆଦାୟ କରାଯିବ ।

ଏଥି ସଙ୍ଗେ ଓଡ଼ିଆ ଓ ଇଂରାଜୀରେ ଅର୍ଡ଼ର୍ ଫାରମ୍ 'D' ଚିହ୍ନିତ ହୋଇ ପଠାଗଲା । ଉପରେ ନିର୍ଦ୍ଦିଷ୍ଟ ପ୍ରଥମଠାରୁ ସପ୍ତମ ଶ୍ରେଣୀର ପ୍ରସ୍ତାବ ମଧ୍ୟରୁ ଏ ଗ୍ରନ୍ଥର ପୃଷ୍ଠପୋଷକ ବା ଆଗତୁରା ଗ୍ରାହକଙ୍କର ଯେଉଁ ଶ୍ରେଣୀର ପ୍ରସ୍ତାବ ମନୋନୀତ ହେବ, ସେ ସେହି ଶ୍ରେଣୀର ଅର୍ଡ଼ର୍ ଫାରମରେ ବିବରଣମାନ ପୂରଣ କରିବେ ଓ ଅନ୍ୟ ଶ୍ରେଣୀର ବିବରଣ ଲେଖାଥିବା ଅଂଶମାନ ବିକିଦେବେ; ଏବଂ ଦୁଇ ଜଣ ସାକ୍ଷୀଙ୍କ ସହିତ ଓଡ଼ିଆ କିମ୍ବା ଇଂରାଜୀ ଅର୍ଡର ଫାରମରେ ସନ୍ତକ କରି ଦେୟ ଟଙ୍କା ଓ ପୂରଣ ହୋଇଥିବା ଫାରମ୍ କାଗଜ ଖଣ୍ଡି ମୋ ନିକଟକୁ ପଠାଇବେ । ଅଷ୍ଟମ ପ୍ରସ୍ତାବ ଅନୁସାରେ ଯେଉଁ ବ୍ୟକ୍ତି ଯେଉଁ ଯେଉଁ ଗ୍ରାହକଙ୍କଠାରୁ ଆଗତୁରା ଅର୍ଡର୍ ସଂଗ୍ରହକରିବେ, ସେ ଉକ୍ତ ଗ୍ରାହକଙ୍କ ଅର୍ଡର୍ ଫାରମରେ ସାକ୍ଷୀମାନଙ୍କ ସନ୍ତକ ମତେ ନିର୍ଦ୍ଦିଷ୍ଟ ସ୍ଥାନରେ ସନ୍ତକ କରି ତାଙ୍କ ନାମ, ଧାମ ପୂରଣକରି ପଠାଇବେ ।

ଏ ଗ୍ରନ୍ଥ ୧୦୦୦ ଖଣ୍ଡର ଛାପା ଖରଚ ୨୮୪୦୦ଟଙ୍କା ଲାଗିବ, ଏଥିରୁ ବିହାର ଓଡ଼ିଶା ଗଭର୍ଣ୍ଣମେଣ୍ଟ ଅଧେ ଦେବେ; ବାକି ଅଧକ (୧୪୨୦୦ଟଙ୍କା) ଉପରେ ପ୍ରସ୍ତାବିତ

ବିଭିନ୍ନ ଶ୍ରେଣୀର ପୃଷ୍ଠପୋଷକ ଓ ଗ୍ରାହକମାନଙ୍କଠାରୁ ନ ଉଠିଲେ ବା.ଉଠିବାର ଅର୍ଡର ନ ମିଳିଲେ ପାଣ୍ଡୁଲିପିମାନ ଛାପାଖାନାକୁ ଦିଆଯାଇପାରିବ ନାହିଁ ।

ରିଭିଜନ କର୍ମ ବର୍ତ୍ତମାନ ମୁଁ ଓ ମୋର ସାତ ଜଣ ସହକର୍ମୀ କ୍ଷିପ୍ରତା ସହକାରେ ଧାରାବାହିକରୂପେ ଚଳାଉଅଛି ଓ ଆବଶ୍ୟକ ଧନର ସଂସ୍ଥାନ ହେଲେ ୧୯୩୦ ଅଗଷ୍ଟ ସରିକି ସୁବର୍ଣ୍ଣ ଅଂଶ ରିଭିଜନ୍ ପରେ ସାଫିହୋଇ ଛାପାଖାନାକୁ ଦିଆଯିବ । ତେଣେ ଛାପାଖାନାରେ ଛାପା ଓ ପ୍ରୁଫ୍ ସଂଶୋଧନ କର୍ମ ଚାଲିଥିବ, ଏଣେ ମୋ ଅଫିସ୍‌ରେ ପାଣ୍ଡୁଲିପିର ବାକି ଅଂଶମାନଙ୍କର ରିଭିଜନ୍ ଓ ସାଫି ଲେଖା ଚାଲିଥିବ । ଏହିପରି କ୍ଷିପ୍ରଗତିରେ କାର୍ଯ୍ୟ ଚଳିଲେ, ଆଶା ହେଉଅଛି ଯେ, ଦୁଇ ବର୍ଷ ସରିକି ସମଗ୍ର ଗ୍ରନ୍ଥ ଛାପା ହୋଇ ସାଧାରଣଙ୍କ ହସ୍ତଗତହେବ ।

ଏ ପ୍ରକାଣ୍ଡ ବ୍ୟାପାର ଆୟୋଜନପାଇଁ ଉତ୍କଳ ସାହିତ୍ୟ ପ୍ରେସର ମାଲିକଙ୍କୁ ଆଗରୁ ଇଂରାଜୀ, ବଙ୍ଗଳା, ଦେବନାଗରୀ ଭାଷାର ନୂଆ ଟାଇପ୍ ଓ ଓଡ଼ିଆ ଭାଷାର ତିନି ଜାତିର ଟାଇପ୍ ବରାଦ ଦେଇ ଅଣାଇବାକୁ ହେବ, ସ୍ୱତନ୍ତ୍ର କର୍ମଚାରୀ ନିଯୁକ୍ତ କରିବାକୁ ପଡ଼ିବ ଓ ଖାସ୍ ଗୋଟିଏ କଳକୁ ଏଥିପାଇଁ ପ୍ରସ୍ତୁତ ରଖିବାକୁ ପଡ଼ିବ । ଏହି ଛାପା କାର୍ଯ୍ୟପାଇଁ ଶ୍ରୀଯୁକ୍ତ ବିଶ୍ୱନାଥ କର ଇତିମଧ୍ୟରେ ଗୋଟିଏ ବଡ଼ ପ୍ରିଣ୍ଟିଙ୍ଗ୍ ପ୍ରେସ୍ ଅଣାଇ ବସାଇ ସାରିଲେଣି । ଅତଏବ ୧୯୩୦ ଅଗଷ୍ଟ ସରିକି ପାଣ୍ଡୁଲିପିର ପ୍ରଥମ ଅଂଶ ସହିତ ୧୪୨୦୦ଟଙ୍କା ନଗଦ ନ ପାଇଲେ ଏ ଦୁରୂହ ଛାପା କର୍ମରେ ହସ୍ତକ୍ଷେପ କରିବାକୁ ସେ ସାହସ କରିବେ ନାହିଁ ।

ଓଡ଼ିଆଭାଷାର ସମ୍ପଦ ଓ ଉତ୍କଳ ସାହିତ୍ୟର ଭଣ୍ଡାରରେ ଥିବା ଅମୂଲ୍ୟ ରତ୍ନକୁ ଭାରତ ଓ ସଭ୍ୟ ଜଗତ ଆଗରେ କେହି ଦେଖାଇବାକୁ ନ ଥିବାରୁ ଆଜି ଓଡ଼ିଆ ଭାଷା ଅନ୍ୟ ଜାତିମାନଙ୍କ ନିକଟରେ ଅବହେଳିତ । ପ୍ରଭୁଙ୍କ ଦୟାରୁ ଓ ଉତ୍କଳର ସାହିତ୍ୟାନୁରାଗୀ ଗ୍ରାହକମାନଙ୍କ ବଦାନ୍ୟତାରୁ ଏ ଭାଷାକୋଷ ପ୍ରକାଶିତ ହେଲେ ଓଡ଼ିଆ ଭାଷାର ଆକାର ପ୍ରକାର ଦେଖି ସଭ୍ୟଜଗତ ବିମୋହିତ ହେବେ ବୋଲି ମୁଁ ଆଶାର ସ୍ୱପ୍ନ ଦେଖୁଛି । ପ୍ରଭୁ ଉତ୍କଳର ଧନକୁବେର ଓ ଲକ୍ଷ୍ମୀପୁତ୍ରମାନଙ୍କ କଣ୍ଠରେ ବିଜେକରି ସେମାନଙ୍କୁ ଏ ବିରାଟ ଯଜ୍ଞର ଯଜମାନରୂପେ ଉପସ୍ଥାପିତ କରି ମାତୃଭାଷାର ଟେକ ବଢ଼ାନ୍ତୁ ।

ଅନ୍ୟାନ୍ୟ ଦେଶର ସାହିତ୍ୟିକ ସଭାସମିତି, ଗଭର୍ଣ୍ଣମେଣ୍ଟ ଓ ସାହିତ୍ୟାନୁରାଗୀ ଧନପତିମାନଙ୍କଦ୍ୱାରା ପୋଷା ଶତକର୍ମୀ ଓ ପଣ୍ଡିତଲାଗି କୋଡ଼ିଏ ତିରିଶ ବର୍ଷର ପରିଶ୍ରମ ଓ ଲକ୍ଷ ଲକ୍ଷ ଟଙ୍କା ଅକାତରରେ ବ୍ୟୟକରିବା ଫଳରେ ଇଂରାଜୀ, ବଙ୍ଗଳା, ହିନ୍ଦୀ, ତେଲୁଗୁ ଆଦି ଭାଷାର ଭାଷାକୋଷମାନ ସଂକଳିତ ହୋଇଅଛି ଓ ହେଉଅଛି । ସ୍ୱର୍ଗୀୟ ରାଜା ରାଧାକାନ୍ତଦେବଙ୍କ ବଙ୍ଗଳା ସମର୍ଥ କୋଷ, କାଶୀ ନାଗରୀ ପ୍ରଚାରିଣୀ ସଭା ଦ୍ୱାରା ପ୍ରକାଶିତ ହିନ୍ଦୀ ଶବ୍ଦସାଗର ଓ ପିଠାପୁର ମହାରାଜାଙ୍କ ସଙ୍କଳିତ ତେଲୁଗୁ ଶବ୍ଦକୋଷ

ଏ ଉଦ୍ୟମରେ ଜ୍ୱଳନ୍ତ ଉଦାହରଣ; କିନ୍ତୁ କେଉଁଠାରେ ଚାରିଗୋଟି ଭାଷା ସମ୍ବଳିତ ଅଭିଧାନପାଇଁ ଉଦ୍ୟମ ହୋଇଥିବାର ମତେ ଜଣା ନାହିଁ । ଏପରି ଦୁରୂହ, ବହୁଧନସାଧ୍ୟ, ବହୁ ଶକ୍ତି ଓ ତପସ୍ୟା ସାଧ୍ୟ କର୍ମରେ ମୋଭଳି ଜଣେ ନଗଣ୍ୟ, ସ୍ୱଳ୍ପଶକ୍ତି, ନିର୍ଦ୍ଧନ, ଅପଣ୍ଡିତ ଓ ଅସାଧକ ବ୍ୟକ୍ତି ହସ୍ତକ୍ଷେପ କରି, ତାହା ଆଣି ମଜଲି ମୁଣ୍ଡରେ ପହଞ୍ଚାଇ ପାରିଅଛି, ଏହା ସେହି ଅଚିନ୍ତ୍ୟଶକ୍ତି ପ୍ରଭୁ ପରାତ୍ପରଙ୍କ ପ୍ରେରଣା ଓ କରୁଣାର ଫଳ । ପାଣ୍ଡୁଲିପିମାନ ଯେ ଥରେ କଷ୍ଟ ସ୍ୱୀକାରକରି ପରୀକ୍ଷା କରିଅଛନ୍ତି ତାଙ୍କ ମୁହଁରୁ ଭୂୟସୀ ପ୍ରଶଂସା ଓ ଉତ୍ସାହବାଣୀ ଶୁଣି ମୁଁ କୃତାର୍ଥ ହୋଇଅଛି । ମୁଁ ଗତ ପନ୍ଦର ବରଷ ମଧ୍ୟରେ ପ୍ରଭୁଙ୍କର ଅପାର କରୁଣାର ଭୂରି ଭୂରି ପ୍ରମାଣ ଉପଲବ୍ଧି କରି ସ୍ତବ୍ଧ ଓ ଚିତ୍ରାର୍ପିତା ହୋଇଅଛି । ବର୍ତ୍ତମାନ ଏତେ ଦୂର ଅଗ୍ରସର ହେବା ପରେ ଏହାକୁ ଛାପାଖାନାରେ ଅର୍ପଣ କରିବାପାଇଁ ସେହି ପ୍ରଭୁ ଗଭର୍ଣ୍ଣମେଣ୍ଟଙ୍କ କଣ୍ଠରେ ବିଜେକରି ସମ୍ବଳର ଅର୍ଦ୍ଧେକ ସଂସ୍ଥାନ କରିଅଛନ୍ତି । ବାକି ଅଧେ ସାହାଯ୍ୟ କରିବାପାଇଁ ସାହିତ୍ୟାନୁରାଗୀ ବିଦ୍ୟୋତ୍ସାହୀମାନଙ୍କୁ ଓ ବିଶେଷତଃ ଉତ୍କଳର ବରପୁତ୍ରମାନଙ୍କୁ ମୁଁ ବିନୀତ ଭାବରେ ଆହ୍ୱାନ କରୁଅଛି । ମୁଁ ଆଶାକରେ କୁଟୀରବାସୀଠାରୁ ରାଜା ମହାରାଜା ପର୍ଯ୍ୟନ୍ତ ଆବାଳବୃଦ୍ଧବନିତା ଏଥିରେ ସହାନୁଭୂତି ଓ ଆଗ୍ରହ ଦେଖାଇ ମୋତେ ଉତ୍ସାହିତ କରିବେ । ଇତି ।

ମଇ ମାସ ୧୯୩୦

ଭାଷାକୋଷାଶ୍ରମ — ଗୋପାଳଚନ୍ଦ୍ର ପ୍ରହରାଜ

ପୋଷ୍ଟ - ଚାନ୍ଦିନୀଚଉକ, କଟକ ।

## ପରିଶିଷ୍ଟ ୨

# ଓଡ଼ିଆ ଭାଷାକୋଷର ଆଗତୁରା ଅର୍ଡର ଫାରମ

ନୋଟ - ଏ ବାଆଁପାଖ ଅଂଶଖଣ୍ଡି ଗ୍ରାହକ ରଖିବେ ।

**ମୁଣ୍ଡା ଅଂଶ**

ଆଗତୁରା ଅର୍ଡର

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜଙ୍କ

**ଓଡ଼ିଆ ଭାଷାକୋଷ**

ଅର୍ଡର ଓ ସାହାଯ୍ୟ ବା ଆଗତୁରା

ଟଙ୍କା ପଠାଯିବାର ତାରିଖ...............

କେଉଁ ଶ୍ରେଣୀର ଗ୍ରାହକ..................

କେତେ ଟଙ୍କା ପଠାଗଲା ଟ..............

କେତେ ସାର ପୁସ୍ତକ ମିଳିବ............

ବାକି କେତେ ପଠାଯିବ ଟ ............

କେତେ ପଠାଯିବ.......................

ଅଡର ବା ସାହାଯ୍ୟ ଦେବା ବ୍ୟକ୍ତିଙ୍କ

ନାମ....................................

ଠିକଣା.................................

ଏଜେଣ୍ଟ ଥିଲେ

ଏଜେଣ୍ଟଙ୍କ ନାମ.........................

ନୋଟ - ଏହି ଡାହାଣପାଖ ଅଂଶ ଖଣ୍ଡି ଚିରାଯାଇ ଡାକରେ ପଠାଇବେ ।

ତାରିଖ.............................................

ଶ୍ରୀ..................................................

(ଉପାଧି, ବ୍ୟବସାୟ, ପଦ).....................

ମୁକାମ...............................................

ପୋଷ୍ଟ ଅଫିସ.......................................

ରେଲଷ୍ଟେସନ୍.......................................

ଜିଲ୍ଲା.....................................ଙ୍କ ଠାରୁ

**ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ**

ଆଡ୍‌ଭୋକେଟ୍

ପୋଃ ଚାନ୍ଦିନୀଚଉକ, କଟକ

ସମୀପେଷୁ

ମହାଶୟ

ଆମ୍ଭଙ୍କୁ ଆପଣଙ୍କ ସଙ୍କଳିତ

**ଓଡ଼ିଆ ଭାଷାକୋଷର**

ପାର୍ଶ୍ୱଲିଖିତ ଶ୍ରେଣୀର ପୃଷ୍ଠପୋଷକ ଗ୍ରହଣ କରି ଆପଣଙ୍କ ରେଜିଷ୍ଟରିରେ ପୃଷ୍ଠପୋଷକ/ଆଗତୁରା ଗ୍ରାହକସ୍ୱରୂପ ଆମ୍ଭ ନାମ ପୂରଣ କରିବେ ।

ଇତି

ବଶମ୍ୱଦ

ସ୍ୱାକ୍ଷର.............................................

ସାକ୍ଷୀଙ୍କ ସ୍ୱାକ୍ଷର

୧. (ନାମ) ....................................
(ପଦବୀ) ...................................
(ମୁକାମ)....................................

୨. (ନାମ).....................................
(ପଦବୀ)...................................
(ମୁକାମ)....................................

୩. ଏ ଅର୍ଡର ଆମ୍ଭ ଦ୍ୱାରା ସଂଗୃହୀତ ହେଲା
ଏଜେଣ୍ଟ ଥିଲେ ତାଙ୍କ ସ୍ୱାକ୍ଷର..................
ମୁକାମ......................................
ତାରିଖ......................................

**୧ମ ଶ୍ରେଣୀ** – ଉକ୍ତ ଗ୍ରନ୍ଥର ପୃଷ୍ଠପୋଷକରୂପେ ଆମ୍ଭର ଏକକାଳୀନ ସାହାଯ୍ୟ ଟ ..... ଙ୍କା (ଅକ୍ଷରରେ..... ଟଙ୍କା) ପଠାଇଲୁଁ । ଛାପା ଗ୍ରନ୍ଥ ଆମ୍ଭ ନିକଟ $\frac{ଡାକ}{ରେଲ}$ରେ ପଠାଇ ଭି. ପି. ଦ୍ୱାରା ପଠାଇବାର ଖରଚା ଆମ୍ଭଠାରୁ ଆଦାୟ କରିନେବେ ।

**୨ୟ ଶ୍ରେଣୀ** – ଦୁଇଭାଗରେ ବନ୍ଧା ଏକ ସାର ଗ୍ରନ୍ଥର ଆଗତୁରା ଦେୟ ମୂଲ୍ୟ ତିରିଶ ଟଙ୍କା ରେଟ୍‌ରେ..... ସାର ଗ୍ରନ୍ଥ ପାଇଁ ବିବାକ ଆଗତୁରା ମୂଲ୍ୟ ଟ ..... ଙ୍କା ପଠାଇଲୁଁ । ଗ୍ରନ୍ଥ ଛାପା ହେଲେ ଆପଣ ଆମ୍ଭ ନିକଟ ତାହା $\frac{ଡାକ}{ରେଲ}$ରେ ପଠାଇ ଭି. ପି. ଦ୍ୱାରା ପଠାଇବାର ଖରଚା ଆମ୍ଭଠାରୁ ଆଦାୟ କରିନେବେ ।

**୩ୟ ଶ୍ରେଣୀ** – ଦୁଇଭାଗରେ ବନ୍ଧା ଏକସାର ଗ୍ରନ୍ଥର ଆଗତୁରା ଗ୍ରାହକଙ୍କପାଇଁ ମୂଲ୍ୟ ତିରିଶ ଟଙ୍କା ବାବତକୁ ଆଗତୁରା ଡିପୋଜିଟ୍ ଏକସାରକୁ ଦଶଟଙ୍କା ରେଟ୍‌ରେ ସାରଗ୍ରନ୍ଥ ପାଇଁ ଟ..... ଙ୍କା ପଠାଇଲୁଁ । ଗ୍ରନ୍ଥ ଛାପା ହେଲେ ଆପଣ ଆମ୍ଭ ନିକଟ ତାହା $\frac{ଡାକ}{ରେଲ}$ରେ ପଠାଇ ଭି. ପି. ଦ୍ୱାରା ବାକି ଦେୟ ୨୫ଟଙ୍କା ରେଟରେ ଟ ..... ଓ ପଠାଇବା ଖରଚା ଆମ୍ଭଠାରୁ ଆଦାୟ କରିନେବେ ।

**୪ର୍ଥ ଶ୍ରେଣୀ** – ବନ୍ଧା ନ ହୋଇ କ୍ରମଶଃ ପଠାଯିବା ଆଠଭାଗ ଗ୍ରନ୍ଥ ଏକସାରର ଆଗତୁରା ଗ୍ରାହକଙ୍କପାଇଁ ମୂଲ୍ୟ ବତିଶ ଟଙ୍କା ବାବତକୁ ଆଗତୁରା ଡିପୋଜିଟ୍ ଏକସାରକୁ ଆଠଟଙ୍କା ରେଟ୍‌ରେ ସାର ଗ୍ରନ୍ଥ ପାଇଁ ଟ..... ଙ୍କା ପଠାଇଲୁଁ । ଗ୍ରନ୍ଥ ଛାପା ହେଲେ ଆପଣ ଆମ୍ଭ ନିକଟ ପ୍ରଥମ ଛଅ ଭାଗ $\frac{ଡାକ}{ରେଲ}$ରେ ପଠାଇ ଭି. ପି. ଦ୍ୱାରା ପ୍ରତି ଭାଗ ପାଇଁ ଚାରି ଟଙ୍କା ଓ ପଠାଇବା ଖରଚା ଆଦାୟା କରି ନେବେ । ଶେଷ ଦୁଇଭାଗର ମୂଲ୍ୟ ପାଇଁ ଆମ୍ଭର ଡିପୋଜିଟ୍ ଟଙ୍କା ମଜୁରା ହେବ । ଉକ୍ତ ଦୁଇଭାଗ ଆମ୍ଭ ନିକଟକୁ ପଠାଇ କେବଳ ପଠାଇବାର ଖରଚା ଆମ୍ଭଠାରୁ ଭି. ପି. ଦ୍ୱାରା ଆଦାୟ କରିନେବେ ।

**୫ମ ଶ୍ରେଣୀ** – ପ୍ରତିଭାଗର ଆଗତୁରା ଗ୍ରାହକଙ୍କପାଇଁ ମୂଲ୍ୟ ଷୋଳଟଙ୍କା ଲେଖାଏଁ ଦୁଇଭାଗ ବନ୍ଧା ଏକସାର ଗ୍ରନ୍ଥର ମୂଲ୍ୟ ବତି ଟଙ୍କା ବାବତକୁ ଆଗତୁରା ଡିପୋଜିଟ୍ ଏକସାରକୁ ୧୬ଟଙ୍କା ରେଟ୍‌ରେ...... ସାର ଗ୍ରନ୍ଥ ପାଇଁ ଟ :..... ଙ୍କା ପଠାଇଲୁଁ । ଗ୍ରନ୍ଥ ଛାପା ହେଲେ ଆପଣ ଆମ୍ଭ ନିକଟ ପ୍ରଥମ ଭାଗ $\frac{ଡାକ}{ରେଲ}$ରେ ପଠାଇ ଭି. ପି.ଦ୍ୱାରା ୧୬ ଟଙ୍କା ଓ ପଠାଇବା ଖରଚ ଆମ୍ଭଠାରୁ ଆଦାୟ କରିନେବେ । ଦ୍ୱିତୀୟ ଭାଗର ମୂଲ୍ୟପାଇଁ ଆମ୍ଭର ଡିପୋଜିଟ୍ ଟଙ୍କା ମଜୁରା ହେବ । ଆପଣ ଆମ୍ଭ ନିକଟ ଦ୍ୱିତୀୟ ଭାଗ ପଠାଇ କେବଳ ପଠାଇବାର ଖରଚା ଆମ୍ଭଠାରୁ ଭି. ପି. ଦ୍ୱାରା ଆଦାୟ କରିନେବେ ।

**୬ଷ୍ଠ ଶ୍ରେଣୀ** – ଦୁଇଭାଗରେ ବନ୍ଧା ଏକସାର ଗ୍ରନ୍ଥର ଆଗତୁରା ଗ୍ରାହକଙ୍କପାଇଁ ମୂଲ୍ୟ ୩୬ଟଙ୍କା ବାବତକୁ ଆଗତୁରା ଡିପୋଜିଟ୍ ଏକସାରକୁ ଦୁଇଟଙ୍କା ରେଟ୍‌ରେ ସାର ଗ୍ରନ୍ଥପାଇଁ ଟ ..... ଙ୍କା ପଠାଇଲୁଁ । ଆମ୍ଭେ ଏଣିକି ମାସକୁ ମାସ କିମ୍ବା ଦଫାଓ୍ୱାରିରେ ଆଜିଠାରୁ ତିନି ବରଷ ମଧ୍ୟରେ ବାକି ମୂଲ୍ୟ ୩୪ଟଙ୍କା ରେଟ୍‌ରେ ଆମ୍ଭର ଦେୟ ଟଙ୍କା ଆପଣଙ୍କ ନିକଟ ପଠାଇବୁଁ । ଆପଣ ଆମ୍ଭଠାରୁ ଏକସାରକୁ ମୂଲ୍ୟ ୩୬ଟଙ୍କା ରେଟ୍‌ରେ ବିବାକ ମୂଲ୍ୟ ପାଇସାରିଲେ ଛାପା ଗ୍ରନ୍ଥ ଦୁଇଭାଗ ଡାକ/ରେଲରେ ଆମ୍ଭ ନିକଟ ପଠାଇ ପଠାଇବାର ଖରଚା ଆମ୍ଭଠାରୁ ଭି. ପି. ଦ୍ୱାରା ଆଦାୟ କରିନେବେ ।

**୭ମ ଶ୍ରେଣୀ** – ଦୁଇ ଭାଗରେ ବନ୍ଧା ଏକସାର ଗ୍ରନ୍ଥର ଆଗତୁରା ଦେୟ ସୁଲଭମୂଲ୍ୟ ଅଠେଇଶ ଟଙ୍କା ରେଟ୍‌ରେ..... ସାର ଗ୍ରନ୍ଥପାଇଁ ବିବାକ ଆଗତୁରା ଭି. ପି.ଦ୍ୱାରା ପଠାଇବାର ଖରଚା ଆଦାୟ କରିନେବେ ।

ଏ ଅର୍ଡ଼ର ଫାରମରେ ସାକ୍ଷୀମାନଙ୍କ ସମକ୍ଷରେ ସ୍ୱାକ୍ଷର କଲୁଁ ।

ଗ୍ରାହକଙ୍କ ସ୍ୱାକ୍ଷର

ତାରିଖ.....................

**Note :**

In the English transliteration of the Oriya words diacritical marks (e.g., dashes and dots) for distinguishing different sound-values of alphabets could not be given in these specimen pages as suitable types are not available in the local presses. Orders have, however, been placed with type-founders for casting special types with diacritical marks; and the marks will be embodied in the finally published work.

The systems of transliteration followed by Sir W. Hunter, Sir G. Grierson, the Bihar and Orissa Research Society Journal, the Assam Tea Districts Labour Association and by Rev. Mr. Wilkins have been carefully compared, but Dr. Grierson's system has been mainly adhered to except in the case of a few alphabets.

Cuttack
June 1930

**G. C. Praharaj**

# ପରିଶିଷ୍ଟ ୩

# A

## Specimen words of
## ORIYA BHASHAKOSHA
### by G. C. Praharaj
### ଓଡ଼ିଆ ଭାଷାକୋଷର ଆଦର୍ଶ ଶବ୍ଦଚୟ
### ଗୋପାଳଚନ୍ଦ୍ର ପ୍ରହରାଜ

> ସାଧାରଣ ଲୋକେ ଅପରପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷର ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରା ଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବଂଧୁ' ନ ପାଇଲେ 'ବନ୍ଧୁ' ଦେଖିବେ ।

ଆଡ଼କାଟି, Adkati – ଆଡ଼କାଟି (ଦେଖ)

ଆଡକାଠ, Adkatha – ଆଡ଼କାଠ (ଦେଖ)

ଆଡ୍‌କାଠି, Adkathi – ଆଡ଼କାଠି (ଦେଖ)

ଆଡ଼କି, Adki, आड़कि – ପ୍ରାଦେଶିକ (ସମ୍ବଲପୁର)ବି – ଖଟ, କବାଟ, ଶଗଡ଼ ଦଣ୍ଡାରେ ପ୍ରସ୍ଥ ବା ଆଡ଼ବାଗରେ ଲଗାଯିବା ଦଣ୍ଡ – Crossbar put breadthwise in a doorleaft, bed stead or cart.

ଆଡକେରିଆ, Adkeria – ପ୍ରାଦେଶିକ (ସମ୍ବଲପୁର) କ୍ରି. ବିଣ –
୧. ଏକପାଖିଆ ହୋଇ, କଡ଼ବାଗେ - Sidewise; sideways.
୨. ତେରଛା ଭାବରେ - In a slanting manner.

ଆଡ଼ନି, Adni – ପ୍ରାଦେଶିକ (ସମ୍ବଲପୁର) ବି – ଆଡ଼୍‌ନିଜାଲ୍ (ଦେଖ)

ଆଡ୍‌ନିଜାଲ୍, Adnijal, नि – ପ୍ରାଦେଶିକ (ସମ୍ବଲପୁର) ବି. (ସଂ-ଅର୍ଦ୍ଧ + ଜାଳ)- ଆଡେନ୍‌ଜାଲ୍ ମାଛ ଧରିବା ପାଇଁ ମଝିରେ ମଝିରେ କାଠି ଲାଗିଥିବା ଏକ ପ୍ରକାର କମ ଓସାରର ଲମ୍ବ ଜାଲ; ଖାଡ଼ି ଜାଲ – A kind of small and long fishing net.

ଆଡ଼୍‌ପଟା } Adpata – ପ୍ରାଦେଶିକ (ସମ୍ବଲପୁର) ବିଣ – ଆଡ଼ପଟା (ଦେଖ)

ଆଡ଼୍‌ବହିଆ } Adbahia – ପ୍ରାଦେଶିକ (ସମ୍ବଲପୁର) – ବିଣ, ପୁଂ – ଆଡ଼ବାୟା (ଦେଖ)
– ପ୍ରାଦେଶିକ (ସମ୍ବଲପୁର) ବିଣ. ପୁଂ – ଆଡ଼ବାୟା (ଦେଖ)

ଆଡ଼୍‌ବାଉରୀ } Adbauri – ପ୍ରାଦେଶିକ (ସମ୍ବଲପୁର) ବିଣ. ସ୍ତ୍ରୀ– ଆଡ଼ବାଉରାର ସ୍ତ୍ରୀଲିଙ୍ଗ । Feminine of adbaura.

ଆଡ଼୍‌ଭଇଁରା } Adbhainra – ପ୍ରାଦେଶିକ (ସମ୍ବଲପୁର) ବିଣ. ପୁଂ ଓ ସ୍ତ୍ରୀ –ଆଡ଼ବହିରା (ଦେଖ)

ଆଡ଼୍‌ଭାଇସ୍ } Adbhais ऐड़वाइस ऐड़वाइस – ବୈଦେଶିକ (ଇଂରାଜୀ) ବି– ପରାମର୍ଶ ବା ପରାମର୍ଶପୂର୍ଣ୍ଣ ଚିଠି Advice, letter of advice

[ଗଭର୍ଣ୍ଣମେଣ୍ଟ ଏ ଭାଷାକୋଷ ରିଭିଜନ୍‌ପାଇଁ ପାଞ୍ଚହଜାର ଟଙ୍କା ୧୯୩୦ ଜାନୁଆରୀ ମାସରେ ମଞ୍ଜୁର୍ କରିଥିଲେ ହେଁ ଆକାଉଣ୍ଟାଣ୍ଟ୍‌ଜେନରଲଙ୍କଠାରୁ କଟକ ଟ୍ରେଜରୀ ଅଫିସରଙ୍କ ନିକଟ ଆଡ଼୍‌ଭାଇସ୍ ଆସି ନ ଥିବାରୁ ଏ ଟଙ୍କା ମିଳିବାକୁ ମାର୍ଚ୍ଚ ଶେଷପର୍ଯ୍ୟନ୍ତ ବିଳମ୍ବ ଘଟିଲା ।]

ଆଡ଼୍‌ଭାଇସରି କମିଟି } Adbhaisari kamiti ऐड़वाइसारि कमिटी ବଙ୍ଗଳା – ବୈଦେଶିକ (ଇଂରାଜୀ) ବି– କୌଣସି ସରକାରୀ ବିଭାଗର ଅଧ୍ୟକ୍ଷ ବା ହାକିମଙ୍କୁ ପରାମର୍ଶ ଦେବାପାଇଁ ସରକାରଙ୍କ ମନୋନୀତ କେତେକ ବ୍ୟକ୍ତିଙ୍କଦ୍ୱାରା ଗଠିତ ସମିତି Advisory Committee.

[ସରକାରୀ କଲେଜ୍ ଓ ସ୍କୁଲଆଦିର ପରିଚାଳକ ପ୍ରିନ୍‌ସିପାଲ୍ ବା ହେଡ୍‌ମାଷ୍ଟରଙ୍କୁ କେତେକ ବିଷୟରେ ପରାମର୍ଶ ଦେବାପାଇଁ ସରକାର ଗୋଟିଏ ଲେଖାଏଁ ଆଡ଼୍‌ଭାଇସରି କମିଟି ପ୍ରତିଷ୍ଠା କରିଅଛନ୍ତି ।]

ଆଡ଼୍‌ଭାନ୍ସ } Adbhans ऐडवान्स – ବୈଦେଶିକ (ଇଂରାଜୀ) ବି –

୧. ଦରମା ବା ପ୍ରାପ୍ୟ ବା ହିସାବ ବାବଦକୁ କୌଣସି ବ୍ୟକ୍ତିଙ୍କୁ ଦିଆଯିବା ଆଗତୁରା ଟଙ୍କା – Advance; advance payment.

୨. କବାଲାର ଜରସମନ୍ ବା ଦ୍ରବ୍ୟର ମୂଲ୍ୟପାଇଁ କ୍ରେତା ବିକ୍ରେତାଙ୍କୁ ଦେବା ଆଗତୁରା ଟଙ୍କା; ବହିନା Earnest money.

ଆଡ଼ଭୁଷ୍ Adbhush – ଦେଶଜ, ଅବ୍ୟୟ – ଆଡ଼ଭୁଷ୍ (ଦେଖ)

ଆଡ୍‌ଭୋକେଟ୍ Adbhoket ऐडवोकेट – ବୈଦେଶିକ (ଇଂରାଜୀ) ବି. - ହାଇକୋଟରେ ଓକାଲତି କରିବା ପାଇଁ ଅନୁମତିପ୍ରାପ୍ତ ଉଚ୍ଚ ଶ୍ରେଣୀର ଓକିଲ; ବାରିଷ୍ଟର – Advocate,

ଆଡ୍‌ଭୋକେଟ୍ ଜେନରଲ୍ Adbhoket Jeneral – ବୈଦେଶିକ (ଇଂରାଜୀ) ବି – ହାଇକୋର୍ଟରେ ସରକାରଙ୍କ ପକ୍ଷରୁ ଆଡ୍‌ଭୋକେଟ୍ ଆଡ଼୍‌ମିରାଲ୍ ମକଦ୍ଦମା ଚଳାଇବା ପାଇଁ ଲାଗୁଥା ବା ବନ୍ଧା ବାରିଷ୍ଟର । Advocate General.

ଆଡ଼୍‌ମଇ – ପ୍ରାଦେଶିକ (ସମ୍ବଲପୁର) ବି – ଅସମତଳ କାଦୁଆ କ୍ଷେତର କାଦୁଅକୁ ଉଚ୍ଚ ସ୍ଥାନରୁ ନୀଚ ସ୍ଥାନକୁ ଚଲାଇ ନେଇ କ୍ଷେତକୁ ସମତଳ କରିବାପାଇଁ ବ୍ୟବହୃତ ମଇ – A ladderlike contrivance dragged on the ground to level up a muddy field.

[ଦ୍ରଷ୍ଟବ୍ୟ – ସମ୍ବଲପୁରରେ ସାଧାରଣ ମଇକୁ କମ୍ପର୍ ଓ ଶୁଖିଲା ମାଟି ଚଲାଇ ନେବା ମଇକୁ କୁରୁଦ୍ ବା କୋରଦ୍ କହନ୍ତି ।]

ଆଡ଼୍‌ମିଟ୍ କରିବା Admit Kariba एड़मिट करना – ବୈଦେଶିକ, (କଚିରିଆ) (ଇଂରାଜୀ – Admit) କ୍ରି.

ବଙ୍ଗଳା

୧. ଦାଏର ହେବା କୌଣସି ମକଦମା ବା ଅପିଲ୍‌କୁ ପରେ ବିଚାର କରିବାପାଇଁ (ହାକିମ) ଗ୍ରହଣ କରିବା – ( a Court) To admit a case or an appeal for hearing.

[ଦ୍ରଷ୍ଟବ୍ୟ : କୋର୍ଟରେ କେହି ବ୍ୟକ୍ତି ଗୋଟିଏ ମକଦମା ବା ଅପିଲ୍ ଦାଏର କଲାକ୍ଷଣି ହାକିମ ଅରଜି ବା ଅପିଲ୍ ଉଚ୍ଚହାତକୁ ପାଠ କରି ଯେତେ ଦେଖନ୍ତି ଯେ ସେଥିରେ ଯଥେଷ୍ଟ କାରଣ ନାହିଁ ତେବେ ତାକୁ ସଙ୍ଗେ ସଙ୍ଗେ ନାମଞ୍ଜୁର ବା ରିଜେକ୍ଟ କରି ଦିଅନ୍ତି, କିନ୍ତୁ ଯେତେ ଦେଖନ୍ତି ଯେ ଏଥିରେ ଯୁକ୍ତିସଙ୍ଗତ କାରଣ ଥିଲା ପରି ବୋଧ ହେଉଛି ତେବେ ତାକୁ ଗ୍ରହଣ କରି ଅପରପକ୍ଷକୁ ନୋଟିସ୍ ଦିଅନ୍ତି ଓ ଉଭୟ ପକ୍ଷଙ୍କର ଜବାବ୍ ସବାଲ୍ ଶୁଣିବା ପରେ ଉକ୍ତ ମକଦ୍ଦମା ବା ଅପିଲ୍‌କୁ ଡିଗ୍ରି ବା ଡିସ୍‌ମିସ୍ କରନ୍ତି ।]

୨. ମକଦ୍ଦମାରେ ଏକ ପକ୍ଷ (ବାଦୀ ବା ପ୍ରତିବାଦୀ) ଅପର ପକ୍ଷଦ୍ୱାରା ଉପସ୍ଥାପିତ କୌଣସି ବିଷୟ ବା ଦଲିଲକୁ ସ୍ୱୀକାର କରିବା (a party in case) To admit any matter or document put up by the opposite party.

୩. ପକ୍ଷଙ୍କଦ୍ୱାରା ଦାଖଲ ହୋଇଥିବା କୌଣସି ଦଲିଲ ବା ପଦାର୍ଥକୁ ହାକିମ ମକଦ୍ଦମାରେ ପ୍ରମାଣରୂପେ ଗ୍ରହଣ କରିବା (a Court) To admit a document or article as an exhibit in a case.

୪. ପଢ଼ିବାପାଇଁ କୌଣସି ଛାତ୍ରର ନାମ ବିଦ୍ୟାଳୟରେ ଲେଖି (ଶିକ୍ଷକ) ତାକୁ ସ୍କୁଲରେ ଭରତି କରିବା – To admit a boy to a school.

ଆଡ୍‌ମିଟ୍ ହେବା
Admit heba
ऐड़मिट् होना
} – ବୈଦେଶିକ (କଚିରିଆ) କ୍ରି – (ଇଂରାଜୀ Admit)

୧. କୌଣସି ମକଦ୍ଦମା ବା ଅପିଲ୍ ପରେ ଶୁଣାଣି ହେବାପାଇଁ ହାକିମଙ୍କଦ୍ୱାରା ଗୃହୀତ ହେବା – (A case or appeal) To be admitted by a court for hearing.

୨. ମକଦ୍ଦମାସଂକ୍ରାନ୍ତ କୌଣସି ବିଷୟ ବା ଦଲିଲ କୌଣସି ପକ୍ଷଦ୍ୱାରା ସ୍ୱୀକୃତ ହେବା – (any matter or document) To be admitted by a party in a case.

୩. କୌଣସି ଦଲିଲ ବା ବସ୍ତୁ ଚଳୁଥିବା ମକଦ୍ଦମାରେ ପ୍ରମାଣରୂପେ ହାକିମଙ୍କଦ୍ୱାରା ଗୃହୀତ ହେବା – (a document or article) To be admitted by court in evidence.
[ଦ୍ରଷ୍ଟବ୍ୟ – ଆଡ୍‌ମିଟ୍ ହେବା ଦଲିଲ ବା ବସ୍ତୁରେ ହାକିମ ଗୋଟିଏ ମାର୍କା ଦିଅନ୍ତି ଓ ତାକୁ 'ଏକ୍‌ଜିବିଟ୍' (Exhibit) ବୋଲାଯାଏ ।

୪. ପାଠ ପଢ଼ିବାପାଇଁ ଶିକ୍ଷକ ଛାତ୍ରର ନାମ ସ୍କୁଲର ଆଡ୍‌ମିସନ୍ ରେଜିଷ୍ଟରୀରେ ପୂରଣ କରିବାରୁ ଛାତ୍ରର ସ୍କୁଲରେ ଭରତି ହେବା– ( a student) To be admitted to a school.

ଆଡ୍‌ମିନିଷ୍ଟ୍ରେଟର୍
Adminishtratar
ऐडमिनिष्टेटर
} – ବୈଦେଶିକ (କଚିରିଆ) (ଇଂରାଜୀ) ବି.

୧. ଯେତେ ଉଇଲ୍ ସମ୍ପାଦନ ନ କରି କିମ୍ବା ଆପଣାର ମୃତ୍ୟୁ ପରେ ତ୍ୟକ୍ତ ସମ୍ପତ୍ତି ରକ୍ଷଣାବେକ୍ଷଣ କରିବା ବ୍ୟକ୍ତିକୁ ମନୋନୀତ ନ କରି ସମ୍ପତ୍ତିର ମାଲିକ ମୃତ ହୋଇଥାନ୍ତି ତେବେ ଉକ୍ତ ସମ୍ପତ୍ତି ବୁଝାସୁଝା କରିବା ପାଇଁ ଜଜ୍‌ସାହେବ ଯେଉଁ ବ୍ୟକ୍ତିଙ୍କୁ ନିଯୁକ୍ତ କରନ୍ତି – Administrator to the estate of a deceased person.

[ଦ୍ରଷ୍ଟବ୍ୟ – ଆଡ୍‌ମିନିଷ୍ଟ୍ରେଟରଙ୍କୁ ଜଜସାହେବ ଯେଉଁ ନିଯୁକ୍ତି ପତ୍ର ଦିଅନ୍ତି ତାହାକୁ 'ଲେଟର୍ସ ଅଫ୍ ଆଡ୍‌ମିନିଷ୍ଟ୍ରେସନ' Letter of Administration ବୋଲାଯାଏ]

୨. ନାବାଳଗ ବା ଅସମର୍ଥ ଦେଶୀୟ ରାଜାଙ୍କ ରାଜ୍ୟଶାସନାର୍ଥ ସରକାରଙ୍କଦ୍ୱାରା ନିଯୁକ୍ତ କର୍ମଚାରୀ – Administrator of a state under Government management.

[ଦ୍ରଷ୍ଟବ୍ୟ – ବଡ଼ ବଡ଼ ଦେଶୀୟ ରାଜ୍ୟର ଉକ୍ତ ଶାସନକର୍ତ୍ତାଙ୍କୁ ଆଡ୍‌ମିନିଷ୍ଟ୍ରେଟର୍ ବୋଲାଯାଏ । ଓଡ଼ିଶା ଗଡ଼ଜାତର ଏବଂ ଭୂତି ଶାସନକର୍ତ୍ତାଙ୍କୁ ସୁପରିଣ୍ଟେଣ୍ଡେଣ୍ଟ୍ (Superintendent) ବୋଲାଯାଏ ।]

ଆଡ୍‌ମିରାଲ୍ Admiral ऐडमिरल } – ବୈଦେଶିକ (ଇଂରାଜୀ) ବି – ନୌବାହିନୀର ପ୍ରଧାନ ସେନାପତି – Admiral.

ଆଡ୍‌ମିରାଲ୍‌ଟୀ

| | | | | | | | |
|---|---|---|---|---|---|---|---|
| ୧. ହସନ୍ତବର୍ଣ୍ଣ | ଛ | ଉ | ର,ର | ଌ | ଏ | ଐ | |
| ୧. ଅନୁନାସିକ ଯୁକ୍ତବର୍ଣ୍ଣ | କ୍ଷ | ଙ୍କ | ଶ,ଷ | ଞ୍ଛ | ହ୍ମ, | ନ୍ଦ | ଛୟ |
| ୨. ଅକାରାନ୍ତ ବର୍ଣ୍ଣ | ଈ | ଊ | ରୁ | ଲୁ | ୟେ | ଅଇ | |
| ୨. ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁ ଯୁକ୍ତବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ହ୍ନ | ହ୍ନ | ଛଅ |

[ ଦ୍ରଷ୍ଟବ୍ୟ – ଏହାଙ୍କର ନିମ୍ନ କର୍ମଚାରୀଙ୍କ ପଦ ଭାଇସ୍‌ଆଡ୍‌ମିରାଲ୍ (Vice-Admiral) ଓ ତାଙ୍କ ତଳେ ରିଅର୍ ଆଡ୍‌ମିରାଲ୍ (Rear Admiral)]

ଆଡ୍‌ମିରାଲ୍‌ଟୀ Admiraalti ऐड्मिरलटी } – ବୈଦେଶିକ (ଇଂରାଜୀ) ବି –

୧. ସରକାରଙ୍କ ନୌବିଭାଗ – Admiralty department of Government.

[ଦ୍ରଷ୍ଟବ୍ୟ – ନୌସେନା ବିଭାଗ ସମ୍ପର୍କୀୟ ମକଦ୍ଦମାମାନ ବୁଝିବାପାଇଁ ଭାରତର ହାଇକୋର୍ଟମାନଙ୍କର ଗୋଟିଏ ସ୍ୱତନ୍ତ୍ର ବିଚାର ବିଭାଗ ଅଛି, ଏହାର ଆଡ୍‌ମିରାଲ୍‌ଟୀ ଡିଭିଜନ୍ (Admiralty Division of the High Court) ବୋଲାଯାଏ ।]

ଆଡ୍‌ମିସନ୍ – ବୈଦେଶିକ (ଇଂରାଜୀ) ବି.

୧. ଶୁଣାଣି ବା ବିଚାର ହେବାପାଇଁ ଅଦାଲତଙ୍କଦ୍ୱାରା କୌଣସି ମକଦ୍ଦମା ବା ଅପିଲର ଗ୍ରହଣ – Admission of a case or appeal for hearing by a court
୨. ପଢ଼ିବାପାଇଁ ଛାତ୍ରର ବିଦ୍ୟାଳୟରେ ପ୍ରବେଶ ବା ଆଡ୍‌ମିସନ୍ ରେଜିଷ୍ଟରୀରେ ଛାତ୍ରର ନାମ ଲେଖା –Admission of a student to a school.
୩. ଥିଏଟର, ସର୍କସ, ପ୍ରଦର୍ଶନୀ ଆଦିରେ କର୍ତ୍ତୃପକ୍ଷଙ୍କ ଅନୁମତ୍ୟନୁସାରେ ଦର୍ଶକମାନଙ୍କର ପ୍ରବେଶ – Admission of spectators to a theatre, circus, exhibition etc.
୪. ମକଦ୍ଦମାରେ କୌଣସି ପକ୍ଷଦ୍ୱାରା ଅପରପକ୍ଷର ଦାଖଲି ଦଲିଲ ବା ଜାହେରି ବିଷୟର ସ୍ୱୀକାର – Admission by one party of any fact or document produced by the opposite party during the trial of a case.

[ଦ୍ରଷ୍ଟବ୍ୟ – ଫଉଜ୍ କୋଟ୍‌ରେ ମୁଦାଲାଦ୍ୱାରା ଅପରାଧର ସ୍ୱୀକାରକୁ କନ୍‌ଫେସନ୍ (Confession) ବୋଲାଯାଏ ।]

ଆଡ୍‌ମିସନ୍ କାର୍ଡ୍ / Admisan kard – ବୈଦେଶିକ (ଇଂରାଜୀ) ବି – ଯେଉଁ କାର୍ଡ୍ ବା କାଗଜଦ୍ୱାରା ଉକ୍ତ କାର୍ଡ୍ ଧରିଥିବା ବ୍ୟକ୍ତି ଥିଏଟର, ସର୍କସ୍, ପ୍ରଦର୍ଶନୀ ଆଦିର ଭିତରକୁ ପ୍ରବେଶାଧିକାର ପାଆନ୍ତି – Admission Card.

ऐडमिसन कारड / ଆଡ୍‌ମିସନ୍ ଟିକଟ୍ / Admission tikat / ऐडमिसन टिकट – ବୈଦେଶିକ (ଇଂରାଜୀ) ବି – ଯେଉଁ ଟିକଟ ବା ଟିକି କାଗଜ ଖଣ୍ଡ ଧରିଥିବା ବ୍ୟକ୍ତି ଥିଏଟର୍ ଆଦିର ଭିତରକୁ ପ୍ରବେଶାଧିକାର ପାଏ –Admission ticket.

ଆଡ୍‌ମିସନ୍ ଫି / Admisan phi / ऐडमिसन फी – ବୈଦେଶିକ (ଇଂରାଜୀ) ବି – ବିଦ୍ୟାଳୟରେ ଭରତି ହେବା ପିଲାର ନାମ ଲେଖା ହେବାପାଇଁ ପିଲାଠାରୁ ନିଆଯିବା ନିର୍ଦ୍ଧାରିତ ଧନ – Admission fee.

ଆଡ୍‌ମିସନ୍ ଫିସ / Admisan phis – ବୈଦେଶିକ (ଇଂରାଜୀ) ବି – ଆଡ୍‌ମିସନ୍ ଫି (ଦେଖ)

ଆଡ୍‌ମିସନ୍ ବହି / Admisan bahi / ऐडमिसन बही – ବୈଦେଶିକ (ଇଂରାଜୀ –Admission + ଆରବୀ-ବହି) ବି – ବିଦ୍ୟାଳୟରେ ଭରତି ହେବା ପିଲାର ନାମ ଓ କେତେକ ବିବରଣ ଯେଉଁ ପୁସ୍ତକରେ ଲେଖାହୁଏ – Admission register.

ଆଡ୍‌ମିସନ୍ ରେଜିଷ୍ଟର୍ (ରୀ)
Admission registar (ri) } – ବୈଦେଶିକ (ଇଂରାଜୀ Admission Register) ବି – ଆଡ୍‌ମିସନ୍ ବହି (ଦେଖ) ।
ऐडमिसन रेजीष्टरी

ଆଡ୍‌ସରା
Adsara } – ପ୍ରାଦେଶିକ, (ସମ୍ବଲପୁର) ବି –

୧. ଅର୍ଗଳ –A cross-bar.

୨. ଛାମୁଣ୍ଡିଆ ଉପରେ ଆଡ଼ବାଗରେ ପକାଯିବା କାଠ କିମ୍ବା ବାଉଁଶଖଣ୍ଡମାନ – Cross-poles put across a framework erected for shade.

ଆଡ଼
Arda } – ଦେଶଜ. ବି – (ସଂସ୍କୃତ ଅର୍ଦ୍ଧ; ତୁଳନା କର – ପ୍ରାକୃତ ୫ମୀ ବିଭକ୍ତିର ପ୍ରତ୍ୟୟ ଆଦୁ = ଆଡୁ = ଦିଗରୁ, ଠାରୁ । ତୁଳନା କର ସଂସ୍କୃତ ଅଡ଼ଧାତୁ = ଯୋଡ଼ିବା to join, ଅଟକାଇବା to stop, ଅଳଧାତୁ = ବାରଣ କରିବା)
और

୧. ତରଫ – Direction. [ରମଣଙ୍କୁ ନାଗବଲ୍ଲୀ – ଯାଚି ଯାଚି ମୋ ଆଡ଼େ ଡୋଳା ଢାଳିବ – ଗୋପାଳକୃଷ୍ଣ ପଦ୍ୟାବଳୀ ।]

୨. ପାର୍ଶ୍ୱ, କଡ଼, ପାଖ – Side; flank. [ନାଭିମଣ୍ଡଳରୁ କରି ମଉଳି ପର୍ଯ୍ୟନ୍ତେ ଆଡ଼ ଛାଡ଼ି ଦେଇ ପିନ୍ଧୁଛନ୍ତି ଅନୁବ୍ରତେ – ବିଷ୍ଣୁ କେଶରୀ-ପୁରାଣ]

୩. ଦିଗ –Quarter of the globe. [ପୂର୍ବଆଡୁ ସୂର୍ଯ୍ୟ ଉଦୟ ହେଲେ]

୪. ଦେହର (ଅମୁକ) ଅଂଶ [ମୁଣ୍ଡଆଡ଼, ଗୋଡ଼ଆଡ଼, ପେଟଆଡ଼, ପିଠିଆଡ଼] [ନାଭିଠାରୁ ତେଣିକି ହୋଇଛି ଶରୀର, ଘୋଡ଼ଆଡ଼ ଯେ ହୋଇ ନାହିଁ ତାହାଙ୍କର କୃଷ୍ଣସିଂହ – ମହାଭାରତ ଆଦି]

୫. ପକ୍ଷ, ଦଳ–Party. [ଦୁର୍ଯ୍ୟୋଧନ ଆଡ଼ରେ ଅଛନ୍ତି ସପ୍ତରଥୀ – ସାରଳା – ମହାଭାରତ]

୬. (ସଂସ୍କୃତ, ଆୟତି) ଓସାର, ପ୍ରସ୍ଥ – Breadth; width. [ଉଭାମୁଠି, ଆଡ଼ଦିମୁଠି ତିଆରି ମଝିରେ ପୋତିବ କାଠି –ଡାକରଷିବଚନ]

୭. କୌଣସି ବସ୍ତୁ (ଅମୁକ) ଅଂଶ – A Particular part or portion of a thing.

୮. କୌଣସି ବସ୍ତୁର ପୃଷ୍ଠଦେଶ ବା ଉପରିଭାଗ – Surface of a thing.

୯. କୌଣସି ଲମ୍ବ ବସ୍ତୁର ଗୋଟିଏ ପାଖର ଅଗ – Surface of a thing. [ଏ ବାଡ଼ିର ମୂଳଆଡ଼େ ଲୁହା ଗୋବ ବସିଛି ଓ ମୁଣ୍ଡଆଡ଼େ ରୁପା ଛାଆଣୀ ହୋଇଛି]

୧୦. ନୈକଟ୍ୟ, ପାଖ – Nearness, contiguity.
[ନ ଜାଣିଲା ପରି ସେ ତୋ ଆଡ଼କୁ, ଆସୁ ଘୁଞ୍ଚିଯିବାର ତୁ ପଛରୁ ଗୋପାଳକୃଷ୍ଣ-ପଦ୍ୟାବଳୀ]

୧୧. ବ୍ରହ୍ମାଣ୍ଡ, ପୃଥିବୀ ବା ଦେଶର ଅଂଶ; ଅଞ୍ଚଳ – Locality; a part or place of the universe, globe or country.
[କେତେ ଆଡ଼େ କେତେ ସୃଷ୍ଟି ଯେ କରିଅଛ ଆପେ – ବିଷ୍ଣୁଗର୍ଭ ପୁରାଣ]

୧୨. କୌଣସି ପ୍ରସ୍ତାବ ବା ଯୁକ୍ତିର ପକ୍ଷ –Point of view, side of an argument.
[ସବୁ ଆଡ଼କୁ ଚାହିଁ ସବୁ କଥା ବୁଝି ସମୁଝି କରିବା ଭଲ ଫକୀରମୋହନ – ପ୍ରାୟଶ୍ଚିତ୍ତ ୧୩]
ଖରଚଆଡ଼ରୁ ବିଚାର କଲେ ଏ ମକଦ୍ଦମା ଚଳାଇବା ଆମର ଉଚିତ ନୁହେଁ ।]

୧୩. ଜୁଆ ଆଦି ଖେଳରେ ରଖାଯିବା ହୁଡ଼; ପଣ; ବାଜୀ –Snake; wager laid in a game of hazard.
[ମୁର ବୋଲେ ଭାଇ ସବୁ ଦ୍ରବ୍ୟ କଲି ଆଡ଼ ଏ ମୋଡ଼ର ଦ୍ରବ୍ୟକୁ ତୋ ସୁଧର୍ମାକୁ ଏଡ଼ – ପୀତାମ୍ବର – ନୃସିଂହ ପୁରାଣ]

୧୪. (ସଂସ୍କୃତ, ଅନ୍ତରାଳ) ଅନ୍ତରାଳ, ଆଢୁଆଳ, – Backside.
[ମୋ ଓଷ୍ଠ କମ୍ପ ଚାହିଁ ହସିଲା ସେ ଆଡ଼େ ରହି ଗୋପାଳକୃଷ୍ଣ – ପଦ୍ୟାବଳୀ]

୧୫. (ସଂସ୍କୃତ, ଅଳଧାତୁ = ବାରଣ) ଅଡୁଆ, ବାଧା – Hindrance; obstruction; impedement. (आड़)
[ଏ କାର୍ଯ୍ୟ କରିବାରେ ଆଉ ଏଣିକି କୌଣସି ଅଡ଼ ନାହିଁ ।]

୧୬. ଆନୁକୂଲ୍ୟ; ପକ୍ଷସମର୍ଥନ – Support.
[ନିସାପରେ ବସି ଜଣକ ଆଡ଼କୁ କଥା କହିବା ଅନ୍ୟାୟ]

୧୭. (ସଂସ୍କୃତ ଅଟଧାତୁ ?) ଆଗମନ; ଆସିବା; ଉପସ୍ଥିତ – Arrival; coming; presence. [ଋଷି ଥିଲେ ଶ୍ରୀ କିଶୋରୀ, ତୋ ଆଡ଼କୁ ଅନୁସରି, ଲେଖାଲେଖି ଧରି ଦେଖୁଥିଲେ ତୋ ପଦ୍ଧତିକି । ଗୋପାଳକୃଷ୍ଣ – ପଦ୍ୟାବଳୀ]

୧୮. (ସଂସ୍କୃତ ଆଳି = ରେଖା ?) ଆକାର – Shape; form
[ଧନ୍ୟ ସୁକରଣୀ, ଧନ୍ୟ ପ୍ରୀତିବାଣୀ, ଧନ୍ୟ ନିର୍ଝରିଣୀ ଧାରଯ କି ଖରବ ବାଙ୍କୁଁ, ମୁହିଁକି ମହତ ଆଡ଼ରେ ପୁଣି ବାହାର ଅଜୟଚନ୍ଦ୍ର– କବିତା]

୧୯. (ସଂସ୍କୃତ ଉରସ୍) ଔରସ, ପିତୃତ୍ୱ – Fatherhood. ମାତୃତ୍ୱ, ଗର୍ଭ – Motherhood; womb. (ଆଡ଼ରେ ତଳେ ଉଦାହରଣ ଦେଖ ।)

୨୦. ପ୍ରାଦେଶିକ (ପୁରୀ) – କଦଳୀ ଗଣତି କରାଯିବା ସଂଖ୍ୟାବିଶେଷ; ୩୨ ଯୋଡ଼ା ଓ ସ୍ଥଳବିଶେଷରେ ୪୦ ଯୋଡ଼ା । An aggregate or unit of 64 (and at places 80) plantains.

[ବିଶ୍ୱନାଥପୁରରେ ବର୍ତ୍ତମାନ ବନ୍ତଳ କଦଳୀର ଭାଉ ଟଙ୍କାର ଦୁଇ ଆଢ଼]

୨୧. ପ୍ରାଦେଶିକ, (କଟକ-ପୁରୀ) (ସଂସ୍କୃତ ଆଢ଼୍ୟ) – ବଙ୍ଗଦେଶୀୟ ବୈଶ୍ୟମାନଙ୍କ ବଂଶୋପାଧି 'ଆଡ୍ୟ'ର ଡାକ ନାମ ।

A word commonly used for the more correct family-title Adhya of the Vaisyas of Bengal.

[ଦ୍ରଷ୍ଟବ୍ୟ – କଟକ ଓ ପୁରୀରେ ଆଢ଼୍ୟ ଉପାଧିଧାରୀ ସ୍ଥାୟୀ ଅଧିବାସୀ ବଙ୍ଗାଳୀଙ୍କୁ ଓଡ଼ିଆମାନେ 'ଆଢ଼' ଉପାଧିରେ ଡାକନ୍ତି ଓ ଲେଖନ୍ତି]

[ଦ୍ରଷ୍ଟବ୍ୟ – ଭଦ୍ରବ୍ୟକ୍ତି ଓ ରାଜାମାନେ ନିଜ ସ୍ତ୍ରୀଙ୍କ କଥା ପଡ଼ିଲେ 'ମୋ ସ୍ତ୍ରୀ ନ କହି 'ଘରଆଢ଼' 'ଉଆସଆଢ଼' ଶବ୍ଦ ବ୍ୟବହାର କରନ୍ତି । ଯଥା 'ଉଆସ ଆଢ଼ରୁ ଆମକୁ ଆଜି ଡାକରା ଆସିଛି']

ଦେଶଜ-ବିଣ – (ସଂସ୍କୃତ ଅରାଳ = ବକ୍ର, ତିର୍ଯ୍ୟକ୍)

୧. ବକ୍ର; ତିର୍ଯ୍ୟକ୍; ତେରଛ Inclined; oblique;
आड़; टैढ़ा slanting [ଯଥା ଆଢ଼ଖରା, ଆଢ଼ଦୃଷ୍ଟି]

୨. ଅନ୍ତରିତ; ସ୍ଥାନାନ୍ତରକୁ ଗତ – Keeping aloof; gone away.
[ପଣନ୍ତ ପ୍ରସାରି ମାଗୁଛି ମୁଁ ଏତେ ଆଢ଼ ହୁଅ ଥରେ ଦୟା କରି ।]

ଗୋପାଳକୃଷ୍ଣ – ପଦ୍ୟାବଳୀ

[ପିତାର ପାପକୁ ଦେଖି ପୁତ୍ରେ ଆଢ଼ ହେଲେ [ସାରଳା – ମହାଭାରତ]

୩. ଅନ୍ତର୍ହିତ, ଅଦୃଶ୍ୟ – Disappearing; invisible.
[କ୍ଷଣେ ଇକ୍ଷଣରୁ ଆଢ଼ ହେଲେ ଦଶ, ଦିଶ ଦିଶୁଛି ତ ମତେ ଶୂନ୍ୟ]

ଗୋପାଳକୃଷ୍ଣ – ପଦ୍ୟାବଳୀ

୪. ପଳାୟିତ, ଦ୍ରୁତ ଗତିରେ ଦୂରକୁ ଗତ, ଦୂରକୁ ଛିଡ଼ିକି ଯିବା– Fled away; moving off swiftly to a distance.
[ଲକ୍ଷେ ଯୋଜନରେ ଶର ପଡ଼େ ଆଢ଼ ହୋଇ] ପୀତାମ୍ବର – ନୃସିଂହ ପୁରାଣ

୫. ଈଷତ୍ ବକ୍ର, ଟେରା (ଆଖି) – Sidelong; aslant; squinting (eye)
[ଆଢ଼ନୟନ ବଙ୍କା ଭୂରୁ, ଯାକୁ ଜାଣିବ ଠକଙ୍କ ଗୁରୁ] – ଢଗ

୬. ଆଢ଼େଇ ଯିବା, ପାଖେଇ ଯିବା, ଏକପାଖକୁ ଘୁଞ୍ଚିଯିବା – Moving off to one side.
[କହୁ କହୁ ସମର ଯେ ଲାଗିଲାକ ବେନି, ଦେଖୁଣ ଆଢ଼ ହୋଇଲେ ଦକ୍ଷର ନନ୍ଦିନୀ]

– ମହାଦେବ ମାର୍କଣ୍ଡେୟ ପୁରାଣ

୭. (ସଂସ୍କୃତ, ଅଳ = ବାରଣ, ଅଟକ) ବିପକ୍ଷ, ପ୍ରତିକୂଳ, ବାମ – Opposed; inimical; unfavourable. [ତାକୁ ଦଇବ ଆଡ଼ ହେଲାଣି]

୮. ଚଉଡ଼ା ବାଗରେ ପଡ଼ିଥିବା – Placed crosswise; laid across. [ଆଡ଼କାଠି, ଆଡ଼ବନ୍ଧ]

୯. ବାଧାଜନକ, ବିଘ୍ନ କର – Obstructing; impeding.

୧୦. (ସଂସ୍କୃତ ଅର୍ଦ୍ଧ) ଅର୍ଦ୍ଧ, ଅଧା – Half
[ତୁଲ୍ୟ ବାଲ୍ୟାରୁଣ ଦ୍ୟୁତି ଲଙ୍ଘି ତନୂଦରୀ ହୋଇ ଆଡ଼େ ଲାଗି
କ୍ଵାଳ କଜ୍ଜ୍ଵଳ କାନ୍ତି ଚୀନଚେଳ ପିନ୍ଧି ଚଳିବ କଳ ଧୋତାଙ୍ଗୀ]
ଗୋପାଳକୃଷ୍ଣ – ପଦ୍ୟାବଳୀ

୧୧. ଈଷତ୍, ସାମାନ୍ୟ – Slight [ଆଡ଼ରୁଣା, ଆଡ଼ ଅନ୍ଧାର]

୧୨. (ସଂସ୍କୃତ ଉଦ୍‌ବୃତ୍ତ, ଅର୍ଦ୍ଧ) ବଳି ପଡ଼ିଥିବା, ଉଦ୍‌ବୃତ୍ତ ରହିଥିବା – Remaining over. [ଅଡ଼ ଘିଅ]

୧୩. ଅନ୍ୟଥାକୃତ, ଅବଜ୍ଞାତ – Disobeyed; disregarded.
[ ମୁଁ ଆପଣଙ୍କ କଥାକୁ ଆଡ଼ କରିପାରିବି ନାହିଁ ]

୧୪. ଏକ ପାଖରେ ସ୍ଥିତ ବା ସଜ୍ଜିତ; ଏକପାଖିଆ – Onesided; situated or arranged on oneside.
[ଆଡ଼ କରିଣ କଛା ମାରି ଦେଇଛନ୍ତି ] କୃଷ୍ଣସିଂହ – ମହାଭାରତ ଆଦିପର୍ବ ।

୧୫. ଅମୁକ ସ୍ଥାନକୁ ପଡ଼ିଥିବା (ବାଟ ବା ରାସ୍ତା) – road leading to (such & such a place).
[ଗଭୀର ତୀର୍ଥ ଆଡ଼ ବାଟ ଚାଲି କହ ବଂଶୀ ଛୁଇଁ ଛାଡ଼ିଲି ବୋଲି – ଗୋପାଳକୃଷ୍ଣ – ପଦ୍ୟାବଳୀ ।] (Plantains) counted by a unit of 64 or 80. [ସତ୍ୟବାଦୀରେ ଟଙ୍କାକୁ ଦେଢ଼ ଆଡ଼ କଦଳୀ ମିଳୁଛି]

୧୭. ଆଡ଼ର (ଦେଖ)

ଦେଶଜ – ବିଶର ବିଣ (ଅନ୍ୟ ଶବ୍ଦ ପୂର୍ବେ ଲାଗେ) ।

୧. (ସଂସ୍କୃତ, ଅର୍ଦ୍ଧ) ଅଧା, ଅଥ – Half.
आड़ा [ଆଡ଼ପେଲାଥ]

୨. ଈଷଦ୍ ସାମାନ୍ୟରେ – Slightly. [ଆଡ଼ବଙ୍କା, ଆଡ଼ବହଳିଆ]

(ଦ୍ରଷ୍ଟବ୍ୟ – ସଂସ୍କୃତ ଅଡ୍‌ଧାତୁ – to join – ଯୋଗ କରିବ; to stop – ବନ୍ଦ କରିବା, ଅଟକାଇବା; ଦ୍ରାବିଡ଼ୀୟ ଭାଷାମାନଙ୍କରେ ଆଦ୍‌ଡ଼ ଧାତୁ ଅନେକ ଆକାର ଧାରଣ କରି ନିମ୍ନୋକ୍ତ ଅର୍ଥରେ ବ୍ୟବହୃତ ହୁଏ, – ନିକଟରେ ଥିବା – to be near, ନିକଟରେ – close. ପାରିହେବା – to cross, ବନ୍ଦ କରିବା, ଅଟକାଇବା – to stop ଇତ୍ୟାଦି – ବିମ୍‌ସ –Comparative grammar. ସଂଅଳ = ବାରଣ, ରୋକ୍ [ହିନ୍ଦୀ ଶବ୍ଦସାଗର]

ଆଡ଼ଅନ୍ତର
Arda-antara
अलग
} ଦେଶଜ, ବିଣ (ସଂସ୍କୃତ ଅର୍ଦ୍ଧ + ଅନ୍ତର) ପାଖଛଡ଼ା; ପାର୍ଶ୍ୱରୁ ଅନ୍ତରିତ –Dissociated or Separated from.

[ସଇତା × × × ଛାୟା ପରି ଦିନରାତି ସବୁବେଳେ ସା'ନ୍ତଙ୍କ ପାଖରୁ ଟିକିଏ ବି ଆଡ଼ଅନ୍ତର ହୁଏ ନାହିଁ ।
[ଫକୀରମୋହନ – ପ୍ରାୟଶ୍ଚିତ୍ତ]

ଆଡ଼ଅନ୍ଧାର
Arda-andhara
थोड़ासा अंधिआरा
}– ଦେଶଜ. ବି. (ସଂସ୍କୃତ ଅର୍ଦ୍ଧ + ଅନ୍ଧକାର)

୧. ଈଷତ୍ ଅନ୍ଧକାର – Slight darkness.

୨. ଈଷତ୍ ଅନ୍ଧକାରମୟ ସ୍ଥାନ – Slight dark place.

[ ଚୋରଟା ଟିକିଏ ଆଡ଼ଅନ୍ଧାରରେ ବନ୍ଧା ହୋଇଛି ।
ଫକୀରମୋହନ – ପ୍ରାୟଶ୍ଚିତ୍ତ ।]

ଆଡ଼ଆଖି
Arda-khi
कन्आंख, जरानजर्
} ଦେଶଜ, ବି. (ସଂସ୍କୃତ ଅର୍ଦ୍ଧ + ଅକ୍ଷି)

୧. ଈଷତ୍ ଦୃଷ୍ଟି – Glimpse, glance; slight look.
୨. ବକ୍ରଦୃଷ୍ଟି – Sidelong glance.
୩. ଟେରାଆଖି – Squinting eye.

ଆଡ଼ଆଖିଆ
Arda-akhia
कन्आंखवाला
} – ଦେଶଜ, ବିଣ – ଟେରା – Squint eyed. ଯେ ବାଙ୍କ ଚାହାଣିରେ ଚାହେଁ - Ogling; casting sidelong glances.

ଆଡ଼ ଆଖିରେ ଅନାଇବା
Arda-akhire-annaiba } – ଦେଶଜ. କ୍ରି – ସକର୍ମକ
कन्‌अंखियोंमे तकाना

୧. ସାମାନ୍ୟ ଦୃଷ୍ଟିରେ ଦେଖିବା – To case a glance.
୨. ଈଷଦ୍ ବକ୍ରଦୃଷ୍ଟିରେ ଚାହିଁବା – To cast a sidelong glance; to look askance at.
୩. ଟେରେଇ କରି ଚାହିଁବା – To squint at.
୪. (ଲକ୍ଷଣାର୍ଥ) ସାମାନ୍ୟ ଅନୁଗ୍ରହ ପ୍ରକାଶ କରିବା, ଅନୁକୂଳ ହେବା – To cast a favourable look on; to look with a little favour on; to bestow a slight favour on; to be favourably disposed towards.

ଆଡ଼ଆଖିରେ ଚାହିଁବା
Arda-akhire-chahinba } – ଦେଶଜ. କ୍ରି. ଆଡ଼ଆଖିରେ ଅନାଇବା (ଦେଖ)।

ଆଡ଼ଆଖିରେ ଡକାଇବା
Arda-akhire-takaiba } – ଦେଶଜ. କ୍ରି, ଆଡ଼ଆଖିରେ ଅନାଇବା (ଦେଖ)।

ଆଡ଼ଆଡ଼
Arda-arda } – ଦେଶଜ. ବିଣ (ସଂସ୍କୃତ. ଅର୍ଦ୍ଧ + ଅର୍ଦ୍ଧ)

୧. ଏକପାଖିଆ – Sidelong.
୨. ଲଜ୍ଜା, ଭୟ ବା ଅଭିମାନ ଯୋଗୁଁ ସାମନାରେ କଥା କହିବାକୁ ବା ଆଗରେ ଠିଆ ହେବାକୁ ସଙ୍କୋଚ ବୋଧ କରୁଥିବା (ବ୍ୟକ୍ତି) – Feeling sensitive to stand and speak face to face.
[କୌଣସି କଥା ପଚାରିବାକୁ ମୁଁ ନନାଙ୍କ ପାଖକୁ ଗଲେ ଆଡ଼ ଆଡ଼ ହୁଏ]

ଆଡ଼ଆଡ଼ପେଲା
Arda-arda-pela } – ଦେଶଜ. ବିଣ (ସଂସ୍କୃତ ଅର୍ଦ୍ଧ + କିଳିତ)
कुछकुछ खुला

୧. ଥରକୁ ଥର ଈଷଦ୍ ଖୋଲା ଯାଉଥିବା; ପୁନଃ ପୁନଃ ଈଷଦ୍ ଉଦ୍ଘାଟିତ (କବାଟ) – Partially opened over and over.
[ଦେଖୁଥାଇ ନାଟ, ତା ପକ୍ଷ୍ମ କବାଟ ଆଡ଼ଆଡ଼ପେଲା କରି – କବିସୂର୍ଯ୍ୟ – ସଙ୍ଗୀତ]
୨. ପୁନଃ ପୁନଃ ଆଡ଼ପେଲା ବା ଈଷଦ୍ ମୁଦ୍ରିତ; ବାରମ୍ବାର ଦରଆଉଜା ହେଉଥିବା (କବାଟ) – Slightly closed again and again.
[ଦିନଯାକ ତାଙ୍କ ଦାଣ୍ଡକବାଟ ଆଡ଼ଆଡ଼ ପେଲା ହୋଇଥାଏ]

୩. ଆଡ଼ପେଲା (ଦେଖ) ।
[ ଦ୍ରଷ୍ଟବ୍ୟ – ଆଡ଼ ଶବ୍ଦର ଦ୍ୱିତୀୟ ଥର ପ୍ରୟୋଗ ପୁନଃ ପୁନଃ ଆଡ଼ପେଲା ହେବାର ସୂଚକ]

ଆଡ଼ଆଡ଼ ହେବା
Arda arda heba } – ଦେଶଜ. କ୍ରି – ଅକର୍ମକ.
अटपटाना

୧. ଲଜ୍ଜା, ଭୟ. ଅଭିମାନ, ସମ୍ଭ୍ରମ ଯୋଗୁଁ କୌଣସି ବ୍ୟକ୍ତିଙ୍କ ସାମନାରେ ବା ମୁହାଁମୁହିଁ ଠିଆ ନ ହୋଇ ସଙ୍କୋଚଯୁକ୍ତ ଓ ଏକପାଖିଆ ହେବା – To feel sensitive to stand before & speak to a person face to face.
[ ଆମ ସମାଜରେ ବୋହୂ, ଶାଶୂ ଆଦି ଗୁରୁଜନଙ୍କୁ ଦେଖିଲେ ଆଡ଼ ଆଡ଼ ହୁଏ ।]

୨. କୌଣସି କାର୍ଯ୍ୟରୁ ସାମାନ୍ୟ ଅନ୍ତରରେ ରହିବା; କୌଣସି କାର୍ଯ୍ୟ ସହିତ ସାକ୍ଷାତ୍ ସମ୍ବନ୍ଧ ବା ଘନିଷ୍ଠ ସମ୍ପର୍କ ନ ରଖିବା – To keep one's self aloof from any matter.

୩. କୌଣସି କାର୍ଯ୍ୟ କରିବାକୁ ପଶ୍ଚାତ୍‌ପଦ ହେବା; ଥା ଥା ମା ମା ହେବା – To shrink from doing a thing.

୪. କୌଣସି କାର୍ଯ୍ୟ କରିବାକୁ ଦୋଦୋପାଞ୍ଚ କରିବା, ଦ୍ୱିଧା କରିବା – To hesitate.

ଆଡ଼ ଉହାଡ଼
Arda-uharda } – ଦେଶଜ. ବି – (ସଂ ଅରାଳ + ଅନ୍ତରାଳ)
आड्औड्

୧. ଆଡୁଆଳ, ଅନ୍ତରାଳ – Backside of an inter thing.
[ପ୍ରାଣମିତିଣି, ବିନୟବାଣୀ, ଆଡ଼ଉହାଡ଼ରେ ରହି ଶୁଣାଗଲାନି]
ଗୋପାଳକୃଷ୍ଣ – ପଦ୍ୟାବଳୀ

୨. ପାଶ୍ୱବର୍ତ୍ତୀ ଅଦୃଶ୍ୟ ସ୍ଥାନ – Invisible place near by; a contiguous position which is not visible to a person.
[ଶୁଣି ନ ଶୁଣିଲା ପରି ମୁଁ ଯାଉଛି ଆଡ଼ଉହାଡ଼ରେ ଶବଦାଉ]
ଗୋପାଳକୃଷ୍ଣ – ପଦ୍ୟାବଳୀ

୩. ବାହାରେ ଥିବା ଲୋକଙ୍କୁ ଦେଖା ନ ଯିବା ଘରର ଭିତର ଅଂଶ – A place inside the room which is not visible from outside.
[ଲାଜରେ ସେ ସତୀ ଆଡ଼ ଉହାଡ଼ରେ ରହି] ବଳରାମ – ରାମାୟଣ

୪. ଆଡ଼ମୁହାଁ; ଆଡ଼ତିଆଡ଼; ବାଘମୁହାଁ; ଘର ଭିତରେ ଦୁଆରମୁହଁଠାରୁ କିଛି ଛଡ଼ାରେ ଦ୍ୱାରର ସାମନାରେ ନିର୍ମିତ ଅଧାକାନ୍ଥ;

(ଏହି ଅଧାକାନ୍ଥି ଯୋଗୁଁ ବାହାରେ ଠିଆ ହେବା ବ୍ୟକ୍ତି ଘର ଭିତରର ଘଟଣା ଦେଖିପାରେ ନାହିଁ) – A low wall or barrier built inside a room in front of the door, so that the inside is not visible from outside. [ଗୋପୀମାନଙ୍କର ଗୋଳ ଶୁଣିଣ ଅଇଲେ ଆଡ଼ଉହାଡ଼ରେ ରହି ତାଙ୍କୁ ଅନାଇଲେ ନାରାୟଣ – ହରିବଂଶ]

୫. ଯେଉଁ କୋଠରିରେ ଦୁଇ ଦିଗର କବାଟ ପରସ୍ପର ସମ୍ମୁଖୀନ ନ ହୋଇ ଆଡ଼ବାଗରେ ଲଗାଯାଇଥାଏ (ଏପରି କୋଠରିର ବାହାରେ ଠିଆ ହେବା ଲୋକର ନଜର କୋଠରି ଭିତରକୁ ଚପି ଯାଇପାରେ ନାହିଁ) – A room in which the opposite doors do not directly face each other but are set, one collaterally to the other.

ଆଡ଼କଣ୍ଟା
Arda kanta – ଦେଶଜ. ବି – (ସଂସ୍କୃତ ଅର୍ଦ୍ଧ + କଣ୍ଟକ)
बगलिडङ्क; अङ्कड़िऐ

୧. ପରୋକ୍ଷ ଭାବରେ କୌଣସି ବ୍ୟକ୍ତି ପ୍ରତି ପ୍ରଯୁକ୍ତ କଣ୍ଟା ବା ମୁନିଆ ଶାସ୍ତ୍ର A Prick or pin by which a person is pricked indirectly, i.e., by which sidelong pricks or piapricks are administered to a person. [ମାରଟ ଅଭିଯୋଗରେ ବିଚାରପତି ଖବରକାଗଜ ପଢ଼ି ଏବଂ ଘରୁ, ବାହାରୁ, ଉପରୁ ମାଲିକମାନଙ୍କ ଆଡ଼କଣ୍ଟା ଗେଞ୍ଜା ଖାଇ ଅବା ଧୈର୍ଯ୍ୟ ଧରି ରହିପାରିବେ କିପରି ?
ଦୈନିକ ଆଶା ୪।୭।୨୯]

୨. ବକ୍ରାଗ୍ରକଣ୍ଟା – A hooked nail.

ଆଡ଼କରିବା
Arda kariba – ଦେଶଜ. କ୍ରି. ସକର୍ମକ (ତୁଳନା କର ତାମିଳ – ଆଡ଼ୁକୁ = ଏକତ୍ର କରିବା, ଗଦା କରିବା; ସଂସ୍କୃତ ଅଡ଼ଧାତୁ, ଓ ଅଳଧାତୁ = ବାରଣ କରିବା, ଅଟକାଇବା)
झटाना, ढकेलना, आड़करना

୧. ଚଢ଼ିବା, ଦୂର କରିବା; ଦୂରକୁ ହଟାଇବା; ସ୍ଥାନାନ୍ତର କରିବା – To remove; to drive off. [ପରିଜନେ ଆଡ଼ କରନ୍ତି ନର ଭକ୍ତଚରଣ – ମଥୁରାମଙ୍ଗଳ]

୨. ଆଡ଼େଇବା, ପାଖେଇବା –To move to one side. [ହସ୍ତୀକି ବେଗ କରି ନିଅ ତୁ ଆଡ଼ କରି ନାରାୟଣ – ହରିବଂଶ]

୩. ଯତ୍ନ ନ ନେବା – To neglect; to take no care of.
[ପିଲାଗୁଡ଼ିକୁ ସାବତମା ଆଡ଼କରି ଦେଲାଣି]

୪. ନ ଶଙ୍ଖୁଳିବା; ନ ପଚାରିବା; ପରକରିବା – To ignore; to cease to enquire of; to treat as a stranger.
[ମୋ ଝିଅ ମଲା ଦିନୁ ଢୋଇଁ ମତେ ଆଡ଼ କରି ଦେଲେଣି]

୫. ପରିତ୍ୟାଗ କରିବା – To abandon.
[ସେ ଢନ୍ଲ କଲା ପିଲାକୁ ଆଡ଼ କରି ଦେଇ ଚାଲିଗଲା]

୬. ପାସୋରିବା –To forget.
[ମୁଁ ବୁଢ଼ାଦିନେ ବହି ପାଠଯାକ ଆଡ଼ କରି ଦେଲିଣିଅ]

୭. ଏକପାଖକୁ ରଖିବା ବା ସଜାଇବା – To put on side; to arrange on one side.
[ଆଡ଼ କରିଣ ବଛା ମାରି ଦେଇଛନ୍ତି କୃଷ୍ଣସିଂହ] – ମହାଭାରତ, ଆଦିପର୍ବ

୮. ଆଡ଼ ବା ପ୍ରସ୍ଥ ବାଗରେ ପକାଇବା – To put breadthwise; to throw across.
[ପୁଣି ଆଡ଼ କରିଣ ରଙ୍ଗ ଦୋଷଡ଼ାକୁ କୃଷ୍ଣସିଂହ] – ମହାଭାରତ, ସଭାପର୍ବ

୯. ଆଡୁଆଳ କରିବା; ଅନ୍ତରାଳରେ ରଖିବା; ଅଡ଼ିବା – To put between; to put as a shield between.
[ବରଷା ଛାଟରୁ ରକ୍ଷା ପାଇବାକୁ ମୁଁ ତାକୁ ଆଡ଼ କରି ଦେଲି]

୧୦. ଏକ ପାଖକୁ ବୁଲାଇ ଦେବା – To turn to one side; to turn away.
[ବଳାତ୍କାରେ ନିଜର ଆସନରୁ ଉଠି ଚାହିଁଲେ ସେ ନଳଙ୍କୁ ଆଡ଼ କରି ପିଠି କୃଷ୍ଣସିଂହ]
– ମହାଭାରତ, ବନପର୍ବ

୧୧. ଜୁଆ, ପଶା ଆଦି ଖେଳରେ ବାକି ବା ପଣ ରଖିବା – To lay a wager or stake in a game.
[ମୁର ବୋଲେ ଭାଇ ସବୁ ଦ୍ରବ୍ୟ କଲି ଆଡ଼ ପୀତାମ୍ବର] – ନୃସିଂହ ପୁରାଣ

ଆଡ଼କଳା / Arda kala – ପ୍ରାଦେଶିକ (ଗଡ଼ଜାତ) ବିଣ – ସମ୍ପୂର୍ଣ୍ଣରୂପେ ପାଚିବା ପୂର୍ବରୁ ଈଷଦ୍ କଳା ବା ହଳଦିଆ ହୋଇଥିବା (କୋଳି); ଈଷଦ୍ ପକ୍ୱ, ଅର୍ଦ୍ଧ ପକ୍ୱ – Half ripe (berry).

ଆଡ଼କା / Ardaka / औऱ्का – ଦେଶଜ, ବିଣ (ଅନ୍ୟ ଶବ୍ଦ ସଙ୍ଗେ ଲାଗେ) – (ଅମୁକ) ଆଡ଼ର; ଆଡ଼କର; ଦିଗର – of (such and such) side.
[ଆଖପାଖିଆ ଗାଁ ଚାରିଆଡ଼କା ଲୋକେ ଚନ୍ଦନପୁର ଗଡ଼କୁ ଧାଇଁଅଛନ୍ତି ଫକୀରମୋହନ – ପ୍ରାୟଶ୍ଚିତ୍ତ – ୨୨]

ଆଡ଼କାଟି
Ardakati
रङ्ग रुट
} – ବୈଦେଶିକ. ବି. – (ଇଂରାଜୀ Recruiter ?)

୧. ବିଦେଶକୁ କୁଲି ସଂଗ୍ରହ କରିବା ବ୍ୟକ୍ତିର ମଫସଲ ଗୁମାସ୍ତା; ଯେଉଁ ବ୍ୟକ୍ତି ମଫସଲରେ ବୁଲି ମାଲିକ ପାଇଁ କୁଲି ସଂଗ୍ରହ କରେ – A village cooly recruiter; a cooly recruiter's agent.

पत्वारिया ୨. ସମୁଦ୍ର ଓ ନଦୀର ଗଭୀରତା ଏବଂ ତଳେ ଥିବା ବୁଡ଼ା ପଥର ଆଦିକୁ ଉଣ୍ଡି ଉଣ୍ଡି ଜାହାଜ ବା ନୌକାକୁ ନିରାପଦରେ ଚଳାଇ ଆପଦଜନକ ସ୍ଥାନମାନ ପାରି କରିବା ପାଇଁ ନିଯୁକ୍ତ ଅଭିଜ୍ଞ ଚାଳକ; କଡୁଆଳ – Pilot.

୩. ଦେଶଜ – ବି. ଆଡ଼କାଠ (ଦେଖ)

ଆଡ଼କାଠ
Ardakatha
आड़िकाठ, डण्ड
} – ଦେ – ବି. (ସଂସ୍କୃତ, ହଡ଼ିକାଷ୍ଠ;)

୧. ତନ୍ତର ବାଆଁ ପାଖରୁ ଡାହାଣକୁ ଲଗା ଯାଇଥିବା ଦଣ୍ଡ – The beam of a weaver's loom; a weaver's beam; a weaver's rod.

୨. ଚାଳଘରର ଗୋଟିଏ କାନ୍ଥ ଉପରୁ ବିପରୀତ କାନ୍ଥର ମୁଣ୍ଡରୁ ଚଉଡ଼ା ବାଗରେ ପଡ଼ିଥିବା କାଠ; ଓରା – Cross beam laid on the top of the opposite walls of a thatched house.

[ଆଡ଼କାଠରେ ଡେରା ହୋଇଛି ଦେବଧନୁ ଦେଖି ଆନନ୍ଦ ହୋଇଲେ ଯଶୋଦାର ସୁନୁ ନାରାୟଣ – ହରିବଂଶ]

अलगड़ा, छड

୩. ଅର୍ଗଳ; ଅଲଗଡ଼ା; ବାଟକୁ ବା ଖୋଲା ଜାଗାକୁ ସାମୟିକ

ଅବରୋଧ କରିବା ( ଓ ଦରକାର ପଡ଼ିଲେ ଖୋଲିଦେବା) ପାଇଁ ବାଟ ବା ଖୋଲା ଫାଙ୍କର ଦୁଇପାଖରେ ପୋତା ହୋଇଥିବା ଦୁଇ ଖୁଣ୍ଟର କଣାରେ ଗଳା ଯାଇଥିବା କାଠ; ଧଡ଼ା – A crossbar; a removable bar put across a road or opening to temporarily prevent free ingress and egress.

୪. ପଶୁ ବଳି ଦେବାପାଇଁ ବ୍ୟବହୃତ ଅର୍ଗଳ ବା କୀଳକ – A bar put across the opening of a contrivance in which the neck of a victim is put for being slaughtered.

हड़ि

୫. ହଡ଼ିକାଠ; ହରିକାଠ (ଦେଖ)
The stocks; wooden fetters.

୬. ନାଳ ବା ପହଣି ପାରି ହେବାପାଇଁ ନାଳ ଉପରେ ପ୍ରସ୍ତବାଗରେ ବା ଆଡ଼ବାଗରେ ପଡ଼ିଥିବା ଲମ୍ବ କାଠ –Any piece of wood laid crosswise over a channel.

आड़डराड़ा

୭. ଲମ୍ବଦଣ୍ଡରେ ଛକି ପଡ଼ି ବନ୍ଧା ଯାଇଥିବା ଛୋଟଦଣ୍ଡ – A small crossbar attached horizontally to a standing pole.

୮. ପ୍ରାଦେଶିକ (ସମ୍ବଲପୁର) – ବିଷମ ସମସ୍ୟା; ଧନ୍ଦା – Dilemma.

୯. ପ୍ରାଦେଶିକ (ସମ୍ବଲପୁର) – ଆଖଡ଼ା; ଆଖଞ୍ଜିଆ ଅବସ୍ଥା – Awkward position or predicament.
[ଯଥା, ସେ ମତେ ଆଡ଼କାଠରେ ପକାଇଦେଲା।]

ଆଡ଼କାଠି / Ardakathi – ଦେଶଜ. ବି. – ଆଡ଼କାଟି (ଦେଖ)।

ଆଡ଼କାଠୁଆ / Ardakathua – ଦେଶଜ. ବିଂ. (ସଂସ୍କୃତ ଅର୍ଦ୍ଧ + କାଷ୍ଠ) – ଆଡ଼ବହଳ (ଦେଖ)।

ଆଡ଼କାର / Ardakara – ଦେଶଜ. ବିଂ. (ଅନ୍ୟ ଶବ୍ଦ ପରେ ଲାଗେ) ଆଡ଼ର (ଦେଖ)।

ଆଡ଼କି / Ardaki – ପ୍ରାଦେଶିକ. ବି. (ସମ୍ବଲପୁର) – ଆଡ଼୍କି (ଦେଖ)।

ଆଡ଼କୁ / Ardaku / और – ଦେଶଜ ଅବ୍ୟୟ (ଅନ୍ୟ ଶବ୍ଦ ପରେ ଲାଗେ)
(ତୁଳନା କର – ପ୍ରାକୃତ-ଆଡୁ = ଆଡ଼; ଦିଗରୁ)
(ତୁଳନାରେ – ଇଂରାଜୀ – towards = ଆଡ଼କୁ; homewards = ଘର ଆଡ଼କୁ)

୧. (ଅମୁକ)ର ତରଫକୁ –Towards.
[କୁଅଁରବାବୁ ବସାଦୁଆର ଆଡ଼କୁ ମୁହଁ କରିଥିବାରୁ ସେମାନଙ୍କୁ ଦେଖି ନାହାନ୍ତି – ଫକୀରମୋହନ, ପ୍ରାୟଶ୍ଚିତ୍ତ – ୨୮]

୨. (ଅମୁକ) ଦିଗକୁ –Towards (such and such) a direction or quarter of the globe.
[ସୂର୍ଯ୍ୟ, ତାରା, ଚନ୍ଦ୍ର ଆଦି ପୂର୍ବ ଆଡୁ ଉଦୟ ହୋଇ ପଶ୍ଚିମଆଡ଼କୁ ଗତି କରନ୍ତି ।]

୩. (ଅମୁକ ବ୍ୟକ୍ତିର) ନିକଟକୁ; ପାଖକୁ –To; to the side of.
[ବିକଟାଳ ପାଟି ମେଲି ଗର୍ଜି କ୍ରୋଧରେ ଶ୍ରୀରାମ ଆଡ଼କୁ ଧାଇଁ ଆସିଲା ବେଗରେ ମଧୁସୂଦନ – ବାଇ ରାମାୟଣ]

୪. (ଅମୁକ) ଅଞ୍ଚଳକୁ – To (such and such) a locality.
[କାଲିର ବରଷା ଓ କୁଆପଥର ପୁରୀ ଆଡ଼କୁ ହୋଇ ନାହିଁ ।]

୫. (ଭବିଷ୍ୟତ୍‌ରେ ଅମୁକ ସମୟ) ସରିବି; ସୁଦ୍ଧା By or towards (any future time).
[ମୁଁ କାଲିଆଡ଼କୁ କଟକ ଯିବି ଓ ଅମାବାସ୍ୟା ଆଡ଼କୁ ଗାଆଁକୁ ଫେରିଆସିବି]

୬. (ଅମୁକ ବ୍ୟକ୍ତିତ୍ୱ) ସପକ୍ଷରେ; ପକ୍ଷ ସମର୍ଥନପୂର୍ବକ; ତରଫରୁ; ପକ୍ଷରୁ ।
[କଳିକାଣ୍ଠୋଇ ଶାଶୂ ତାକୁ ଗାଳିଦେଲାବେଳେ ବୋହୂ ବିଚାରୀ ଆଡ଼କୁ ପଦେ କଥା କହିବାକୁ ଚାକରବାକରଙ୍କର ଭରସା ପାଉ ନ ଥିଲା]

୭. (ଅମୁକ ବ୍ୟକ୍ତି ବା ବିଷୟ) କୁ ଲକ୍ଷ୍ୟ କରି; ଉଦ୍ଦେଶ୍ୟ କରି; ପରୋକ୍ଷରେ ଅମୁକବ୍ୟକ୍ତି ପ୍ରତି – Referring to or alluding to (such & such a person or matter); indirectly.
[ରାଧା – ମୋ ଆଡ଼କୁ କେଣେ ଚାଲୁ
ଲଳିତା – ଯଥାଯୋଗ୍ୟ ବୋଲି ମନ ଲୋଭାଇଲା କଥାକୁ କାହିଁକି ଛଳୁ]
ଗୋପାଳକୃଷ୍ଣ– ପଦ୍ୟାବଳୀ

[ସେ ତୁଚ୍ଛା ମୋହରି ଆଡ଼କୁ ଢଗ ମେଲୁଚି]

୮. (ଅମୁକ ସ୍ଥାନ) କୁ – To (such and such a place)
[ନିଜ ପର୍ବତରେ ବସି ସମୁଦ୍ରଆଡ଼କୁ ଏକଦୃଷ୍ଟେ ଚାହିଁଥାଏ – ରାମଶଙ୍କର-ପ୍ରେମଭରୀ]

ଆଡ଼କେ
Ardake
एकऔरमे
– ଦେଶଜ. ଅବ୍ୟୟ (ସଂ ଅର୍ଦ୍ଧ + ଏକ) –

୧. ଏକ ଦିଗରେ, ଏକ ପାଖରେ – On one side.
[ତରାଜୁର ଆଡ଼କେ ବଟକରା ଓ ଆଡ଼କେ ତଉଲାହେବା ଜିନିଷ ରଖାଯାଇ ତଉଲା ହୁଏ]

୨. ଏକପକ୍ଷରେ; ଏକଦଳରେ – In one party.
[ମହାଭାରତ ଯୁଦ୍ଧରେ ଆଡ଼କେ ଅସଂଖ୍ୟ ନାରାୟଣୀସେନା ଓ ଆଡ଼କେ ଏକା ଶ୍ରୀକୃଷ୍ଣ ଯୋଗ ଦେଇଥିଲେ]

୩. ଏକ ମୁଣ୍ଡରେ – At one end; at one extremity.
[ଏ ଛାତିର ଆଡ଼କେ ରୁପାଛାଆଣି ହୋଇଅଛି, ଆଡ଼କେ ପିତଳ ମୁଦିଆ ବସିଛି]

ଆଡ଼କେରିଆ } – ପ୍ରାଦେଶିକ (ସମ୍ବଲପୁର) କ୍ରି. ବିଣ –
Ardakeria } ଆଡ଼୍‌କେରିଆ (ଦେଖ) ।

ଆଡ଼୍‌ଖରା } ଦେଶଜ. ବି. (ସଂସ୍କୃତ ଆରାଳ + ଖର) ଆକାଶରେ
Ardakhara } – ପୂର୍ବ ବା ପଶ୍ଚିମରେ ସୂର୍ଯ୍ୟ ଥିବାବେଳେ ତେରଛା ହୋଇ
डेढ़ाधुप } ପଡ଼ିବା ଖରା – Oblique or slanting rays of the sun.

ଆଡ଼ଖୁର
Ardakhura } – ଦେଶଜ. ବି. (ତାମିଳ, – ଆଡ଼କୁ = ଏକତ୍ର କରିବା;
मन्दुक } ଗଦା କରିବା ।) –

୧. ଲୁଗା ଆଦି ରଖିବା ପାଇଁ ବ୍ୟବହୃତ ବେତର ପେଡ଼ି ବା ମଞ୍ଜୁଷା –Cane box; a box of wicker work with a removable lid.

୨. ଝିଅ ଶାଶୂଘରକୁ ପହିଲିପାଳି ଯିବାବେଳେ ତା ସଙ୍ଗେ ପଠାଯିବା କାଠର ବଡ଼ ଚିତ୍ର ପେଡ଼ି । (ହଳଦୀ, ମସଲାମସଲି, ପାଳିଆ, ଫରୁଆ, ଅଳତା ଆଦି ଏ ପେଡ଼ି ଭିତରେ ଥିବା ତାଲ୍‌ର ଖୋପମାନଙ୍କରେ ରଖାଯାଏ ।)

[ଦ୍ରଷ୍ଟବ୍ୟ – ଏହି ଶବ୍ଦ ପେଡ଼ି ଶବ୍ଦ ପରେ ସହଚରରୂପେ ବ୍ୟବହୃତ ହୁଏ ।]

ଆଡ଼ଖୁରା } – ଦେଶଜ. ବି. ଆଡ଼ଖୁର (ଦେଖ) ।
Ardakhura }

ଆଡ଼ଖେମଟା } – ଦେଶଜ. ବି. (ସଂସ୍କୃତ ଅର୍ଦ୍ଧ ଓ ହିନ୍ଦି ଖେମଟା)
Ardakhemata } ସଙ୍ଗୀତର ସହଜସାଧ ତାଳ ଓ ନୃତ୍ୟବିଶେଷ;

ଖେମଟାର ଅର୍ଦ୍ଧ ତାଳ } – light musical air & dance.
आड़ाखेमटा }

[ଖେମଟା ତାଳର ଏକ ପଦରୁ ଦୁଇ ଅସମ ମାତ୍ରାରେ ବିଭକ୍ତ କରି ବ୍ୟବହାର କରିବା ତାଳ (ଯୋଗେଇ ଚନ୍ଦ୍ର) । ୧୨ ଓ ମତାନ୍ତରରେ ୧୩୪ ମାତ୍ରା ଯୁକ୍ତ; ଏଥିରେ ୩ଟି ତାଳ ଓ ଗୋଟିଏ ଫାଙ୍କ ତାଳ ଥାଏ (ଜ୍ଞାନେନ୍ଦ୍ର) । ରାମଶଙ୍କରଙ୍କ କାଞ୍ଚିକାବେରୀ ୨।୧ ଓ ୫।୨ରେ ଏହି ତାଳର ଗୀତ ଅଛି ।]

ସାଧାରଣ ଲୋକେ ଅପରପୃଷ୍ଠାରେ ସୂଚିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରାମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରା ଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବଂଧୁ' ନ ପାଇଲେ 'ବନ୍ଧୁ' ଦେଖିବେ ।

**ଆଡ଼ଖୋଷା / Ardakhosa / टेढा खोंपा** – ଦେଶଜ. ବି. (ସଂସ୍କୃତ ଅର୍ଦ୍ଧ + କୋଷ) ଦକ୍ଷିଣୀ ଖୋଷା; ମୁଣ୍ଡ ପଛଆଡ଼େ ବେକର ଏକ ପାଖକୁ ଢଳା ହୋଇ ଟଭା ଫାଳ ପ୍ରାୟ ସଜ୍ଜିତ ଜୁଡ଼ା – A chignon made up on the back of the head & inclining to one side.
[ଆଡ଼ଖୋଷା କୁସୁମ ତୋରା ହା ହା କରି ଚୂର୍ଣ୍ଣୀଭୂତ ବି ତାରା ।
ଭଞ୍ଜ, ଲାବଣ୍ୟବତୀ

**ଆଡ଼ଘିଅ / Ardaghia / बचातिघी, बचाहुआ घी** – ଦେଶଜ. ବି. (ସଂସ୍କୃତ ଅର୍ଦ୍ଧଦଗ୍ଧ ବା ଉଦ୍ବୃତ୍ତ + ଘୃତ) ପୁରି ଓ ପିଠା ଆଦି ଛଣା ହେବା ପରେ କରେଇରେ ଉଦ୍ବୃତ୍ତ ଘିଅ – Remaining ghee left out in the pan after cakes are fried.

**ଆଡ଼ଙ୍ଗ / Ardanga / आड़ङ्ग** – ପ୍ରାଦେଶିକ (ପୁରୀ-ଚିଲିକା ଉପକୂଳ ଓ ବାଲେଶ୍ୱର) ବି. ଅଡ଼ଙ୍ଗ; ସମୁଦ୍ର ଉପକୂଳରେ କରକଚ (ସମୁଦ୍ର ପାଣିକୁ ଖରାରେ ଶୁଖାଇ ପ୍ରସ୍ତୁତ) ଓ ପଙ୍ଗା (ସମୁଦ୍ରପାଣିକୁ ନିଆଁରେ ଶୁଖାଇ ପ୍ରସ୍ତୁତ) ଲୁଣ ମରାଯିବା ପରେ ତାହା ଜମା କରାଯିବା ସ୍ଥାନ ବା ଗଞ୍ଜ; ଲୁଣ କାଣ୍ଡୀ; ଲୁଣ ଗୋଲାଅ – A mart where manufactured salt is stored; warehouse for salt.

**ଆଡ଼ଚଉତାଳି / Ardachautali** – ଦେଶଜ. ବି. – (ସଂ. ଅର୍ଦ୍ଧ + ଚତୁଃ + ତାଳ)

୧. ଏକପଦ ଓ ସାତ ମାତ୍ରା ଯୁକ୍ତ ତାଳବିଶେଷ – Name of a musical measure.
୨. ମୃଦଙ୍ଗର ତାଳବିଶେଷ – A musical measure employed in striking earthen drums.

**ଆଡ଼ଚକ୍ଷୁ / Ardachakshu** – ଦେଶଜ. ବି (ସଂ ଅର୍ଦ୍ଧ + ଚକ୍ଷୁଃ) ଆଡ଼ଆଖି (ଦେଖ) ।

**ଆଡ଼ଚଖୁ / Ardachakhu** – ଗ୍ରାମ୍ୟ. ବି. ଆଡ଼ଆଖି (ଦେଖ) ।

**ଆଡ଼ଚଛୁ / Ardachachhu** – ଗ୍ରାମ୍ୟ. ବି. ଆଡ଼ଆଖି (ଦେଖ) ।

**ଆଡ଼ଚାଳ / Ardachala / एकरुखी छपर** – ଦେଶଜ. ବି. (ସଂସ୍କୃତ ଅର୍ଦ୍ଧ + ଚାଳ)

୧. ଛୋଟ ଚାଳ – Small thatch.
୨. ଏକଚାଳି; ଚାଳିଘର – Onesided thatch, a lean-to.

ଆଡ଼ଚାହାଣି
Arda chahani
तीरछि नजर, कनखो,
टेढ़ै चितवन
— ଦେଶଜ. ବି. (ସଂସ୍କୃତ ଅରାଳ + ଓ, ଚାୟଧାତୁ)
ବାଙ୍କଚାହାଣି; ଦୃଷ୍ଟି; ଈଷତ୍ ବକ୍ରଦୃଷ୍ଟି – Sidelong glance; ogling.

ଆଡ଼ଚିରା
Ardachira
एकऔर कुदंना,
उझाल कुद
– ଦେଶଜ. ବି. (ସଂସ୍କୃତ ଅରାଳ + ଚରଧାତୁ)

୧. ଏକପାର୍ଶ୍ୱକୁ ଡେଇଁବା – Sideleap, caper.
[ଆଡ଼ଚରି ଗୋଟିଏକ ମାରି ତତ୍‌କ୍ଷଣ ତ୍ରିବିକ୍ରମ ପ୍ରାୟେ ଉଭା ହେବା ଠାଣିମାଣି ପୀତାମ୍ବର – ନୃସିଂହପୁରାଣ] ।

୨. ଏକପ୍ରକାର ନାଚ – A kind of dance.

ଆଡ଼ଚିରା ଦେବା
Ardachira deba
— ଦେଶଜ. କ୍ରି. ଆଡ଼ଚିରା ମାରିବା (ଦେଖ)

ଆଡ଼ଚିରା ମାରିବା
Ardachira mariba
उछाल कुद मारना
— ଦେଶଜ. କ୍ରି.

୧. କଡ଼ବାଟରେ ଡେଇଁବା; ଏକପାର୍ଶ୍ୱକୁ କୁଦା ମାରିବା
To leap sideways; to cut capers.
[ପୁଣି ନୃତ୍ୟ କରନ୍ତି ମାରନ୍ତି ଆଡ଼ଚିରା ସାରଳା – ମହାଭାରତ]

ଆଡ଼ଛତା
Ardachhata
आढनौ, अडानी
– ଦେଶଜ. ବି. (ସଂ. ଅରାଳ + ଛତ୍ର)

ରାଜା ଓ ଦେବତାଙ୍କ ଦେହରେ ଆଡ଼ଖରା ନ ପଡ଼ିବା ପାଇଁ ସେମାନଙ୍କ କଡ଼ରେ ଧରାଯିବା ପଙ୍ଖା ଆକୃତିର ଛତା; ଆଡ଼େଣି; ତ୍ରାସ – A fanshaped umbrella held up on the side of a king or Deity to ward off the slanting rays of the sun.

ଆଡ଼ଛତି
Ardachhati
– ଗ୍ରାମ୍ୟ. ବି.
ଆଡ଼ଛତା (ଦେଖ)

ଆଡ଼ଛତ୍ରୀ
Arda chhatri
– ଦେଶଜ. ବି.
ଆଡ଼ଛତା (ଦେଖ)

**ଆଡ଼ଛାଟ Ardachhata** – ଦେଶଜ. ବି. – ତେରଛାଭାବରେ ପଡୁଥିବା ବର୍ଷା ବା ଛଟା ହେବା ପାଣିର ଆଘାତ – Splashing of slanting rain against (a wall); beating of slanting showers against something.

[ପୂବେଇ ବର୍ଷା ଯୋଗୁଁ ପୂର୍ବପାଖ ହାତିଅନ୍ଦ କାନ୍ଥରେ ଆଡ଼ଛାଟ ମାରି କାନ୍ଥର ମାଟି ଧୋଇ ହୋଇଗଲାଣି]

**ଆଡ଼ଠେକା Ardatheka आड़ाठेका** – ଦେଶଜ. ବି – ଦେଶଜ. ବି – ସଙ୍ଗୀତ (ସଂସ୍କୃତ, ଅର୍ଦ୍ଧ + ସ୍ଥଗଧାତୁ; ଏଥିର ଗୋଟିଏ ପଦ ଅର୍ଦ୍ଧଭାଗରେ ବିଭକ୍ତ ହେବାରୁ) ଦ୍ରୁତ ବିଳମ୍ବିତ ରୂପେ ବଜାଯିବା ମଧ୍ୟମାନ ତାଳ । [ଏହା ନଅମାତ୍ରାର ତାଳ, ଏଥିରେ ତିନିଟି ତାଳ ଓ ଗୋଟିଏ ଫାଙ୍କ ତାଳ ଥାଏ] – ସଙ୍ଗୀତ ରତ୍ନାକର – ଙ୍କାନେନ୍ଦ୍ର

ଏହା ଚତୁର୍ମାତ୍ରିକ ତାଳ; ମଧ୍ୟମାନ ଆଡ଼ଠେକାର ଦ୍ୱିଗୁଣ – ଯୋଗେଶ୍ଚନ୍ଦ୍ର] ଠେକା ବା କାଓ୍ୱାଲି ତାଳର ଏକପଦ ଦୁଇ ଅର୍ଦ୍ଧରେ ବିଭକ୍ତ ହୋଇଥିବା ତାଳ – (music) A sort of irregular musical air.

**ଆଡ଼ଣ Ardana बचाना, आड़ना** – ଦେଶଜ. ବି – (ସଂସ୍କୃତ, ଅଳଧାତୁ = ବାରଣ କରିବା, ରୋକିବା. ସଂସ୍କୃତ, ଅଡ୍ଡଧାତୁ =

୧. ଆଡ଼ିବା କର୍ମ; ଦେହକୁ ଆସନ୍ନ ଆଘାତରୁ ରକ୍ଷା କରିବା କର୍ମ – Warding off blows; guarding of one's body against impending blows.

୨. ବିପକ୍ଷ ଯୋଦ୍ଧା ବା ମଲ୍ଲର ଆଘାତକୁ ଏଡ଼ିବାପାଇଁ ଯୋଦ୍ଧା ବା ମଲ୍ଲର କୌଶଳବିଶେଷ; ବିପକ୍ଷର ଶସ୍ତ୍ରାଘାତ ବା ମୁଷ୍ଟ୍ୟାଘାତ ଆପଣା ଦେହରେ ନ ଲାଗିବା ପ୍ରକାରେ ହାତ ବା ଅନ୍ୟ ଶସ୍ତ୍ର ବା ଢାଲଦ୍ୱାରା ଆପଣା ଦେହକୁ ରକ୍ଷା କରିବା – A pose of a warrior or athlete towards off the blow from an adversary; guarding of one's body from the blows of the attacking enemy with the hards or shied; a defensive pose.

[ଅଡ଼ଣ ତାଡ଼ଣ ସରଳି ଯିବା ଅଦୃଶ୍ୟ ହୋଇ ଠଣା ଧରିଥିବା– ଭକ୍ତଦାସ – ମଥୁରାମଙ୍ଗଳ]

ढाल ୩. (ସଂସ୍କୃତ, ଅଦ୍ଡନ) ଢାଲ – Shield.
[ଗଦା ଖଡ୍ଗ ଆଡ଼ଣ ନାନା ଫଳା ଧରି]
ବଳରାମ – ରାମାୟଣ

୪. (ପ୍ରାଚୀନ) ଯୁଦ୍ଧରେ ବ୍ୟବହୃତ ଶସ୍ତ୍ରବିଶେଷ – A kind of weapon used in ancient times.
[ପିଟଇ ଫଳା ଆଡ଼ଣ ସଙ୍ଗେ ନାହିଁ ସେହ୍ନା–]
ସାରଳା – ମହାଭାରତ

୫. ଆଡ଼ଖରା, ନିବାରଣାର୍ଥ ଟଙ୍କା ହୋଇଥିବା ପରଦା – Screen hung to keep off the slanting rays of the sun.

ଆଡ଼ଣି / Ardani / आड़णा – ଦେଶଜ. ବି – (ସଂସ୍କୃତ,ଅଦ୍ଡନୀ, ଅଡ୍ଡନୀ)

୧. ଢାଲ – Shield. [ଆଡ଼ଣି ଢାଣି ଯୋଡ଼ିଲା ହୃଦେ ଆଣି ଭେଦ ନୋହିବା ଉଦ୍ଦେଶ୍ୟେ]
ଭଞ୍ଜ – କୋଟି. ବ୍ର.ସୁ. ୨୯।୫

୨. ଆଡ଼ଛତା – (ଦେଖ) ।

୩. ପଙ୍ଖା ଆକୃତିର ରାଜସମ୍ଭାରବିଶେଷ – A royal parapher-nalia in the shape of a fan.
[ଆଡ଼ଣୀ ଚାମର ଯୁଗଳୀ ମୟୂରଛତ୍ର ନିଯୋଗୀ ଜନ ଖଟେ ] –
କବିସୂର୍ଯ୍ୟ – ଚନ୍ଦ୍ରକଳା

୪. ପ୍ରାଦେଶିକ (ଗଡ଼ଜାତ) ପ୍ରଗନ: ରାଜ୍ୟର ରାଜସ୍ୱ ବିଭାଗୀୟ ଅଂଶବିଶେଷ – Perganna; a fiscal division.

୫. ପ୍ରାଦେଶିକ (ଗଞ୍ଜାମ) (ସଂ. ଆଡ଼ମ୍ବର) ଆଡ଼ମ୍ବର – Pomp; grandeour [ତାଙ୍କେ ଖୁବ୍ ଆଡ଼ଣିରେ ଅଛନ୍ତି ।]

୬. ପ୍ରାଦେଶିକ (ସମ୍ବଲପୁର) – ଆଡ଼୍‌ନୀଜାଲ୍ (ଦେଖ) ।

୭. ପ୍ରାଦେଶିକ (ଗଡ଼ଜାତ, ଖୋରଧା) – ଅସମାନ ବାଟରେ ଯାଉଥିବା ଶଗଡ଼ର ଗୋଟିଏ ଚକ ଯେଉଁ ଖାଲୁଆ ଗୁଳା ବା ସରିରେ ପଡ଼ିଥାଏ – The lover truck or rut in an unlevel cart-track.

ଆଡ଼ଣିଜାଲ୍ / Ardanijal – ପ୍ରାଦେଶିକ (ସମ୍ବଲପୁର) ବି. ଆଡ଼୍‌ନୀଜାଲ୍ (ଦେଖ)

ଆଡ଼ତ୍
Ardat } –
आढत

ବୈଦେଶିକ ବି. (ପାରସୀ, ଆଡ଼ତ୍; ତୁଳନାକର – ସଂସ୍କୃତ, ଅନ୍ତରାଳ;)

୧. ପେଣ୍ଠ; ଗଞ୍ଜ; ଯେଉଁ ସ୍ଥାନରେ ପଣ୍ୟଦ୍ରବ୍ୟମାନ କ୍ରୟ ବିକ୍ରୟାର୍ଥ ରୁଣ୍ଡ କରାଯାଏ – Mart; emporium.

୨. ଦଲାଲ ବା ଦଣ୍ଡୀଦାରମାନଙ୍କ ଛରିଆରେ ପଣ୍ୟଦ୍ରବ୍ୟର କ୍ରୟ ବିକ୍ରୟ ପାଇଁ ରାଜାଦେଶଦ୍ୱାରା ନିର୍ଦ୍ଦିଷ୍ଟ ସ୍ଥାନ – A licensed mart for wholesale transactions carried on through commission agents.

୩. ପଣ୍ୟଦ୍ରବ୍ୟ ସଞ୍ଚିତ ହେବାର ଭଣ୍ଡାର; ଗୋଦାମଘର – Warehouse; godown.

ଆଡ଼ତ୍ଦାର୍
Ardatdar } –
आढत्दार

ବୈଦେଶିକ. ବି. (ପାରସୀ, ଆଡ଼ତ୍ଦାର୍)

୧. ନିର୍ଦ୍ଦିଷ୍ଟ ପାରିଶ୍ରମିକ ପାଇ ଅନ୍ୟ ବ୍ୟକ୍ତିଙ୍କ ପଣ୍ୟଦ୍ରବ୍ୟମାନ ବିକା କିଣା କରାଇ ଦେବାପାଇଁ ରାଜାଦେଶ ପ୍ରାପ୍ତ ବ୍ୟକ୍ତି; ଆଡ଼ତିଆ; ଦଣ୍ଡିଦାର୍ –

ସାଧାରଣ ଲୋକେ ଅପରପୃଷ୍ଠାରେ ସୂଚିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରାମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବଂଧୁ' ନ ପାଇଲେ 'ବନ୍ଧୁ' ଦେଖିବେ ।

A licensed commission agent for sale and purchase of merchandise

[ଦ୍ରଷ୍ଟବ୍ୟ – ଆଡ଼ତ୍ଦାରର ପାରିଶ୍ରମିକକୁ ପାଉସେରୀ ବୋଲାଯାଏ]

୨. ଯେଉଁ ବ୍ୟକ୍ତି କିଛି କମିସନ୍ ନେଇ ଘରୋଇ ଭାବରେ ଅନ୍ୟ ବ୍ୟକ୍ତିର ପଣ୍ୟଦ୍ରବ୍ୟକୁ ବିକାକିଣା କରାଇଦିଏ; ଦଲାଲ୍ – A private commission agent.

୩. ପଣ୍ୟଦ୍ରବ୍ୟକୁ ସାଇତି ରଖିବାପାଇଁ ଆପଣା ଜିମାରେ ନେବା ବ୍ୟକ୍ତି – A warehouse keeper.

ଆଡ଼ତ୍‌ଦାରି
Ardatdari
अड़तदारि
} – ବୈଦେଶିକ. ବି. (ଫାରସୀ)
ଆଡ଼ତ୍‌ଦାରର କର୍ମ ବା ପେସା – The Business or profession of a commission agent; commission agency.

ଆଡ଼ତଚ୍ଛୁ
Ardatachhu
} – ଗ୍ରାମ୍ୟ. ବି. (ସଂସ୍କୃତ ଅର୍ଦ୍ଧ + ଚକ୍ଷୁଃ) – ଆଡ଼ଚକ୍ଷୁ (ଦେଖ)

ଆଡ଼ତାଳ
Ardatála
आड़ताल
} – ଦେଶଜ. ବି. (ସଂସ୍କୃତ ଅର୍ଦ୍ଧ + ତାଳ)
ସଙ୍ଗୀତର ତାଳବିଶେଷ – Name of a musical measure.

ଆଡ଼ତି
Ardati
} – ଦେଶଜ. ବି. – (ସଂସ୍କୃତ ଆର୍ତ୍ତି = ପୀଡ଼ା; ପରିଶ୍ରମ ଯୋଗୁଁ ପୀଡ଼ା ହେବାରୁ)

खिदमत, टहल

୧. ଗୃହକର୍ମ, ଗୃହର ଦୈନନ୍ଦିନ ସାମାନ୍ୟ କର୍ମ; ଘର ପାଇଟି । (ଯଥା : ଘରଲିପା, ଘରଓଳିଆ, ବାସନମଜା, ଅଇଁଠା ପୋଛା ।) Menial domestic duties, petty household duties of everyday life.

[ଆବର ଅର୍ଚ୍ଚିବେ ଅପକାର୍ତ୍ତି ପ୍ରଜାପତି ସକଳ ଦେବଙ୍କୁ ଆଣି କରାନ୍ତି ଆଡ଼ତିଅ –
ମହାଦେବ – ମାର୍କଣ୍ଡେୟ ପୁରାଣ]

୨. ସାଧାରଣ କର୍ମ, କାର୍ଯ୍ୟ – Ordinary work,

[ପ୍ରତିଦିନ ସକାଳେ ଗୃହର ଯେଉଁ ଯେଉଁ ଆବଶ୍ୟକୀୟ କର୍ମ କରାଯାଏ ତାକୁ 'ବାସୀଆଡ଼ତି' କହନ୍ତି; – ଯଥା: ଅଗଣାରେ ଗୋବରପାଣି ଛିଞ୍ଚିବା, ଘରଲିପିବା; ଗତକାଲିର ଅଇଁଠା ବାସନ ମାଜିବା, ଦାଣ୍ଡ, ବାଡ଼ିଆଡ଼ ଓ ଅଗଣା ଓଳାଇବା]

ଆଡ଼ତିଆ
Ardatia
खिद्‌मती, टहलुआ
} ଦେଶଜ. ବିଣ (ପୁଂ ଓ ସ୍ତ୍ରୀ) ଗୃହ କର୍ମ କରିବାରେ ଦକ୍ଷ ବା ନିପୁଣ – Vigilant or expert in performing the menial duties of a household. ଦେଶଜ. ବି.

अड़तिया — ୧. ଆଡ଼ଦ୍‌ଦାର (ଦେଖ)
୨. ଡଗର; ଚାର; ଦୂତ – Messenger.
[ତୁମ୍ଭଙ୍କୁ ପେଷିଅଛି ଅଡ଼ତିଆ ପଣେ ମହାଦେବ]
– ମାର୍କଣ୍ଡେୟ ପୁରାଣ।
୩. ଆଦେଶାବହ ଭୃତ୍ୟ; ପାଖଲୋକ; ପିଆଦା – Peon, an orderly servant.
୪. ପାଇଟିଆଳ; ସାମାନ୍ୟ ଗୃହକର୍ମ କରିବାପାଇଁ ନିଯୁକ୍ତ ଭୃତ୍ୟ; ଟହଲିଆ – Menial servant.

ଆଡ଼ତିଆଡ଼ / Ardatiarda – ଦେଶଜ. ବି.
ଆଡ଼ତିହାଡ଼ (ଦେଖ)
[ପୁରେ ପୁରେ ପଶି କରି ଗଲେ ସବୁ ଦେଖି ଆଡ଼ତିଆଡ଼ ଦୋମୁହିଁ ତାଙ୍କ ଆଖି ପାଖି] ପୀତାମ୍ବର – ନୃସିଂହ ପୁରାଣ

ଆଡ଼ତିଆଣୀ / Ardatiani – ଦେ. ବିଂ ଓ ବି (ସ୍ତ୍ରୀ) ଆଡ଼ତିଆର ସ୍ତ୍ରୀଲିଙ୍ଗ – Feminine of Ardatia

ଆଡ଼ତିପତର / Ardatipatara – ଗ୍ରାମ୍ୟ. ବି.
ଆଡ଼ତିପତ୍ର (ଦେଖ)

ଆଡ଼ତିପତ୍ର / Ardatipatra – ଦେଶଜ. ବି. (ସହରର; ଦ୍ୱିତୀୟ ଶବ୍ଦ ନିରର୍ଥକ)
ଗୃହର ନାନାଦି ସାମାନ୍ୟ କର୍ମ – The various menial duties of a household.

यहलटकोर / ଆଡ଼ତିହାଡ଼ / Ardatiharda – ଦେଶଜ. ବି –
ଆଡ଼ମୁହାଁ (ଦେଖ)
[ଆଡ଼ତିହାଡ଼ ଖରାଡ଼ ବାଡ଼ବାଙ୍କ ମେଲା
ଖୋଜନ୍ତି ଯାବତ ପୁରେ ପଶି ଦୈତ୍ୟେ ଭଲା]
ପୀତାମ୍ବର – ନୃସିଂହ ପୁରାଣ

ଆଡ଼ଦୀରିଘ / Ardadirigha – ଗ୍ରାମ୍ୟ, ବି. ଓ ବିଣ –
ଆଡ଼ଦୀର୍ଘ (ଦେଖ)

ଆଡ଼ଦୀର୍ଘ / Ardadirgha – ଦେଶଜ. ବି. (ସଂସ୍କୃତ ଆଳି = ରେଖା + ଦୀର୍ଘ)

चउडाइ लम्बाइ } ୧. ପ୍ରସ୍ଥ ଓ ଦୈର୍ଘ୍ୟ – Breadth and length,
आडा लम्बाइ } ୨. କ୍ଷେତ୍ରଫଳ – Area.

[ଦ୍ୱାଦଶ କୋଟି ଲକ୍ଷ ଯୋଜନ ପ୍ରତି ତୁଲେ ଆଡ଼ଦୀର୍ଘ ବିସ୍ତାର ଯେ ଅଧେକ ମହୀଆରେ] ବିଷ୍ଣୁଗର୍ଭ - ପୁରାଣ

ଦେଶଜ, ବିଣ – ପ୍ରଶସ୍ତ ଓ ଦୀର୍ଘ; ଖୁବ୍ ଚଉଡ଼ା ଓ ଖୁବ୍ ଲମ୍ବା – Broad and long; very broad and very long.

ଆଡ଼ଦୀର୍ଘରେ Ardadirghare – ଦେଶଜ. ଅବ୍ୟୟ – ଆଡ଼ଦୀର୍ଘେ (ଦେଖ)

ଲାଗିବା Lagiba – ଦେଶଜ. ବି. ଲାଗିବା କାର୍ଯ୍ୟ – Act of Lagiba, (See below.)

(ଦୁଇଜଣ ବନ୍ଧୁଙ୍କ ମଧ୍ୟରେ କଳି ଲାଗିବା ଅସୁନ୍ଦର କଥା)

लगना ଦେଶଜ – ବିଣ. ଯାହା ବା ସେ ଲାଗିଥାଏ – That which has done the act of Lagiba (See below) (ଘର ତିଆରିରେ ଲାଗିବା ବ୍ୟୟ)

ଯାହା ବା ଯେ ଲାଗିବ – That which will do the act of Lagiba.(See below)

(ଆଗାମୀ ବର୍ଷ ବିବାହରେ ଲାଗିବା ବ୍ୟୟ)

ଦେଶଜ – କ୍ରିଂ – (ସଂସ୍କୃତ ଲଗ୍ ଧାତୁ)

୧. (ଅକର୍ମକ) ଅନ୍ୟ ବସ୍ତୁ ସଙ୍ଗେ ଯୁକତ୍ ହେବା; ଲଗ୍ ହେବା; ଲାଖିବା; ସଂଲଗ୍ନ ହେବା; ଜଡ଼ିତ ହେବା –

To be attached to another thing; to stick to; to adhere to.

[ଏ ମହୀ ତୋର ପାଦଲାଗି ଯେମନ୍ତ ଦିଶଇ ସୌଭାଗୀ ।]

ଜଗନ୍ନାଥ – ଭାଗବତ, ୧

[ବାନ୍ଧୁରୀମାନେ ଅଙ୍ଗ ଲିହନ୍ତେ ଲାଗିରହିଛି ଲାଲ ।]

ଭକ୍ତଦାସ – ମଥୁରାମଙ୍ଗଳ ୨

୨. (ଅକର୍ମକ)

(ପଶୁଆଦି ଶକଟାଦିରେ) ଯୋଚାଯିବା – (beast) To be yoked to a cart.

[ଏ ଶଗଡ଼ରେ ହଡ଼ା ବଳଦ ସଙ୍ଗେ ଦାମୁଡ଼ିଟାଏ ଲାଗିଛି]

୩. (ଅକର୍ମକ)
(ଜାହାଜ, ଡଙ୍ଗା ଆଦି) ପହଞ୍ଚିବା; କୂଳକୁ ଆସିବା; ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବା – ( A boat or conveyance) To touch (the shore); to reach the destination.
[ବେଳାରେ ଲାଖିଲା ନାବ ଚମ୍ପାବତୀ ପୁରେ] ଭଞ୍ଜ-ବୈଦେହୀଶବିଳାସ ୪୧୭
[ଏଡ଼େନ୍‌ରେ ଜାହାଜ ଲାଗିଲା; ଷ୍ଟେସନ୍‌ରେ ଗାଡ଼ି ଲାଗିଲା ।]

୪. (ଅକର୍ମକ) (ଦେହରେ) ବୋଳାଯିବା; ଲିପାଯିବା – To be smeared over; to be annointed.
[ଦେହେ ଲାଗିଲା ପଙ୍କ ଯେହ୍ନେ; ନ ଯାଇ ପଙ୍କ ପ୍ରକ୍ଷାଳନେ]
ଜଗନ୍ନାଥ – ଭାଗବତ ୧
[ହଳଦି ଲାଗିବା; ତେଲ, ଚନ୍ଦନ, ଖାଇବା ଥାନରେ ଗୋବର ଲାଗିବା।]

୫. (ଅକର୍ମକ) କୌଣସି ବିଷୟର ସମ୍ପର୍କ ଅନ୍ୟ ବ୍ୟକ୍ତି ବା ବସ୍ତୁଠାରେ ଯୁକ୍ତହେବା; ବ୍ୟାପିବା –
To overtake; to spread over.
[ସେ ଦୋଷ ନ ଲାଗଇ ତାର
ନଳିନୀ ପତ୍ରେ ଯେହ୍ନେ ନୀର] ଜଗନ୍ନାଥ– ଭାଗବତ ୧
ସୂର୍ଯ୍ୟଙ୍କଠାରେ ପରାଗ ଲାଗିଛି, ଚନ୍ଦ୍ରଙ୍କଠାରେ ଗ୍ରହଣ ଲାଗିଛି ।]

୬. (ଅକର୍ମକ) ବୁଜିହେବା; ମୁଦିଦେବା; ମୁଦ୍ରିତ ବାଅ – To be closed or shut.
[ରାତିଅନିଦ୍ରା ଯୋଗୁଁ ମୋ ଆଖି ଲାଗିଯାଉଛି; ଆଖି ଧରିଥିବାରୁ ଆଖିପତା ଲେନ୍ଧେରାରେ ଲାଗିଯାଇଛି ।]

୭. (ଅକର୍ମକ)
(ଜିଭ, ପାଟି, ତୁଣ୍ଡ) ଖନିମାରିବା; ସ୍ପଷ୍ଟରୂପେ ଉଚ୍ଚାରଣ କରି ନ ପାରିବା – To stammer (said of tongue or mouth); not to be able to utter words properly.
(ତା ଜିଭ ଲାଗୁଛି; ତା ତୁଣ୍ଡ ଲାଗୁଛି; ତା ପାଟି ଲାଗୁଛି ।)

୮. (ଅକର୍ମକ)
ଭାତ, ଖାଦ୍ୟ ବା ଶ୍ଳେଷ୍ମା କଣ୍ଠ ନାଳିରେ ଅଟକିବା –
To stick in the throat (said of particles of food or phlegm)
[ତଣ୍ଟିରେଖଣ୍ଡେ ଗୁଆ ଲାଗିଗଲା; ତଣ୍ଟିରେ ମାଛକଣ୍ଟା, ଭାତ, କଫ ଲାଗିଛି ।]
[ଦ୍ରଷ୍ଟବ୍ୟ – ସାଧାରଣଲୋକେ ବିଶ୍ୱାସ କରନ୍ତି ଯେ, କେହି ଦୂରସ୍ଥ ବନ୍ଧୁ ତୁମ୍ଭଙ୍କୁ ଦୂରରେ ଥାଇ ବସିଥିଲେ ତୁମ ତଣ୍ଟିରେ ଭାତ ଅଟକିଯିବ ।]

୯. (ଅକର୍ମକ; ବିଶେଷତଃ ରାଜା ଓ ଦେବତାଙ୍କଠାରେ ପ୍ରଯୁଜ୍ୟ) ବସ୍ତ୍ର ଅଳଙ୍କାରାଦି ଦେହରେ ପରିହିତ ହେବା; ପିନ୍ଧାଯିବା; ଲାଗିହେବା ।

[ଜଗନ୍ନାଥଙ୍କଠାରେ ରେଖା ଲାଗିଲା; ଏ ଫୁଲଧଣ୍ଡା ବଡ଼ – ଠାକୁରଙ୍କଠେଇଁ ଲାଗିବ]

[ତୋର ଲାଗି ଘେର ପଡ଼ିବ ହେବଟି ଚୋରପରି ଆଚରଣ୍ଣ – କବିସୂର୍ଯ୍ୟ – ବି.ଚ. ଉ. ଗୀତ]

୧୦. (ଅକର୍ମକ) କାର୍ଯ୍ୟାଦିରେ ନିଯୁକ୍ତ ହେବା; ବ୍ୟାପୃତ ହେବା; ରତ ହେବା – To be engaged in a work.

[ଲାଗିଥିଲେ ଛବାଧାରୀ ସେବାରେ – କବିସୂର୍ଯ୍ୟ, କବିତା ।]

[ମୁଁ ଦିନରାତି ମୋ ସାଆନ୍ତାଣୀଙ୍କ ସେବାରେ ଲାଗିଥାଏଁ; କୋଣାର୍କ ଦେଉଳ ତୋଳାରେ ବାରଶହ ବଢ଼େଇ ଲାଗିଥିଲେ ।]

୧୧. (ଅକର୍ମକ) ଏକାଦିକ୍ରମେ ଚଳିବା; କାର୍ଯ୍ୟର ସ୍ରୋତ ଅବିଚ୍ଛିନ୍ନଭାବରେ ଚାଲିବା; ଜମିବା – To continue; to go on.

[ବର୍ତ୍ତମାନ ହାକିମଙ୍କର କଚେରି ଲାଗିଛି; ଲାଟସାହେବ ଆସିବାରୁ ବାରବାଟୀ କିଲାରେ ଦରବାର ଲାଗିଛି; ତାଙ୍କ ଦାଣ୍ଡରେ ନାଟ ଲାଗିଛି; ସାହାଣମେଲାବେଳେ ବଡ଼ଦେଉଳରେ ଯାତ୍ରୀଙ୍କ ସୁଅ ଲାଗିଥାଏ । ଭବେ ଲୀଳା ଲାଗିଛି ଦେଖ ଏସନ – ରାମଶଙ୍କର – ଲୀଳାବତୀ ୨।୨]

୧୨. (ଅକର୍ମକ) (ପ୍ରଦୀପ ଆଦି) ଆଲୋକିତ ବା ଅଗ୍ନିଯୁକ୍ତ ହେବା; ଜଳିବା – To be lighted or ignited; to burn.

[ଦୀପ, ବତୀ, ସଞ୍ଜବତୀ, ଚୁଲି, ନିଆଁ, ବାଣ, ରୋଶଣି ଲାଗିଛି; ଏ ଓଦା କାଠଗୁଡ଼ାକ ଜମାରୁ ଲାଗୁ ନାହିଁ]

[ଦ୍ରଷ୍ଟବ୍ୟ – ଚୁଲି ଲାଗିବାର ଅର୍ଥ ଚୁଲିରେ ନିଆଁ ଲାଗିବା]

ସାଧାରଣ ଲୋକେ ଅପରପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରା ଯୁକ୍ତ ଶବ୍ଦ ଖୋଜିଲେ ଯେତେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରା ଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବଂଧୁ ନ ପାଇଲେ 'ବନ୍ଧୁ' ଦେଖିବେ ।

୧୩. (ଅକର୍ମକ) କୌଣସି ପଦାର୍ଥରେ କୌଣସି ଅଙ୍ଗ ବା ଅଂଶ ସଂଯୋଜିତ ହେବା – To be attached to.

[ବଟୁଆରେ ଝୁମ୍ପା ଲାଗିଛି; ବଟୁରିରେ ବେଣ୍ଟ, ଟୋପିରେ ଝାଲର ଲାଗିଛି ]

୧୪. (ଅକର୍ମକ) କୌଣସି କର୍ମ ପାଇଁ ଧନ ବା ପଦାର୍ଥ ବ୍ୟୟିତ ହେବା – To be spent.

[ଏ ଭାଷାକୋଷର ମୁଦ୍ରଣ ପାଇଁ ଅଠେଇଶି ହଜାର ଟଙ୍କା ଲାଗିବ ]

୧୫. (ଅକର୍ମକ) କୌଣସି କର୍ମ କରିବାରେ ସମୟ ବ୍ୟୟିତ ହେବା – (Time) To be spent on any work or to be taken for doing any work.

[ଭାଷାକୋଷ ରିଭିଜନ୍ କର୍ମ ଆଉ ବରଷେ ଲାଗିବ]

୧୬. (ଅକର୍ମକ) କୌଣସି କର୍ମ ପାଇଁ ଲୋଡ଼ା ହେବା, ଆବଶ୍ୟକ ହେବା – To be required for any work.

ଦ୍ୱାଦଶ ସମ୍ବତ୍ସର ପୂର୍ଣ୍ଣ ଯାଏ ମୁହିଁ ଯେତେ ଅନ୍ନ ଲାଗିବ ତୁମ୍ଭର ଦେବଇଁ
କୃଷ୍ଣସିଂହ – ମହାଭାରତ – ବନପର୍ବ

[ଗୋଟିଏ ଯାଗ କରିବାକୁ ପାଞ୍ଚମହଣ ଘିଅ ଲାଗିବ]

୧୭. (ଅକର୍ମକ) ମୂଲ, ମଜୁରି, ଦରମା ବା ପାରିଶ୍ରମିକ ପାଇଁ କାମ କରିବା; ଖଟିବା – To work for wages or for pay.

[ଯେ ଲାଗି ଖାଏ ସେ ମାଗି ଖାଏ ନାହିଁ
ଯେ ମାଗି ଖାଏ ସେ ଲାଗି ଖାଏ ନାହିଁ – ଢଗ]

୧୮. (ଅକର୍ମକ) (ଗଛ ଆଦି) ରୋପିତ ହେବା –
To be planted.

[ସଡ଼କ ପାଖଯାକ ବରଗଛ ଲାଗିଛି ;
ମୋ ବଗିଚାରେ ବହୁତ ମଲ୍ଲୀଗଛ ଲାଗିଛି]

୧୮. (ଅକର୍ମକ) ଉପୁଜିବା, ଜାତ ହେବା – To arise.

[ଦୁଇ ଭାଇଙ୍କ ମଧ୍ୟରେ ବିଷୟ ସମ୍ପତ୍ତି ପାଇଁ ମକଦ୍ଦମା ଲାଗିଲା । ଏ ତାଳ ଖଣ୍ଡି ବଗିଚାରେ ଆଣି ପୋତି ଦେଇଥିଲି, ସେଥିରେ ଆଠଦିନ ଚେର ଲାଗିବାରୁ ସେ ତାଳଟି କଅଁଳିଲାଣି]

୧୯. (ଅକର୍ମକ) ଫଳବତ୍ ହେବା; – ଈପ୍ସିତ ଫଳ ପ୍ରଦାନ କରିବା – To be effective; to produce the desired effect; to result in.

[ମୁଁ ଯେତେ ଘିଅ ଦୁଧ ଖାଇଲି ମୋ ଦିହରେ ଜମାରୁ ଲାଗିଲା ନାହିଁ ]

୨୦. (ଅକର୍ମକ) ଅଧିକ ହୋଇ ଯୁକ୍ତ ହେବା; ବୃଦ୍ଧି ପାଇବା – To be added to; to increase.

[ବିନା ପରିଶ୍ରମରେ ମାଗଣା ଭୋଜନ ପଡ଼ିବାରୁ ତା'ଠେଇଁ ମାଉଁସ ଲାଗିଲାଣି ]

୨୧. (ଅକର୍ମକ) ଅଣ୍ଡିରା ପଶୁ ମାଈ ପଶୁକୁ ସଙ୍ଗମ କରିବା; ଜୋଡ଼ ପଡ଼ିବା – To pare; to cohabit (said of male beasts). [ହାତୀମାନଙ୍କୁ ବଣରୁ ଧରିଆଣି ଘରେ ପାଳିଲେ ଦେଖାଯାଏ ସେମାନେ ହାତୁଣୀ ସଙ୍ଗେ ଲାଗନ୍ତି । ଏ ଗାଈ ସଙ୍ଗେ ଗୋପାଳଜୀ ଷଣ୍ଢ ଲାଗିଲେ ଏ କଳିଙ୍ଗା ବାଛୁରୀ ପକାଇବ ।]

୨୨. (ଅକର୍ମକ) ଚିହ୍ନ ବା ଦାଗ ରୂପେ ରହିଯିବା; ଦାଗ ଆଦି ନ ଲିଭିବା – To be left as a mark or stain; not to be erased.

[ଯେତେ ଚେଷ୍ଟା କଲେ ମଧ ତା ଲୁଗାରେ ଲାଗିଥିବା ରକ୍ତ ଦାନ ତାକୁ ଧରା ପକେଇ ଦେଲା]

୨୩. (ଅକର୍ମକ) ଶତ୍ରୁତା ଆଚରଣ କରିବା; ଶତ୍ରୁ ରୂପେ କୌଣସି ବ୍ୟକ୍ତିକୁ ଉତ୍ୟକ୍ତ କରିବା; ବିବାଦ କରିବା – To act inimically towards a person.

[ମୋ ସଙ୍ଗରେ ଲାଗିଲେ ବସିବୁ ଯମ ପାଶ

କୃଷ୍ଣସିଂହ – ମହାଭାରତ-ସଭା ପର୍ବ

ମୋଠେଇଁ ସବୁବେଳେ ଶତ୍ରୁ ଲାଗିଛନ୍ତି;

ତୁ ମୋ ସାଙ୍ଗେ ଲାଗ ନା ]

୨୪. (ଅକର୍ମକ) କୌଣସି ବ୍ୟକ୍ତିକୁ ଧରିବା, ଠକିବା ବା ଆକ୍ରମଣ କରିବାପାଇଁ ତାହା ପ୍ରତି ଅନ୍ୟ ବ୍ୟକ୍ତି ନିଯୁକ୍ତ ବା ମୁତଏନ୍ ହେବା – To be employed or commissioned after; To be deputed.

[ତିନିଦିନ ହେଲା ଖାତକଠାରେ ମହାଜନର ପିଆଦା ଲାଗିଛି; ରାଜଦ୍ରୋହୀଙ୍କ ପଛରେ ଚୋରା ପୁଲିସ୍ ଲାଗିଛନ୍ତି]

୨୫. (ଅକର୍ମକ) ଆକ୍ରମଣ କରିବା ଉଦ୍ଦେଶ୍ୟରେ ପଛରେ ଗୋଡ଼ାଇବା – To chase; to pursue.

[ବିଲୁଆ ପିଛା ତିନିଟା ଡାହାଳକୁତା ଲାଗି ଦଶ ଖେପାରେ ତାକୁ ମାଡ଼ି ବସିଲେ]

୨୬. (ଅକର୍ମକ) ପ୍ରସ୍ତାବିତ ହେବା; କୌଣସି ପଦାର୍ଥ ବା ବିଷୟପାଇଁ କଥାବାର୍ତ୍ତା ବା ପ୍ରସଙ୍ଗ ଉତ୍ଥାପିତ ହେବା – To be proposed; to be talked about in connection with any matter.

[ବଳରେ ଢାକିଲି ଗୁଆ; ଗେହ୍ଲେଇ ନାନୀକି ବର ଲାଗିଛି

ଆର ସାଇ ବଣଭୁଆ – ଢଗ, ସକର୍ମକ]

[ମୋ ପୁଅ ପାଇଁ ଚଉଧୁରୀ ଘରେ କନ୍ୟା ଲାଗିଛି;

ମୋ ଭାଣିଜୀପାଇଁ ମିଶ୍ରଙ୍କ ଘରେ ବର ଲାଗିଛି । ଅକର୍ମକ]

୨୭. (ଅକର୍ମକ) ଖାଦ୍ୟଦ୍ରବ୍ୟ ଖାଇଲା ପତ୍ରରେ ଦିଆଯିବା; ପରିବେଷଣ କରାଯିବା – To be served on the plate (said of food.)

[ସଙ୍ଖୁଡ଼ି ସଭାରେ ଖିରିପିଠା ଲାଗିଲାଣି; ଏ ଧାଡ଼ିର ଦଶଖଣ୍ଡ ପତର ମଧ୍ୟରୁ ତିନିଖଣ୍ଡ ପତରରେ ମାଛ ବେଶର ଲାଗି ନାହିଁ]

୨୮. (ଅକର୍ମକ ଓ ସକର୍ମକ) ବାଧିବା; ବାଧା ଦେବା; ପୀଡ଼ା ଦେବା (ଏ ଅର୍ଥର ବଙ୍ଗଳା ଭାଷାରେ ବେଶି ପ୍ରୟୋଗ ହୁଏ) To give pain, to affect painfully.

[ନିମ୍ନସ୍ଥ କର୍ମଚାରୀଙ୍କ ଆଗରେ ହାକିମ ମତେ ଗାଳି ଦେବାରୁ ସେ ବାଜି ମୋ ଦିହରେ ଚାଉଁକିନି ଲାଗିଗଲା – ଅକର୍ମକ]

ତୋରେ ଶରଣ ଯେ ପଶଇ

[ସଂସାର ତାକୁ ନ ଲାଗଇ – ଜଗନ୍ନାଥ – ଭାଗବତ ୧, ସକର୍ମକ]

୨୯. (ଅକର୍ମକ ଓ ସକର୍ମକ) କୌଣସି ବିଷୟ ସ୍ମୃତି ବା ହୃଦୟ ପଟରେ ସ୍ଥାୟୀଭାବରେ ଅଙ୍କିତ ହେବା – To be permanently impressed on the tablet of the mind.

[ହେ ପ୍ରିୟ ସଖି ! ମୋ ବେଦନା ନ ଲାଗଇ ନିକି ତୋତେ କିଞ୍ଚିତରେ]

କବିସୂର୍ଯ୍ୟ କି. ଚ. ଚ ଗୀତ – ସକର୍ମକ

ବାଉଁଶରାଣୀର ବାଉଁଶ ଅଗରେ ଚକ୍‌କର୍ ଖାଇବା କଥାଟା ମୋ ମନରେ ଲାଗି ରହିଛି – ଅକର୍ମକ ।

୩୦. (ଅକର୍ମକ) ଅଟକିବା – To stick to.

[ନଈରେ ଅଳ୍ପ ପାଣି ଥିବାରୁ ବୋଝେଇ ଡଙ୍ଗା ଠାଏ ଠାଏ ଲାଗୁଛି; ଜାଲଟା ଗୋଟାଏ ବୁଡ଼ା ଖେଣ୍ଟାରେ ଲାଗିଛି, ଯେତେ ଭିଡ଼ିଲେ ଆସୁ ନାହିଁ ।]

୩୧. (ଅକର୍ମକ) ଆଘାତ ପାଇବା, ବାଜିବା – To strike; to collide with; to hit at.

[ଜାହାଜ ବୁଡ଼ା ପଥରରେ ଲାଗି ଫାଟିଗଲା; ଏ ଟେକାଟି ଠିକ୍ ଜାଗାରେ ଲାଗିଲାରୁ ଫଳ ଝଡ଼ି ପଡ଼ିଲା ।]

୩୨. (ଅକର୍ମକ) କୌଣସି ବିଷୟରେ ଏକାଗ୍ରଚିତ୍ତରେ ରତ ହେବା; ଆସକ୍ତ ହେବା; ଏକାଗ୍ର ମନରେ ନିଯୁକ୍ତ ହେବା; ମାତିବା – To be attached to a matter; to be after a thing; to be addicted to a thing.

[ସେ ପିଲାଟି ଦିନ ରାତି ତା ପଢ଼ାରେ ଲାଗିଛି; ଏ କାମ କରିବାକୁ ମୋ ମନ ଲାଗୁ ନାହିଁ । ସଞ୍ଜବେଳରୁ କଞ୍ଜ ଫୁଟିବା ଯାଏ କୁଞ୍ଜରେ ତୋ ତୁଲେ ପରା ଲାଗେ ଲୋ – ] କବିସୂର୍ଯ୍ୟ – ସଙ୍ଗୀତ ।

୩୩. (ଅକର୍ମକ) କୌଣସି କର୍ମ ଆରମ୍ଭ ହେବା – To be begun; to set in; to be commenced.

[ଆଜି ରାତି ୧୧ଟା ବେଳେ ଚନ୍ଦ୍ରଙ୍କ ଠାରେ ଗ୍ରହଣ ଲାଗିବ ଓ ୧୨ଟା ବେଳେ ଛାଡ଼ିବ; ତୁ ମତେ ଏପରି ଦେଖେଇ ଶିଖେଇ ଉଲୁଗୁଣା ଦେଲେ ତୋର ମୋର ନିଶ୍ଚେ କଳି ଲାଗିବ; ଦିନ ୧୦ଟା ବେଳେ କଚିରି ଲାଗିବ ଏବଂ ୫ଟା ବେଳେ ଭାଙ୍ଗିବ ।]

୩୪. (ଅକର୍ମକ) କୌଣସି କର୍ମ କରିବାକୁ ଆରମ୍ଭ କରିବା – To begin or set to work. (ଏ ବ୍ୟବହାର ବଙ୍ଗଳାରେ ବେଶି ଚଳେ)

[ସଭାରେ ଆମ୍ଭମାନଙ୍କ ଉପସ୍ଥିତି ମାତ୍ରକେ ବକ୍ତା ବକ୍ତୃତା ଦେବାକୁ ଲାଗିଲେ ।]

୩୫. (ଅକର୍ମକ)ମୀମାଂସିତ ହୋଇଥିବା ବିଷୟ ବା ପ୍ରସଙ୍ଗ ପୁନରୁତ୍ଥାପିତ ହେବା; ଉଠିବା – (a matter) To be reopened.

[ଭଲଲୋକେ ବସି ତାଙ୍କ ଦୁହିଁଙ୍କ ବିବାଦ ତ ଭାଙ୍ଗିଦେଇଥିଲେ ପୁଣି ଆଜି ସେ କଥା କିଆଁ ଲାଗିଲା ।]

୩୬. (ଅକର୍ମକ)ଘଟିବା – To happen.

[ଏ ସଂସାରରେ ଦିନରାତି ସୁଖଦୁଃଖ ଲାଗିଛି;
ହାଟରେ ଭାରି ଗହଳ ଲାଗିଛି;
ଲାଗିଛି ନୀଳବନ୍ଦରେ ହାଟ – ଭଜନ]

୩୭. (ଅକର୍ମକ) ବହୁକାଳ ବ୍ୟାପିବା – To extend over a long period of time.

[କେଉଟଙ୍କ ଜାତିଆଣ ସଭା ବରଗଛ ତଳେ ଚାରିଦିନ ଲାଗିଲାଣି, ତେବେ ସୁଦ୍ଧା ତାଙ୍କ ଅଡୁଆ ଛିଣ୍ଡୁ ନାହିଁ]

୩୮. (ଅକର୍ମକ)ବହୁଦୂର ବା ସ୍ଥାନ ବ୍ୟାପିବା; ଅଧିକାର କରିବା – To extend over a long distance; to occupy a long space.

[ଆମ ଗାଆଁ ରନ୍ନକୋଡ଼ି ହୁଦ ମାଇଲିଏ ଯାଏ ଲାଗିଛି]

୩୯. (ଅକର୍ମକ) ମହାଜନ ବା ବ୍ୟବସାୟରେ ଧନ ଆଦି ଖଟା ହେବା ବା ନିଯୋଜିତ ହେବା – To be invested on loan or business.

[ଆମ ଜମିଦାରିରେ ଆମର ତିନିଶହ ଭରଣ ଧାନ ଦେଢ଼ିରେ ଲାଗିଛି ।
କାଠ କାରବାରରେ ମହାଜନର ସବୁଆଡ଼େ ପ୍ରାୟ ଟଙ୍କା ପାଞ୍ଚହଜାର ଲାଗିଛି]

୪୦. (ଅକର୍ମକ; ପ୍ରାଦେଶିକ, ଗଡ଼ଜାତ, ସମ୍ବଲପୁର) ଧାରିବା; ଋଣ କରିବା । – To borrow.

[ସେ ମୋଠାରୁ ପଚାଶ ଟଙ୍କା ଲାଗିଛି]

୪୧. (ଅକର୍ମକ) ସମାପ୍ତ ନ ହେବା – Not to be finished.
[ରାତି ବାରଟାବେଳଯାକେ ସୁଦ୍ଧା ତାଙ୍କ ଘରେ ଖିଆଣ ପିଆଣ ଲାଗିଥାଏ]

୪୨. (ଅକର୍ମକ) ସ୍ପର୍ଶ କରିବା – To come in contact with.
[କୁସୁମ ଫଳ ଅତିଭରେ, ବିଟପୀ ଲାଗନ୍ତି ଭୂମିରେ]
ଜଗନ୍ନାଥ – ଭାଗବତ – ୫

୪୩. (ଅକର୍ମକ) ଅନ୍ୟ ବସ୍ତୁ ସଙ୍ଗେ ଜଡ଼ିତ ହେବା, ଛନ୍ଦି ହେବା – To be entangled in.
[କିସ୍ କଣ୍ଟା ? କାନକୋଳି କଣ୍ଟା, ଯହିଁରେ ଲାଗିବ ଲଟାପଟା।
- କାହାଣୀର କଥା

୪୪. (ଅକର୍ମକ) ଯଥୋପଯୁକ୍ତ କର୍ମରେ ନିୟୋଜିତ ବା ବ୍ୟବହୃତ ହେବା – To be employed or used in the proper work.
[ଗାଈର ବାଛୁରୀ ମରିଯିବାରୁ ଯା ଠେଇଁ ଆଉ ଗୋଟିଏ ବାଛୁରୀ ଲାଗିଛି;
ଶିଶୁତେଲ ଚର୍ମରୋଗର ଔଷଧରେ ଲାଗେ ।]

୪୫. (ଅକର୍ମକ) ସ୍ପର୍ଶ କରିବା; ଛୁଇଁବା – To touch.
[ଘରର ମଥାନରେ ମୋ ମୁଣ୍ଡ ଲାଗୁଛି;
ମୋ ଦିହକୁ ଲାଗି କରି ବସ୍ ନା;
ତୋ ଛାଇବାଇ ଲେନ୍ଦେରା ମୋ ଦିହରେ ଲାଗିବ ନାହିଁ ।
ମାୟା ନ ଲାଗେ ଯାର ଚିତ୍ତେ
କି ପ୍ରୟୋଜନ ତା'ର ଗ୍ରନ୍ଥେ – ଜଗନ୍ନାଥ – ଭାଗବତ – ୧]

୪୬. (ଅକର୍ମକ) ଘୋଟିବା; ଆକ୍ରମଣ କରିବା – To overtake; to attack;
[ବ୍ୟାଧିର ପରାଭବ ନାହିଁ, ଦେହରେ ରୋଗ ନ ଲାଗଇ]
ଜଗନ୍ନାଥ – ଭାଗବତ – ୩

୪୭. (ଅକର୍ମକ) ଭୂତ ଆଦି ମନୁଷ୍ୟଠାରେ ଆବିଷ୍ଟ ହେବା, – To possess a person (said of ghost & spirit)

ସାଧାରଣ ଲୋକେ ଅପରପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରା ଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବଂଧୁ' ନ ପାଇଲେ 'ବନ୍ଧୁ' ଦେଖିବେ ।

[ଲାଗିଲାରେ ଲାବଣ୍ୟନିଧିକି ଶ୍ୟାମନଟ
କବିସୂର୍ଯ୍ୟ – ରତ୍ନାକର ଚମ୍ପୂ]

[ଡାହାଣୀ, ଭୂତ, ଠାକୁରାଣୀ, ବୀର, ବାହୁଟୀ, ଚଣ୍ଡୀ, ବାସେଳୀ, ଭାଲକୁଣୀ ଲାଗିବା]

୪୮. (ଅକର୍ମକ) ବ୍ୟାକୁଳ – To agitate. [କରିବି ଭାଗବତ ଧର୍ମ ଯେଣେ ନ ଲାଗେ ଭବ ଭ୍ରମ – ଜଗନ୍ନାଥ – ଭାଗବତ]

୪୯. (ଅକର୍ମକ) – କଳ୍ପନାଦ୍ୱାରା ବୋଧ ହେବା; ଅନୁମିତ ହେବା; ଏକ ବିଷୟ ଅନ୍ୟ ବିଷୟ ପରି ଜଣାଯିବା – To seem; to be felt as if.

[ଛଣାସୁଧା ସର ପଣାରୁ ମଧୁର ଲାଗୁଥିଲା ଶ୍ୟାମ ପ୍ରୀତି ଗୋ]
– କବିସୂର୍ଯ୍ୟ – ସଙ୍ଗୀତ

ସପନ କଥା ମତେ ସତ ଲାଗିଲା, କାଲି ସପନରେ ମତେ ଲାଗିଲା ଯେ ମୁଁ କଲିକତାରେ ଅଛି ।]

୫୦. (ଅକର୍ମକ) ଅନୁଭୂତି ହେବା – To be experienced. [ଡର ଲାଗିବା, ବିକଳ ଲାଗିବା, ଭଲ ଲାଗିବା, ତୋ କଥାଗୁଡ଼ାକ ମତେ ଚିଟା ଲାଗୁଛି ।

ନାନା ଦୁର୍ନିମିତ୍ତ ନିତି ନିତି ଦେଖି
ମନେ ଲାଗେ ବଡ଼ ଡର – ରାଧାନାଥ – ପାର୍ବତୀ ।

ନିର୍ଲେପ ଯୋଗୀ ସେ ଯୁଗତେ
ସଂଶୟ ଲାଗେ ମୋର ଚିତ୍ତେ – ଜଗନ୍ନାଥ – ଭାଗବତ

ତୀର୍ଥରେ ଗାଧୋଇଲେ ନ ଲାଗେ ଶୋକ ଦୁଃଖ ।
କୃଷ୍ଣସିଂହ – ମହାଭାରତ – ବନ ପର୍ବ]

୫୧. (ଅକର୍ମକ) (ନାଡ଼ିର ଗତି ବା ସ୍ପନ୍ଦନ) ହାତକୁ ଜଣା ପଡ଼ିବା – (Pulse) To be felt by touch.

[ଲାଗୁ ନ ଥିଲା ମୋ ବରକୁ ନାଟିକା
ସଜନୀମାନେ ଦେଖି ହେଲେ ତାଟକା
କବିସୂର୍ଯ୍ୟ – ସଙ୍ଗୀତ ।

କର୍ଣ୍ଣାଟିକାଙ୍କ ନାଟିକା ଲାଗିଲା ନାହିଁ,
ଭଞ୍ଜ – ପ୍ରେମସୁଧାନିଧି ୧।୨୦]

୫୨. (ଅକର୍ମକ) ପଞ୍ଚଇନ୍ଦ୍ରିୟଦ୍ୱାରା ଅନୁଭୂତ ହେବା – To be felt by the different organs of sense.

[ଦ୍ରଷ୍ଟବ୍ୟ – ୧। ରସନେନ୍ଦ୍ରିୟଦ୍ୱାରା ଯଥା – ଖଟା ଲାଗିବା, ମିଠା ଲାଗିବା, ରାଗ ଲାଗିବା ।

୨। ସ୍ପର୍ଶେନ୍ଦ୍ରିୟଦ୍ୱାରା ଯଥା – ଏ ଜିନିଷଟା ହାତକୁ ଭାରି ଟାଆଁସା ଲାଗୁଛି ।

୩ । ଶ୍ରବଣେନ୍ଦ୍ରିୟଦ୍ୱାରା ଯଥା – ଏ ସ୍ୱର ମୋ କାନକୁ ଭାରି କଡ଼ା ଲାଗୁଛି ।

୪ । ଦର୍ଶନେନ୍ଦ୍ରିୟଦ୍ୱାରା ଯଥା – ଏରୂପ ଦେଖିବାକୁ ଭାରି ସୁନ୍ଦର ଲାଗୁଛି ।

୫ । ଘ୍ରାଣେନ୍ଦ୍ରିୟଦ୍ୱାରା ଯଥା – ଏ ଅତର ସୁବାସ ଭାରି ମିଠା ଲାଗୁଛି ।]

୫୩. (ଅକର୍ମକ) ଶାସ୍ତ୍ରବିଧାନ ଅନୁସାରେ କୌଣସି ବ୍ୟକ୍ତିଠାରେ ଦୋଷ ବା ପାପପ୍ରବର୍ତ୍ତିତ ହେବା – (Any sin or fault) To apply to; to be attributed to a person.

[ମୁଁ ମଲେ କି ତୁମ୍ଭର ହେବ ଏଥି ଯଶ
ନ ଲାଗିବ ନିକି ସ୍ତିରୀହତ୍ୟା ଦୋଷ
କୃଷ୍ଣସିଂହ – ମହାଭାରତ – ବନ ପର୍ବ

ପ୍ରଜାପାଳନେ ଧର୍ମଯୁଦ୍ଧେ
ଦୋଷ ନ ଲାଗେ ଶତ୍ରୁବଧେ
ଜଗନ୍ନାଥ ଭାଗବତ –୧

ମୁକ୍ତିମଣ୍ଡପ ସଭା ବ୍ୟବସ୍ଥା ଦେଲେ ଯେ ଖୁଣ୍ଟରେ ବନ୍ଧା ହୋଇଥିବା ଗୋରୁକୁ ସର୍ପାଘାତ କରିଥିବାରୁ ଗୋସ୍ୱାମୀକୁ ଦୁଇପାଦ ଗୋବଧ ଦୋଷ ଲାଗିଲା ।]

୫୪. (ଅକର୍ମକ) ଅଭିଭୂତ କରିବା; ପ୍ରଭାବିତ କରିବା – To influence; to affect.

[ଆତ୍ମାବ୍ରହ୍ମ, ତାକୁ ନ ଲାଗେ ସୁଖଦୁଃଖ
କୃଷ୍ଣସିଂହ – ମହାଭାରତ – ବନ ପର୍ବ]

[ପ୍ରଜାଙ୍କୁ ଆଧି ବ୍ୟାଧି କ୍ଳେଶ
ନ ଲାଗେ ତାପ ତ୍ରୟ ଲେଶ;
ହରି କଥାରେ ଯାର ଶ୍ରଦ୍ଧା
ତାକୁ ନ ଲାଗେ ଭବବାଧା;
ଜଗନ୍ନାଥ – ଭାଗବତ]

୫୫. (ଅକର୍ମକ) କୌଣସି ବସ୍ତୁ (ଯଥା ଅଳଙ୍କାର) ଅନ୍ୟ ବସ୍ତୁ ବା ଉଦ୍ଦେଶ୍ୟ (ଯଥା : ପିନ୍ଧିବା ବ୍ୟକ୍ତିର ଦେହ) – ପ୍ରତି ଯଥୋପଯୋଗୀ ହେବା – To exactly fit in; to suit; to be suitable for the required purpose. [ଏ କାଚ ମୁଠିକ ସାଆନ୍ତାଣୀଙ୍କ ହାତକୁ ଭଲ ଲାଗିଗଲା; ଏ ଔଷଧ ମୋ ଧାତୁକୁ ଲାଗିଲା ନାହିଁ; ଏ ଚଷମା ମୋ ଆଖିକୁ ଲାଗିଲା ନାହିଁ ।]

୫୬. (ଅକର୍ମକ) କୌଣସି କର୍ମ କୌଣସି ବ୍ୟକ୍ତିକୁ ନିଯୁକ୍ତ ବା ବ୍ୟାପୃତ କରି ରଖିବା – To keep a person engaged. [ତାକୁ ଦିନରାତି ଘର ଧନ୍ଦା ଲାଗିଛି; ସକାଳଓଳି ଆମ ସାଆନ୍ତାଣୀଙ୍କୁ ରନ୍ଧାବଢ଼ା କାମ ଲାଗେ, ଦିପହରିଆ ବେଳେ ପଢ଼ାପଢ଼ି ଓ ସିଲେଇ କାମ ଲାଗେ ଓ ଉପରଓଳି ବାଡ଼ିଆଡ଼େ ସାଇମାଇପଙ୍କ ସଭା ଧନ୍ଦା ଲାଗେ ।]

୫୭. (ଅକର୍ମକ) କୌଣସି ସ୍ଥାନ ଅନ୍ୟ ସ୍ଥାନର ସଂଲଗ୍ନ ହେବା; ନିକଟରେ ଅବସ୍ଥିତ ହେବା – To be contiguous to.
[ବାଲୁବଜାରକୁ ଚଉଧୁରି ବଜାର ଲାଗିଛି; ପୁରୀ ଜିଲ୍ଲାକୁ କଟକ ଜିଲ୍ଲା ଲାଗିଛି । ଇନ୍ଦ୍ରଙ୍କର ସର ସେଠାକୁ ଲାଗିଛି –

କୃଷ୍ଣସିଂହ – ମହାଭାରତ – ବନ ପର୍ବ]

୫୭. (ଅକର୍ମକ)(ନଈ, ସଡ଼କ, ରାସ୍ତା ଆଦି) ଏକାଦିକ୍ରମେ ବା ଅବିଚ୍ଛିନ୍ନ ଭାବରେ ସ୍ଥିତ ହେବା; ଦୁଇ ସ୍ଥାନ ବା ଦୁଇ ବସ୍ତୁକୁ ଯୋଗ କରିବା – To join two things or two places; to extend continuously up to a place; to continue from one place to another. [ଜଗନ୍ନାଥ ସଡ଼କ ପୁରୀଠାରୁ କଲିକତାକୁ ଲାଗିଛି ।] [ଦ୍ରଷ୍ଟବ୍ୟ – ସବାରି ବାହିଆ ଗଉଡ଼ମାନେ ଯାଉ ଯାଉ କୌଣସି ସ୍ଥାନର ନିକଟବର୍ତ୍ତୀ ହେଲେ ସବାରି ଡାକରେ କହନ୍ତି, –

'ଅମୁକ ଜାଗା, ଆଖି ମାରୁଛି;
ସୂତାଖିଅ ପରି ଲାଗି ରହିଛି ।]

୫୮. (ଅକର୍ମକ) ଦେବତା ଆଦିଙ୍କୁ ଭୋଗ ବା ନୈବେଦ୍ୟ ରୂପେ ଅର୍ପିତ ହେବା – To be offered to a Deity as offering. [ଏ ପାଚିଲା କଦଳୀତକ ଦିଅଁଙ୍କୁ ଭୋଗ ଲାଗିବ ।]

୫୯. (ଅକର୍ମକ) ଅନ୍ୟ ସ୍ଥାନ ସଙ୍ଗେ ମିଳିତ ହେବା – To meet; to be joined with. [ଏ ନଈଟି ସମୁଦ୍ରକୁ ଲାଗିଛି ।]

୬୦. (ଅକର୍ମକ) କୌଣସି କାର୍ଯ୍ୟର ଭାର ବା ଦାୟିତ୍ୱ କୌଣସି ବ୍ୟକ୍ତିଠାରେ ଅର୍ପିତ ହେବା – (a responsibility) To devolve upon a person; to be entrusted to a person.

[ଲାଗିଲା ତୁମ୍ଭଙ୍କୁ ଏ ରଘୁକୁଳ
ପୁଣ୍ୟ ଅଯୋଧ୍ୟାର ଯଶ ବିପୁଳ

ମଧୁସୂଦନ – ଶ୍ରୀରାମ ବନବାସ]

୬୧. କୌଣସି ବ୍ୟକ୍ତିର ଭଲମନ୍ଦର ତତ୍ତ୍ୱ ନେବାର ଭାର କୌଣସି ବ୍ୟକ୍ତିଠାରେ ନିହିତ ହେବା – (The looking after a person) To devolve upon a person.

[ଲାଗିବି ଯେବେ ପାଇ ନିନ୍ଦା ଦାଉ
ଲାଗିଲି ଆପଣଙ୍କୁ କେହି ଆଉ –
କବିସୂର୍ଯ୍ୟ – କିଶୋରଚନ୍ଦ୍ରର ଗୀତ

ସୁଗ୍ରୀବଙ୍କ ଗଳାରେ ନେଇ ଲମ୍ବାଇଲେ
ଲାଗିଲା ତୋତେ ବାବୁ ଅଙ୍ଗଦ ବୋଇଲେ
କୃଷ୍ଣସିଂହ – ମହାଭାରତ-ବନପର୍ବ]

[ଦ୍ରଷ୍ଟବ୍ୟ : ସଂସ୍କୃତ ଲଗ୍ ଧାତୁର ଅର୍ଥ – ଏକ ବସ୍ତୁ ଅନ୍ୟ ବସ୍ତୁରେ ମିଳିତ ହେବା । ମିଳନର ଦୈହିକ, ବାହ୍ୟ, ଆନ୍ତରିକ, କାଞ୍ଚନିକ, ଘନିଷ୍ଠ, ଈଷତ୍, ସାମୟିକ, ସ୍ଥାୟୀ ଇତ୍ୟାଦି ପ୍ରକାର କ୍ରମରେ ଏହି କ୍ରିୟା ଉପରେ ସୂଚିତ ନାନା ଲକ୍ଷଣାର୍ଥରେ ପ୍ରୟୋଗ କରାଯାଏ । ଏହି କ୍ରିୟାର ଅସମାପିକା, ରୂପ, ସଙ୍ଗେ ଅନ୍ୟ କ୍ରିୟାର ବ୍ୟବହାର ଯଥା – ଲାଗିଯିବା, ଲାଗିଆସିବା, ଲାଗିପଡ଼ିବା, ଲାଗିରହିବା, ଲାଗିଥିବା । ଅନ୍ୟ କ୍ରିୟାର ଅସମାପିକାରୂପ ସଙ୍ଗେ ଏ କ୍ରିୟାର ବ୍ୟବହାର ଯଥା – ବହିଲାଗିବା, ଖାଇଲାଗିବା । ଣିଜନ୍ତ ବା ପ୍ରୟୋଜକରୂପ – ଲଗାଇବା । ସ୍ୱର ଲାଗିବା କର୍ମ – ଲଗାଲଗି । ବିପରୀତ – ଛାଡ଼ିବା]

**ଶିଶୁ** ସଂସ୍କୃତ. ବି. (ଶିଶୁଧାତୁ = ଗମନ କରିବା + କର୍ତ୍ତୃ.ଉ)
**Sisu** ୧ । ଜୀବଜନ୍ତୁଙ୍କର ଛୁଆ, ଶାବକ – The young of animals.
୨ । ଆଠ (ଓ ମତାନ୍ତରରେ ଷୋଳ) ବର୍ଷର ନିମ୍ନ ବୟସ୍କ ବାଳକ ବାଳିକା – A child below eight years.
୩ । ଦୁଧଖିଆ ପିଲା; ଯାହାର ଅନ୍ନପ୍ରାଶନ ହୋଇ ନ ଥାଏ – A child not yet weaned from its mother; infant.
୪ । ଡିମ୍ବ, ଅଣ୍ଡା – Egg.
୧ । (ସଂସ୍କୃତ, ଶିଂଶପା)
ସଂସ୍କୃତ ନାମ – ଶିଂଶପା, ପିଚ୍ଛଳା, ଶ୍ୟାମା, ସାରବାନ୍ କଠିନକାଷ୍ଠ
କୃଷ୍ଣସାରା, ଅଗୁରୁ, କପିଳା, ବିଶିଷ୍ଟ ପାର୍ବତ୍ୟ ବୃକ୍ଷ
ଭସ୍ମଗର୍ଭା । ବିଶେଷ – A timber tree; the Black-
wood; Sissoo;
Dalbergia Sissoo.

शिशम, सिसाम, शिशो, सिसज्ञ

ଆରବୀ – ସାସମ୍

ତେଲଙ୍ଗୀ – ଶିଶୁକର୍ରା, ଜିଟ୍ଟରେଗୁଚେଟ୍ଟୁ

ତାମିଲ – ଢାନୂକ, କୁକଢଇ

[ଦ୍ରଷ୍ଟବ୍ୟ : – ଏହା ଶିମ୍ବାଦିବର୍ଗର ଉଚ୍ଚରୁ ବିଶେଷ; ପତ୍ର ଏକୋତ୍ତର ପର୍ଣ୍ଣ ଓ ଅଣ୍ଡାକାର । ବର୍ଷକୁ ବର୍ଷ ଗଛରୁ ପୁରୁଣା ପତ୍ର ଝଡ଼ି ପୁଣି ନୂଆ ପତ୍ର କ୍ରଅଁଳେ । ଏହା ଖରାଦିନେ ଫୁଲ ଧରେ, ଏଥିର ଛୁଇଁ ଲମ୍ବ, ଛୁଇଁରେ ୧୦ାରୁ ୩ଟି ମଞ୍ଜି ଥାଏ (ଯୋଗେଶଚନ୍ଦ୍ର) । ଏହା ଗଡ଼ଜାତର ପାର୍ବତ୍ୟ ପ୍ରଦେଶରେ ଜନ୍ମେ; ମୃତ୍ତିକାବହୁଳ ପ୍ରଦେଶରେ ଜନ୍ମିବା ଶିଶୁଗଛ ପାହାଡ଼ିଆ ଶିଶୁକାଠ ପରି ଟାଣୁଆ ନୁହେଁ । ଶିଶୁକାଠ ସାଧାରଣତଃ କଳା ଓ ନାଲିରଙ୍ଗର ଦେଖାଯାଏ । ଏ କାଠ ଏପରି ଭାରି ଯେ ପାଣିରେ ବୁଡ଼ିଯାଏ । ଅବ୍‌ଲୁସ୍ ଛଡ଼ା ଅନ୍ୟ ସବୁ କାଠ ମଧ୍ୟରେ ଏହା କଠିନତମ । ଏଥିରେ ଖଟ, ପଲଙ୍କ, ଆଲମାରି, ଚଉକି ଆଦି କରାଯାଏ । ଏ କାଠରେ ଏକପ୍ରକାର ତେଲ ଅଛି । କାଠକୁ ଖଣ୍ଡ ଖଣ୍ଡ କରି କାଟି ସିଝାଇ ତେଲ ବାହାର କରାଯାଏ । ଏ ତେଲ ଜଳେ ଓ ଚର୍ମରୋଗରେ ବ୍ୟବହୃତ ହୁଏ । ଶିଶୁଗଛ ବଢ଼ିବା ସମୟରେ ଭୂମିରୁ ମାଟି, ପଥର, ପାଉଁଶ, ବାଲି ଆଦି ଟାଣି ନେଇଥାଏ ଓ କାଠ ଚିରା ହେବା ବେଳେ କାଠ ଭିତରେ ଶିରାମାନଙ୍କରେ ଉକ୍ତ ମାଟି ପଥର ଆଦି ଦେଖା ପଡ଼େ । ଏ କାଠ ଖୁବ୍ ଜଳେ, କିନ୍ତୁ ଜଳିଲାବେଳେ ଶିଖାରୁ ବହୁତ କଳାଧୂଆଁ ବାହାରେ ।

ବୈଦ୍ୟଶାସ୍ତ୍ରମତେ ଏହା କଟୁତିକ୍ତ କଷାୟ ରସ, ଉଷ୍ଣବୀର୍ଯ୍ୟ, ଅଗ୍ନିବର୍ଦ୍ଧକ ଓ ଗର୍ଭପାତକ । ଏହା ଶୋଷ, ମେଦଃ, କୁଷ୍ଠ, ଶ୍ୱିତ୍ର, ବମି, କୃମି, ବସ୍ତିବେଦନା, ବ୍ରଣ, ଦାହ, ରକ୍ତଦୋଷ ଓ କଫନାଶକ । କାଠ ଶ୍ୱେତପୀତ କୃଷ୍ଣଭେଦରେ ଶିଶୁଗଛ ତିନିପ୍ରକାରର । ସମସ୍ତଙ୍କର ଗୁଣ ପ୍ରାୟ ସମାନ । କପିଳବର୍ଣ୍ଣର ଆଉ ଏକପ୍ରକାର ଶିଶୁ ତିକ୍ତରସ, ଶୀତବୀର୍ଯ୍ୟ, ଶାନ୍ତିନିବାରକ; ବାତ, ପିତ୍ତ, ଜ୍ୱର, ହିକ୍କା ଓ ବମନ ରୋଗର ଉପକାରକ ।]

୨. କରଣ ବୈଷ୍ଣବମାନଙ୍କର ବଂଶୋପାଧିବିଶେଷ – A family title of Karana Baisnabas.

[ଦ୍ରଷ୍ଟବ୍ୟ – ପୁରୀ ଜିଲ୍ଲାର ବାଲିପାଟଣା ଗ୍ରାମରେ ଏହି ବଂଶୋପାଧିଧାରୀ କରଣ ବୈଷ୍ଣବଙ୍କ ବସତି ଅଛି ।]

ସଂସ୍କୃତ. ବିଂ.

୧ । ଅତି ଅଳ୍ପ ବୟସ୍କ – Of tender age.

୨ । (ଲକ୍ଷଣାର୍ଥ) ଶିଶୁପରି ଅଜ୍ଞାନ ଓ ମୂର୍ଖ –
Ignorant and indiscrimination like a child.

[ଦ୍ରଷ୍ଟବ୍ୟ – କେତେକ କବି ବିନୀତ ଭାବରେ ଆପଣାର ନାମ ପୂର୍ବରେ ଶିଶୁ ବିଶେଷଣ ଲଗାଇଥିବାର ଦେଖାଯାଏ, ଯଥା : – ଶିଶୁ ଦାମଦାସ, ଶିଶୁଶଙ୍କର ଦାସ]

× × × × ×

ସାଧାରଣ ଲୋକେ ଅପରପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରାମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରା ଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବଂଧୁ' ନ ପାଇଲେ 'ବନ୍ଧୁ' ଦେଖିବେ ।

ଶିଶୁ ଦାମ ଦାସ ଦେଶଜ. ବି (ନାମ)
Sisu Dama Dasa

ଭଞ୍ଜୀୟ ଯୁଗ (ଖ୍ରୀ. ୧୭୦୦ – ୧୮୫୦)ର ଶେଷଭାଗର ଜଣେ କବି । ଏ ପୁରୀର ଜଗନ୍ନାଥ ମୂର୍ତ୍ତି ଓ ବଡ଼ ଦେଉଳ ବିଷୟରେ 'ଦାରୁବ୍ରହ୍ମଗୀତା' ନାମକ ଗୋଟିଏ ପଦ୍ୟ ଗ୍ରନ୍ଥ ରଚନା କରିଥିଲେ – An Oriya poet of the later Bhanja period.

× × × × ×

ଶିଶୁପାଳ ସଂସ୍କୃତ – ବି. (ନାମ)
Sisupala

ଚେଦିରାଜ ଦମଘୋଷଙ୍କ ଔରସରେ ବସୁଦେବ ଭଗ୍ନୀ ଶ୍ରୁତଶ୍ରବାଙ୍କ ଗର୍ଭଜାତ ପୁତ୍ର – Name of the son of Damaghosha – The king of Chedi (killed by Sreekrushna).

[ଦ୍ରଷ୍ଟବ୍ୟ – ଶ୍ରୀକୃଷ୍ଣଙ୍କ ହାତରେ ଏହାଙ୍କର ମୃତ୍ୟୁ ଘଟିବାର ପୂର୍ବରୁ ଜାଣି ଏହାଙ୍କର ଶତ ଅପରାଧ ମାର୍ଜନା କରିବାପାଇଁ ଶ୍ରୁତଶ୍ରବା ଆପଣାର ପୁତ୍ରରା ଶ୍ରୀକୃଷ୍ଣଙ୍କୁ ଅନୁରୋଧ କରିଥିଲେ ଓ ଶ୍ରୀକୃଷ୍ଣ ଏଥିରେ ସମ୍ମତ ହୋଇଥିଲେ ।

ଦମଘୋଷ ଓ ତାଙ୍କ ପୁତ୍ରମାନେ ଶ୍ରୀକୃଷ୍ଣବିଦ୍ୱେଷୀ ଜରାସନ୍ଧଙ୍କର ଅନୁଗତ ଥିଲେ । ଭୀଷ୍ମକ ରାଜକନ୍ୟା ରୁକ୍ମିଣୀ ମନେ ମନେ ଶ୍ରୀକୃଷ୍ଣଙ୍କୁ ସ୍ୱାମୀରୂପେ ବରଣ କରିଥିଲେ; କିନ୍ତୁ ଜରାସନ୍ଧଙ୍କର ଅନୁରୋଧରେ ଭୀଷ୍ମକରାଜ ରୁକ୍ମିଣୀଙ୍କୁ ଶିଶୁପାଳଙ୍କୁ ବିବାହ ଦେବାପାଇଁ ସ୍ଥିରକଲେ । ରୁକ୍ମିଣୀ ଏହା ଜାଣି ଶ୍ରୀକୃଷ୍ଣଙ୍କୁ ଆପଣାର ପ୍ରେମ ଜଣାଇ ତାଙ୍କୁ ଏ ପ୍ରସ୍ତାବିତ ବିବାହବନ୍ଧନରୁ ରକ୍ଷା କରିବାପାଇଁ ଗୋପନରେ ସମ୍ବାଦ ପଠାଇଲେ । ଶିଶୁପାଳ ରୁକ୍ମିଣୀଙ୍କୁ ବିଭା ହେବାପାଇଁ ବର ବେଶରେ ଯାଇ ଭୀଷ୍ମକଙ୍କ ରାଜଧାନୀ ବିଦର୍ଭରେ ଉପସ୍ଥିତ ହେଲେ । ଶ୍ରୀକୃଷ୍ଣ ବିଦର୍ଭରେ ହଠାତ୍ ଉପସ୍ଥିତ ହୋଇ ରୁକ୍ମିଣୀଙ୍କୁ ହରଣ କରି ଆଣିଲେ । ଅଗତ୍ୟା ବରବେଶଧାରୀ ଶିଶୁପାଳ ବିବାହ ବେଦୀରୁ ବିଷଣ୍ଣ, ବ୍ୟର୍ଥମନୋରଥ ଓ ଅପମାନିତ ହୋଇ ଫେରି ଆସିଲେ । କୌଣସି ବ୍ୟକ୍ତି କୌଣସି କାର୍ଯ୍ୟ କରିବାକୁ ଯାଇ ବ୍ୟର୍ଥମନୋରଥ ହୋଇ ଫେରିଆସିଲେ ଲୋକେ ଶିଶୁପାଳର ଅନୁଭୂତିକୁ ଲକ୍ଷ୍ୟକରି କହନ୍ତି, "ସେ ଶିଶୁପାଳିଆ ହୋଇଗଲେ । ତାକୁ ଅମୁକ ଶିଶୁପାଳ ବନେଇ ଦେଲା ।" ପାଣ୍ଡବମାନଙ୍କ ରାଜସୂୟ ଯଜ୍ଞ କାଳରେ ଶିଶୁପାଳ କୃଷ୍ଣଙ୍କ ବିପକ୍ଷରେ ଠିଆ ହେଲା । ସେ ସମୟକୁ ଶିଶୁପାଳର ଅପରାଧ ଶତସଂଖ୍ୟାରୁ ବଳି ଯାଇଥିବାରୁ ଶ୍ରୀକୃଷ୍ଣ ଏହାର ପ୍ରାଣ ସଂହାର କଲେ । ମାଘ କବି ଏହି ଘଟଣାକୁ ଲକ୍ଷ୍ୟ କରି 'ଶିଶୁପାଳ ବଧ' ନାମକ ସଂସ୍କୃତ କାବ୍ୟ ରଚନା କରିଥିଲେ । ବିଷ୍ଣୁଦ୍ୱାରା ଜୟ ଗୋଟିଏ ଜନ୍ମରେ ଶିଶୁପାଳ ହୋଇଥିଲେ । ଅନ୍ୟ ଜନ୍ମରେ ଏ ଯଥାକ୍ରମେ ମୁର ଓ ରାବଣ ହୋଇ ବିଷ୍ଣୁଙ୍କଦ୍ୱାରା ହତ ହୋଇ ମୋକ୍ଷ ପାଇଲେ ।]

ଦେଶଜ. ବି. ନାମ –

୧. ଶିଶୁପାଳ କେଶରୀ । ଓଡ଼ିଶାର କେଶରୀବଂଶର ଜଣେ ଅବିଖ୍ୟାତ ରାଜା (୮ମ ବା ୯ମ ଶତାବ୍ଦୀ) । ଏ ଶିଶୁପାଳ ଗଡ଼ ନିର୍ମାଣ କରିଥିଲେ – Name of a king of the Kesari dynasty of Orissa.

୨. ପୁରୀ ଜିଲ୍ଲା ଭୁବନେଶ୍ୱରର ଦକ୍ଷିଣ ପୂର୍ବରେ ଗଙ୍ଗୁଆ ନଦୀକୂଳରେ ଥିବା ଗୋଟିଏ ଗ୍ରାମ – Name of a village near Bhubaneswar where the remains of an ancient fort are still to be seen.

[ଦ୍ରଷ୍ଟବ୍ୟ : – ଏଠାରେ ପ୍ରାଚୀନ ଗଡ଼ର ପ୍ରାଚୀର ଓ ପରିଖାର ଭଗ୍ନାବଶେଷ ବର୍ତ୍ତମାନ ମଧ୍ୟ ଅଛି । କେଶରୀ ବଂଶର ଜଣେ ରାଜା ଶିଶୁପାଳ କେଶରୀ ଏ ଦୁର୍ଗ ନିର୍ମାଣ କରିଥିଲେ ।

(କୃପାସିନ୍ଧୁ – ଉତ୍କଳ ଇତିହାସ)

କିମ୍ବଦନ୍ତୀ ଅଛି ଯେ, ପରେ ଓଡ଼ିଶାରେ ଗଙ୍ଗବଂଶୀମାନେ ରାଜପଣ କରିବା ସମୟରେ କେଶରୀବଂଶୀୟ ଜଣେ ରାଜ ବିରାଦର ଏହି ଗଡ଼ରେ ଓଡ଼ିଶା ରାଜାଙ୍କ ସାମନ୍ତରୂପେ ଅବସ୍ଥାନ କରୁଥିଲେ । ରାଜା ଅନଙ୍ଗଭୀମଦେବଙ୍କ ପୁତ୍ର

ଲାଙ୍ଗୁଳା ନରସିଂହ ଦେବ ଯୁବରାଜ ଥିବା ସମୟରେ ମୃଗୟା ଓ ଡକାଇତଙ୍କୁ ଦମନ କରିବା ପାଇଁ ଭୁବନେଶ୍ୱର ଅଞ୍ଚଳକୁ ଯାଇଥିଲେ, ସେଠାରେ ଏ ସାମନ୍ତଙ୍କ କନ୍ୟା 'ମାୟାଦେବୀ'ଙ୍କ ସଙ୍ଗେ ଯୁବରାଜଙ୍କର ପ୍ରଣୟ ହେଲା । ଦୁହେଁ ବିବାହବନ୍ଧନରେ ସଂଯୁକ୍ତ ହେବେ ବୋଲି ମାୟାଦେବୀ ଆଶା କରିଥିଲେ, କିନ୍ତୁ ନରସିଂହ ତାଙ୍କ ପିତାଙ୍କ ଆଦେଶକ୍ରମେ ଜମ୍ବୁରାଜଜେମାଙ୍କୁ ବିବାହ କରିବାରୁ ସେହି କ୍ଷୋଭରେ ମାୟାଦେବୀ ମୃତ ହେଲେ । ଏହି କୁମାରୀଙ୍କ ସ୍ମରଣାର୍ଥ ନରସିଂହଦେବ କୋଣାର୍କରେ ସୂର୍ଯ୍ୟମନ୍ଦିର ନିର୍ମାଣ କରାଇଥିଲେ । ନୀଳକଣ୍ଠ ଦାସ ଏହି କିମ୍ବଦନ୍ତୀଙ୍କୁ ଲକ୍ଷ୍ୟ କରି ତାଙ୍କ କୋଣାର୍କେ କାବ୍ୟର ଦ୍ୱିତୀୟ ଭାଗ 'ମାୟାଦେବୀ' ରଚନା କରିଅଛନ୍ତି । କୋଣାର୍କ ମନ୍ଦିରର ବେଢ଼ା ମଧ୍ୟରେ ଗୋଟିଏ କ୍ଷୁଦ୍ର ମନ୍ଦିର ଅଛି । ତାକୁ ଏବେ ମଧ୍ୟ ଲୋକେ ମାୟାଦେବୀଙ୍କ ଦେଉଳ କହନ୍ତି ।]

ଦେଶଜ ବି – (ଶିଶୁପାଳର ଅନୁଭୂତି ବିଷୟରୁ ଲକ୍ଷଣାର୍ଥ) ଭଗ୍ନମନୋରଥ, ଅପମାନିତ ଓ ଲଜ୍ଜିତ ହୋଇ କୌଣସି ସ୍ଥାନରୁ ଫେରିଆସିବା ବ୍ୟକ୍ତି – A person who returns from some place insulted and crestfallen.

ଦେଶଜ. ବିଣ – (ଲକ୍ଷଣାର୍ଥ) – ଶିଶୁପାଳିଆ; ଭଗ୍ନମନୋରଥ ଓ ଲଜ୍ଜିତ (ବ୍ୟକ୍ତି) – Insulted and crestfallen (person).

## ପରିଶିଷ୍ଟ - ୪

## ବିଭିନ୍ନ ବ୍ୟକ୍ତିଙ୍କ ପାଖକୁ ପଠାଯାଇଥିବା ନମୁନା ବା ପ୍ରସ୍‌ପେକ୍‌ଟସ ସଂପର୍କରେ ଏକ ଗୁରୁତ୍ୱପୂର୍ଣ୍ଣ ସମ୍ବାଦ

### ଓଡ଼ିଆ ଭାଷାକୋଷ ଅଭିଧାନ

ଇତିମଧ୍ୟରେ କଟକର ଓକିଲ ଓ କବି ଶ୍ରୀମାନ୍ ଗୋପାଳ ଚନ୍ଦ୍ର ପ୍ରହରାଜ, ବି.ଏଲ୍.ଙ୍କ କୃତି ଓଡ଼ିଆ ଭାଷା ତତ୍ତ୍ୱ ଅଭିଧାନର ନମୁନା ଓ ଅର୍ଡ଼ର ଫାରମ ବହିଟି ପାଇ ହୃଦୟର କୃତଜ୍ଞତା ଜଣାଉଛୁ । ଏହି ଭାଷାକୋଷରେ ଓଡ଼ିଆ ଭାଷାର ଉତ୍ପତ୍ତି, ସ୍ଥିତି ଓ ପ୍ରଚଳିତ ଶବ୍ଦମାନ ଦୃଷ୍ଟାନ୍ତ ସହିତ ସ୍ଥାନ ପାଇଛି । ଇଂରେଜୀ, ହିନ୍ଦୀ ଓ ବଙ୍ଗଳା ପ୍ରଭୃତି ବିଭିନ୍ନ ଶବ୍ଦମାନ କାଳକ୍ରମେ କିପରି ଓଡ଼ିଆ ଭାଷାସ୍ରୋତରେ ମିଶିଯାଇ ଓଡ଼ିଆ ଭାଷାରେ ବ୍ୟବହାର ହୁଏ ଏପରି ଅନେକ ଗୁରୁତର ଜ୍ଞାତବ୍ୟ ବିଷୟମାନ ବିସ୍ତାରଭାବରେ ସନ୍ନିବେଶିତ ହୋଇଅଛି । ଓଡ଼ିଆ ଭାଷାରେ ଏହା ଗୋଟାଏ ନୂତନ ସୃଷ୍ଟି । ବଙ୍ଗଳା ଭାଷାରେ ବିଶ୍ୱକୋଷ, ପୁଣି ଇଂରେଜୀ ଭାଷାରେ (Encyclopaedia) ଏନସାଇକ୍ଲୋପିଡ଼ିଆ ନାମରେ ଯେଉଁ ବୃହତ୍ ଭାଷାକୋଷମାନ ଦେଖିବାକୁ ମିଳେ, ଏହି ପୁସ୍ତକଟି ମଧ୍ୟ ସେପରି ଆକାର ଧାରଣ କରିବ ବୋଲି ଆଶାହୁଏ । ସର୍ବସାଧାରଣଙ୍କର ଏଥି ପ୍ରତି ଦୃଷ୍ଟି ଆକର୍ଷଣ କରିବ ବୋଲି ଆଶା କରୁ ।

ଆଇନ୍ ବ୍ୟବସାୟ ମଧ୍ୟରେ କବିତାର ଉଦ୍ୟମ ବଡ଼ ପ୍ରଶଂସନୀୟ ।

ନବୀନ : ୧ମ, ଜୁନ୍ ୧୯୩୦

### ଭାଷାକୋଷ ସଂକ୍ରାନ୍ତ ପ୍ରଥମ ବିଜ୍ଞାପନ

### ଏହି ପ୍ରକାରର ବିଜ୍ଞାପନ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ

ବିଜ୍ଞାପନ

ଏ ସୁଯୋଗ ଆଉ ମିଳିବ ନାହିଁ ଓଡ଼ିଆ ଭାଷା ଓ ସାହିତ୍ୟର ଅମୂଲ୍ୟ ଶବ୍ଦ ଭଣ୍ଡାର ଓଡ଼ିଆ, ବଙ୍ଗଳା, ହିନ୍ଦୀ ଓ ଇଂରାଜୀ ପ୍ରତିଶବ୍ଦ ସଂକଳିତ ଓଡ଼ିଆ ଭାଷାକୋଷ ଶ୍ରୀରାମପୁରୀ ଚଉଠ (ରୟାଲ କ୍ୱାର୍ଟୋ) ଆଡ଼ାରେ ଦୁଇଭାଗ ମିଶି ପ୍ରାୟ ଚାରି ହଜାର ପୃଷ୍ଠା । ଦୁଇ ଭାଗର ମୂଲ୍ୟ ଟ ୪୦/- ଯେଉଁମାନେ ଆଗତୁରା ମୂଲ୍ୟ ପାର୍ଶଲ କରିବେ ସେମାନଙ୍କ ପାଇଁ ତିରିଶ ଟଙ୍କା । ହଜାରେ ମାତ୍ର ଛପା ହେଉଛି, ପାଞ୍ଚଶହ ଖଣ୍ଡ ପାଇଁ ଆଗତୁରା ଅର୍ଡ଼ର ମିଳିସାରିଲାଣି । ପଛକୁ ହତାଶ ହେବେ । ଶୀଘ୍ର ଆଗରୁ ଅର୍ଡ଼ର ସହିତ ଟଙ୍କା ପଠାନ୍ତୁ ।

ପୋ.ଅ. ଚାନ୍ଦିନୀଚଉକ, କଟକ — ଗୋପାଳ ଚନ୍ଦ୍ର ପ୍ରହରାଜ

ସତ୍ୟସମାଚାର/୧୪, ଜୁନ ୧୯୩୦

## ଉତ୍କଳ ଶବ୍ଦର ଅର୍ଥ ସଂକ୍ରାନ୍ତରେ ଏକ ପ୍ରତିକ୍ରିୟା

ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ଉତ୍କଳ ଶବ୍ଦର ଅର୍ଥ ଭାଗବାହକ ବୋଲି ଲେଖାଥିବାରୁ ଏ ବିଷୟରେ ଜଣେ ପତ୍ର ପ୍ରେରକ ଆପତ୍ତିକରି ନିଉ ଓଡ଼ିଶା ପତ୍ରିକାରେ ସେ ଲେଖିଅଛନ୍ତି ଓ ସଂଗ୍ରାହକ ଉକ୍ତପତ୍ରର ସମୁଚିତ ଉତ୍ତର ଉକ୍ତ ସମ୍ବାଦପତ୍ରକୁ ପଠାଇଅଛନ୍ତି । ପତ୍ର ପ୍ରେରକ କହନ୍ତି ଯେ, ବଙ୍ଗଳା ବିଶ୍ୱକୋଷରେ ଉତ୍କଳ ଶବ୍ଦର ଏହି ଅର୍ଥ ବଙ୍ଗୀୟ ଗ୍ରନ୍ଥାକାରଙ୍କ ଉତ୍କଳ ବିଦ୍ୱେଷଯୋଗୁଁ ଦିଆଯାଇଛି । କିନ୍ତୁ ଉତ୍କଳର ଏହି ଅର୍ଥ ଏକାଧିକ ପ୍ରାମାଣିକ ଶବ୍ଦକୋଷରେ ଦିଆଯାଇଥିଲାବେଳେ ଭାରବାହକ ଅର୍ଥ ଓଡ଼ିଆ ଜାତିଙ୍କ ପ୍ରତି ଅସମ୍ମାନ କେବେ ହେବ ବୋଲି ଭାଷାକୋଷର ସଂଗ୍ରାହକ ଏ ଅର୍ଥଟାକୁ ବାଦ ଦେଇପାରନ୍ତେ କି ? ଉତ୍କଳ ଶବ୍ଦର ଆଉ ଗୋଟିଏ ଅର୍ଥ ବ୍ୟାଧ ବା ଚଢ଼େଇମାରୁ । ଭାରବାହକ ଅପେକ୍ଷା ବ୍ୟାଧଶବ୍ଦଟା ତ ଆହୁରି ଅପମାନଜନକ । ଏ ଅର୍ଥଟି ପ୍ରାକ୍ ଓଡ଼ିଶାର ରାଜା ଶ୍ରୀ ପୁରୁଷୋତ୍ତମ ଦେବ (ଖ୍ରୀଷ୍ଟ ପଞ୍ଚଦଶ ଶତାବ୍ଦୀ) ସଂକଳିତ ତ୍ରିକାଣ୍ଡ କୋଷ ନାମକ ସଂସ୍କୃତ ଅଭିଧାନରେ ଅଛି । ଏଥିପାଇଁ ସମାଲୋଚକଙ୍କର କି ଉତ୍ତର ଅଛି ? ଆପଣା ଜାତିର ଅସମ୍ମାନ ସୂଚିତ ହେବ ବୋଲି ଅଭିଧାନରୁ ଗୋଟିଏ ପ୍ରାମାଣିକ ଓ ବହୁ ଅଭିଧାନ ଗୃହୀତ ଅର୍ଥକୁ ଉଠାଇଦେବାକୁ ହେବ, ଯେତେ ଏ ଯୁକ୍ତି କରାଯାଏ ତେବେ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ସଂଗ୍ରାହକ ନାଚାର ଓ ସେ ଅପରାଧୀ ସାବ୍ୟସ୍ତ ହେବେ । ଏହିପରି ମେଦିନୀପୁରବାସୀମାନେ ଓଡ଼ିଆ ଅର୍ଥରେ 'ଉଡେ' ବ୍ୟବହାର କରନ୍ତି । ପୂର୍ଣ୍ଣଚନ୍ଦ୍ର ଭାଷାକୋଷରେ ଏହି ଉଡ଼େ ଶବ୍ଦକୁ ପ୍ରାଦେଶିକ ନାମ ଲେଖାଯାଇଛି । ଏ ଶବ୍ଦକୁ ମଧ ଭାଷାକୋଷ ସଂଗ୍ରାହକ କିଆଁ ଦେଲେ, ଏଥିପାଇଁ ତାକୁ ଦୋଷୀ କରାଯାଇଛି । ଆଶା କରାଯାଏ, ନିୟୁ ଓଡ଼ିଶାରେ ପ୍ରେରକ ପତ୍ରର ଉତ୍ତର ପାଠକରି ସନ୍ତୁଷ୍ଟ ହେବେ ।

('ନିଉ ଓଡ଼ିଶା' ପତ୍ରିକା ନ ପାଇବାରୁ ଆବଶ୍ୟକତା ଥିବା ସତ୍ତ୍ୱେ ପତ୍ର ପ୍ରକାଶନ ସମ୍ଭବ ହୋଇପାରୁ ନାହିଁ ।)

## ପରିଶିଷ୍ଟ - ୫

# ଓଏବଷ୍ଟର ଡିକ୍ସିନାରି ଓ ପୂର୍ଣ୍ଣଚନ୍ଦ୍ର ଭାଷାକୋଷ

Fate, Far, Fall, Final, Cave, At, Mete, Prey, Her, Met, Pine Marine, Bird, Pin, Note, Move, Fon, Aton, Not, Moon, Book, Use, Bull, Brute, Turn, Up, Cry, Myth, Cat, Machine, Ace, Church, Ehord, Gem,Anger (Fr) Bari, As, This, Thin, azure.

a - Fate, a --Far, a --Fast, a --Fall, a--Final a--Care, a --at, O, O, O, O, O (ଓଏବଷ୍ଟର ଡିକ୍ସିନାରୀର ପ୍ରତ୍ୟେକ ପୃଷ୍ଠାର ଉପରି ଭାଗରେ ଉପର୍ଯ୍ୟୁକ୍ତ ଟେବୁଲ ପ୍ରଦତ୍ତ ।)

## ଭାଷାକୋଷରେ ପ୍ରଦତ୍ତ ନିର୍ଦ୍ଦେଶ

*ଗ୍ରନ୍ଥର ବାମ ପୃଷ୍ଠାରେ -*

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରା ଯୁକ୍ତଶବ୍ଦ ଖୋଜିବାକୁ ହେବ । ଗାଇ ନ ମିଳିଲେ ଗାଈ ଖୋଜିବେ, କୁଅ ନ ମିଳିଲେ କୂଅ ଦେଖିବେ । ବଂଧୁ ନ ମିଳିଲେ ବନ୍ଧୁ ଦେଖିବେ ଆଗଁ୍ୟା ନ ପାଇଲେ ଆଞ୍ଜା ଦେଖିବେ, ଅଲବତ ନ ପାଇଲେ ଅଲ୍‌ବତ୍ ଦେଖିବେ ।

*ଗ୍ରନ୍ଥର ଦକ୍ଷିଣ ପାର୍ଶ୍ୱରେ -*

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର ର | ଢ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ ଷ | ଞ୍ଚ | ଇଯ | ଉଅ | ହ୍ମ |
| ୨ | ଈ | ଊ | ଋ | ଌ | ୟେ | ଆକାରନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁ ଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଓ୍ୱ | ନ |

# ପରିଶିଷ୍ଟ - ୬

## ସଂକ୍ଷେପରେ ଭାଷାକୋଷ

| ଖଣ୍ଡ | ପ୍ରକାଶ କାଳ | ବର୍ଣ୍ଣ ସଂଖ୍ୟା | ଶବ୍ଦ ସଂଖ୍ୟା | ପୃଷ୍ଠା ସଂଖ୍ୟା ମୁଖବନ୍ଧ + ଶବ୍ଦ | ଉତ୍ସର୍ଗ | ପୃଷ୍ଠପୋଷକ |
|---|---|---|---|---|---|---|
| ୧ମ | ୧୯୩୧ ସେପ୍ଟେମ୍ବର | ଅ - ଔ ସ୍ୱରବର୍ଣ୍ଣ-୧୩ | ପ୍ରାୟ | ୨୩ + ୧୧୯୩ (ଫଟୋ -୦୬) | ସାର ଜନ.ଅ.ହବାକ୍ | ସାର୍ ଷ୍ଟିଫେନସନ ବିହାର-ଓଡ଼ିଶାର ଗଭର୍ଣ୍ଣର |
| ୨ୟ | ୧୯୩୨ ଜୁଲାଇ | କ - ଙ ୬ | ୬୨ ହଜାର | ୧୯ + ୧୨୬୮ (ଫଟୋ - ୦୬) | ଏନ୍.ଏଫ୍.ପେକ୍ | ସାର୍ ଗିଫଟନ ବିହାର ଓଡ଼ିଶା ଗଭର୍ଣ୍ଣର |
| ୩ୟ | ୧୯୩୩ ମେ | ଚ - ଥ ୧୨ | | ୨୩ + ୧୧୬୨ (ଫଟୋ-୦୭) | ନାରାୟଣ ପ୍ରସାଦ ଦେବ | ନାରାୟଣ ପ୍ରସାଦ ଦେବ ବୌଦ ରାଜା |
| ୪ର୍ଥ | ୧୯୩୪ ଜୁନ୍ | ଦ - ପ ୪ | ପ୍ରାୟ ୩୪ ହଜାର | ୩୧ + ୧୫୭୨ (ଫଟୋ -୦୯) | ବିକ୍ରମ ଦେବ ବର୍ମା | ଗିବସନ ଗଡ଼ଜାତ-ଏଜେଣ୍ଟ |
| ୫ମ | ୧୯୩୬ ମାର୍ଚ୍ଚ | ଫ - ମ ୪ | ପ୍ରାୟ ୩୯ ହଜାର | ୨୩ + ୧୪୪୬ (ଫଟୋ -୧୫) | କୃଷ୍ଣଚନ୍ଦ୍ର ନାରାୟଣ ଦେବ | ବିକ୍ରମ ଦେବ ବର୍ମା ମହାରାଜା-ଜୟପୁର |
| ୬ଷ୍ଠ | ୧୯୩୭ ଜୁନ୍ | ଯ - କ୍ଷ ୬ | ପ୍ରାୟ ୨୪ ହଜାର | ୫୧ + ୧୨୬୭ (ଫଟୋ -୨୭) | ରାଜେନ୍ଦ୍ର ନାରାୟଣ ସିଂହଦେଓ | ରାଜେନ୍ଦ୍ର ନାରାୟଣ ସିଂହଦେଓ ପାଟଣା ରାଜା |
| ୭ମ | ୧୯୪୦ ସେପ୍ଟେମ୍ବର | ସ - ହ ୨ | ପ୍ରାୟ ୨୫ ହଜାର | ୮୦ + ୧୩୪୫ (ଫଟୋ-୨୭) | ମାନ୍ୟବର ଲର୍ଡ ଲିନ୍‌ଲିଥଗୋ, ବଡ଼ଲାଟ୍ | ମାନ୍ୟବର ବଡ଼ଲାଟ୍‌ଙ୍କ ପତ୍ନୀ |
| ସାତ ଖଣ୍ଡ | ପ୍ରାୟ ୧୦ବର୍ଷ | ୪୭ | ପ୍ରାୟ ୧ ଲକ୍ଷ ୮୫ ହଜାର | ୨୫୦ + ୯୨୫୩ = ୯୫୦୩ | * ସପ୍ତମ ଖଣ୍ଡର ମୁଖବଂଧରେ ଏହି ସଂଖ୍ୟା ୧୨୬୨ | |

ଏହି ସଂକଳନରେ ରହିଛି - ତାଙ୍କ ଦୀର୍ଘ ସତେଇଶ ବର୍ଷବ୍ୟାପୀ ସାଧନା ଓ ସିଦ୍ଧିର ସାର୍ବକାଳିକ ଅଭିବ୍ୟକ୍ତି - ସାତଭାଗରେ ପ୍ରକାଶିତ ନଅ ହଜାର ପାଞ୍ଚଶହ ତିନି ପୃଷ୍ଠା ବିଶିଷ୍ଟ, ପ୍ରାୟ ଏକ ଲକ୍ଷ ପଞ୍ଚାଅଶୀ ହଜାର ଶବ୍ଦଗର୍ଭୀ, ଚାତୁର୍ଲିପିକ (ଓଡ଼ିଆ, ଇଂରାଜୀ, ହିନ୍ଦୀ ଓ ବଙ୍ଗଳା) ଏବଂ ଭାରତବର୍ଷରେ ଏଯାବତ୍ ପ୍ରକାଶିତ କୋଷଗ୍ରନ୍ଥଗୁଡ଼ିକ ମଧ୍ୟରେ ସର୍ବବୃହତ୍ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ସୃଷ୍ଟି ରହସ୍ୟ' ।

କୋଷଗ୍ରନ୍ଥ ସଂପାଦନକାଳୀନ ତିକ୍ତମଧୁର ଅନୁଭବର ଇସ୍ତାହାର 'ଭାଷାକୋଷପାଇଁ ସଫର୍' ରମ୍ୟକଥନ । ଏବଂ ଓଡ଼ିଆ ଭାଷା ସଂକ୍ରାନ୍ତ 'ଛଅ' ଗୋଟି ତାତ୍ତ୍ୱିକ ଆଲୋଚନା ।

ISBN 81-7411-676-5




**ବିଦ୍ୟାପୁରୀ**
ବାଲୁବଜାର, କଟକ ୭୫୩୦୦୨
**www.vidyapuri.com**

ତାଙ୍କ ରକ୍ତରେ - ସାମନ୍ତବାଦର ଉପସର୍ଗ । ଜୀବିକା ଓକିଲାତି । ପ୍ରେମ- ଭାଷା, ସାହିତ୍ୟ ଓ ସଂସ୍କୃତି । ମାତ୍ର ମୃତ୍ୟୁରେ ଦାରିଦ୍ର୍ୟ, ଅବିଶ୍ୱାସ ଓ ବିଷର ଉପହାସ ।

ତାଙ୍କ ଜାତି - ପ୍ରୀତିବୋଧର ଅଲିଭା ଅଭିବ୍ୟକ୍ତି ଉତ୍କଳର କାହାଣୀ, ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ, ଢଗଢମାଳି - ବଚନ ଏବଂ ବହୁ ରମ୍ୟରଚନା ।

ତାଙ୍କ ସଂପର୍କରେ ଚୁମ୍ବକରେ ଏତିକିମାତ୍ର କୁହାଯାଇପାରେ ଯେ, ଗତ ଶତାବ୍ଦୀର ପ୍ରଥମ ପାଦରେ ସଂଘଟିତ ଓଡ଼ିଆ ଜାତି ଓ ସାହିତ୍ୟର ନବ-ନିର୍ମାଣ ଅୟନରେ ସେ ଅନ୍ୟତମ ଅୟସ୍କାନ୍ତ । ଉତ୍କଳ ସମ୍ମିଳନୀର ଜନ୍ମଜାତକ ସଂଗଠନାର ସେ ତରୁଣତମ ଓ ବିଚକ୍ଷଣ ଗଣକ ଏବଂ ରାଜନୀତି-ଖେଳରେ ପରାଜିତ ସ୍ୱପ୍ନଚାରୀ ।

ତାଙ୍କ ବ୍ୟକ୍ତିତ୍ୱ ଜୀବନ, ବହୁ ପରସ୍ପରବିରୋଧୀ ବିଚାରାଦର୍ଶର ପରୀକ୍ଷାଗାର, ତେଣୁ ରହସ୍ୟମୟ ଓ ହୃଦ୍ୟ । ଅଳ୍ପରେ କହିଲେ - ସେ ଓଡ଼ିଆ ଜାତିର ଏକ ବିକଳ୍ପହୀନ ଆବଶ୍ୟକତା, ଏକ ଚମକ ।

ଏହି ସଂକଳନରେ ରହିଛି - ତାଙ୍କ ଦୀର୍ଘ ସତେଇଶ ବର୍ଷବ୍ୟାପୀ ସାଧନା ଓ ସିଦ୍ଧିର ସାର୍ବକାଳିକ ଅଭିବ୍ୟକ୍ତି - ସାତଭାଗରେ ପ୍ରକାଶିତ ନଅ ହଜାର ପାଞ୍ଚଶହ ତିନି ପୃଷ୍ଠା ବିଶିଷ୍ଟ, ପ୍ରାୟ ଏକ ଲକ୍ଷ ପଞ୍ଚାଅଶୀ ହଜାର ଶବ୍ଦଗର୍ଭୀ, ଚାତୁର୍ଲିପିକ (ଓଡ଼ିଆ, ଇଂରାଜୀ, ହିନ୍ଦୀ ଓ ବଙ୍ଗଳା) ଏବଂ ଭାରତବର୍ଷରେ ଏଯାବତ୍ ପ୍ରକାଶିତ କୋଷଗ୍ରନ୍ଥଗୁଡ଼ିକ ମଧ୍ୟରେ ସର୍ବବୃହତ୍ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ସୃଷ୍ଟି ରହସ୍ୟ' ।

କୋଷଗ୍ରନ୍ଥ ସଂପାଦନକାଳୀନ ତିକ୍ତମଧୁର ଅନୁଭବର ଇସ୍ତାହାର 'ଭାଷାକୋଷପାଇଁ ସଫର୍' ରମ୍ୟକଥନ । ଏବଂ ଓଡ଼ିଆ ଭାଷା ସଂକ୍ରାନ୍ତ 'ଛଅ' ଗୋଟି ତାତ୍ତ୍ୱିକ ଆଲୋଚନା ।




**ବିଦ୍ୟାପୁରୀ**
ବାଲୁବଜାର, କଟକ ୭୫୩୦୦୨
www.vidyapuri.com